অন্তর্ভারতীয় পুস্তকমালা

কথা ভারতী

# ତେଲୁଗୁ ଗଳ୍ପମାଳା

ସମ୍ପାଦକ

ପୁରାଣମ୍ ସୁବ୍ରମଣ୍ୟ ଶର୍ମା

ଓ୍ୱାକାଟି ପାଣ୍ଡୁରଙ୍ଗା ରାଓ

ଅନୁବାଦ

ସ୍ନେହଲତା ରାୟ



ନ୍ୟାସନାଲ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

ପ୍ରଥମ ସଂସ୍କରଣ 1975 (ଶକାବ୍ଦ 1897)

ପଞ୍ଚମ ସଂସ୍କରଣ 1993 (ଶକାବ୍ଦ 1914)



Original Title : Telugu Kathanikalu
Oriya Translation : Telugu Galpamala

ISBN 81-237-0137-3

ଟ 52.00

ନିର୍ଦ୍ଦେଶକ, ନ୍ୟାସନାଲ ବୁକ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ୍ ପାର୍କ,
ନୂଆ ଦିଲ୍ଲୀ-110 016 କର୍ତ୍ତୃକ ପ୍ରକାଶିତ ।

# ପ୍ରାକ୍‌କଥନ

ମନୁଷ୍ୟ ସହିତ ହିଁ କାହାଣୀର ଜନ୍ମ । କାହାଣୀ ପରେ ହିଁ ସାହିତ୍ୟର ଅନ୍ୟ ବିଭାଗ ସବୁର ବିକାଶ ହେଲା । ଆଜିର ଆଖ୍ୟାୟିକା ଯେତିକି ଆଧୁନିକ, ତାର ଇତିହାସ ସେତିକି ପୁରାତନ । ଆଖ୍ୟାୟିକା ବା କାହାଣୀ ଆଗରେ ଉପନ୍ୟାସ ଏକବାରେ ଛୋଟ ପିଲା । ଜୀବନ ଯେତେ ପ୍ରକାରର ମୋଡ଼ ନିଏ, ସାହିତ୍ୟକୁ ମଧ୍ୟ ସେତିକି ମୋଡ଼ ନେବାକୁ ପଡ଼େ । ତେଲୁଗୁ-ଭାଷା-ଭାଷୀ ଜନସାଧାରଣଙ୍କ ଜୀବନର ବିଭିନ୍ନ ଦିଗକୁ ରୂପ ଦେଇଥିବା ସାହିତ୍ୟର ଗୋଟିଏ ବିଭାଗ ହେଲା ତେଲୁଗୁ ଆଖ୍ୟାୟିକା ।

ତେଲୁଗୁ କାହାଣୀର ଏହା ସୌଭାଗ୍ୟ ଯେ ମହାକବି ଗୁରଜାଡ଼ ଆପ୍‌ପା ରାଓଙ୍କ ଲେଖନୀରୁ ସାହିତ୍ୟର ଏହି ଶାଖାଟି ଜନ୍ମ ନେଇଥିଲା । ଏହାର ଇତିହାସ ସର୍ବମୋଟ ଷାଠିଏ ବର୍ଷରୁ ଅଧିକ ପୁରୁଣା ହେବ ନାହିଁ । ପାଶ୍ଚାତ୍ୟ ସାହିତ୍ୟର ପ୍ରଭାବରୁ ଜନ୍ମ ନେଇଥିବା ଏହି ଅଭିନବ ରୂପ, ଜଗନ୍ମୋହିନୀ ପରି ପାଠକର ମନ ଅପହରଣ କରିଆସୁଛି । ସେହି ଦିନଠାରୁ ଏହି ନୂତନ ଶାଖାକୁ ସମୃଦ୍ଧ ଓ ସୁଶ୍ରୀ କରିବାର ଗୌରବ କେତେକ ପ୍ରାତଃସ୍ମରଣୀୟ କଥାକାରଙ୍କୁ ମିଳିଛି ।

ଆଧୁନିକ ତେଲୁଗୁ ଗଦ୍ୟର ବିକାଶ ତେଲୁଗୁ କାହାଣୀରୁ ସୁସ୍ପଷ୍ଟ । ତେଲୁଗୁ କାହାଣୀର ନାମ ଉଚ୍ଚାରଣ ମାତ୍ରେ କେତେ ଜଣ ଲେଖକଙ୍କ ନାମ ଆପେ ଆପେ ସ୍ମରଣ ହୋଇଥାଏ । ସେମାନଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ ନକରି ଲେଖନୀ ଆଗକୁ ବଢ଼ି ପାରୁନାହିଁ ।

'ବାରିଷ୍ଟର ପାର୍ବତୀଶମ୍'ର ଲେଖକ ଶ୍ରୀ ମୋକ୍‌କପାଟି ନରସିଂହ ଶାସ୍ତ୍ରୀ; 'ବଡିଗଡ୍ଡ କଥଲୁ'ର ଲେଖକ ଶ୍ରୀ ଚିନ୍ତା ଦୀକ୍ଷିତୁଲୁ; 'କାନ୍ତମ୍ କଥଲୁ'ର ଲେଖକ ଶ୍ରୀ ମୁନିମାଣିକ୍ୟମ୍ ନରସିଂହ ରାଓ; 'ପିତଲ୍ କା ଦରଓ୍ୱାଜା'ର ଲେଖକ ଶ୍ରୀ ବେଲୁରି ଶିବରାମ ଶାସ୍ତ୍ରୀ; 'ଏମି ଅନୁବନ୍ଧନ' ପରି ସ୍ମରଣୀୟ କାହାଣୀଗୁଡ଼ିକର ଲେଖକ ଶ୍ରୀ ବିଶ୍ୱନାଥ ସତ୍ୟନାରାୟଣ; 'ଅପାବେଶ୍ମ', 'ଅଲେ ନେଦେରେଡ୍ଡୁ' ଓ 'ମୂନ ଗୋଶତା' ପ୍ରଭୃତି କାହାଣୀର ଲେଖକ ଶ୍ରୀ ମଲ୍ଲାଦି ରାମକୃଷ୍ଣ ଶାସ୍ତ୍ରୀ; 'ଅରକାଲୁ କିନ. ମିଁଠଲୁ'ର ସ୍ରଷ୍ଟା ଶ୍ରୀ ଶ୍ରୀପାଦ ସୁବ୍ରମଣ୍ୟ ଶାସ୍ତ୍ରୀ; କରୁଣକୁମାର କାହାଣୀଗୁଡ଼ିକର ଲେଖକ 'କରୁଣ କୁମାର'— ଏ ସମସ୍ତେ ଆଧୁନିକ ତେଲୁଗୁ କାହାଣୀର ପ୍ରାଣ-ପ୍ରତିଷ୍ଠାତା । ଏହି ଲେଖକମାନଙ୍କ ମଧ୍ୟରେ 'ସ.ହୁଣ୍ଡ' ପତ୍ରିକାର ବିଭିନ୍ନ ଅଙ୍କରେ ଲେଖୁଥିବା ଶ୍ରୀ ତ୍ରିପୁରାରି ମଣ୍ଟୁଲ୍ଲ ଖାତ ରାଘବ ସ୍ୱାମୀ ଓ ଶ୍ରୀ କୋଡ଼ଓଣ୍ଟିଗଂଟି ଭେଙ୍କଟ ସୁବ୍ବୟା ଆଦିଙ୍କ ନାମ ମଧ୍ୟ ଉଲ୍ଲେଖନୀୟ ।

ଗୁରଜାଡ଼ଙ୍କଠାରୁ ନେଇ ଆଜିଯାଏ କ୍ରମବିକାଶର ସିଡ଼ିରେ ଉଠି ଉଠି ତେଲୁଗୁ କାହାଣୀର ଇତିବୃତ୍ତ, ଶୈଳୀ, ଶିଳ୍ପ ଓ ଭାଷା ଆଦି—ସବୁ କ୍ଷେତ୍ରରେ ଯଥେଷ୍ଟ

ପରିପରିବର୍ତ୍ତିତ ହୋଇଛି । ଗଳ୍ପଗୁଡ଼ିକରେ ପୂର୍ବାପେକ୍ଷା ଅଧିକ ଗତିଶୀଳତା ଓ ବୈଚିତ୍ର୍ୟ ପ୍ରକଟିତ ହୋଇଛି । ଏହି ସଂକଳନରେ ସଂଗୃହୀତ ଗଳ୍ପଗୁଡ଼ିକରେ ଏହି ବୈଚିତ୍ର୍ୟକୁ ଉପସ୍ଥାପନ କରିବାର ପ୍ରୟାସ କରାଯାଇଛି । ପ୍ରକୃତରେ ଦେଖିବାକୁ ଗଲେ ରାଷ୍ଟ୍ରୀୟ ଅଥବା ଅନ୍ତର୍ରାଷ୍ଟ୍ରୀୟ ସ୍ତରରେ ତେଲୁଗୁ ଗଳ୍ପସାହିତ୍ୟ କୌଣସି ଗୁଣରେ ନିମ୍ନସ୍ଥାନ ଅଧିକାର କରିବ ନାହିଁ ।

ହଜାର ହଜାର ସଂଖ୍ୟାରେ ପ୍ରକାଶିତ ହେଉଥିବା ଗଳ୍ପଗୁଡ଼ିକରୁ ପ୍ରସ୍ତୁତ ସଂକଳନ ନିମନ୍ତେ ତେଲୁଗୁ କଥା-ସାହିତ୍ୟର ପ୍ରତିନିଧିତ୍ୱ କରୁଥିବା କେତୋଟି ଗଳ୍ପ ବାଛିନେବା ସହଜ କାମ ନୁହେଁ । ଗୋଟିଏ ମାତ୍ର କ୍ଷୁଦ୍ର ସଂକଳନରେ ଏଇଭଳି ପ୍ରୟାସ କରିବା ମଧ୍ୟ ଅନୁଚିତ । ତେଲୁଗୁ କାହାଣୀ ପ୍ରତି ପ୍ରକୃତ ନ୍ୟାୟ ପ୍ରଦର୍ଶନ କରିବାକୁ ହେଲେ ଗତ ଷାଠିଏ ବର୍ଷକୁ ଛ' ଭାଗରେ ବିଭକ୍ତ କରି ପ୍ରତ୍ୟେକ ଦଶବର୍ଷ ପାଇଁ ଗୋଟିଏ ଗୋଟିଏ ସଂକଳନ ପ୍ରସ୍ତୁତ କରିବା ଦରକାର । ଏହି ଧାରରେ ହିଁ ତେଲୁଗୁ କାହାଣୀର ପ୍ରକୃତିଗତ ବିଶେଷତା ପ୍ରତିଫଳନ କରିବା ସମ୍ଭବପର ହୋଇପାରେ ।

ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ ପ୍ରତ୍ୟେକ ଭାରତୀୟ ଭାଷାର ଉତ୍କୃଷ୍ଟ ସାହିତ୍ୟିକ କୃତିଗୁଡ଼ିକୁ ଅନ୍ୟାନ୍ୟ ଭାଷାଭାଷୀ ଜନସାଧାରଣଙ୍କ ନିକଟରେ ପହଞ୍ଚାଇବା ଉଦ୍ଦେଶ୍ୟରେ 'ଆଦାନପ୍ରଦାନ' ପରିକଳ୍ପନା କରିଛନ୍ତି । ପ୍ରସ୍ତୁତ ସଂକଳନଟି ସେହି ଯୋଜନାର ଅନ୍ତର୍ଭୁକ୍ତ । ତାଙ୍କ ଦ୍ୱାରା ନିର୍ଦ୍ଧାରିତ ବିଭିନ୍ନ ବିଷୟ ଆଖି ଆଗରେ ରଖି ସତେଇଶଟି ଗଳ୍ପ ଏଠାରେ ସନ୍ନିବେଶିତ କରାଯାଉଛି ।

ସ୍ୱର୍ଗୀୟ ଗୋପୀଚନ୍ଦ୍ଙ୍କ କାହାଣୀରୁ ଏହି ସଂକଳନଟି ଆରମ୍ଭ ହୋଇଛି ଏବଂ ନାମ୍ନି ତରଙ୍ଗିଣୀଙ୍କ କାହାଣୀ ସହ ଶେଷ ହୋଇଛି । ଲେଖକ ଦୁହେଁ ତେଲୁଗୁଭାଷୀ କୃଷିଜୀବୀମାନଙ୍କର ଗ୍ରାମ୍ୟ-ଜୀବନର ପ୍ରତିନିଧିତ୍ୱ କରିଛନ୍ତି (ଏଇ ସଂକଳନର କାହାଣୀକାରମାନଙ୍କର ପରିଚୟ ପୁସ୍ତକ ଶେଷରେ ଦିଆଯାଇଛି) । ବୁକ୍ ଟ୍ରଷ୍ଟର ନିୟମାବଳୀ ଦୃଷ୍ଟିରୁ ଏହି ସଂକଳନଟି ହୁଏତ ତ୍ରୁଟି ରହିତ ହୋଇପାରିଥାଏ; ତେବେ ଯାହା ପୂର୍ବରୁ କୁହାଯାଇଛି ଏହି ସଂକଳନଟି ସ୍ୱୟଂସମ୍ପୂର୍ଣ୍ଣ ବୋଲି କେବେ ଦାବି କରି ନ ପାରେ । ସଂକଳନର କଳେବର ଦୃଷ୍ଟିରୁ ଆମକୁ କେତେକ ଭଲ ଗଳ୍ପ ବାଦ ଦେବାକୁ ପଡ଼ିଲା । ଶେଷରେ ଆମ ପାଇଁ ଏହି ପଶ୍ଚାତ୍ତାପହିଁ ରହିଗଲା— ଆହା, କେତେ ଭଲ କାହାଣୀଟିଏ ଛାଡ଼ିଗଲା ! ଏହି ସଂକଳନର କାହାଣୀଗୁଡ଼ିକ ପାଠକଙ୍କୁ ଯଥୋଚିତ ସନ୍ତୋଷ ପ୍ରଦାନ କଲେ ଆମେ ଆମର ଶ୍ରମ ସାର୍ଥକ ମଣିବୁ ।

ଓ୍ୱାକାଟି ପାଣ୍ଡୁରଙ୍ଗା ରାଓ
ପୁରାଣମ୍ ସୁବ୍ରମଣ୍ୟ ଶର୍ମା

# ସୂଚୀପତ୍ର

## ମମତା

ମାମା ଯୋଗସ୍ୟା ବାଡ଼ି ଠକୁଠକୁ କରି ନାଲକନରେ ଥିବା ଜାମୁ ଗଛମୂଳ ଗୁଇରେ ବସିପଡ଼ିଲା । ଝାପ୍‌ସାକୁ ଏଡ଼ାଇବା ପାଇଁ ଆଖିଆଗରେ ହାତ ରଖି ନିଜ ବିଲ ଆଡ଼କୁ ନଜର ପକାଇଲା । ନିଜ ଜମି ସୀମାରେ ଥିବା ଶିଶୁଗଛଗୁଡ଼ିକ ତାର ଅତି ପରିଚିତ । ସେଇ ଜମି ସାଙ୍ଗରେ ସେ ଗଛଗୁଡ଼ିକର ଜନ୍ମ ଆଉ ସେଇ ଜମି ସାଙ୍ଗରେ ସେମାନେ ବଢ଼ିଚାଲିଛନ୍ତି । ଥରେ ହଳରେ ଲଗାଇବା ପାଇଁ କାଠ ଦରକାର ପଡ଼ିବାରୁ ସେ ସେଥିରୁ ଦୁଇଟି ଗଛ କଟାଇଥିଲା । ଯେଉଁଠି ସେ ଗଛ ଦୁଇଟି ଥିଲା ସେ ଜାଗା ଏବେ ବି ତାକୁ ଖାଲି ଖାଲି ଲାଗେ । ସେ ଜାଗା ଦେଖିଲାମାତ୍ରେ ତାର ମନେହୁଏ ଯେପରି ତାର ନିଜ ହାତରେ ଲାଳନ-ପାଳିତ ଯୋଡ଼ିଏ ପୁଅ ସବୁଦିନ-ପାଇଁ ତାଠାରୁ ବିଦା ହୋଇଗଲେ ।

ମାମା ଯୋଗସ୍ୟା ଦୀର୍ଘଶ୍ୱାସ ଛାଡ଼ି ମୁଣ୍ଡର ପଗଡ଼ି ଖୋଲି ଦେଇ ଜାମୁ ଗଛତଳେ ବସିରହିଲା । ତାର ତିନୋଟି ପୁଅ । ବଡ଼ ନରସ୍ୟା ବିଲ-ବାଡ଼ି କାମ ବୁଝେ । ଦ୍ୱିତୀୟ ହୋରସ୍ୟା ଲୁଗା ଦୋକାନ କରି ସୁଣପଇସା ରୋଜଗାର କରେ । ସବୁଠୁ ସାନ ଭେଙ୍କଟସୁବସ୍ୟା ଇଂରାଜୀ ପଢ଼ିଥିଲା । ତା ଛଡ଼ା ଯୋଗସ୍ୟାର ଆଉ ଦୁଇଟି ଝିଅ । ସବୁ ପିଲାମାନେ ତାର ବହୁତ ସେବା-ଶୁଶ୍ରୂଷା କରୁଥିଲେ । ସେ ମଧ୍ୟ ସେମାନଙ୍କୁ ବହୁତ ଭଲ ପାଉଥିଲା । ପିଲାମାନଙ୍କୁ କେବେ କେମିତି ଛାଡ଼ି ରହିବା ତା ପକ୍ଷରେ କଷ୍ଟକର ହେଲେ ବି ତା'ଠୁଁ ଅଧିକ କଷ୍ଟ ତାକୁ ହୁଏ ତାର ନିଜର ବିଲବାଡ଼ି ଦଣ୍ଡେ ନ ଦେଖି ରହିବା । ସେ ବୁଝୁଥିଲା ତାର ପିଲାମାନେ ସମସ୍ତେ କୃଷିବାସ କାମ କରନ୍ତୁ । ତାର ଧାରଣା, ବିଲବାଡ଼ି କରିବାରେ ହିଁ ସେମାନଙ୍କ ଜୀବନର ସାର୍ଥକତା । ସେଇଥିପାଇଁ ସେ ତାର ଦ୍ୱିତୀୟ ପୁଅ—ଯିଏ ଲୁଗା ବ୍ୟବସାୟ କରୁଥିଲା ତା ଉପରେ ଅସନ୍ତୁଷ୍ଟ ଥିଲା । ସେ କହୁଥିଲା ସେ ଏ ଭଲ ପିଲା, କିନ୍ତୁ ସେ ତା ସ୍ତ୍ରୀ କଥାରେ ପଡ଼ି ବିଗିଡ଼ିଗଲା ।

ମାମା ଯୋଗସ୍ୟା ପାଖରେ ବର୍ତ୍ତମାନ ଶହେ ମାଣ ଜମି । ତାର ସମ୍ପତ୍ତିର ବେଶି ଭାଗ ସେ ନିଜେ ଝାଳବୁହା ପରିଶ୍ରମ କରି ଅର୍ଜିଛି । ତା ପାଇଁ ତା ଜମି ଆଗରେ ବନ୍ଧୁ-ବାନ୍ଧବ, କୁଟୁମ୍ବ ସବୁ ତୁଚ୍ଛ । ଭଲ ଫସଲ ଆମଦାନୀ କରିବା ପାଇଁ ସେ ସବୁ ପ୍ରକାର ଉପାୟ ଅବଲମ୍ବନ କରୁଥିଲା । ଦରକାର ପଡ଼ିଲେ ନିଜ ଜୀବନ ପ୍ରତି ଭରସା ନ ରଖି ତାର ପଡ଼ୋଶୀମାନଙ୍କର ବନ୍ଧ କାଟି ନିଜ ବିଲରେ ପାଣି ମଡ଼ାଉଥିଲା । "କିଏ ମତେ ବାଧା ଦେଲାବାଲା ଅଛ ତ ଆସ" କହି ସେ ଯେତେବେଳେ ମୋଟା ଠେଙ୍ଗାଖଣ୍ଡେ ନେଇ ହିଡ଼ ଉପରେ ଛିଡ଼ା ହୋଇଯାଉଥିଲା—ସାରା ଗାଁଟା ତଟସ୍ଥ ହୋଇଯାଉଥିଲା । ତାର କୁଟିଳ ତୃଷାର୍ତ୍ତ ଜମି ଯେତେବେଳେ ପାଣି ଶୋଷି-

ନେଉଥିଲା — ତାର ଆତ୍ମା ତୃପ୍ତିରେ ଭରିଯାଉଥିଲା । ମା' କୋଳରେ ଶିଶୁ-ସନ୍ତାନକୁ ନେଇ ଦୁଧ ପିଆଇଲାବେଳେ ତା'ର ଯେଉଁ ଆନନ୍ଦ ହୁଏ, ସେଇପରି ଆନନ୍ଦ ସେ ଅନୁଭବ କରୁଥିଲା । ତାର ପିଲାମାନେ ବଡ଼ ହୋଇ ତାକୁ କହୁଥିଲେ, "ଆମେ ସବୁ ଥାଉ ଥାଉ ତମେ କାହିଁକି ଏତେ ପରିଶ୍ରମ କରୁଛ, ବ୍ୟସ୍ତ ହଉଛ ? ଆରାମରେ ବସି ଭଗବାନଙ୍କ ନାମ ନିଅ ।" ଏ କଥା ଶୁଣି ସେ ମନେ ମନେ ଭାବେ, "ଛୋଟ ପିଲା ଏମାନେ, ଏମାନଙ୍କୁ କଣ ଜଣା ? ଏହି ବ୍ୟସ୍ତତା ଆଉ ପରିଶ୍ରମ ମଧ୍ୟରେ କେତେ ଆନନ୍ଦ ହୁଏ, କେତେ ତୃପ୍ତି ହୁଏ, ସେମାନେ କିପରି ଅନୁଭବ କରିପାରିବେ ?"

ମାସେ ହେବ ମାମା ଯୋଗୟାର ସ୍ତ୍ରୀ ବେମାର । ଦିନକୁ ଦିନ ତାର ଅବସ୍ଥା ଖରାପ ଆଡ଼କୁ ଗତି କରୁଛି । ଦଶଦିନ ହେଲା ସେ ଧୁକୁ ଧୁକୁ ହେଉଛି; କିନ୍ତୁ ଯୋଗୟାର ପିଆଡ଼କୁ ଜାଗା ନାହିଁ । ଘରଲୋକ ସେ ବିଷୟରେ କିଛି କହିଲେ "ବେମାରି ମଣିଷଙ୍କୁ ନ ହୋଇ ଆଉ କାହାକୁ ହେବ" କହି କଥା ଟାଳିଦିଏ ।

ଫସଲ କଟା ହେବା ବେଳ । ତାକୁ ଦଣ୍ଡେହେଲେ ଫୁରୁସତ୍ ନାହିଁ । ତା ଛଡ଼ା ସେ କେବେହେଲେ ଭାବି ନଥିଲା ଯେ ଏ ବେମାରି ଏତେ ଜଲଦି ଏପରି ଭୟଙ୍କର ରୂପ ଧାରଣ କରିବ ।

ବଡ଼ପୁଅ କହିଲା, "ଆପଣ ମା ପାଖରେ ବସନ୍ତୁ, ମୁଁ ଯାଇ ବିଲରେ ପାଣି ମଡ଼ାଇ ଦେବି ।" କିନ୍ତୁ ଯୋଗୟା ଘରେ ରହିପାରିଲା ନାହିଁ । ଏମିତି ତ ପାଣିର ଅଭାବ, ସେଥିରେ କେଜାଣି କିଏ ଯଦି ପାଣିଟା ଅଟକାଇ ଦିଏ । ତା ବଡ଼ପୁଅ ହସିଆର ଲୋକ; କିନ୍ତୁ ନରମ ସ୍ୱଭାବର । ଅନ୍ୟ ଲୋକ ଜୋର ଦେଇ କଥା କହିଲେ ସେ ପଛକୁ ହଟିଯିବ । ସାରା ବିଲରେ ପାଣି ମଡ଼ା ହୋଇ ନ ପାରିଲେ ପଛରେ ପସ୍ତାଇ କିଛି ଲାଭ ହେବ ନାହିଁ । ଏହି ସବୁ କଥା ଭାବି ସେ ଗାଁର ବଇଦକୁ ଡକାଇଲା । ଗୋଟିଏ ଔଷଧ ବଟିକା ସ୍ତ୍ରୀକୁ ଖୁଆଇ, ପାଣି ପିଆଇ, "ଆଖି ବୁଜି ଶୋଇପଡ଼ ବନ୍ଦ ହୋଇଯିବ" କହି ବିଲ ଆଡ଼କୁ ଚାଲିଲା । ଗାଁମୁଣ୍ଡ ତେନ୍ତୁଳି ଗଛ ପାଖରେ ପହଞ୍ଚୁ ପହଞ୍ଚୁ ବଡ଼-ପୁଅ ପାଖରୁ ଖବର ଆସିଲା ଯେ ଆର ପାଖ ଲୋକମାନେ ଟାଙ୍ଗିଆ, ବର୍ଚ୍ଛା ନେଇ ମାରିବାକୁ ଧାଇଁ ଆସୁଛନ୍ତି । ଆଉ ବଡ଼ପୁଅର ହାତ ଉପରେ କୋଡ଼ି ମାରିଯାଇଛି । ଯୋଗୟା ଏ ଖବର ପାଇ ଜଲଦି ଜଲଦି ବିଲ ଆଡ଼କୁ ଗଲା; ପହଞ୍ଚି ନାଳରେ ଯେଉଁ ବନ୍ଧ ପଡ଼ିଥିଲା ତାକୁ କାଟି ନିଜ ବିଲକୁ ପାଣି ଯିବା ବାଟ ସଫା କରିଦେଲା । ସେପାଖବାଲା ହତଭାଗ ନେଇ ଚୁପ୍‌ଚାପ୍ ଛିଡ଼ାହୋଇ ରହିଲେ; କିଛି କରିପାରିଲେ ନାହିଁ । ଜମିକୁ ବାହୁଥିବା ପାଣିର କୁଳୁ କୁଳୁ ଶବ୍ଦ ଶୁଣି ଯୋଗୟାର ପ୍ରାଣ ଆନନ୍ଦରେ ଭରିଗଲା । ସେ ସାରା ସଂସାର ଭୁଲି ହିଡ଼ ଉପରେ ଛିଡ଼ାହୋଇ ରହିଲା ।

"ମା ଦେହ କିପରି ଅଛି" ନରସୟା ପଚାରିଲା । "ହଁ ସେମିତି" ଯୋଗୟା ଉତ୍ତର ଦେଲା । "କିଛି କଣ ଆରାମ ମିଳିନାହିଁ ?" ନରସୟା ପୁଣି ପଚାରିଲା । "ହଁ, ମିଳିବ ନାହିଁ କାହିଁକି ?" ଯୋଗୟା କହିଲା । ନରସୟା କହିଲା, "ଚାଲ, ଆମେ ଏଥର ଯିବା ।"

ଏ କଥା ଶୁଣି ଯୋଗୟା ଚମକି ପଡ଼ିଲା । କହିଲା, "ବିଲକୁ ପୁରା ପାଣି ନ ମାଡ଼ିବା ଯାଏ ମୁଁ କିପରି ଯିବି ?" "ଘରେ ତ କେହି ନାହାନ୍ତି । କେତେବେଳେ କୋଉ କଥା," ନରସୟା କହିଲା । "ତୁ ଯାଆ । ମୁଁ ଏଠି ଅଛି" ଯୋଗୟା କହିଲା । ନରସୟା ଜାଣିଥିଲା ଯେ କାମ ପୁରା ନ କରି ଯୋଗୟା ଯିବା ଲୋକ ନୁହେଁ । ଏ କଥା ନରସୟାକୁ ଭଲ ନ ଲାଗୁଥିଲେ ମଧ୍ୟ ବାଧ୍ୟ ହୋଇ ବାପକୁ ହିଡ଼ ଉପରେ ଛାଡ଼ି ଘର ଆଡ଼କୁ ଚାଲିଲା ।

ଜାଉ କା'-କା ରାବିଲା ବେଳକୁ ଯୋଗୟାକୁ ଘରୁ ଡକରା ଆସିଲା । ତାକୁ ଜଣା-ଥିଲା ଯେ ତା ଆଗେ ତାର ସ୍ତ୍ରୀର ବନ୍ଧନ ଛାଡ଼ିବା ଉପରେ; କିନ୍ତୁ କ୍ଷେତର ଗୋଟିଏ କୋଣ ବାକି ଅଛି । ସବୁ କିଆରିକୁ ଏପର୍ଯ୍ୟନ୍ତ ପାଣି ପହଞ୍ଚି ନାହିଁ । କାମ ଅଧା ଛାଡ଼ି ସେ ଯାଇପାରିଲା ନାହିଁ । କିଛି ସମୟ ଭିତରେ ସବୁ କିଆରି ଭର୍ତ୍ତିହୋଇ ସେ କୋଣରେ ବି ପାଣି ପହଞ୍ଚିଗଲା । ଯୋଗୟା ସେଠୁ ଜଲଦି ଜଲଦି ଘର ଆଡ଼କୁ ଚାଲିଲା —ନିଜ ସ୍ତ୍ରୀକୁ ଦେଖିବା ପାଇଁ ।

ସେ ଘରେ ପହଞ୍ଚିଲାବେଳକୁ ତାର ସ୍ତ୍ରୀର ଶେଷ ଅବସ୍ଥା ଆସିଗଲାଣି । ସେ ଅବସ୍ଥାରେ ବି ସେ ଘରକଥା କହିଚାଲିଛି, "ଗ୍ରେଣ୍ଟି ବାହାଘର କଥା ତମକୁ କେତେ ଥର କହିଲିଣି, ତମେ କାନ ଦଉନା" ସେ ତାର ସ୍ୱାମୀକୁ ଅଭିଯୋଗ କରି କହୁଥିଲା । ସାନବୋହୂ ତ କଥା ଶୁଣୁ ନ ଥିଲା, ସେଥିପାଇଁ ଦୁଃଖ କରୁଥିଲା । "ମୂଷା··· କାଟିଦଉଛନ୍ତି । ଗାଈ ସବୁ ମାଟିରେ ଭରିଦିଅ, ଯେମିତି ମୂଷା ବାହାରି ପାରିବେ ନାହିଁ ।" ତା'ପରେ ଆରମ୍ଭ ହୁଏ ଧୋବା କଥାରେ··· । "ଧୋବା ପେଜ ଦେଇ ଲୁଗା କାଚୁଛି ଲୁଗା ସଫା ହଉନାହିଁ ।" ନିଜେ ଉଠିପଡ଼ି ଦହି ମୁହିଁବାକୁ ଚାହାଁର । "ବଡ଼ବୋହୂ ଭଲ ଦହି ମୁହିଁପାରେ ନାହିଁ—ଅଧା ଲହୁଣୀ ରହିଯାଏ ।" ତାର ଚିନ୍ତା ହଉଥାଏ ସିଏ ଆଖି ବୁଜିଲେ ତାର ଏ ସଂସାରଟିର ଅବସ୍ଥା କଣ ହବ !

"ଏ ସବୁ କଥାରୁ ବର୍ତ୍ତମାନ କଣ ମିଳିବ" ଯୋଗୟା ବୁଝାଇବାକୁ ଚେଷ୍ଟାକଲା; କିନ୍ତୁ ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ କିଛି ନା କିଛି ସେମିତି କହିଚାଲିଥାଏ । ସମସ୍ତଙ୍କୁ କିଛି ନା କିଛି କହୁଥାଏ, କାମ ବତାଉଥାଏ । କହୁ କହୁ ବାକ୍‌ଶକ୍ତି ହରାଇବସିଲା । ଜୀବନଦୀପ ଲିଭିବା ପୂର୍ବରୁ ଯୋଗୟାର ହାତ ଜୋରରେ ଜାବୁଡ଼ି ଧରିଲା । ତାର ହାତ ଭିତରେ ହାତ ରଖି ସେ ଏ ଦୁନିଆରୁ ଚାଲିଗଲା ।

ଯୋଗୟାର ସ୍ତ୍ରୀ ଯିବାର ଠିକ୍ ମାସେ ହେଲା । ହାଡ଼ଭଙ୍ଗା ପରିଶ୍ରମ କରି ସ୍ତ୍ରୀର ରୋଗାବସ୍ଥାରେ ବି ତାକୁ ଭ୍ରୂକ୍ଷେପ ନ କରି ଯୋଗୟା ଯେଉଁ ଜମି ଚଷିଥିଲା ସେଥିରେ ବର୍ତ୍ତମାନ ଫସଲ ଉଠିଗଲାଣି । ମୂଲିଆ ଜମି ସଫା କରୁଛନ୍ତି । ସ୍ତ୍ରୀ-ପୁରୁଷ ସବୁ ମିଶି ଖୁସିରେ ଗୀତ ଗାଉଛନ୍ତି ।

ଯୋଗୟା ଜାମୁ ଗଛମୂଳେ ସେମିତି ବସିରହିଛି । ତା ମନରେ ଆଗପରି ସରାଗ ନାହିଁ । ତା ସ୍ତ୍ରୀ ମଲାବେଳେ ଯେପରି ଚିନ୍ତିତ ଓ ବ୍ୟାକୁଳ ହୋଇ ବାଉଳା

ହେଉଥିଲା···ଏପର୍ଯ୍ୟନ୍ତ ସେ କଥା ସେ ଭୁଲି ପାରିନାହିଁ । ତାର ସ୍ତ୍ରୀ ଜାଣିଥିଲା ଯେ ସେ ଅତି ଶୀଘ୍ର ମରିଯିବ; କିନ୍ତୁ କଥାବାର୍ତ୍ତା ଏମିତି କରୁଥିଲା ଯେମିତି କି ସେ ଏଇ ଅଳ୍ପ ସମୟ ହେଲା ନିଦରୁ ଉଠିଛି । ମରିବା ଲୋକର ଏସବୁ କଥାରେ କଣ ପ୍ରୟୋଜନ ? ପ୍ରକୃତରେ ଦେଖିବାକୁ ଗଲେ ଏଥିରେ କାହାର ବା କଣ ଯାଏ ? ପ୍ରତ୍ୟେକ ଲୋକ ଦିନେ ନା ଦିନେ ମରିବ । ଫେରେ ଏସବୁ ଭାବନା କାହିଁକି ? ବିଲଆଡ଼ୁ ଗୀତ ଶୁଣାଗଲା ।

ଯୋଗୟ୍ୟା ଆଖି ଖୋଲିଲା । ବିଲ ଗୁଡ଼ିଆଡ଼େ ଆଖିପକାଇଲା । କିଛିଦିନ ପୂର୍ବେ ତା ନାତି ତା ସାଙ୍ଗରେ ବିଲ ଦେଖିବାକୁ ଆସିଥିଲା । "ବାବା, ଆମ କ୍ଷେତ କୋଉଠି ?" ସେ ପଚାରିଥିଲା । "ଆଖି ସାମନାରେ ଯାହା କିଛି ଦିଶୁଛି ଏସବୁ କ୍ଷେତ ଆମର ।" ଯୋଗୟ୍ୟା ଉତ୍ତର ଦେଇଥିଲା ।

ଶହେ ମାଣ ଲମ୍ବା ଚୌଡ଼ା ଜମି । ସମୁଦ୍ର ପରି ଆଗରେ ଲମ୍ବିଛି·· ଆରପାଖକୁ ଆଖି ପାଉନାହିଁ । ନାତିକୁ ଦେଖାଇଲାବେଳେ ତା ମନ ଆନନ୍ଦରେ କୁଣ୍ଢେମୋଟ ହୋଇଯାଇଥିଲା । ଏ ଗାଁକୁ ସେ ପ୍ରଥମେ ଆସିଥିଲା ବଳଦ ବିକିବା ପାଇଁ । ଯେଉଁ ଘରେ ସେ ତାର ବଳଦ ବିକିଥିଲା, ସେଇ ଘରେ ସେ ଜ୍ୱାଇଁ ହେଲା । ତାର ଚାଲି-ଚଳଣରେ ସନ୍ତୁଷ୍ଟ ହୋଇ ଶାଶୁ-ଶ୍ୱଶୁର ତାକୁ ଘର-ଜ୍ୱାଇଁ କରି ରଖିଲେ । ସେଇ ଦିନୁ ସେ କଠିନ ପରିଶ୍ରମ କରିବାକୁ ଲାଗିଲା । ତାରି ବାହାଘରବେଳେ ତାର ଶ୍ୱଶୁର ପାଖରେ କେବଳ ପାଞ୍ଚମାଣ ଜମି ଥିଲା । ଦଶବର୍ଷ ଭିତରେ ଯୋଗୟ୍ୟା ଅକ୍ଳାନ୍ତ ପରିଶ୍ରମ କରି ସେହି ପାଞ୍ଚ ମାଣରୁ ଆହୁରି ପାଞ୍ଚ ମାଣ ଜମି କଲା । ଶ୍ୱଶୁର ତା ଉପରେ ବହୁତ ସନ୍ତୁଷ୍ଟ ଥିଲେ । ଶେଷ ନିଶ୍ୱାସ ଛାଡ଼ିବାବେଳେ ପାଖକୁ ଡାକି କହିଥିଲେ, "ମୁଁ ତତେ ଆଶ୍ରୟ ଦେଇଥିଲି; ତୁ ମୋର ମାନ-ସମ୍ମାନ ବଢ଼ାଇଲୁ ।" ଏଇ କଥାପଦକରେ ଯୋଗୟ୍ୟା ତାର ସବୁ ପରିଶ୍ରମର ଫଳ ପାଇଯାଇଥିଲା । ସେ ସେତେବେଳକୁ ସେହି ପାଞ୍ଚ ମାଣକୁ ଶହେ ମାଣ କରିସାରିଥିଲା । ପରିଶ୍ରମ କରି ନିଜେ ଚାଷ କରି ତାକୁ ଯେଉଁ ଆନନ୍ଦ ମିଳୁଥିଲା, ସେ ବର୍ତ୍ତମାନ ନାହିଁ । ପ୍ରତିଦିନ କ୍ଷେତ ଦେଖିବାକୁ ଯିବା, ଥରେ ସବୁ ଆଡ଼େ ଆଖି ବୁଲାଇ ଆସିବା, ମୂଲିଆଙ୍କୁ ହୁକୁମ ଦବା—ଏଇ ସବୁ କାମ ନିୟମିତଭାବେ ଚାଲିଲେ ବି ସେଇଟା ଅଭ୍ୟାସଗତ ହୋଇଯାଇଛି । ସେଥିରେ ଆଉ ସେ ଆନନ୍ଦ ଉତ୍ସାହ ନାହିଁ ।

ମାମା ଯୋଗୟ୍ୟା ସେଇ ଜାମୁଗଛମୂଳେ ବସିରହିଲା । ଦୁ'ପହର ହେଲାଣି । ଗଛର ପତ୍ର ଚିରି ତା ଦେହରେ ଖରା ପଡ଼ୁଛି । ଗରମ ହବାରୁ ସେ ଆଖି ଖୋଲି ଦେଖିଲା ବିଲରେ କେହି ମୂଲିଆ ନାହାନ୍ତି । ସାଙ୍ଗେ ସାଙ୍ଗେ ଉଠି ଚାଲିବାର ଚେଷ୍ଟା କଲା । ଗଛ ଡାଳରେ ଝୁଲୁ ହୋଇଥିବା ଖାଇବା ପୁଟୁଳି ଭିତରୁ କେତେକ ମୂଲିଆ ଦଳ ବାନ୍ଧି ଖାଇବସିଛନ୍ତି ତ ଆଉ କେତେକ ମୁଣ୍ଡର ପାଗ ଖୋଲି ତାକୁ ବିଛାଇ ବିଶ୍ରାମ ନଉଛନ୍ତି ।

"ଉଠ···ଉଠ" ଯୋଗସ୍ଥା ପାଟିକଲା । "ଏତେ ବୟସ ହେଲେ ବ ବାବୁ କାମ ଉପରେ କେତେ ନଜର ରଖୁଛନ୍ତି" କହି ସମସ୍ତେ ହସିଦେଲେ । ନମ୍ର ଭାବରେ ଜଣେ କହିଲା, "ହଜୁର, ଏବେ ତ ଆମେ ଖାଇବାକୁ ଆସିଲୁ ।" ଗୋଟି ଗୋଟି ହୋଇ ସମସ୍ତେ ପୁଣି କାମରେ ଲାଗିଗଲେ ।

ଯୋଗସ୍ଥା ଗାଁ ଆଡ଼କୁ ଅନାଇଲା । ଏଇ ଜାମୁ ଗଛତଳେ ସେ ତାର ମଧ୍ୟାହ୍ନ ଭୋଜନ କରେ । ଏବେ ବ ତା' ନାତୁଣୀ ତା' ପାଇଁ ପ୍ରତିଦିନ ଏଠିକି ଖାଇବା ନେଇ ଆସେ । ଦୂରରୁ ସେ ଦେଖିପାରୁଛି, ତା ନାତୁଣୀ ତା ଖାଇବା ମୁଣ୍ଡାଇ ଆସୁଛି । କଳା ମେଘ ଘୋଟିଆସୁଛି । ବର୍ଷା ହବ ପରା । ନଜେ ସେ ଭିଜିଲେ କିଛି ଯାଏ-ଆସେ ନାହିଁ; କନ୍ତୁ ତା ନାତୁଣୀଟି ଯଦି ଭିଜିଯାଏ··· । ବର୍ଷା ଯଦି ଜୋରରେ ହୁଏ, ତାହେଲେ ତାକୁ ଯାଇ ସେଇ ପଣସ ଗଛତଳେ ଥିବା କୁଡ଼ିଆଟିରେ ଆଶ୍ରୟ ନବାକୁ ପଡ଼ିବ । ସେ କୁଡ଼ିଆଟି ଆଜିର ନୁହେଁ- ସେ ଏ ଜମିଖଣ୍ଡିକ ଯେତେବେଳେ କିଣିଥିଲା ସେତେବେଳର । ଖରା ବର୍ଷା ସବୁ ସହି ଏ କୁଡ଼ିଆଟି ଯେମିତ କ ସେମିତ ଅଛି ।

"ବାବା, ନଅ ତମ ଖାଇବା ଆଣିଛି" କହୁ କହୁ ନାତୁଣୀ ଖାଇବା ଉପରୁ ଘୋଡ଼ଣୀ କାଢ଼ିଲା । ଗୋଟିଏ ପାଖରେ ଗୋଂଗୁର ଶାଗର ଚଟଣି ସବୁଜ ଚକ୍‌କଣ ହୋଇ ଦିଶୁଛି । ଆରପାଖରେ ନାଲି ଟହଟହ ଆମ୍ବ ଆଚାର । ମଝିରେ ଧଳା ଚାଉଳର ଭାତ ।

"ବାବା, ତମେ ଖାଇନଅ । ମୁଁ ଯାଇ ଟିକେ ବିଲ ଆଡ଼େ ବୁଲିଆସେ" କହି ନାତୁଣୀ ଦୌଡ଼ି ଦୌଡ଼ି ବିଲଆଡ଼େ ଚାଲିଗଲା । ଯୋଗସ୍ଥା ଧୀରେ ଧୀରେ ଉଠି ବସିଲା । ଗାମୁଛା ଖଣ୍ଡି ମୁଣ୍ଡରେ ପଗଡ଼ି ବାନ୍ଧିଲା । ବାଡ଼ି ଧର ଥର ଥର ନାଳକୂଳକୁ ଯାଇ ମୁହଁହାତ ଧୋଇ ଆସି ଗଛମୂଳେ ପୁଣି ବାଡ଼ିଟିକୁ ପାଖରେ ରଖି ବସିଲା । ଖାଇବା ବାଟିଟି ପାଖକୁ ନେଲା । ଆମ୍ବ ଆଚାରରୁ ଟିପେ ନେଇ ଚାଟିଲା··· ଟାକରା ଫୁଟାଇବାର ଚେଷ୍ଟା କଲା । ଟାକରାର ଶବ୍ଦ ନ ହେଲେ ମଧ୍ୟ—ଆଗପର ପରିଚିତ ସେଇ ସ୍ୱାଦ ପାଇଲା ।

ବିଲରେ ମୂଲିଆମାନେ ବସି ଘାସ ବାଛୁଛନ୍ତି । ଯୋଗସ୍ଥାର ନାତୁଣୀ କିଛି ସମୟ ସେଠି ବସି ଦେଖିଲା । "ଗ୍ରେଟ ମେମ୍-ସାହେବ" କହି କେତେକ ମୂଲିଆ ତାକୁ ଚିଡ଼ାଇବାରୁ ସେ ତାର ଘାଗରା ଓ କାନି ଧରି ତା ଜେଜେ ଅଡ଼କୁ ଦୌଡ଼ିବାକୁ ଲାଗିଲା । ବାଟରେ ତାର ବାପାକୁ ଭେଟିଲା । "ଜରଦିଆ ଘାଗରା ପିନ୍ଧି ବିଲକୁ କାହିଁକି ଆସିଛୁ ଲେ ! ଏଠି କାଦୁଅ ହେଇଯିବ ନାହିଁ ?" ବାପା କହିଲା ।

"ନାହିଁ ବାପା, ଜେଜେ ମତେ ଏଇ ଘାଗରା ପିନ୍ଧି ଆସିବାକୁ କହିଥିଲେ । ମତେ ସେ ଏଇଥିରେ ଦେଖିବାକୁ ଚାହୁଁଥିଲେ" ଝିଅ କହିଲା ।

"ଆଚ୍ଛା, ବାବା ଦେଖିଲେ ?"

"ନାହିଁ, ଭୁଲିଗଲେ ।"

"ବାବା ଖାଇସାରିଲେଣି ?"

"ଖାଇବା ତ ନେଇ ଆସିଛି ।"

"ବାବା କାହାନ୍ତି ?"

"ସେଇଠି ସେଇ ଜାମୁ ଗଛତଳେ ।"

ଦୁଇ ଜଣଯାକ ଜାମୁ ଗଛ ଆଡ଼କୁ ଗଲେ । ମେଘ ଘୋଟିଛି; ବୋଧେ ବର୍ଷା ହେବ । ଷାଠିଏ ପାର୍ ହେଲା ପରେ ବି ବାବାଙ୍କର ଏଇ ବଳକୁ ଜଗିବା ଆଉ ସେଇଠି ଖାଇବା ମଗାଇ ଖାଇବା ନରସୟାର ପସନ୍ଦ ହେଉ ନ ଥିଲା । ସେ ନିଜେ ପଞ୍ଚାୟତର ପ୍ରେସିଡେଣ୍ଟ । ସେଇ ଅନୁସାରେ ସେ ଏ ଗାଁରେ ସମ୍ମାନ ଓ ଆଟ ବଜାୟ ରଖି ଚଳିବାକୁ ଚାହେଁ । କିନ୍ତୁ କଣ ଲାଭ ? ତା ବାପା ତା କଥା ମାନିବାକୁ ନାରାଜ । କହନ୍ତି, "କଣ, ନିଜ କ୍ଷେତରେ ବସି ଖାଇବା ଖାଇଲେ ମାନହାନି ହୋଇଯାଏ ?"

ଘଡ଼ଘଡ଼ି ଗରଜି ଉଠିଲା । ବିଜୁଳି ମାରିଲା । ଟପ୍ ଟପ୍ ହୋଇ ବୁନ୍ଦା ବୁନ୍ଦା ବର୍ଷା ବି ଆରମ୍ଭ ହୋଇଗଲା । ଝିଅ ଆଗେ ଆଗେ ଜଲଦି ବଢ଼ାଇ ପାଣି ବୁନ୍ଦାଏ ବୁନ୍ଦାଏ ଗୋଟି ଗୋଟି ଖୋଲୁଛି । ନରସୟା ଜଲ୍‌ଦି ଜଲ୍‌ଦି ଗଛ ଆଡ଼କୁ ଗଲା । ବାପା ତାର ଜାମୁ ଗଛରେ ଭରା ଦେଇ ବସିଛନ୍ତି । ଠେଙ୍ଗା ଓ ପଗଡ଼ି ପାଖରେ ଥୁଆ ହୋଇଛି । ହାତମୁଠାରେ କଣ ଧରି ଶୁଙ୍ଘୁଛନ୍ତି । ହାତରେ କଣ ଅଛି ? କଣ ଫୁଲ ? ନାହିଁ, ବୋଧହୁଏ ନାସ । ନାହିଁ, ମାଟି··· ଖାଲି ମାଟି—ଜାମୁ ଗଛମୂଳର ବର୍ଷାରେ ଓଦା ହୋଇଥିବା ଢେଳା ମାଟି ।

"ବାପା-ବାପା" ପୁଅ ବାରମ୍ବାର ଡାକିଲାରୁ କ୍ଷୀଣ ସ୍ୱରରେ "ପୁଅ" କହି ହାତ ମୁଠା ଶିଥିଳ ହୋଇଗଲା । ଝରଝର ହୋଇ ମାଟି ବାହାରି ହୋଇଗଲା । ମାଟିରେ ମାଟି ମିଶିଗଲା ।

"ବାପା-ବାପା !"

ଆଉ ଥରେ ଜବାବ ଦେବାକୁ ବାପା ନ ଥିଲେ ।

# ନୌକାଯାତ୍ରା

ସୂର୍ଯ୍ୟାସ୍ତ ପରେ ପୃଥିବୀ ସାରା ଉଦାସୀନତା ଛାଇଯାଇଛି । ପାଣି ଉପରେ ନୌକାଟି ଧୀରେ ଧୀରେ ଆଗେଇ ଯାଉଛି । ନୌକାର ଆଘାତ ପାଇ ପାଣି କୁଳୁକୁଳୁ ଧ୍ୱନି କରୁଛି । ଯେଉଁ ପର୍ଯ୍ୟନ୍ତ ଦୃଷ୍ଟି ପାଉଛି, କୌଣସିଠାରୁ କିଛି ସ୍ୱର-ଶବ୍ଦ ଶୁଣାଯାଉନାହିଁ । ଏହି ନୀରବତା ମଧ୍ୟରେ କେବଳ ଗୋଟିଏ "ଝୁମୁରୁ ଝୁମୁରୁ" ଆବାଜ ଶୁଣାଯାଉଛି । ସେ ମଧ୍ୟ କାନରେ ନୁହେଁ, ଯେପରି ସମଗ୍ର ଶରୀର ଉପରେ ପ୍ରଚଣ୍ଡ ସ୍ପର୍ଶ ସୃଷ୍ଟି କରୁଛି । ହୃଦୟର ଗଭୀରତମ ସ୍ଥାନକୁ ଯେପରି କମ୍ପିତ କରାଉଛି । ସେଥିରେ ଜୀବନର ଅନ୍ତିମ କ୍ଷଣର କୌଣସି ନୈଃଶବ୍ଦ୍ୟ ପ୍ରତିଫଳିତ । ଦୂର ଗଛଗୁଡ଼ିକ ଅଟେଇ ଯାଉଛନ୍ତି ଏବଂ ପାର୍ଶ୍ୱବର୍ତ୍ତୀ ଗଛଗୁଡ଼ିକ ବାଳ ମୁକୁଳା କରି ଛିଡ଼ା ହୋଇଥିବା ପ୍ରେତ ପରି ପଛକୁ ହଟି-ହଟି ଯାଉଛନ୍ତି; ମନେହେଉଛି ଯେପରି ନୌକାଟି ଚାଲୁନାହିଁ, ନଦୀର ଦୁ'କୂଳ ଚାଲିଛି । ମୋର ଆଖି ପାଣି ଭିତରକୁ ଏକାଗ୍ରଭାବେ ଚାହିଁରହିଛି । ପାଣି ଉପରେ ଘୋଟିଯାଇଥିବା ଅନ୍ଧକାରକୁ ଚିରି ଦେଖୁଛି । ଉପରୁ ତାରାଗୁଡ଼ିକ ବିବଶ ହୋଇ ଲହରି-ଦୋଳରେ ଝୁଲୁଛନ୍ତି, ଆଉ ଆଖି ଖୋଲି ଶୋଇଛନ୍ତି ।

ପବନ ମୋଟେ ବହୁନାହିଁ । ଡଙ୍ଗାକୁ ଟାଣୁଥିବା ଦଉଡ଼ି ପାଣିର ଶବ୍ଦ ସାଙ୍ଗେ ସାଙ୍ଗେ କେତେବେଳେ ଟାଣି ହୋଇଯାଉଛି; କେତେବେଳେ ଢିଲା ହୋଇଯାଉଛି । ଡଙ୍ଗା ପଛପଟ ଚୁଲିରେ ନିଆଁ ଜଳୁଛି । ନିଆଁ ରହି ରହି ଧପ୍ କରି ଜଳିଉଠୁଛି, ପୁଣି ଧିମେଇଯାଉଛି । ଡଙ୍ଗାରେ ପଶିଯାଇଥିବା ପାଣିକୁ ପିଲାଟିଏ ବାଲଟିରେ ବାହାରକୁ କାଢ଼ି ପକାଉଛି । ମୁଁ ଡଙ୍ଗା ଛାତ ଉପରେ ଚିତ୍ ହୋଇ ଶୋଇଛି । ଡଙ୍ଗା ଭିତରେ ବିଡ଼ିର ଧୂଆଁ ସହିତ କେତେକଙ୍କର କଥାବାର୍ତ୍ତା ଧୀରେ ଧୀରେ ଶୁଣାଯାଉଛି । ଡଙ୍ଗାରେ କେତେ ବସ୍ତା ଧାନ, ଗୁଡ଼, ଲୁଣ, ହଳଦୀ ରଖା-ହୋଇଛି । ଗୁମାସ୍ତା ବସିଥିବା କୋଠରିରେ ଗ୍ଲେଟ ଦୀପଟିଏ ଜଳୁଛି । ଡଙ୍ଗାଟି ଆଗେଇ ଚାଲିଛି ।

"ଆରେ ନାଉରିଆ ! ଏଇଆଡ଼େ ଡଙ୍ଗାଟା ଆଣେ; ଏ କୂଳକୁ !" କିଏ ଜଣେ ଡାକିଲା ।

ଡଙ୍ଗାଟି କୂଳରେ ପହଞ୍ଚିଲାକ୍ଷଣି ଦୁଇଜଣ ଲୋକ ଉପରକୁ ଚଢ଼ିଲେ । ଡଙ୍ଗାଟା କୂଳଆଡ଼କୁ ଟିକେ ଝୁଙ୍କି ଗଲା ।

"କିଛି ବ୍ୟସ୍ତ ହେବାର ନାହିଁ । ଆମେ ଡଙ୍ଗା ଛାତ ଉପରେ ବସିପଡ଼ିବୁ" ଜଣେ ସ୍ତ୍ରୀଲୋକ କହିଲା ।

"କୁଆଡ଼େ ଯାଇଥିଲୁ ଏତେଦିନ ହେଲା, ମୋଟେ ଦେଖା-ସାକ୍ଷାତ ନାହିଁ ।"

ସଙ୍ଗରେ ବସିଥିବା ଲୋକଟି କହିଲା ।

"ବିଜୟନଗରମ୍, ବିଶାଖାପଟ୍ଟନମ୍, ନିଜ ସ୍ୱାମୀ ସହିତ ବହୁତ ବୁଲି ଆସିଲି । ଅପନ୍ନାର କୋଠିକୁ ମଧ୍ୟ ଯାଇଥିଲି ।"

"ବର୍ତ୍ତମାନ କୁଆଡ଼େ ଯାଉଛ ?"

"ମେଣ୍ଡପାକ ଯାଉଛି । ବାଆର ! ଭଲ ଅଛ ? କଣ ସେଇ ପୁରୁଣା ଲୋକ ଏବେ ବି ଗୁମାସ୍ତା ଅଛନ୍ତି ?"

"ହଁ ।"

ତା ସାଥିରେ ଆସିଥିବା ଲୋକଟି ଗୁଡ ଉପରେ ଚିତ୍ ହୋଇ ପଡ଼ିଛି । ମୁହଁରେ ଲଗିଥିବା ଚୁରୁଟ୍ ଏପାଖ ସେପାଖ ହେଉଛି । ସେ ସ୍ତ୍ରୀଲୋକଟି ଚୁରୁଟ୍ଟି କାଢ଼ିନେଇ ଲିଭାଇଦେଲା ।

"ଆରେ, ଉଠି ଠିକ୍ କରି ବସ ।"

"ଚୁପ କର ରଙ୍ଗୀ ! କଣ ତୁ ଭାବୁଛୁ ମୁଁ ମଦ ପିଇଛି ? ଅଣ୍ଟା ଭାଙ୍ଗି ଦେବି ଯେ ।" ଲୋକଟି ପୁଣି କର ଲେଉଟାଇଲା । ସ୍ତ୍ରୀଲୋକଟି ଗୁଡର ଘୋଡ଼ାଇଦେଲା ଏବଂ ସେ ଆଉ ଖଣ୍ଡେ ଚୁରୁଟ୍‌ରେ ନିଆଁ ଲଗାଇଲା । ଚୁରୁଟ୍ ଆଲୁଅରେ ମୁଁ ତାର ଚେହେରା ଦେଖିପାରିଲି । କଳା ଚେହେରା ନିଆଁ ଆଲୁଅରେ ନାଲି ଦେଖାଯାଉଛି ।

ତା ସ୍ୱରରେ ସ୍ତ୍ରୀସୁଲଭ ଗାମ୍ଭୀର୍ଯ୍ୟ ଥିଲା । ତା କଥାବାର୍ତ୍ତାରେ ବିଶ୍ୱାସ ଜନ୍ମାଇବା ପରି ଓ ପରକୁ ଆପଣା କଲାଭଳି ଗୁଣ ଥିଲା । ଦେଖିବାକୁ ସେମିତି କିଛି ଆକର୍ଷଣୀୟ ଚେହେରା ନୁହେଁ । ବାଳ ଫୁରୁଫୁରୁ ହୋଇ ଉଡ଼ୁଛି । କିନ୍ତୁ ତାର ମୁଖମୁଦ୍ରାରେ ପ୍ରୌଢ଼ତା ସୁସ୍ପଷ୍ଟ । କଳା ବ୍ଲାଉଜ୍ ·· ବୋଧହୁଏ ନୁହେଁ । ଅନ୍ଧାରରେ ତାର ଆଖି ଯୋଡ଼ିକ ଚକଚକ ହୋଇ ଜଳୁଛି । ଉଆସିଲି ଆଲୁଅରେ ମୁଁ ତା ପାଖରେ ଶୋଇ-ଥିବାର ସେ ଦେଖିପାରିଲା ।

"ପାଖରେ କିଏ ଶୋଇଛି ରେ" କହି ମଣିଷକୁ ଉଠାଇ ଦେଲା ।

"ଆଲୋ ରଙ୍ଗୀ, ଏଠି ଆସି ଶୋଇପଡ଼ । ପାଞ୍ଚିବୁଣ୍ଡ ଜଣକୁ ତ ପେଟରୁ ଅନ୍ତବୁଜୁଳା ବାହାର କରିଦେବ ।" କହୁ କହୁ ପରେ ଲୋକଟି ଚିକେ ଘୁଞ୍ଚି ଶୋଇଲା ।

ଏଥିମଧ୍ୟରେ ଗୁମାସ୍ତା ଦୀପ ଉପରକୁ ଟେକି, ନୌକା ପାଖରେ ଛିଡ଼ା ହୋଇ ପଚାରିଲା ।

"ଏ କିଏ ଲୋ ରଙ୍ଗୀ ?"

ରଙ୍ଗୀ କହିଲା "ମୋ ସ୍ୱାମୀ, ବାବୁ । ରିପୋର୍ଟ ଲେଖିବ ନାହିଁ ବାବୁ !"

"ଆଚ୍ଛା ଇଏ ପଦ୍ଧାଲ । ସ୍ୱାକୁ ଓହ୍ଲେଇ ଦେ । ରଙ୍ଗୀ, ତୋର କାଣିଚୁଏ ଅକଲ ନାହିଁ । ପୁଣି ଏ ମଦୁଆକୁ ଡଙ୍ଗାରେ ଚଢ଼େଇଦେଇଛୁ ?"

"ମୁଁ କେଉଁଠି ପିଇଛି ? କିଏ କହୁଛି, ମୁଁ ପିଇଛି ?" ପଦ୍ଧାଲ କହିଲା ।

"କିଏ—କିଏ ଅଛ ? ଆଲୁ ଓହ୍ଲାଇଦିଅ । ଭୋଲେ ଗିଇଛୁ ।"

"ଭୋଲେ ନୁହିଁ - ଅଲ୍ପ ଟିକିଏ ।"

"ଆରେ, ଚୁପ୍ କର । ଗୁମାସ୍ତା ଛଡ଼ା ହେଉଛନ୍ତି । ହଜୁର, ଆମେ ମନ୍ତ୍ରପାଙ୍କରେ ଓହ୍ଲାଇଯିବୁ ।"

"ହଜୁର, ହାତ ଯୋଡ଼ୁଛୁ ଆପଣଙ୍କୁ ; ମୁଁ ଆଉ ପିଇନାହିଁ ।"

"ବେଶି ଗଣ୍ଡଗୋଳ କରିବୁ ତ ପାଣି ଭିତରକୁ ଫୋପାଡ଼ିଦେବି, ବୁଝିଲୁ ।" କହି ଗୁମାସ୍ତା ନିଜ କୋଠରିକୁ ଚାଲିଗଲେ । ପଦ୍ମାଲ ଉଠି ବସିଲା । ବାସ୍ତବରେ ସେ ଅଧିକ ପିଇନାହିଁ । ଧୀରେ ଧୀରେ କହିଲା, "ଶଳା ପାଣିରେ ଫୋପାଡ଼ି ଦବ କହୁଛି !"

"ଚୁପ୍ ରହ ରେ, କାମ ବିଗିଡ଼ିଯିବ ।"

"କାଲି ସକାଳେ ଭଙ୍ଗୀକୁ ଦେଖିଲେ ବୁଝିପାରିବ ପୁଅ —ଆଖି ଦେଖାଉଛି ଶଳା !"

"ଚୁପ୍, ସେପାଖେ କିଏ ଶୋଇଛି ।"

"କିଏ ?··· ଶୋଇଛି" କହି ପଦ୍ମାଲ ଚୁରୁଟ୍ ଧରାଇଲା । ପଦ୍ମାଲର ମୋଟା ମୋଟା ନିଶ, ଲମ୍ବା-ଚୌଡ଼ା ଚେହେରା । ଗ୍ରୀବ ଫୁଲି ଆଗକୁ ବାହାରିଛି । ମେରୁଦଣ୍ଡ ହାଡ଼ କାଚଗୋଲ ପରି ଗୋଟ ଗୋଟ ହୋଇ ବାହାରିଛି । ମୋଟଉପରେ ତାର ଚେହେରା ଗୋଟାଏ ଛଟର ଗୁଣ୍ଡାର ଚେହେରା ଭଳି ଦିଶୁଛି ।

ଡଙ୍ଗା ନିଃଶବ୍ଦରେ ଆଗେଇ ଚାଲିଛି । ଡଙ୍ଗା ପଛପଟେ ଚୁଲି ଲିଭିଗଲାଣି । କେଉଟ-ମାନେ ଖାଇସାରି ବାସନ ମାଜୁ ମାଜୁ କଥାବାର୍ତ୍ତା ହେଉଛନ୍ତି ।

ବିଶେଷ ଥଣ୍ଡା ପବନ ବହୁନଥିଲା, ତେବେ ବି ମୁଁ ଗୋଡ଼ର ଯୋଡ଼ ହୋଇ ପଡ଼ିଲି । ସେହି ଅସୀମ ଅନ୍ଧକାର ହାତରେ ଅସହାୟଭାବରେ ନିଜ ଦେହକୁ ଅର୍ପଣ କରିବାକୁ ମତେ ଭୟ ଲାଗୁଥିଲା । ପବନ ପ୍ରଖର । ନାରୀର କୋମଳ ସ୍ପର୍ଶ ପରି ନୌକା ପାଣି ଉପରେ ଧୀରେ ଧୀରେ ମୃଦୁଳ ଗତିରେ ଆଗେଇ ଚାଲିଛି । ସେହି କୋମଳତାକୁ ବ୍ୟକ୍ତ କରିବା କଠିନ । ନାରୀ-ଚିନ୍ତା— ସତେ କି ଏଇ ଭାବନା ଘୁରିଆଡ଼େ ଖେଳେଇ ହୋଇ ଯାଇଥିଲା । ଆଉ ମୋର ମନେ ପଡ଼ୁଛି ବହୁ ପୁରୁଣା ପୁରୁଣା କଥାଗୁଡ଼ିକ— ଚିରକାଳରୁ ପୁରୁଷର ମନକୁ ପ୍ରଲୋଭିତ କରିଆସୁଥିବା ନାରୀଜୀବନର ରମଣୀୟ କଥାଗୁଡ଼ିକ । ଧୀରେ ଧୀରେ ଆତ୍ମୀୟତା ସବୁ ସବୁ ମନେ ପଡ଼ିଯାଉଛି ।

ମୁଁ ଯେଉଁଠି ଶୋଇଛି, ତାର କିଛି ଦୂରରେ ଦୁଇଟି ଚୁରୁଟ ନାଲି ଟହଟହ ହେଉ ଜଳୁଛି । ମୋର ମନେ ହେଲା ଯେପରିକି ଜୀବନ ତାର ସବୁଯାକ ବୋଝ ନେଇ ସେଠି ବସିଛି ଆଉ ଚୁରୁଟ ଲଗାଇ କିଛି ଚିନ୍ତା କରୁଛି ।

ପଦ୍ମାଲ କହିଲା, "କେଉଁ ଗାଁ ଆସିଗଲା ?"

"କାଲିଦାସ" ଭଙ୍ଗୀ ଜବାବ ଦେଲା, "ବର୍ତ୍ତମାନ ତ ବହୁତ ଦୂର ଅଛି ।"

"ଆଜି ଆଉ ରେ ! ନା··· ନା··· ସୁଯୋଗ ଦେଖିକରି ପରେ । କଣ ରେ ! ମୋ କଥା ଶୁଣିବୁ ନାହିଁ ?" ଭଙ୍ଗୀ ବଡ଼ ବ୍ୟସ୍ତ ହୋଇ ମିନତିଭରା ଗଳାରେ କହିଲା ।

"ଗୁଣ୍ଡୀକୁ ଡର ମାଡ଼ୁଛି ?" କହୁ କହୁ ପଦ୍ମାଳ ତା ଦେହରେ ଆଙ୍ଗୁଠି ଗେଞ୍ଜିଦେଲା ।

"ବାପ୍ ରେ !" କହି ରଙ୍ଗୀ ନିଜକୁ ଭୁଲି ଆକାଶ ଆଡ଼କୁ ଚାହିଁରହିଲା । ଅନ୍ଧକାର ଭିତରେ ତା ଆଖି ବହୁତ ଦୂରକୁ ଚାଲିଗଲା । ସତେ କି ସେ ଆକାଶଠାରୁ ଭିକ୍ଷା ମାଗୁଥିଲା, ଏହି କୋମଳ ସ୍ପର୍ଶ ତାକୁ ଚିରଦିନ ମିଳୁଥାଉ ।

ଧୀରେ ଧୀରେ ମତେ ବି ନିଦ ଆସିଗଲା । ଡଙ୍ଗାରେ ସମସ୍ତେ ଶୋଇଗଲେଣି । ପାଣିର ପ୍ରବାହ ସଙ୍ଗେ ସଙ୍ଗେ ନାଆ ଧୀରେ ଧୀରେ ଆଗେଇଚାଲିଛି । ମୋଠୁଁ ଟିକେ ଦୂରରେ ଶୋଇଥିବା ସେ ଦୁଇଜଣ ବ୍ୟକ୍ତି କିଛି ସମୟ ପାଇଁ ଗୁଣୁ-ଗୁଣୁ ହୋଇ କଥାବାର୍ତ୍ତା ହେଲେ । ମତେ ନିଦ ଲାଗିଯାଇଥିଲା; ତେବେ ଗାଢ଼ ନିଦ ନୁହେଁ । ପାଣି କାଟି ନାଆ ଚାଲିଛି ଏବଂ ଗଛଗୁଡ଼ିକ ପଛକୁ ଚାଲିଯାଉଛନ୍ତି—ଏସବୁ କଥା ମତେ ଗୋଚର ଥିଲା । କେହି କାତ ମାରୁନାହାନ୍ତି । ବସିଥିବା ଲୋକମାନେ ସମସ୍ତେ ଘୁମାଉଛନ୍ତି । ରଙ୍ଗୀ ମୋ କରରୁ ଉଠି ଯାଇ ମଙ୍ଗ ପାଖରେ ବସିଲା ।

"ହଇରେ ! ଖବର କଣ ?" ପଚାରିଲା ।

"ତୋର କଣ ଖବର ?" ମଙ୍ଗୁଆଳ ପଚାରିଲା । "ଏକତେ ଆଚମ୍ବିତ ଆଚମ୍ବିତ ଜିନିଷ ମତେ ସେ ଦେଖେଇଲା; ସିନେମା ଦେଖିଲି, ଜାହାଜ ଦେଖିଲି, ଏମିତ ସେମିତ ଜାହାଜ ନୁହଁ । ଆମ ଗାଁ ଭଳି ହେ ବଡ଼ ଜାହାଜ । ତାର ମଙ୍ଗ କୋଉଠି ଜଣା ପଡ଼ୁନାହିଁ ।" ଏହିପରି ସବୁ ଖବର ଶୁଣାଇ ସାରି ରଙ୍ଗୀ କିଛି ସମୟ ସେଠି ବସି-ରହିଲା । ଖବରଗୁଡ଼ିକ ଯେପରି ମତେ ନିଦର ଦୋଳରେ ଦୋଳି ଖେଳାଉଥାନ୍ତି ।

"ରଙ୍ଗୀ, ମତେ ନିଦ ମାଡ଼ୁଛି ।" ମଙ୍ଗୁଆଳ ହଠାତ କହିଲା ।

"ମୁଁ ମଙ୍ଗ ସମ୍ଭାଳି ନେଉଛି । ତୁ ଏଇଠି ପାଖରେ ଶୋଇଯା ।" ରଙ୍ଗୀ କହିଲା ।

ନୌକାଟି ଧୀରେ ଧୀରେ ନିଃଶବ୍ଦରେ ଆଗେଇଚାଲିଛି । ରଙ୍ଗୀ ସେଇ ନୀରବତାକୁ ବାଧା ନ ଦେଇ ନିଜର ମିଠା ସ୍ୱରରେ ଧୀରେ ଧୀରେ ଗୀତ ଗାଇବାକୁ ଲାଗିଲା—

"କେଉଁଣେ ଗଲ ମୋର ପ୍ରିୟତମ—କେଉଁଣେ ଗଲ ପ୍ରିୟତମ !
ଖାଦ୍ୟ ରଖି ଥାଳରେ ମୁଁ ବସିରହେ ପଥ ଚାହିଁ
ନିଦ ଆସେ ନାହିଁ ଆଖିକୁ ମୋର ଆହେ ପ୍ରିୟତମ,
ଶୀତ ଶୀତ ପବନ ମାନେ ଦେହେ ବସ୍ତ୍ର ନାହିଁ
ଜଳସ୍ଥଳ ଥରଯାଏ ଶୀତୁଆ ପବନେ
ଗରମ ରେଜେଇ ଘଣ ତୋ ଦେହ ଉଷ୍ଣତା ପାଇ
ଏ ମରଣ ଦୁଃଖ ଯିବ, କାହିଁ ଗଲୁ ରେ ପ୍ରିୟତମ..."

ରଙ୍ଗୀର ଅର୍ଣ୍ଣବ ଗଳାରେ ମାଧୁର୍ଯ୍ୟ ମଧ୍ୟ ଅଛି । ଏଇ ଗୀତର ଲହରୀରେ ଶୋଇଥିବା ସମସ୍ତ ପ୍ରାଣୀ ଆହୁରି ଗାଢ଼ ନିଦରେ ଶୋଇପଡ଼ିଲେ । ଅତୀତର ପ୍ରେମକଥା ସ୍ୱଚ୍ଛନ୍ଦ । କୋମଳ ଏବଂ ଉଦାସ ଗ୍ରସ୍ତାରେ ତାଙ୍କି ହୋଇ ସେହି ଗୀତ ସହ ଥରଉଠିଲା । ପାଣି ଭଳି ସେ ଗୀତରେ ତେଜ ଉଠିଲା । ଆଉ ସାରା ସଂସାର ସତେ କି ସେଇ ସ୍ରୋତରେ

ନାଆଟିଏ ହୋଇ ଭାସିବାକୁ ଲାଗିଲା । ମଣିଷଜୀବନ ସେହି ପ୍ରେମରେ ଉଦବେଇ ଝୁରେଇ ହୋଇ ଭ୍ରାନ୍ତ, ବିଚାର ଆଉ ବେଶ୍ ଓଜନଥା ଲଣାପଡ଼ୁଥିଲା ।

କିଛି ଦୂରରେ ଘଣ୍ଟାଲ ମୁଣ୍ଡରେ ଗୃଦବ ପୋଡ଼ି ହୋଇ ବସିଛି । ରଙ୍ଗୀ ଆଉ ତା' ମଝିରେ ସତେ କି ଯୁଗ-ଯୁଗର ଗୋଟାଏ ଗଡ଼ଖାଇ ଛିଡ଼ାହୋଇଥିଲା । ସେ ଗୁଡ଼ାରୁ ଓହ୍ଲାଇ ତଳେ ନାଆ ଭିତରକୁ ଗଲା । ମୁଁ ଏକା ଚିତ୍ ହୋଇ ଶୋଇ ଦେଖୁଛି, ରଙ୍ଗୀ ଗୀତ ଗାଇଗୃଲିଛି —

"ଦୂର ଗଲାର ଛଇଲା ଛବିଲ
ଯା ତା ସଙ୍ଗେ ଛପି ଛପି ଭେଟିବୁ ପଗ୍ର
କହ ରେ ସେ କିଏ ନଜାନା
ଭଣୋଇ, ସେ ତ ମୁଁ ସିନା ।"

ମତେ ନିଦ ଆସିଗଲା । ରଙ୍ଗୀର ଗୀତ ପୃଥିବୀ ସାରା ପ୍ରତଧ୍ୱନିତ ହୋଇ ପୁଣି ମୋ ହୃଦୟକୁ ସ୍ପର୍ଶ କରୁଛି । ମୁଁ ଶୋଇଗଲି । ଶୋଇଥିବା ଅବସ୍ଥାରେ ସରଳ ଅକୃତ୍ରିମ ପ୍ରେମର ଚିତ୍ର ମୋ ଆଖିଆଗରେ ନାଚିବାକୁ ଲାଗିଲା । କୃଷକ ଘରର ଲଳନା ନିଜ ପ୍ରିୟତମ ସହିତ ଲୁଚକାଳି ଖେଳ ପ୍ରେମଗୀତ ଗାଇ ବିଭୋର । ସ୍ୱପ୍ନରେ ଏପରି ଗୋଟାଏ ପୃଥିବୀ ମୋ ଆଖିଆଗରେ ନାଚିଉଠିଲା, ଯାହା ମୁଁ ଆଗରୁ କେବେ ଦେଖି ନ ଥିଲି । ସେଥିରେ ରଙ୍ଗୀ ଓ ଘଣ୍ଟାଲ କେତେ ଭଙ୍ଗୀରେ ନାଚିଉଠିଲେ । ଧୀରେ ଧୀରେ ଗୀତ ମୋର ସ୍ମୃତିପଟରୁ ଦୂରେଇଯାଉଛି । ନିଦ ଆସି ମୋ ମନର କବାଟକୁ ବନ୍ଦ କରିଦେଲା ।

ଡଙ୍ଗା ଭିତରେ ଗୋଳମାଳ ଶୁଣି ଆଖି ମଳି ମୁଁ ଉଠିବସିଲି । ଡଙ୍ଗା କୂଳରେ ଲାଗିଛି । ନାଉରିଆମାନେ ହାତରେ ଦୁଇଟି ଲଣ୍ଠନ ଧରି ବ୍ୟସ୍ତ ହୋଇ ଡଙ୍ଗାର ଉପରକୁ ତଳକୁ ହଉଛନ୍ତି । କୂଳରେ ଠିଆହୋଇଥିବା ରଙ୍ଗୀକୁ ଦୁଇଜଣ ମଣିଷ ଜୋରରେ ଧରିଛନ୍ତି । ସେଥିରୁ ଜଣେ ନୌକାର ଗୁମାସ୍ତା । ସେ ହାତରେ ଖଣ୍ଡେ ଦୌଡ଼ି ଗୁଡ଼ାଇ କରି ଧରିଛି । ରଙ୍ଗୀ ବୋଧହୁଏ ମାଡ଼ ଖାଇଛି । ମୁଁ ଶୀଘ୍ର ଶୀଘ୍ର ତଳକୁ ଡେଇଁ ପଡ଼ି ପଚାରିଲି, "କଣ ହୋଇଛି ।"

"ସେ ଚୋର ପଳେଇଗଲା । ଶଳା ମାଲ ନେଇ ପଳେଇଲା । ଏ ଶାଳୀ ତା ରକ୍ଷିତା । ଚୁପ୍ କରି ଡଙ୍ଗାକୁ କୋଉଠି କୂଳରେ ଲଗେଇ ଦେଇଛି । ରାଣ୍ଡୀ, ମଙ୍ଗ ପାଖରେ ଯାଇ ହାବୁଡ଼ିଯାଇଛି ।" ଗୁମାସ୍ତା ରାଗ ଓ ନିରାଶାରେ ଚଡ଼ଚଡ଼ ହୋଇ କହିଲା ।

ମୁଁ ପଚାରିଲି, "କଣ ସବୁ ଚୋରି ଯାଇଛି ?"

"ଦୁଇଟି ଗୁଡ଼ମାଠିଆ ଆଉ ଚାରିଟା ତେଲଜୁଲା ବସ୍ତା ।" ଏଇଥି ପାଇଁ ମୁଁ ତାକୁ ଚଢ଼ିବାକୁ ଦେଉ ନଥିଲି । ଏ ସବୁ ଜିନିଷର କ୍ଷତିପୂରଣ ମାଲିକ ମୋ ଉପରେ ମାଡ଼ିଦବ । ଆଲୋ କହ । ଜିନିଷ ସବୁ କେଉଁଠି ଓହ୍ଲାଇ ଦେଲୁ ?"

"କାହ୍ଲାଦାପ୍ପରେ ବାବୁ !"

"ଗ୍ରାଣ୍ଡି ଧପ୍‌ପାବାଜ୍ କୋଉଠିକାର, କାହ୍ଲାଦାପ୍ପରେ ତ ମୁଁ ଚେଇଁଥିଲି ।"

"ତେବେ, ନଡ଼ଦ୍ରବୋଲରେ ହୋଇଥିବ ପଟ୍ ।"

"ସେ ତ ଏବେ କିଛି ଠିକ୍ କରି କହିପାରିବ ନାହିଁ । କାଲି ଅଣ୍ଡିଲରେ ପୁଲିସି ହାତରେ ଦେଇଦେଲେ ଯାଇ ଠିକ ହବ । ଚାଲ, ଚଢ଼୍, ଯିବା ।"

"ମତେ ଏଇଠି ଛାଡ଼ିଦିଅନ୍ତୁ ବାବୁ !"

"ବେକାର ଜିଦ୍ କରନା, ଡଙ୍ଗାକୁ ଚାଲ" କହି ଗୁମାସ୍ତା ତାକୁ ଭିତରକୁ ଧକ୍କା ଦେଇ ଠେଲିଦେଲା; ଆଉ ଦୁଇଜଣ ନାଉରିଆ ତାକୁ ନୌକାରେ ଚଢ଼େଇ ଦେଲେ ।

"ନକଟା ଲୋକଗୁଡ଼ା, ସବୁହେଲେ ଶୋଇପଡ଼ୁଛନ୍ତି । ଦେଖିବା ତ ଉଚିତ କୋଉଠି କଣ ହେଲା । ତା ହାତକୁ ମଙ୍ଗ କାପର ଗଲା ? ଏଗୁଡ଼ାଙ୍କର ବୁଦ୍ଧି, ବିବେକ କିଛି ନାହିଁ ।" ଏହିପରି ପାଟି କରି କରି ଗୁମାସ୍ତା ତା କୋଠରି ଆଡ଼କୁ ଗଲା । ରଙ୍ଗୀକୁ ଜବରଦସ୍ତି ଛାତ ଉପରେ ବସେଇ ଦେଇଗଲା । ମୁଁ ମଧ୍ୟ ଛାତ ଉପରକୁ ଗଲି । ସେଠି ବସି ଖଣ୍ଡେ ଏ ଚୁରୁଟ୍ ଧରାଇଲି । ନୌକା ପୁଣି ଚାଲିବାକୁ ଲାଗିଲା ।

"ହେଅର ଗୋ, ମତେ ପୁଲିସରେ ଦେଲେ ତମକୁ ସବୁ କଣ ଲାଭ ମିଳିବ ?"

"ଗ୍ରାମୁକରଣ ଛାଡ଼ିବ ନାହିଁ"—ନାଉରିଆ କହିଲା ।

"ଏ ପଦ୍ମାଲ ତୁମର କଣ ହୁଏ । ତୁମ ସ୍ୱାମୀ ?" ମୁଁ ପଚାରିଲି ।

ରଙ୍ଗୀ ଜବାବ ଦେଲା "ହଁ-ମୋର ସ୍ୱାମୀ ।"

"ଯାକୁ ସେ ଭୁଲାଇ କରି ନେଇ ଯାଇଛି, ବାହା ହୋଇନାହିଁ । ତାର ଆଉ ଗୋଟିଏ ରକ୍ଷିତା ଅଛି । ରଙ୍ଗୀ, ସେ ବର୍ତ୍ତମାନ କୋଉଠି ?" ନାଉରିଆ ପଚାରିଲା ।

"କୋଣ୍ଡୁରେ ଅଛି । ଖୁବ୍ ଆଟରେ, ଆରାମରେ ଅଛି । ମୋ ପରି ମାଡ଼ ଖାଇଲେ, ମୋରି ପରି ହୋଇଯାଆନ୍ତା, କାଙ୍ଗାଳ ଝିଅ ।"

"ତେବେ ତୁ ତା ସାଥିରେ କାହିଁକି ଯାଉଛୁ?" ମୁଁ ପଚାରିଲି ।

"ଯାହେବ, ସେ ତ ମୋର ସ୍ୱାମୀ !" ଏତିକିରେ ଯେପରି ରଙ୍ଗୀ ସବୁ କିଛି କହିଦେଲା ।

"କିନ୍ତୁ ତୁ ତ କହୁଥିଲୁ ସେ ଆଉ ଜଣେ ସ୍ତ୍ରୀଲୋକ ପାଖରେ ରହୁଛି···"

"କିନ୍ତୁ—ସେ ମୋ ପାଖକୁ ନିଶ୍ଚୟ ଫେରିଆସେ । ପୁରୁଷ ନା ? ଯେତେ ସ୍ତ୍ରୀଲୋକଙ୍କ ପାଖକୁ ଯାଉ ସେଥିରେ କଣ ଅଛି । ସେ ତ ବାବୁ, ରାଜା । ଏପରି ପୁରୁଷ ମିଳିବେ ନାହିଁ ।"

"ବାବୁ, ଆପଣ କଣ ଜାଣନ୍ତି ? ତା କଥା ମତେ ପଚାରନ୍ତୁ । ଆପଣଙ୍କୁ ଜଣା ନାହିଁ ସେ କେତେ ଆଡ଼ମ୍ବରରେ ରହୁଥିଲା— । ଥରେ ସ୍ତ୍ରୀକୁ ଘର କୁଡ଼ିଆ ଭିତରେ ରଖି ବାହାରୁ ବନ୍ଦ କରିଦେଇ ନିଆଁ ଲଗାଇ ଦେଉଥିଲା । ଭିତରେ ଭିତରେ ସେ ପାଣ୍ଡି ହୋଇଗଲା । ଯାର ଦିନ ବାକି ଅଛି ସେଇଥି ପାଇଁ ତ···।" ଗୋଟିଏ କେଉଟ

କହିଲା ।

"ବାବୁ, ସେତେବେଳେ ସେ ସାମନାରେ ପଡ଼ିଲେ ତା ତଣ୍ଟି ଚିପିଦବାକୁ ମନ ହଉଥିଲା । ମୋ ପିଠି ଉପରେ ଖଣ୍ଡେ ଜଳନ୍ତା କାଠ ପଡ଼ିଗଲା"—କହୁ କହୁ ସେ ଲୁଗାଟିକୁ ଉପରକୁ ଉଠାଇ ପିଠି ଦେଖାଇଲା । ଏ ଅନ୍ଧକାର ଭିତରେ ବି ସେ ପୋଡ଼ା ଚିହ୍ନ ସ୍ପଷ୍ଟ ଦେଖାଯାଉଥାଏ ।

"ଯେବେ ସେ ତୁମକୁ ଏପରି ହଇରାଣ କରୁଛି, ତୁମେ ତା ପଛରେ ଏପରି ଘୂରି ବୁଲୁଛ କାହିଁକି ?" ମୁଁ ପଚାରିଲି ।

"କଣ କରିବି ବାବୁ, ତାକୁ ଦେଖିଲେ ମୁଁ ସବୁ କିଛି ଭୁଲି ଚାଲିଯାଏ । ସେ ଭାରି କାକୁତି-ମିନତି ହୁଏ । ବର୍ତ୍ତମାନ ସନ୍ଧ୍ୟାବେଳେ ଆମେ ଟେବୁଲରୁ ବାହାରିଲୁ । ରାସ୍ତାରେ ବଡ଼ କାକୁତି-ମିନତି ହୋଇ କହିଲା । ସେ ଏହି ନୌକାରେ ଚଢ଼ି ଏଥିରୁ ଯେଉଁ ଜିନିଷ ହାତ ଲାଗି ଦିବ ଓହ୍ଲାଇବାକୁ ଚାହୁଁ ଥିଲା । ମୋ ବିନା ଏ କାମ ହୋଇ ପାରୁ ନଥିଲା । ପାଖ ବାଟଦେଇ ନଈକୂଳରେ ପହଞ୍ଚିଗଲୁ ।"

"ଜିନିଷ କୋଉଁଠି ଓହ୍ଲାଇଲା ?"

"ଜାଣିନି, ମନେ ନାହିଁ ।"

"ଗଣ୍ଡୀ. ଟ୍ରେରଣୀ" ନାଉରିଆ ହସି ହସି କହିଲା । ମୁଁ ରଙ୍ଗୀର ଚେହେରା ଦେଖିବା ପାଇଁ ବଡ଼ ଅଭ୍ୟସ୍ତ ଥିଲି; କିନ୍ତୁ ଏ ଅନ୍ଧକାରରେ ସମ୍ଭବ ହୋଇପାରିଲା ନାହିଁ । ନୌକା ଧୀରେ ଧୀରେ ଆଗେଇଛି । ଅଧଘଣ୍ଟା ପରେ ପବନ ଟିକେ ଥଣ୍ଡା ହବାକୁ ଲାଗିଲା । ଗଛର ପତ୍ରଗୁଡ଼ିକ ପବନରେ ହଲୁଥାଏ । ନାଉରିଆମାନେ ନୌକାକୁ ଟାଣୁଥିଲେ । ମୋ ଆଖିକୁ ନିଦ ନାହିଁ । କିଛି ସମୟ ପରେ ପହରାଦାରମାନେ ଢୁଳାଇ ଢୁଳାଇ ଶୋଇ-ଗଲେ । ରଙ୍ଗୀ ଏଥର ପଳାଇବାର ଚେଷ୍ଟା ଛାଡି ଖଣ୍ଡେ ଚୁରୁଟ୍ ଧରାଇ ବସିରହିଲା । ମୁଁ ପଚାରିଲି "ତୁମର ବିବାହ ହୋଇଛି ନା ?"

"ନା, ହେଇନି, ପିଲାଦିନୁ ଘଡାଳ ମତେ ଶିଖାଇ କଣ ନେଇଆସିଥିଲା ।"

"ତୁମ ଗାଁ ନାଁ କଣ ?"

"ଇଡ଼ପାଲେମ୍...ସେତେବେଳେ ମୁଁ ଜାଣିନଥିଲି ଯେ ସେ ମଦୁଆ । ବର୍ତ୍ତମାନ ଗୁଡ଼ · ମୁଁ ମଧ୍ୟ ପିଉଛି । ପିଇବାରେ କିଛି ଯାଏ ଆସେ ନାହିଁ...କିନ୍ତୁ ସେ ପିଇଲାବେଳେ ମତେ ମାରେ ।"

"ତାହେଲେ ତାକୁ ଛାଡ଼ିଦଉନା କାହିଁକି ?"

"ଯେବେ ମାଡ଼ ଖାଏ, ସେମିତ କାଟିବାକୁ ମନ ହୁଏ । କିନ୍ତୁ ଏପରି ମଣିଷ ଆଉ ନାହିଁ ବାବୁ ! ଆପଣ ଜାଣନ୍ତି ନାହିଁ, ଯେତେବେଳେ ତାର ନିଶା ଧରି ନ ଥାଏ ସେ ଏକଦମ୍ ଲହୁଣି ପରି ନରମ୍, ତରଳିଯାଏ । ଶହ ଶହ ଗଣ୍ଡୀଙ୍କ ପାଖକୁ ଗଲେ ମଧ୍ୟ ସେ ମୋ ପାଖକୁ ଫେରିଆସେ । ତାକୁ ମୁଁ ଛାଡ଼ିଦେଲେ ତାର ହୃଦୟ ଭାଙ୍ଗିଯିବ । ସେ ଦଣ୍ଡେ ବଞ୍ଚିପାରିବ ନାହିଁ ।"

ଏଇ ସ୍ତ୍ରୀଲୋକଟିର ସ୍ୱଭାବ ମତେ ଅଦ୍ଭୁତ ଲାଗିଲା । ଏ ଦୁଇଜଣଙ୍କ ସମ୍ପର୍କ ମୁଁ ଠିକ୍ ଠିକ୍ ବୁଝିପାରିଲି ନାହିଁ । ରଙ୍ଗୀ ପୁଣି ତାର କାହାଣୀ ଶୁଣାଇବାକୁ ଲାଗିଲା ।

"ଆମେ ଦୁଇଜଣ କୌଣସି କାମରେ ତିଷ୍ଠି ପାରିଲୁ ନାହିଁ । ଶେଷରେ ଏପରି ଚୋରି କରିବାକୁ ଲାଗିଲୁ । ମୋର ମା' ଥିଲା । ଗଲା ପ'ରିଦିନ ସେ ମରିଗଲା । ସେ ମତେ ଦରବର ଅକର୍ମା, ଚୋଡ଼ିଆ କହୁଥିଲା । ଦିନେ ବାବୁ, ସେ ମୋ ପାଖକୁ ସେ' ରାଣ୍ଡୀକୁ ନେଇ ଆସିଲା"

"କାହାକୁ ?"

"ସେଇ ବର୍ତ୍ତମାନ ସେ ଯାହା ପାଖକୁ ଗଲାଣି ॥ ମୋର ଆଗରେ ମୋ ଘରେ ସେ ତାକୁ ଧରି ଶୋଇଗଲା । ବହୁତ ପିଇଦେଇ ଆସିଥିଲା । ସେ ମଧ ପିଇଥିଲା · ମୋ ସଉତୁଣୀ । ତା ଉପରେ ଝାମ୍ପି ପଡ଼ି ମାରିବାକୁ ଲାଗିଲି । ସେ ମତେ ମାରିଲା ଏବଂ ସାତ ଅଧ ହୋଇ ତାକୁ କୁଆଡ଼େ ଉଠାଇ ନେଇ ଚାଲିଗଲା ॥ ରାତିରେ ମୋ ପାଖକୁ ଫେରିଆସିଲା । ମୁଁ ତାକୁ ଗାଳିଦେଲି । ମିଠା-କଡ଼ା କରି ବେକାଏ ଶୁଣାଇଲି । ଘରେ ପୂରାଇ ଦେଲି ନାହିଁ । ସେ କବାଟ ପାଖରେ ବସି ପିଲାଙ୍କ ପରି କାନ୍ଦିବାକୁ ଲାଗିଲା । ମୋ ମନ ତରଳିଗଲା । ମୁଁ ତା ପାଖକୁ ଗଲି । ମତେ କୋଳରେ ବସାଇ ମୋ କର୍ଣ୍ଣି ମାଗିଲା । ମୁଁ ପଚାରିଲି, କଣ କରିବୁ ? ସେ କହିଲା 'ସେ ମାଗୁଛି' । ମୁଁ ରାଗିଗଲି; ହୋସ୍‌ରେ ନ ଥିଲି । ବହୁତ ଗାଳିଦେଲି । ସେ କାନ୍ଦିଲା ଏବଂ କହିଲା, । 'ତା ବିନା ମୁଁ ମରିଯିବି' । ମୋ ରାଗ ଆହୁରି ବଢ଼ିଗଲା । "ତାକୁ ବାହାରକୁ ବାହାର କରି ଦେଇ କବାଟ କିଳିଦେଲି । ବହୁତ ସମୟ ପର୍ଯ୍ୟନ୍ତ ସେ କବାଟରେ ଧକ୍କା ମାରିଲା; ଶେଷରେ ଚାଲିଗଲା । ମତେ ଅନେକ ସମୟ ପର୍ଯ୍ୟନ୍ତ ନିଦ ହେଲା ନାହିଁ । ନିଦ ଲାଗୁ ଲାଗୁ ଘରେ ନିଆଁ ଜଳିଉଠିଲା । କବାଟ ବାହାରୁ ବନ୍ଦ କରି ସେ ଚାଳରେ ନିଆଁ ଲଗାଇ ଦେଇଥିଲା । କେହି ଆସିଲେ ନାହିଁ । କବାଟ ବାଡ଼େଇ ବାଡ଼େଇ ମୁଁ ଥକାପାଇଥିଲି । ସାରା ଅଧ ହେବଣି । ମୁଁ ବେଦମ୍ ହୋଇ ବେହୋସ ହୋଇପଡ଼ିଥିଲି । ଏବେ କେବେଳେ କେହି କବାଟ ଖୋଲିଦେଲା । ତା ପର-ଦିନ ତାକୁ ପୁଲିସ ଧରିନେଲେ । ମତେ ପଚାରି ହେଲା, 'କିଏ ନିଆଁ ଲଗାଇପାରେ ଆଏ ?' ମୁଁ କହିଲି, 'କେଜାଣି, ସେ ହେଇନଥିବ'— । ସନ୍ଧ୍ୟାବେଳକୁ ସେ ପୁଣି ମୋ ପାଖକୁ ଆସିଲା ଓ କାନ୍ଦିବାକୁ ଲାଗିଲା । ଯେତେବେଳେ ନିଶାରେ ଥାଏ ସେ କାନ୍ଦେ । ଅନ୍ୟ ସମୟରେ ମୋଟେ କାନ୍ଦେ ନାହିଁ, ହସୁଥାଏ । ଗୋଟିଏ ଟୋପା ଭିତରେ ପଡ଼ିଲେ କାନ୍ଦିବା ଆରମ୍ଭ ହୋଇଯାଏ । ପିଲାଙ୍କ ପରି ବହୁତ କାନ୍ଦେ । ମୁଁ ମୋ କର୍ଣ୍ଣି ତାକୁ ଦେଇଦେଲି ।

"ଏତେ କଥା ପରେ ବି ତୁମେ ତାକୁ ଚୋରିରେ ସାହାଯ୍ୟ କର କାହିଁକି ?"

" ଏ ଜଣିବ ବାବୁ, ଯଦି ପୁଣି ସେ ଝଗଡ଼ା ଆରମ୍ଭ କରିଦିଏ ତେବେ··· ।"

"ତୁମେ ତ କହୁଥିଲ ତମକୁ ବିଜୟନଗରମ୍ ଆଦି ବୁଲାଇ ନେଇଥିଲା ବୋଲି ?"

"ସବୁ ମିଛ କଥା, ମୁଁ ଏମିତ କହିଦେଇଥିଲି । ଏ ନାଉରିଆମାନେ ମୋ କଥା ମାନନ୍ତି । ଏଥର ଗ୍ରୀଷ୍ମ ଆରମ୍ଭରୁ ଦୁଇଥର ଏଇ ନୌକାରେ ଚୋର ହୋଇଯାଇଛି ।"

"ଯଦି ପୁଲିସ ତୁମକୁ ଧରେ, ତମେ କଣ କରିବ ?"

"କିଛି କରିବ ନାହିଁ । ମତେ ନେଇ ସେମାନେ କଣ କରିବେ ? ମୋ ପାଖରେ ତ ଚୋରିମାଲ ନାହିଁ । କିଏ ଜାଣେ କିଏ ନେଇଗଲା । ହେଲେ ବାଡ଼େଇବେ, ତା ପରଦିନ ଛାଡ଼ିଦେବେ ।"

"ଯଦି ପଦ୍ମାଲକୁ ଧରିଲେ । ଚୋରି ଜିନିଷ ସହିତ ତାକୁ ଯଦି ପାଇଗଲେ"—

"ସେ ମିଳିବ ନାହିଁ । ଏଥିମଧ୍ୟରେ ଜିନିଷ ବି ଗାଏବ ହୋଇଯିବଣି । ସେ ମିଳିବ ନାହିଁ; ଆଉ ମୁଁ ନାଆରେ ରହିଯିବି -।"

ସେ ଦୀର୍ଘଶ୍ୱାସ ଛାଡ଼ିଲା । ଧୀରେ ଧୀରେ ନିଜ ମନକୁ ମନ ଗୁଣୁଗୁଣୁ ହେବାକୁ ଲାଗିଲା । "ପୁଣି ଏସବୁ ପଇସା ଯେ ରାଣ୍ଡୀ ପାଖକୁ ଯିବ । ଯେ ପର୍ଯ୍ୟନ୍ତ ମଉଜ ମଜଲିସ୍ କରିପାରିବ ସେ ରାଣ୍ଡୀକୁ ଛାଡ଼ିବ ନାହିଁ । ବିପଦ ସବୁ ମୁଁ ମୁଣ୍ଡାଇବି; ରାଣ୍ଡୀ ବଦ୍‌ମାସ କୋଉଠିକାର ମୋ କଟମଇରେ ବସିଛି ।"

ରଙ୍ଗୀର ଏ ବଡ଼ବଡ଼ ହେବାରେ କୌଣସି କୋଧ ବା ତେଜ ନ ଥିଲା । ପଦ୍ମାଲ ଯେମିତ—ତାର ଦୋଷ-ଗୁଣ ଯାହା ଥାଉ ନା ନାହିଁକି ସେ ତାକୁ ସେମିତ ଗ୍ରହଣ କରି ନେଇଛି । ପଦ୍ମାଲ ପାଇଁ ସେ ସବୁ ପ୍ରକାର କାମ କରିବାକୁ ପ୍ରସ୍ତୁତ । ସେଥିରେ ନା ଅଛି ଆଦର୍ଶ, ନା ଭକ୍ତି, ନା ପ୍ରେମ । ଈର୍ଷା, ଅନୁରାଗ ଏବଂ ଏପରି କେତେକ ଭାବ ନେଇ ଏ ନାରୀର ହୃଦୟ । ଏହି ସବୁ ଭାବ ବ୍ୟତୀତ ତା ହୃଦୟ ସେହି ଗୋଟିଏ ସ୍ଥାନରେ । ନିଜ ଲୋକ ପାଇଁ ସେ ସର୍ବଦା ବ୍ୟାକୁଳ ହୋଇଉଠେ । କିନ୍ତୁ ରଙ୍ଗୀର ଦୋଷ ରହିଛି, ନୀତିସମ୍ମତ ଆଚରଣରେ ପଦ୍ମାଲର କିଛି ଆଗ୍ରହ ନଥାଏ । ସବୁ ଦୋଷ-ଗୁଣ ପିଠିକୁ ପକାଇ ସେ ତାକୁ ନିଜର କରିନେଇଛି । ମୋତେ ତା ଜୀବନ-ଗାଥା ଭାରି କରୁଣ ଲାଗିଲା । ମୋର ଜୀବନ ତା'ଠାରୁ ଯେ ଅଧିକ ନ ହେବ—କିଏ ଜାଣେ ।

ମୁଁ ଆନନ୍ଦ ଅନୁଭବ କଲି, ଯେତେବେଳେ ପବନର ଗତି ସହିତ ନୌକାର ଗତିବେଗ ମଧ୍ୟ ବଢ଼ିବାକୁ ଲାଗିଲା । ସାରା ଦୁନିଆ ଶିଥିଳତା ଦୂର କରି ଜାଗ୍ରତ ହେବାକୁ ପ୍ରସ୍ତୁତ । ଦୁଇ କୂଳର ବାଲିବନ୍ଧ ଉପରେ ପକ୍ଷୀମାନେ ଚାଲିବାର ଦେଖାଗଲା, ସେତେବେଳ ପର୍ଯ୍ୟନ୍ତ କୁଆଁତାରା ଆକାଶକୁ ଉଠି ନଥାଏ । ରଙ୍ଗୀ ବେପରୱାସ୍ତ-ଭାବେ ଆଣ୍ଠୁ ଧରି ବସି ଶୂନ୍ୟକୁ ଅନାଇଥାଏ ।

"କେଉଁଠି ବି ବାଟବଣା ହେଉ, ସେ ମୋର ଲୋକ; ଶେଷକୁ ମୋ ପାଖକୁ ନିଶ୍ଚୟ ଆସିବ"—ରଙ୍ଗୀ ଏକଥା ଅସ୍ପଷ୍ଟଭାବେ କହୁଥାଏ । ତାର ଏ ଭାବନାରେ ଗୋଟିଏ ପ୍ରକାର ଆଶା, ଧୈର୍ଯ୍ୟ ଓ ବିଶ୍ୱାସ ଝଲକୁଥିଲା । ବୋଧହୁଏ ଏହାହିଁ ତାର ଜୀବନର ଆଧାର । ରଙ୍ଗୀର କଥାକୁ ଭୟ, ଆଦର ଓ କରୁଣା ସହିତ ଶୁଣି ମୁଁ ଚୁପ୍ ରହିଲି ।

ସେହି ଅବସ୍ଥାରେ ଆମେ ଦୁଇଜଣ ଫସର୍‌ଫାଟିବା ପର୍ଯ୍ୟନ୍ତ ବସି ରହିଲୁ ।

ନୌକାରୁ ଓହ୍ଲାଇଯିବା ସମୟରେ ମୁଁ ପକେଟରୁ ଗୋଟିଏ ଟଙ୍କା ବାହାର କରି ତା'ହାତକୁ ବଢ଼ାଇଦେଲି ଓ ଶୀଘ୍ରପଦରେ ଗାଁ ଆଡ଼କୁ ଚାଲିଲି । ସେଥିପାଇଁ ରଙ୍ଗୀ କଣ କହିବ, ଶୁଣିବାକୁ ରହିଲି ନାହିଁ । ମୋତେ ଜଣାନାହିଁ—ପରେ ତାର କଣ ହେଲା ।

## ଦୋଷ-ଗୁଣ

'ରାଜା ଏବଂ ରାଣୀ ଦୁଇ ଜଣ ସୁନ୍ଦର ରାଜଡାକ କରିବା ପରେ ଶେଷ ଜୀବନ ଆନନ୍ଦ ଓ ଆରାମରେ ବିତାଇଲେ ।' —ଗତ ରାତିରେ ଦେଖିଥିବା 'ମଙ୍ଗମ୍ମ ଶପଥମ୍' ନାମକ ଚଳଚ୍ଚିତ୍ରର କାହାଣୀ ଅଜା ନାତି ଓ ନାତୁଣୀମାନଙ୍କୁ ସମୁଦ୍ରକୂଳରେ ବସି ଶୁଣାଉଛନ୍ତି ।

ସିନେମା କାହାଣୀରେ ବିଶେଷ ରୁଚି ନଥିଲେ ମଧ୍ୟ ଅଜାର କାହାଣୀ କହିବା ଢଙ୍ଗରେ ଆକୃଷ୍ଟ ହୋଇ ପାଖରେ ବସିଥିବା ନଗରପାଳକାର କର୍ମଚାରୀ ନିଜ ଅଫିସ କଥା ଛାଡ଼ି ତାଙ୍କ କାହାଣୀ ଧ୍ୟାନଦେଇ ଶୁଣୁଥିଲେ । ଅଜା ଓ ନାତି, ନାତୁଣୀ ଘରକୁ ଯାଉଛନ୍ତି ସେଠି ଶୁଣାଯାଉଥିବା ରେଡ଼ିଓର ସଙ୍ଗୀତ ସାଙ୍ଗରେ ନାଚ-କୁଦ ତାଳ ମିଳାଇ ମିଳାଇ । ଅଜାଙ୍କୁ ପିଲାମାନଙ୍କ ସହିତ ନାଚିବା ଡେଇଁବା ଦେଖି ରଙ୍ଗମ୍ ଈର୍ଷାନ୍ୱିତ ହୋଇ କହିଲା, "ଦେଖ ପୁରୁଣାକାଳିଆ ଲୋକ କେତେ ଉତ୍ସାହୀ । ଆମେ ଏତେ ଦିନ ବଞ୍ଚିବା କି ନାହିଁ । ଯଦି ବି ବଞ୍ଚୁ ତେବେ ଆମଠାରେ ଏ ଉତ୍ସାହ ରହିବ ନାହିଁ ।"

"ଆପଣଙ୍କ ମତରେ ଜୀବନ ଏପରି କାହିଁକି ବଦଳିଯାଉଛି ?" ସୁରୀ ପଚାରିଲା ।

"କଳିଯୁଗ ପରା ।"

"ନନ୍‌ସେନ୍‌ସ ! ଆମର ଅଭ୍ୟାସ ସହରୀ ଜୀବନ, ମିଲକୁଟା ଚାଉଳ, ଲାଉଣିକଡ଼ା ଘୋଲଦହି —ଏହି ସବୁ ଆମ ଶରୀରକୁ ଦୁର୍ବଳ କରିଦେଉଛି ।"

ଜାନ କହିଲା, "ଏସବୁର ମୂଳ କାରଣ ଗଣତନ୍ତ୍ରର ଦାସତ୍ୱ ।"

"କାହିଁକି ? —ଆମକୁ କିଏ ସରକାର ତାଙ୍କି କୁଟା ଚାଉଳ ଖାଇବାକୁ ମନା କରିଛନ୍ତି ?"

"ମନା ତ କରିନାହାନ୍ତି ତେବେ କଳକୁଟା ଚାଉଳ ଖାଇବାକୁ ମନା କରିଦବା ଉଚିତ ।"

"ତେବେ ତ ଲୋକେ ଚିତ୍କାର କରିବେ ଯେ ଆମର ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟ ଛଡ଼ାଇ ନିଆଯାଉଛି । ରୁଷ୍‌ରେ ଲୋକମାନେ ଏଥିପାଇଁ ପାଟି କରୁଛନ୍ତି ଯେ ତାଙ୍କୁ ଜବରଦସ୍ତି ବିଶ୍ରାମ ଦିଆଯାଉଛି ।"

"ଯାହା କୁହ କିନ୍ତୁ ପୁରୁଣା କଥା ଭଲ ଥିଲା । ଡେମୋକ୍ରାସୀ କମ୍ୟୁନିଜମ୍ ଏସବୁ ଅଶାନ୍ତିର ମୂଳ । ଏକଚ୍ଛତ୍ରପତି ରାଜା ଥିଲେ କେହି କିଛି କଥା କହିପାରନ୍ତେ ନାହିଁ ।"

"ତେବେ ତାକୁ 'ଡିକ୍‌ଟେଟର' କହନ୍ତେ ପରା !"

"କିନ୍ତୁ ପ୍ରତ୍ୟେକ ବ୍ୟକ୍ତି ଗୋଟିଏ ଗୋଟିଏ ଡିକ୍‌ଟେଟର ହବାକୁ ଚାହିଁବାଠାରୁ

ଗୋଟିଏ ରାଜା ହିଁ ହେବା ଭଲ ।"

"ଆମେ 'ମଙ୍ଗମ ଶପଥମ୍'ରେ ଦେଖିଲୁ ସାଜ-ସଜାଇ ହୋଇ ମଉଜ-ମଜଲିସ କରି ବୁଲିବା ପାଇଁ ଲୋକେ ରାଜା ବନନ୍ତି । ତାଙ୍କର ଶାସନ ଠିକ୍‌ଭାବେ ହେଲା-ନହେଲା ଯାଏ-ଆସେ କଣ ?"

"ଅଚ୍ଛା, ଟିକେ କହିଲ, ସେ 'ଶପଥ' କଣ ଥିଲା ? ପୁରୁଣା କାହାଣୀରେ ବି କଥା ଭଳିଆ କଥା ଥିବା ଉଚିତ ।"

"ପୁତ୍ରର ରାଜତିଲକବେଳେ ରାଣୀଙ୍କର ବୟସ କେତେ ହେବ ? ଅତି କମ୍‌ରେ ପଚାଶି ବର୍ଷ; ରାଜାଙ୍କ ବୟସ ପଚୀଶ ହେବ । ସେହି ଅବସ୍ଥାରେ ତାଙ୍କର ଜୀବନ ସୁଖମୟ ଦେଖାଇବାର କି ଲାଭ ? ସେପର୍ଯ୍ୟନ୍ତ ତ ସାରା ଜୀବନ ତାଙ୍କର ବେକାର ଶପଥରେ କଟିଯାଇଛି । ହରିଶ୍ଚନ୍ଦ୍ର, ଶ୍ରୀରାମ ଏମାନେ ସବୁ ସାରା ଜୀବନ ଯାତନା ସହି ଶେଷରେ ମରିବା ପୂର୍ବରୁ ଯଦି ସୁଖି ହେଲେ ତ କଣ ହେଲା ?"

"କୌଣସି ଆଦର୍ଶ ନେଇ ବଞ୍ଚିବା ଲୋକଙ୍କ ଜୀବନ ଏହିପରି ହିଁ ହୁଏ ।"

"ଏହିପରି ହୁଏ । କିନ୍ତୁ କଥାକାର ତାଙ୍କର ଜୀବନରେ କୌଣସି ଗୋଟାଏ ପ୍ରକାରର ସୁଖ ଦେଖାଇ ଆମ ଆଖିକୁ ଠକେ ।"

"କିନ୍ତୁ ବହୁତ ଲୋକଙ୍କ ଜୀବନରେ ଏଇ ଅନ୍ତିମ ସୁଖ ଟିକକ ବି ଆସେ ନାହିଁ ।"

"ଯେଉଁ ଲୋକ କୌଣସି ଆଦର୍ଶ ଉପରେ ଦଣ୍ଡାୟମାନ, ତାଙ୍କ ପାଇଁ ସେହି ଆଦର୍ଶର ସିଦ୍ଧି ନିମନ୍ତେ ଭୋଗୁଥିବା ଦୁଃଖ-ଯନ୍ତ୍ରଣା ହିଁ ସୁଖକର ମନେହୁଏ । ତାଙ୍କ ମତରେ କୌଣସି ମହାନ କାର୍ଯ୍ୟ ସମ୍ପାଦନ କରିବାରେ ତୃପ୍ତି ଥାଏ । କିନ୍ତୁ ସାଧାରଣ ଜନତା ଭିତରେ ଏପରି ବହୁତ ଲୋକ ଅଛନ୍ତି ଯାହାଙ୍କ ଜୀବନ ଦୁଃଖଭରା ।"

"ଏହାର କାରଣ ଆମର ଆର୍ଥିକ ଅବସ୍ଥା । ବାସ୍ତବରେ ଦାରିଦ୍ର୍ୟ ହିଁ ସମସ୍ତ ବିପଦର କାରଣ ।"

"ଫେର ଏହି ହତ୍ୟାକାଣ୍ଡ, ଅତ୍ୟାଚାର, ଧୂର୍ତ୍ତତା ଏସବୁ କାହିଁକି ହୁଏ ?"

"ପ୍ରାରବ୍ଧ ।"

"ଯେତେବେଳେ ଆମେ କିଛି କରିପାରୁନାହିଁ, ବୁଝିପାରୁନାହିଁ, ନିଜର ଅଜ୍ଞତାକୁ ସ୍ୱୀକାର କରିବାକୁ ଚାହୁଁନାହିଁ, ସେତେବେଳେ ଆମେ ଏଇୟା କହୁ । କେତେକ 'ଭଗବାନଙ୍କର ଇଚ୍ଛା' କହନ୍ତି ଓ କେତେକ 'ପ୍ରାରବ୍ଧ' । ଏହିପରି ଆମେ ଆସୁଥିବା ବିପଦକୁ ସମର୍ଥନ କରୁ ।"

"କେବଳ ବିପଦକୁ ନୁହେଁ ନିଜର ସ୍ୱାର୍ଥ ସହିତ ଖାପ ନଖାଉଥିବା ବିଭିନ୍ନ ଅନୁଚିତ ବିଧାନକୁ ଏବଂ ଏହି ପ୍ରକାରର ବିଭିନ୍ନ ସଂସ୍ଥାମାନଙ୍କୁ ସେମାନେ ଭଗବାନଙ୍କ ନାଁରେ ଛିଡ଼ା କରିଦିଅନ୍ତି । ଏଇଥିପାଇଁ ରୁଷିଆରେ ଭଗବାନଙ୍କୁ ନିର୍ବାସନ କରିଦିଆ-ଯାଇଛି ।"

"ମୁଁ ସତ୍ୟ ଉପରେ ଆଧାରିତ ଗୋଟିଏ କାହାଣୀ କହୁଛି, ଶୁଣନ୍ତୁ; ତା' ପରେ

ଆପଣଙ୍କର ମତାମତ ଦେବେ ।" ଏତେ ସମୟ ଚୁପ୍ ହୋଇ ବସିଥିବା ଡାକ୍ତର ଜୋସେଫ (ଜାନଙ୍କ ମାମୁ ) କହିଲେ ।

"ଗତବର୍ଷ ପୂର୍ବେ ଯେତେବେଳେ ମୁଁ ଅବସର ନେଇ ନଥିଲି; ମୋର ଓ୍ୱାର୍ଡ଼ ସମ୍ମୁଖରେ ଗୋଟିଏ ବୁଢ଼ୀ ସର୍ବଦା ଆସି ଛିଡ଼ା ହୋଇ ରହୁଥିଲା । ତାର କାନ୍ଦିବାର ଶକ୍ତି ବି ନଥିଲା । ସେ ଆକାଶକୁ ଚାହିଁ ଗୁଣୁଗୁଣୁ ହୋଇ ସେଠାରେ ଛିଡ଼ା ହୋଇ ରହୁଥିଲା । ଡାକ୍ତରମାନେ ତ ବେଶ୍ କାର୍ଯ୍ୟବ୍ୟସ୍ତ ରୁହନ୍ତି । ସେମାନଙ୍କ ଆଗରେ ସର୍ବପ୍ରଥମେ ତାଙ୍କର ଡାକ୍ତରଖାନା । ତାଙ୍କ ଜୀବନରେ ପ୍ରତିଦିନ ଏହିପରି କେତେ ହତଭାଗ୍ୟ ଆସନ୍ତି । ଏପରି ଦେଖିବା ତାଙ୍କର ଅଭ୍ୟାସଗତ ହୋଇପଡ଼ିଥାଏ । ଯେତେ ଯନ୍ତ୍ରଣା ହେଲେ ବି ତାଙ୍କ ହୃଦୟକୁ ବିଚଳିତ କରିପାରେ ନାହିଁ । ଯୁଦ୍ଧକ୍ଷେତ୍ରରେ ପ୍ରତ୍ୟେକ ରୋଗୀ ମୃତ୍ୟୁର ଦ୍ୱାରଦେଶରେ ଦଣ୍ଡାୟମାନ । ଫଟା ମୁଣ୍ଡ, ଭଙ୍ଗା ଗୋଡ଼-ହାତ । ପେଟରୁ କାହାର ଅନ୍ତନାଡ଼ି ବାହାରି ପଡ଼ୁଛି । ପ୍ରତ୍ୟେକ ଲୋକ କହେ, ଡାକ୍ତର, ଡାକ୍ତର ମୋ କଥା ଟିକେ ଶୁଣନ୍ତୁ । ମୋ ଆଡ଼େ ଦେଖନ୍ତୁ । ସମସ୍ତଙ୍କର ଏକାବେଳକେ ଚିତ୍କାରରେ ଯଦି ତାଙ୍କର ହୃଦୟ ତରଳିଯାଆନ୍ତା ତେବେ ଗୋଟାଏ ବୋଲି କାମ ହୋଇପାରନ୍ତା ନାହିଁ । ବଡ଼ ବଡ଼ ଡାକ୍ତରଖାନାରେ ଆହୁରି ଅଧିକ ବିପଦ—ଖାଲି ରୋଗୀ ନୁହେଁ, ତାଙ୍କ ଆତ୍ମୀୟମାନେ ମଧ୍ୟ ଆସି ପାଟିତୁଣ୍ଡ କରନ୍ତି, କାନ୍ଦନ୍ତି । ଆବଶ୍ୟକତା ତ ସମସ୍ତଙ୍କର । ଡାକ୍ତର ଯଦି ଟିକେ ଦୟାଳୁ ହେଲା ତେବେ ତାକୁ ନିଜ ଓ୍ୱାର୍ଡ଼ ବ୍ୟତୀତ ଅନ୍ୟ ଓ୍ୱାର୍ଡ଼ରେ ମଧ୍ୟ ଦାୟିତ୍ୱ ନବାକୁ ପଡ଼ିଲା । ଶୋକରେ ଛଟପଟ ହେବା ଲୋକଙ୍କୁ ଔଷଧ କି କାଟ୍ କରେ ? ଆଚ୍ଛା, ଛାଡ଼ ସେ କଥା ।

"ନିଜ କାମରେ ବ୍ୟସ୍ତ ଥାଇ ସେହି ବଡ଼ୁଣ ବୁଢ଼ୀର ମ୍ଳାନମ୍ଳାନ ଚେହେରା ମୋ ମନର କୌଣସି କୋଣରେ ଝାପସାଭାବରେ ଅଙ୍କିତ ହୋଇଯାଇଥିଲା । ଦିନେ ନର୍ସମାନେ ତା ବିଷୟରେ ଚର୍ଚ୍ଚା କରୁଥିବା ଦେଖି ମୁଁ ସେ କିଏ ବୋଲି ପଚାରିଲି । ଜଣାଗଲା ଯେ ସେ ମୋ ଓ୍ୱାର୍ଡ଼ରେ ଥିବା ଗୋଟିଏ ରୋଗୀର ମା । ଯକ୍ଷ୍ମା ରୋଗୀ, ତାର ଅବସ୍ଥା ବହୁତ ଖରାପ । ସେ ରୋଗୀର ବୟସ ଷୋଳଶ ବର୍ଷ ହେବ । ତା ମା' ତା ପାଖକୁ ଗଲେ ସେ ବିରକ୍ତ ହୋଇ ତାକୁ ବାହାର କରେଇଦିଏ । ସେଥିପାଇଁ ସେ ଯେତେ-ବେଳେ ଶୋଇଯାଏ ସେତେବେଳେ ତାର ବୁଢ଼ୀ ମା' ତାକୁ ଆସି ଦେଖେ ଓ ଲୁହ ଗଡ଼ାଏ । ବାକି ସମୟ ସେଇ ବାହାରେ ଛିଡ଼ା ହୋଇ ରହିଥାଏ । ସେଇ ଦିନ ସନ୍ଧ୍ୟା-ବେଳେ ମୋର ତା ଉପରେ ବହୁତ ଦୟା ହେଲା । ମୁଁ ତା ସହିତ କଥାବାର୍ତ୍ତା ହେଲି । ସେ କାନ୍ଦି କାନ୍ଦି ବହୁତ ବିନତି କଲା ଯେପରି ହେଉ ତା ପୁଅକୁ ମୁଁ ବଞ୍ଚାଇ ଦିଏ । ଏପରି ଅବସ୍ଥାରେ ଡାକ୍ତରର କଣ କହିବା ଉଚିତ ? ବୃଥା ଆଶା ଦେଇ ତାକୁ ସାନ୍ତ୍ୱନା ଦବା, ନା ସତକଥା କହି ତା ହୃଦୟରେ ଆଘାତ ଦବା ? ଏଥିରୁ କେଉଁଟି ଠିକ୍—କଣ କରିବା ଉଚିତ ମୁଁ ମୋର ଏଇ ଷୋଳଶ ବର୍ଷର ଅନୁଭୂତିରେ ବି ସ୍ଥିର କରିପାରିନାହିଁ ।

"ମୁଁ ପଚାରିଲି ତୁମର ପୁଅ ତୁମ ଉପରେ ଏପରି ଅସନ୍ତୁଷ୍ଟ କାହିଁକି ? 'ପ୍ରାରବ୍ଧ' କହି ସେ ଚୁପ୍ ହେଲା; ଆଉ କିଛି କହିଲା ନାହିଁ । ତା ପୁଅ ପାଖକୁ ଯାଇ ତାକୁ ବି ପଚାରିଲି ତୁମ ମା ଏପରି କାନ୍ଦୁଛନ୍ତି— ବ୍ୟସ୍ତ ହଉଛନ୍ତି । ତୁମେ ତାଙ୍କ ଉପରେ ଏତେ ବିରକ୍ତ କାହିଁକି ? ଯେତେ ଶତ୍ରୁତା ଥିଲେ ବି ଏପରି ଅବସ୍ଥାରେ କଥାବାର୍ତ୍ତା କରିବା ଉଚିତ ।"

'ତାର ନିସ୍ଥିତ ଭଲ ନୁହେଁ—ତା କଥା ମୋ ଆଗରେ କୁହନ୍ତୁ ନାହିଁ ।'

"ଏପରି କଣ କରିଛି ସେ ଯେଉଁଥି ପାଇଁ ତୁମେ ତାକୁ କ୍ଷମା କରିପାରୁନା ? ସେ ତମର ମା' ନା ?"

'ମା'···ସେ ମୋ ମା ? ଅନ୍ୟ ଯେକୌଣସି ଦୋଷକୁ କ୍ଷମା କରାଯାଇପାରେ । କିନ୍ତୁ ସେ ମୋ ଜୀବନକୁ ଜାଳିପୋଡ଼ି ଦେଇଛି । ସେ ଯାହା କରିଛି ସେଥିପାଇଁ ମୁଁ ଚାଳିଶ ବର୍ଷ ହେଲା ଅନୁତାପ କରୁଛି ଯେ ମୁଁ କାହିଁକି ତା ଗର୍ଭରୁ ଜନ୍ମ ହେଲି । ତା କଥା ମୋ ଆଗରେ କୁହନ୍ତୁ ନାହିଁ ।

"ମୋ ମନରେ ତା ପ୍ରତି ସମବେଦନା ଆସିଲା ନାହିଁ । ହୋଇପାରେ ତା କଥା ଠିକ୍—ତେବେ ଆଜି ତା ମା' ମନରେ ଯେଉଁ ଦୁଃଖ, ଯେଉଁ ପ୍ରେମ ତା ପାଇଁ ଅଛି, ସେଇଟା ତ ଯଥାର୍ଥ । ସେ ରୋଗୀ ମଧ୍ୟ ଦୁଷ୍ଟ ସ୍ୱଭାବର ନୁହେଁ—ପରିବାର ନାହିଁ, ଏକା; ପାଠଶାଠ ପଢ଼ିଛି, ଭଲ ସଂସ୍କାର— ଏଥିରେ କାହାକୁ କଣ କୁହାଯିବ ।

"ମା-ବାପଙ୍କର ପ୍ରେମ ନିର୍ମଳ । ପିଲାମାନେ ସେମାନଙ୍କ ପ୍ରତି କୃତଜ୍ଞ ହୋଇ ପାରନ୍ତି, ସେମାନଙ୍କୁ ଭକ୍ତି କରିପାରନ୍ତି; କିନ୍ତୁ ପ୍ରେମ କରିପାରନ୍ତି ନାହିଁ । ଆମେ ଯେତେବେଳେ ଅନ୍ୟର ଅପକାରକୁ ବହୁତ ଅଧିକ ମନେକରୁ ସେତେବେଳେ ଆମେ ଅନ୍ୟର ଯେଉଁ ଅପକାର କରୁ ତାକୁ କେବେହେଲେ ମନେ ପକାଉ ନାହିଁ । ଏତେ ସ୍ୱାର୍ଥ ଓ ଆକ୍ରୋଶରେ ମଳିନ, ଦୂଷିତ ହୋଇ ମଧ୍ୟ ବିଶ୍ୱ, କ୍ଷମା ଓ ମମତା ଭଳି ଭାବନା ଯୋଗୁଁ ହିଁ ଏହି ସଂସାର ଆମ ପାଇଁ ରହିବାଯୋଗ୍ୟ ହୋଇଛି ।

"ତା ପର ଦିନୁ ମୋର ଶ୍ରଦ୍ଧାର କେନ୍ଦ୍ର-ବିନ୍ଦୁ ରୋଗୀ ନ ହୋଇ ତାର ମା' ହେଲା । କିନ୍ତୁ ସେ କେବେହେଲେ କାହାର ଆଦରକୁ ଅନାଇଲା ନାହିଁ । ପୁଅ ଏବଂ ପୁଅର ପ୍ରାଣ ଛଡ଼ା ତା ମନରେ ଆଉ କୌଣସି କାମନା ନ ଥିଲା । ସିଏ କହୁ ନା କାହିଁକି—ସିଏ ପଚାରୁ—ତାର ଗୋଟିଏ କଥା 'ତାକୁ ଜଲଦି ଭଲ କରିଦିଅ, ପୁଅ !'

"ଦିନେ ମୁଁ ଆକୁଳ ହୋଇ କହିଲି—'ତୁମ ନାଁ ପଡ଼ିଲେ ତ ସେ ଶାପ ପକାଉଛି, ଘୃଣା କରୁଛି । ଏପରି ପୁଅ ମଲେ କେତେ, ଜିଇଁଲେ କେତେ, ତୁମର ତା ପାଇଁ ଏତେ ଦରଦ କାହିଁକି ?'—ସେ କିନ୍ତୁ କିଛି କହିଲା ନାହିଁ ।

"ତା ପୁଅର ଭରସାରେ ତ ତାର ପେଟପୋଷା ହଉ ନ ଥିଲା । ସେ କେଉଁ କାହା ଘରେ ଚାକରି କରି ମୁଠିଏ ଖାଉଥିଲା । ବର୍ତ୍ତମାନ ତ ସେ ସେତିକ ଛାଡ଼ି

ଡାକ୍ତରଖାନା ଭିତରେ ଖୋଲା ପଡ଼ିଆ ଉପରେ ଦିନ କଟାଉଥିଲା । ମୁଁ ମନେ ମନେ ଭାବିଲି ସେ ତାର ନିଜ ଅପରାଧର ଶାସ୍ତି ଭୋଗୁଛି ।

"ଯାହାର ଦୁଇ ଦିନ ପରେ ମୁଁ ଗୋଟିଏ ଦିନ ଛୁଟି ନେଲି । ଘରେ କୁଣିଆ ପହଞ୍ଚିବାର ସୂଚନା ମିଳିଥିଲା ।"

"କୁଣିଆ ଆସିଲେ । ତୁମେ କାହିଁକି ଛୁଟି ନେଲ ?" ରଙ୍ଗମ୍ ପଚାରିଲା

"ସେଥିରେ ତୁମର କଣ ଅଛି, ଡାକ୍ତର ଛୁଟି ନେଲେ । ଏଥର କାହାଣୀ ଶୁଣ ।"

"ସବୁବେଳେ ତାର କାହାଣୀ ଶୁଣାଉଛ—ବର୍ତ୍ତମାନ ନିଜ କାହାଣୀ କୁହନ୍ତୁ ନା, ଦାଦା !" ଦାନ ହସି ହସି କହିଲା ।

"କୁଣିଆ କଣ ପୁରୁଷ ନା ସ୍ତ୍ରୀ ଲୋକ" ସୁଖି ପଚାରିଲା ।

"ମନେକର ସ୍ତ୍ରୀ ଲୋକ । ମୋର ଶାଶୁ । ଏବେ କୋଡିଏ ବର୍ଷ ହେଲା ତାଙ୍କର ମୃତ୍ୟୁ ହୋଇଗଲାଣି ।"

"ପ୍ରେମସ୍ୱରୂପ ଶାଶୁ ତା ହେଲେ ।"

"କାହାଣୀ ଶୁଣିବ କି ନାହିଁ ।" ଡାକ୍ତର ଜୋରରେ କହିଲେ ।

"ଶୁଣିବୁ ନାହିଁ କାହିଁକି ? କହନ୍ତୁ ।"

"ଭଦ୍ରମହିଳା, କନ୍ୟା ଆସିଲେ ନାହିଁ ।"

"ବିଚରା !"

"ସେ ଦିନ ରୋଗୀମାନଙ୍କର ଅବସ୍ଥା କଣ ହୋଇଥିବ ଭଗବାନ୍ ଜାଣନ୍ତି ।" —ସୁଖି କହିଲା ।

"କଣ ନର୍ସ ମଧ୍ୟ ନ ଥିଲେ ଡାକ୍ତର ?"

"ତେବେ, ମୁଁ ଯାଏ ।" ଡାକ୍ତର ହସି ହସି କହିଲେ ।

"ଆଉ ବର୍ତ୍ତମାନ ଗଣ୍ଡଗୋଳ କରିବୁ ନାହିଁ, କହନ୍ତୁ ।"

"ଘରେ ମୁଁ ଏକଲା ଥିଲି ।"

"ଅସଲ କଥା ଏଇଠି ।"

"ଚୁପ୍ ଚାପ କାହାଣୀ ଶୁଣ । ଘରେ ବସି ବସି ବିରକ୍ତ ଲାଗିବାରୁ ସେତେବେଳେ ଡାକ୍ତରଖାନା ଯାଇ ସମୁଦ୍ରକୁ ଅନାଇ ବାରଣ୍ଡାରେ ଆରାମରେ ବସିଗଲି । ବାରଣ୍ଡାର ଅନ୍ୟ ପାର୍ଶ୍ୱରେ ଦୁଇ ଜଣ ନର୍ସ ବସିଥିଲେ ଓ ତାଙ୍କ ପାଖରେ ଦିନୋଟି ଡାକ୍ତର ଛାତ୍ର ଛିଡ଼ା ହୋଇଥିଲେ । ସେମାନଙ୍କ କଥାବାର୍ତ୍ତା ମତେ ଶୁଣାଯାଉଥିଲା । ଯେମିତି ମୁଁ ତୁମମାନଙ୍କୁ କାହାଣୀ ଶୁଣାଉଛି, ମନେକର, ସେମାନେ ସେମିତି କଥାବାର୍ତ୍ତା କରୁଥିଲେ । ସେଇ କାହାଣୀକୁ ମୁଁ ପୁଣି ବନେଇ-ଚୁନେଇ ତୁମମାନଙ୍କୁ ଶୁଣାଉଛି—"

"ଯିଏ ବର୍ତ୍ତମାନ ତୁମ ପଛେ ପଛେ ଜୋକ ପରି ଲାଗି ଗ୍ଲାଲୁଥିଲା ସିଏ କିଏ ?" ଛାତ୍ର ଭେଙ୍କଟପ୍ପା ପଚାରିଲା ।

"ସେ ଆମର ଗାଁର ।" ଶ୍ରୀନିବାସ ଜବାବ ଦେଲା ।

ଭେଙ୍କଟପ୍ପା କହିଲା, "ଏବେ ତୁମର ବୟସ କେତେ ?"

"ମୁଁ ଜାଣି ନାହିଁ । ତାର ପୁଅ ମୋର ବଡ଼ଭାଇ ସାଙ୍ଗରେ ପଢ଼େ । କିଏ କହୁଥିଲା ତାର ଅତୀତ ଜୀବନ ବଡ଼ ରୋମାଞ୍ଚକର ଥିଲା"—

"ଏ କଥା ଶୁଣି ଶୁଣି ମୁଁ ଆତୁର କାନ ଡେରି ଶୁଣିଲି । ପୁରୁଣା ଛିଣ୍ଡା କ୍ୟାନଭାସ ପରଦା ଭିତରୁ ତାର ଚେହେରା ସକାଳର ଆଲୁଅରେ କିଛି କିଛି ଦେଖାଯାଉଥିଲା ।

"ଆଚ୍ଛା, ଆଚ୍ଛା, ଏଇଥିପାଇଁ ତୁ ଏତେ କଥା କହିପାରୁଛୁ ।"

"ନାଇଁ ମୁଁ ନୁହେଁ, ମୋର ବାପା, ଶୁଣିଛି ତାଙ୍କ ପାଇଁ ବହୁତ ଚେଷ୍ଟା କରୁଥିଲେ ।"

"ଠିକ୍ ଅଛି ଭାଇ; ବର୍ତ୍ତମାନ କୁହ, ସେ ତୁମ ପାଇଁ କାଭଳି ଚେଷ୍ଟା କରୁଛି ?"

"ତାର ପୁଅ ଏଇଠି ଏଇ ଓ୍ୱାର୍ଡ଼ରେ ରୋଗୀ ।"

"କିଏ ? ଏକୋଇଶି ନମ୍ବରରେ ଯିଏ ଅଛି.ନା ? ବିଚ୍ରା ସେ ବୁଢ଼ୀ କେତେ କାନ୍ଦୁଛି"
ନର୍ସ ବାଳମ୍ମା ଇଂରେଜୀରେ କଥା କହିବାର ଚେଷ୍ଟା କରି କହିଲା ।

"ଔଷଧ-ପତ୍ରର ନାମ ଛାଡ଼ିଦେଲେ ବାଳମ୍ମାର ଇଂରେଜୀରେ ବେଶି କିଛି ଜ୍ଞାନ ନାହିଁ ।"

"ଠିକ୍ ଅଛି ମା' ସେ, ସେଥିପାଇଁ...।"

'ସେ ରୋଗୀ ତ ତା' ସାଙ୍ଗରେ କଥା କହେ ନାହିଁ । ଆଖି ଉଠାଇ କରି ବି ତା' ଆଡ଼କୁ ଅନାଉଁ ନାହିଁ । ତା କଥା ଶୁଣିଲେ ବିଗିଡ଼ିଉଠୁଛି ।" ବାଳମ୍ମା କହିଲା ।

"ସେ ତା ମା'କୁ ଗାଳି ମଧ୍ୟ ଦିଏ । ମୁଁ ଏତେ ଦିନ ପରେ ଦେଖିଲି । 'ଛିଃ, ତୋର କଦର୍ଯ୍ୟ ଚେହେରା ମୁଁ ଦେଖିବାକୁ ଚାହେଁ ନା' —ତା ମା' କୁ ଏମିତ କହୁଥିଲା ।"

"କଣ ଭାଇ, ଶ୍ରୀନିବାସ ! ତୁମେ ତ କହୁଥିଲ ତୁମ ଗାଁର, ଏବଂ ତାର ଅତୀତ କାହାଣୀ ବଡ଼ ଆଶ୍ଚର୍ଯ୍ୟ ଉକମର । କଣ ତୁମେ ତା ବିଷୟରେ ଆଉ କିଛି ଜାଣିଛ ?"

"ମତେ ଆଉ କିଛି ଜଣାନାହିଁ... । ବହୁତ ଦିନ ହବ ସେ ଆମ ଗାଁ ଛାଡ଼ି ଚାଲି-ଯାଇଛି ।"

"ଚାଲ ଭାଇ ଚାଲ" ଡାକ୍ତର ଛୁଟକି ନିଜ ଘଣ୍ଟାକୁ ଦେଖି କହିଲା ।

ଦ୍ୱିତୀୟ ନର୍ସ ଏଡ଼ିଜାବେଥ୍ ତା ଆଡ଼କୁ କଣେଇ ଚାହିଁ କହିଲା "ତରତର କାହିଁକି ।"

"ପୁରୁଷମାନେ ମୁଗ୍ଧ ହୋଇ ତା ପଛରେ ଗୋଡ଼ାନ୍ତି ନାହିଁ କାହିଁକି, ଏ କଥା ସେ ଭାବି ପାରୁ ନଥିଲା । ସିନେମା, ଥିଏଟରରେ ଅନ୍ଧକାର ଭିତରେ ହାତ ଧରାଧରି ହୋଇଥିଲେ ମଧ୍ୟ ଆଲୋକରେ ଥରେ ଚେହେରା ଦେଖି ମୁହଁ ମୋଡ଼ିଦିଅନ୍ତି । ତାର ବେଶଭୂଷା ଦେଖି ଥରେ ଅତି ନିକଟତର ହୋଇଯାଇଥିଲେ ବି ପରେ ଜୀବନସାଥି ପାଇଁ ଡରେଇ ଚହନ୍ତି ।"

ଶ୍ରୀନିବାସ କହିଲା "ତୁମେ କହୁଛ ତରତର କାହିଁକି । ଆଜି ଅପରେସନ୍ ପାଳି ।

ଅପରେସନ ଘରେ ପହଞ୍ଚିବା ପାଇଁ ମୁହୂର୍ତ୍ତେ ଡେରି ହୋଇଗଲେ ସେ ଡାକ୍ତର ରୋଗୀ ସ୍ଥାନରେ ମଢ଼େ ଖଟ ଉପରେ ଶୁଆଇଦେବ ।”

“ସେ ତିନିଜଣ ଗ୍ରୁପ ଚାଲିଯିବା ପରେ, ଦୁଇଜଣ ନର୍ସ ବସି ଗିଲାସି କରୁ କରୁ ଗପ-ସପ କଲେ । ଗଛପତ୍ରକୁ ହଲାଇ ମହୁମାଛିର ମନ ଦୋହଲାଇ ସିର୍ ସିର୍ ମଧୁ-ମଳୟ ତାଙ୍କ ମନକୁ ସ୍ପର୍ଶ କରିପାରିଲା ନାହିଁ । ମୁଖ୍ୟ ନର୍ସ ପାଖରେ ରାତ୍ରିଭୋଜନ ପାଇଁ ଫଳଭର୍ତ୍ତି ପ୍ଲେଟ ପହଞ୍ଚିଥିଲା; ସେ ସେଥିରେ ସନ୍ତୁଷ୍ଟ ହେଲେ କି ନାହିଁ ସେହି ବିଷୟରେ ସେମାନେ ଚର୍ଚ୍ଚା କରୁଥିଲେ । କିଛି କ୍ଷଣ ମଧ୍ୟରେ ସେ ଫଳଭି ପଠାଇଥିବା ପୁଲିସ ଇନ୍‌ସପେକ୍ଟର ଏବଂ ଏହି ଚାଳିଶ ବର୍ଷ ବୟସ୍କା ନର୍ସର ପ୍ରତି ରାତି ଏକା ଖଟରେ ଶୋଇ ଆରାମରେ କଟାଇବା ପର୍ଯ୍ୟନ୍ତ କଥା ଚାଲିଲା । ଯା ପରେ ସେ ଦୁଇଜଣଙ୍କ ମଧ୍ୟରେ କଣ ଘଟିଲା ସେ ବିଷୟରେ କଳ୍ପନା କରି ବିଶେଷ ଭାବରେ ବର୍ଣ୍ଣନା କରିବାକୁ ଚାହୁଁଥିଲେ ମଧ୍ୟ ସେ ବଡ଼ ଅଶ୍ଳୀଳ କଥା ହୋଇପଡ଼ିବ ଓ ମୁହଁରେ କହି ହବ ନାହିଁ ବୋଲି କହିବାକୁ ନାରାଜ ହେଲେ ।

“ଓ୍ୱାର୍ଡ଼ରୁ ବାହାରିକୁ ଆସି ଡାକ୍ତର କାମେଶ୍ୱର ରାଓ କହିଲେ, ‘ଆପଣ ଏଠି ଆରାମରେ ବସିଛନ୍ତି ଆଉ ସେଠି ବାରନମ୍ବର ରୋଗୀ ମୁହଁରୁ ରକ୍ତ ବାହାରୁଛି”—

“ଆମେ କଣ କରିବୁ, ଔଷଧ ଦିଅନ୍ତୁ, ରକ୍ତ ବନ୍ଦ ହୋଇଯିବ ।”

“କହୁଛି ତ, କିନ୍ତୁ · ।”

“କାହାର ନା କାହାର, କୋଉଠୁଁ ନା କୋଉଠୁଁ ସବୁବେଳେ କିଛି ନା କିଛି ବାହାରୁଛି । ଆମର ବି ତ ଜୀବନ ଅଛି । ଆପଣଙ୍କର କଣ ଅଛି ? ଦି’ଧାଡ଼ି ଲେଖିଦେଇ ଘରେ ଯାଇ ଆରାମରେ ବସି ତାସ ଖେଳୁଛନ୍ତି ।”

“ଗତ ସପ୍ତାହରେ ସ୍ୱାସ୍ଥ୍ୟମନ୍ତ୍ରୀ ଯେଉଁ ଭାଷଣ ଦେଇଥିଲେ, ତାକୁ ଆପଣମାନେ ଶୁଣିଥିବେ ।”

“ଆଜ୍ଞା ହଁ, ଖୁବ୍ ସାବଧାନରେ ଶୁଣିଛୁ । ପୁଣି ରେଡ଼ିଓରେ ବି ଶୁଣିଲୁ, ଖବର କାଗଜରେ ମଧ୍ୟ ପଢ଼ିଲୁ । ତା ପରେ ତାରି ଉପରେ ପୁଣି ମୁଖ୍ୟ ନର୍ସ ବକ୍ତୃତା ଝାଡ଼ି ଦେଲେ । ପୂର୍ବରୁ ଯେଉଁ ମନ୍ତ୍ରୀ ଥିଲେ ସେ ବି ସେଇଆ କହିଥିଲେ ଏବଂ ଏହାଙ୍କ ପରେ ବି ଯେଉଁ ମହାଶୟ ମନ୍ତ୍ରୀ ହେବେ ସେ ବି ସେଇଆ କହିବେ । ଆମେ ଯେତେବେଳେ ଦରମା କଥା କହୁ ତ ତାର କିଛି ଜବାବ ମିଳେ ନାହିଁ ।” ବାଲମ୍ମା କହିଲା—“କହନ୍ତି କଣନି-ରୋଗୀମାନେ ଆମରି ସନ୍ତାନ ଅଟନ୍ତି ।”

“ଆରେ ପାଗଳି, ସେ ମନ୍ତ୍ରୀ ମହାଶୟଙ୍କର ଏଗାରୋଟି ପିଲା ।” ଏଲିଜାବେଥ୍ କାହିଲା ।

“ଆଚ୍ଛା, ହେଲା, ରୋଗୀ ଆମର ପିଲା । ତା ହେଲେ ଆମ ପିଲାଙ୍କର ବାପା ?”

“ଡାକ୍ତରମାନେ” କହି ଏଲିଜାବେଥ ହସି ଦେଇ କାମେଶ୍ୱର ରାଓଙ୍କ ଆଡ଼କୁ ଅନାଇଲେ ।

"ଏଇପରି ଗୋଟିଏ ଆବେଦନ ଯଦି ସରକାର ବାହାର କରି ଦିଅନ୍ତେ ତ"···ନର୍ସ ବାଲାମ୍ମା ହସି ହସି କହିଲେ ।

"କହୁଛନ୍ତି ମହଙ୍ଗାଭତ୍ତା ବଢ଼ାଇବା ପାଇଁ ପଇସା ନାହିଁ ।"

"କାନ୍ତୁ ଔଷଧ ଇଣ୍ଡେଣ୍ଟ ନେଇ ଯେ ଯେଉଁ ଦୁଇ ଲକ୍ଷ ଟଙ୍କାର ମାମଲା କେତେ ଦୂର ଗଲା ?"

"କାହାକୁ ପଚାରୁଛ ?"

"ଶେଷକୁ···"ଏତକବେଳେ ସେ ଉନୋଟି ଗ୍ରହ ପୁଣି ଦୋଡ଼ି ଦୌଡ଼ି ଆସୁଥିବାର ଦେଖାଗଲା ।

"ଆରେ, ଏତେ ଶୀଘ୍ର ଅପରେସନ ସରିଗଲା ?"

"ଆଜି ସାହେବ ଗୋଟିଏ ଅପରେସନ କଲେ ।"

"କାହିଁକି ?"

"ଶୀଘ୍ର ଘରକୁ ଯିବେ ବୋଲି ।"

"ଶୀଘ୍ର କୋଉଥିପାଇଁ ?"

"ତାଙ୍କର କୁଣିଆ ଆସିଛନ୍ତି ନା—ସେଇ ଯିଏ ଇଂଲଣ୍ଡରୁ ଆସିଛନ୍ତି—ନ୍ୟୁଜପ୍ରିଣ୍ଟ ଏଜେଣ୍ଟ ସେ – ନିଜ ଶ୍ରୀମନ୍ତଙ୍କ ସହିତ ଏକୁଟିଆ ଘରେ ରହିବା ଏ ମହାଶୟ ପସନ୍ଦ କରନ୍ତି ନାହିଁ । ସେଇଥି ପାଇଁ ସମସ୍ତଙ୍କୁ ଝାଡୁଛନ୍ତି ।"

"ସେଇ ଗୋଟିଏ ଅପରେସନ୍ ରୋଗୀ—ଶେଷରେ ଜଣାପଡ଼ିଲା ଯେ ସେ ବି ମରିକରି ପଡ଼ିଛି"—

"ସବୁ ଭାଗ୍ୟ !"

"ଡାକ୍ତର ଖାନାରେ ଭାଗ୍ୟ କଥା ଛାଡ଼ । ବାସ୍ତବରେ ଘରେ ତାଙ୍କର ଭାଗ୍ୟ କେମିତି ଥିଲା କେଜାଣି ।"

"ଆଚ୍ଛା ଡାକ୍ତର ସାହେବ, ଆପଣଙ୍କର ଏଇ ଓ୍ୱାର୍ଡ଼ର ଏକୋଇଶି ନମ୍ବର ରୋଗୀ ବିଷୟରେ ଆପଣ କିଛି ଜାଣନ୍ତି ? ସେ ଆମ ଗାଁର ନା ?"

ଶ୍ରୀନିବାସ ପଚାରିଲେ ।

"ଏକୋଇଶି ନମ୍ବର ବିଷୟରେ ତ ମୁଁ ଜାଣିନାହିଁ ।"

"ତେବେ···"

"ମା ପୁଅଙ୍କର ପଡ଼େ ନାହିଁ···"

"ସେ ସବୁ ମତେ ଜଣାନାହିଁ । ତେବେ ତା ମା' ସମ୍ବନ୍ଧରେ ଯାହା ଜାଣିଛି ଚକିତ୍ସକଙ୍କ ଦୃଷ୍ଟିରେ ଚିତ୍ତାକର୍ଷକ । ଆପଣ ଶୁଣିବାକୁ ଚାହାନ୍ତି ତ ମୁଁ ଶୁଣାଇବି ।"

"ହଁ ଶୁଣାନ୍ତୁ । ଗୋଟାଏ ପର୍ଯ୍ୟନ୍ତ ତ ଖାଇବା-ପିଇବାର ଚିନ୍ତା ନାହିଁ ।"

ଭଗବାନଙ୍କ ଭରସାରେ ନିଜ ରୋଗୀମାନଙ୍କୁ ଛାଡ଼ି ଦେଇ ଡାକ୍ତର କାମେଶ୍ୱର ରାଓ କହିବା ଆରମ୍ଭ କଲେ—

"ଆମେ ଯେତେବେଳେ ହାଇସ୍କୁଲରେ ପଢ଼ୁଥିଲୁ ସେତେବେଳେ ଆମ ସାଙ୍ଗରେ ଗୋଟିଏ ପିଲା ପଢ଼ୁଥିଲା । ତାର ନାମ କନକ୍‌କସ୍ତୁ । ସେ ବଡ଼ ଚତୁର ଥିଲା । ତାର ମା–ବାପ ବଡ଼ ଗରିବ ଥିଲେ । ତାକୁ ହଠାତ୍ ଭୀଷଣ ଜ୍ୱର ହେଲା । ଗୁହୁଁ ଗୁହୁଁ ଜ୍ୱର ବଢ଼ିବାକୁ ଲାଗିଲା । ସେ ଗାଁରେ ସେତେବେଳେ ଗୋଟିଏ ମାତ୍ର ଏଲୋପାଥି ଡାକ୍ତର ଥିଲେ । ଡାକ୍ତରଖାନାରେ ସେତେବେଳେ ଜଣେ ମୁସଲମାନ ଡାକ୍ତର ଥିଲେ । ସେ ଔଷଧ ଦେଲେ; କିନ୍ତୁ କନକ୍‌କସ୍ତୁ ତା ପରଦିନ ପର୍ଯ୍ୟନ୍ତ ବେହୋଶ ହୋଇ ରହିଲା ଏବଂ ପ୍ରଲାପ କରିବାକୁ ଆରମ୍ଭ କଲା । ସାଧାରଣ ଜ୍ୱରରେ ମଧ୍ୟ ସେ ସେହିପରି ପ୍ରଲାପ କରେ । ସେ ବଡ଼ ନର୍ଭସ୍ ଟାଇପ୍‌ର ଥିଲା, ଯେମିତି ପ୍ରାୟ ଦେଖାଯାଏ, ବୁଦ୍ଧିଆ ହସିଆର ପିଲାମାନେ ହୁଅନ୍ତି । ଆମେ ଏବଂ ଆମର ଅଧ୍ୟାପକ ସକାଳ–ସନ୍ଧ୍ୟାରେ ତାକୁ ଦେଖିବାକୁ ଯାଉଥିଲୁ । ଆମର ପ୍ରଧାନ ଅଧ୍ୟାପକ ପଣ୍ଡିତବାବୁ ଡାକ୍ତର ସାହେବ କହିଲେ "ସେପ୍‌ଟିସିମିଆ" ନାମକ ବେମାରି । ପିଲାଟି ଶୀଘ୍ର ଭଲ ହୋଇଯିବ । ତା ପରଦିନ ରାତିକୁ ଜ୍ୱର ଆହୁରି ବଢ଼ିବାକୁ ଲାଗିଲା । ଗାଁରେ ସମସ୍ତେ ଏ କଥା ଜାଣିଗଲେ । ସମସ୍ତେ ବ୍ୟସ୍ତ ଥିଲେ । ଗରିବ ହେବା ହେତୁ କନକ୍‌କସ୍ତୁ ପାଳିକରି ସମସ୍ତଙ୍କ ଘରେ ଖାଉଥିଲା । ଚନ୍ଦା କରି ଏବଂ ମାଗି-ଯାଚି ସ୍କୁଲର ଦରମା ଦଉଥିଲା । ତାର ପିତା ସେ ଗାଁର ପୁରୋହିତ ଥିଲେ । ବାପ-ପୁଅଙ୍କ ପ୍ରତି ଗାଁରେ ସମସ୍ତଙ୍କର ସ୍ନେହ-ମମତା ଥିଲା ।

"ସମସ୍ତେ ତା ଅବସ୍ଥା ଦେଖି ଭୟାତୁର ହୋଇ ଆୟୁର୍ବେଦ ବୈଦ୍ୟ ଗୋପେସ୍ତାଙ୍କୁ ଡାକିଲେ । ସେ ରୋଗୀର ନାଡ଼ି ଦେଖୁ ଦେଖୁ କହିଲା, ଏହା ଦୋଷ-ଗୁଣ ନାମକ ବ୍ୟାଧି । ଏ ରୋଗର ଗୋଟିଏ ମାତ୍ର ଚିକିତ୍ସା । ଯେଉଁ ସ୍ତ୍ରୀ ସାଙ୍ଗରେ ସହବାସ କରିବା ଫଳରେ ଏ ଦୋଷ-ଗୁଣ ରୋଗ ହୋଇଥାଏ, ସେହି ସ୍ତ୍ରୀଲୋକର ଜାଙ୍ଘରୁ ରକ୍ତ ଆଣି, ସେଥିରୁ ଅଞ୍ଜନ ତିଆରି କରି ରୋଗୀର ଆଖିରେ ଲଗାଇବା ଦରକାର । ବୈଦ୍ୟ ଗୋପେସ୍ତା କଥା ସମସ୍ତେ ଅସ୍ୱୀକାର କଲେ । କନକ୍‌କସ୍ତୁ ପିଲାଟାଏ, ଦେଖିବାକୁ ମଧ୍ୟ ସୁନ୍ଦର ନୁହେଁ, ଚେହେରାରେ ବସନ୍ତର ଦାଗ । ପାଠ ବ୍ୟତୀତ ସେ ଆଉ କୌଣସିଥିରେ ଧ୍ୟାନ ଦିଏ ନାହିଁ । ସେ କାଳର ଲୋକ ( ସେଥିରେ ଆମ ଗାଁ ଭଳି ଶ୍ରେଷ୍ଠ ଗାଁର ଲୋକ ) ଡାକ୍ତରୀ ଔଷଧକୁ ସନ୍ଦେହଜନକ ଚକ୍ଷୁରେ ଦେଖୁଥିଲେ ।"

ଏଲିଜାବେଥ୍ କହିଲା "ସନ୍ଦେହ ଚକ୍ଷୁରେ ଦେଖିବା ମାନେ କଅଣ ?"

"ଧରିନିଅ, ଦୋଷ-ଗୁଣ ସ୍ତ୍ରୀ ସମ୍ପର୍କରେ ଆସିକରି ହୁଏ ନାହିଁ ।"

"ସେ ତାହେଲେ କି ଜିନିଷ ?"

"ରୋଗ ଅବସ୍ଥାରେ··· ।"

"କିନ୍ତୁ ଚିକିତ୍ସାଗ୍ରନ୍ଥରେ ତ ଏପରି କୋଉଠି ଲେଖାନାହିଁ ।"

"ଇଂରାଜୀ ବହିମାନଙ୍କରେ ନାହିଁ ।"

"ତେବେ ଆପଣ କଣ ଏଇଟାକୁ ସ୍ୱୀକାର କରନ୍ତି ?"

"ସେଇ ତ କଥା । ବର୍ତ୍ତମାନ ଆପଣ ଏଇ କାହାଣୀ ଶୁଣି ନିର୍ଣ୍ଣୟ କରନ୍ତୁ । କାହାଣୀ ଶୁଣନ୍ତୁ—ସେ ତ ଗୋଟିଏ ଭଲ ପିଲାଟିଏ; କିନ୍ତୁ କିଏ ଜାଣେ, କେତେବେଳେ ତାଙ୍କୁ କେଉଁ ଡାହାଣୀ ଖରାପ ରାସ୍ତାକୁ ଟାଣି ନେଇପାରିଥାଏ । ଜଣାନାହିଁ, କାହାର ଏ ଦୁର୍ବୁଦ୍ଧି । କଅଁଳ କଥା କହି ବା ପଇସାର ଲୋଭ ଦେଖାଇ କିଏ ତାଙ୍କୁ ଆକୃଷ୍ଟ କରିଛି । ଏହିପରି ସମସ୍ତେ ଭାବିବାକୁ ଲାଗିଲେ ।

"ମୁସଲମାନ ଡାକ୍ତରଙ୍କୁ ଏ କଥା କହିବାରୁ ସେ କହିଲା 'ନନ୍‌ସେନ୍‌ସ' ଦୋଷ-ଗୁଣ ନାମକ କୌଣସି ବେମାରି ନାହିଁ । ଏପରି ଗଞ୍ଜାଖୋର୍ କଥା ପ୍ରଚାର କର ନାହିଁ ।' ଏ କଥା ଶୁଣି ଲୋକଙ୍କର ବିଶ୍ୱାସ ତା ଉପରୁ ଉଠିଗଲା । ବର୍ତ୍ତମାନ ସମସ୍ତଙ୍କ ମନରେ **ଗୋଟିଏ** ପ୍ରଶ୍ନ ଯେ ସେ ସ୍ତ୍ରୀଲୋକଟି କିଏ ?

"ସେ ସ୍ତ୍ରୀଲୋକଟି କିଏ ? ଏହି ପ୍ରଶ୍ନ ଆମ ଗାଁରେ ଏତେ ଚାଞ୍ଚଲ୍ୟ ସୃଷ୍ଟି କଲା ଯେ ବୋଧହୁଏ ଟଭର୍ଣ୍ଣର ଜେନେରାଲଙ୍କୁ ଗୁଳି କରିଥିବା ଯୋଗୁ ସମ୍ବାଦପତ୍ରମାନଙ୍କରେ ଯେଉଁ ଚର୍ଚ୍ଚା ଚାଲିଥିଲା, ସେ ଏତେ ଚାଞ୍ଚଲ୍ୟ ସୃଷ୍ଟି କରି ନ ଥିବ । ରୋଗୀକୁ ପଚରାଯାଇପାରୁନଥିଲା; କାରଣ ତାର ହୋସ୍ ନ ଥିଲା । କେମିତି ଜଣାପଡ଼ିବ ? ସେହି ଗାଁରେ ତ କେହି ଶର୍ଲକ୍ ହୋମସ୍ ନ ଥିଲେ । କିନ୍ତୁ ସମସ୍ତେ ଗୋଟିଏ ଗୋଟିଏ ଡିଟେକ୍‌ଟିଭ୍ । ଶେଷରେ ଗାଁ ବାହାରେ ଥିବା ଗୋଟିଏ ଛୋଟ କୁଡ଼ିଆରେ ରହୁଥିବା ନାଗୀ ଉପରେ ସମସ୍ତଙ୍କର ସନ୍ଦେହ ହେଲା । ଦିନେ ଗାଁଲୋକେ ଯାଇ ନାଗୀ ଘର ଉପରେ ବାଡ଼ଅଧିଆ ଆକ୍ରମଣ କଲେ । ଗାଁଲୋକେ ଭାବୁଥିଲେ ଯେ ଗାଁର ସବୁ ସ୍ତ୍ରୀଲୋକ ପତିବ୍ରତା, କେବଳ ନାଗୀକୁ ଛାଡ଼ି । ଲୋକମାନେ ଭୟ କରୁଥିଲେ ଯେ ସେମାନେ ଯଦି ନାଗୀ ଉପରେ ହାମଲା ନ କରନ୍ତି ଯେବେ ଗାଁର ସବୁ ସ୍ତ୍ରୀଙ୍କ ଉପରେ ସନ୍ଦେହ ହେବ । କନକ୍‌କାନ୍ତା ଗାଁର ସବୁ ମାଇପିଙ୍କ ସାଙ୍ଗରେ ବିଶେଷ କରି ବିଧବାମାନଙ୍କ ସାଙ୍ଗରେ ବହୁତ ମିଳାମିଶି ଚାଲୁଥିଲା । କିଏ ତାର ମୁଣ୍ଡ କୁଣ୍ଡାଇଦିଏ, କିଏ ତାର ଜାମା ସିଲାଇ କରିଦିଏ, କିଏ ସ୍ନେହରେ ତା କପାଳ ଚୁମ୍ବନ କରେ । ସମସ୍ତଙ୍କର ଭୟ ଥିଲା କାଳେ ଏଇ ବିପତ୍ତି ତାଙ୍କର ମୁଣ୍ଡରେ ଛାଟିବ । ସେଥିପାଇଁ ସମସ୍ତେ ମୁକ୍ତକଣ୍ଠରେ ଘୋଷଣା କରିଦେଲେ ଯେ ଯେଝା ଯେଝା ସ୍ତ୍ରୀମାନେ ସତୀ; ଅତଏବ ସମସ୍ତେ ଏକତ୍ରିତ ହୋଇ ନାଗୀ ଘରକୁ ଆକ୍ରମଣ କଲେ । କିଏ ଜାଣେ ସେଇ ରାତିରେ ଏମାନେ କଣ କଣ ଦେଇଥାନ୍ତେ । ସୌଭାଗ୍ୟବଶତଃ ସେ ସମୟରେ ରମନ୍ନା ଖୁବ୍ ପିଇକରି ନାଗୀ ପାଖରେ ଶୋଇଥିଲା । ଏଇ କୋଳାହଳ ଶୁଣି ସେ ହାତରେ କଟୁରି ଧରି ଗୋଟାଏ କୁହାଟ ଦେଲା—'ଆବେ କିଏ ଅଛ ଅଣ୍ଡିରା ଆସ ।' ତାର ଏହି ଚିତ୍କାର ଶୁଣି ସମସ୍ତେ ଭାବିଲେ ତାଙ୍କର ସନ୍ଦେହ ଅମୂଳକ । ସମସ୍ତେ ନିଜ ନିଜ ଘରକୁ ଫେରିଗଲେ ।

"ଏଥିମଧ୍ୟରେ କନକ୍‌କାନ୍ତା ଘରେ ତାର ବାପା ମା ବଡ଼ ଦ୍ୱିଧାରେ ପଡ଼ିଥିଲେ—କାରଣ ଯେବେଠୁଁ ତାକୁ ଜ୍ୱର ଆରମ୍ଭ ହେଲା ସେ ବାରମ୍ବାର 'ଶାରଦମ୍ମା' 'ଶାରଦମ୍ମା'

କହୁଥାଏ ।

"ଶାରଦାମ୍ମା ସେ ଗାଁରେ ସାକ୍ଷାତ ଶାରଦାଙ୍କ ଅବତାର ବୋଲି ଗଣାଯାଉଥିଲା । ଦେଖିବାକୁ ଯେପରି ସୁନ୍ଦର, ଗୁଣରେ ଆଦର୍ଶ ଗୃହିଣୀ ମଧ୍ୟ । ସେ ବଡ଼ ସମ୍ପନ୍ନ ପରିବାରର । ତାର ଗୋଟିଏ ପୁଅ । କନକ୍‌କନ୍ୟାର ଦୂର-ସମ୍ପର୍କୀୟା ମଧ୍ୟ । ହାଇସ୍କୁଲ ପଢ଼ା ଆରମ୍ଭ କରିବା ପରେ କନକ୍‌କନ୍ୟା ତାଙ୍କ ଘରେ ସପ୍ତାହକରେ ତନ୍ତନ ଥାଏ । ଆର୍ଥିକ ସାହାଯ୍ୟ ମଧ୍ୟ ବେଶ୍ ମିଳୁଥିଲା ।

"ପରପୁରୁଷ କଥା ତା ଆଗରେ କହିବାର ସାହସ ସମସ୍ତଙ୍କ କାହିଁ, ସତୀ ସୀତାଙ୍କୁ ଅଗ୍ନି ପରୀକ୍ଷା କରାଇଥିବାରୁ ରାମଚନ୍ଦ୍ରଙ୍କର ବି ନ ଥିଲା । ସେ ତ ଧର୍ମର ମୂର୍ତ୍ତି. ଗାଁଟାସାରା ତାକୁ ମା' ଭଳି ମାନୁଥିଲେ ।

"ପ୍ରଥମେ ପ୍ରଥମେ ଯେତେବେଳେ କନକ୍‌କନ୍ୟା ବାରମ୍ବାର ଶାରଦାମ୍ମାର ନାମ ବଳବଳୋଉଥିଲା ସେତେବେଳେ ଲୋକେ ଭାବୁଥିଲେ ଯେ ତାର ସତ୍ୟରେ କିଛି ହେଲା ହେଉଛି ବୋଲି ସେ ସେପରି ବଳବଳୋଉଛି । ଅଥବା ଭାବୁଛି ଯେ ଶାରଦାମ୍ମା ତା ପାଖରେ ରହିଲେ ତାର ରୋଗ ଦୂର ହୋଇଯିବ ।

"ଶାରଦାମ୍ମା କନକ୍‌କନ୍ୟାକୁ ଦେଖିବାକୁ ଦୁଇଥର ଆସିଥିଲା ଏବଂ କାନ୍ଦି କାନ୍ଦି ଫେରିଯାଇଥିଲା । ତା ଘରେ ନବରାତ୍ରି ପୂଜା ଏବଂ ବ୍ରାହ୍ମଣ-ଭୋଜନ ବିଧିପୂର୍ବକ ଚାଲିଥିଲା ଏବଂ ସେ ସେଥିରେ ବ୍ୟସ୍ତ ଥିଲା । ସେଥିପାଇଁ ସେ କନକ୍‌କନ୍ୟାକୁ ବେଶି ସମୟ ଦେଇପାରୁଥିଲା, ନ ହେଲେ ସେ ଦିନରାତି ଆଠପ୍ରହର ତା ପାଖରେ ବସି ରହନ୍ତା । ତାର ବ୍ୟସ୍ତତା ଓ ଦୟା ଦେଖି ଲୋକେ ଆଶ୍ଚର୍ଯ୍ୟ ହେଉଥିଲେ ।

"କିନ୍ତୁ ବୈଦ୍ୟଙ୍କ କହିବା ଅନୁସାରେ ଏଇଟା ଦୋଷଗୁଣ ନାମକ ରୋଗ ଏବଂ କନକ୍‌କନ୍ୟା ବରାବର ଶାରଦାମ୍ମାର ନାମ ନେଉଥିଲା—ଏଇ ଦୁଇଟି କଥାକୁ ଯୋଡ଼ି ତାର ବାପା-ମା ଠିକ୍ କଲେ ଯେ ଯେକୌଣସି ଉପାୟରେ ହେଉ ସେ ସ୍ତ୍ରୀର ସାହାଯ୍ୟ ନେଇ ପୁଅକୁ ବଞ୍ଚାଇବାର ଚେଷ୍ଟା କରିବାକୁ ହେବ । କିନ୍ତୁ ଶାରଦାମ୍ମାକୁ ଏ କଥା କପରି କୁହାଯିବ ?"

"ନାଗର ହୋଇ ଦୋଷଗୁଣ ଜ୍ୱରରେ ପଡ଼ିଥିବା ନିଜ ପୁଅକୁ ଉଠାଇ ତାର ମା ପଚାରିଲା—'ପୁଅ, ତୁ ବାରମ୍ବାର ଶାରଦାମ୍ମା ନାଁ କାହିଁକି କହୁଛୁ ? ସତ କହ । ଆମେ ଆଉ କାହାରିକୁ କହିବୁ ନାହିଁ ।' ବହୁତ ପଚାରି ପଚାରି ସେ କୌଣସି ଉତ୍ତର ଦେଲା ନାହିଁ । ବୋଧହୁଏ ସେ ହୋସ୍‌ରେ ନ ଥିଲା, କିମ୍ବା କହିବାକୁ ଚାହିଁ ନ ଥିଲା ।

"ଜର ବଢ଼ିଚାଲିଥିଲା । ସମସ୍ତଙ୍କୁ ଲାଗୁଥିଲା ଯେ ହୁଏତ ତା ଆୟୁଷ ଆଉ ଚବିଶିଘଣ୍ଟା ଟପିବ ନାହିଁ । ତାର ମା ହତାଶ ହୋଇ ସକାଳୁ ଉଠି ଶାରଦାମ୍ମାର ଘରବାର ଦ୍ୱାର ପାଖରେ ଯାଇ ବସିଲା ଶାରଦାମ୍ମାର ଉଠିବା ପ୍ରତୀକ୍ଷାରେ ।

'ଆପଣ ? ମୁଁ ଭାବିଲି ଆଉ କିଏ । କନକ୍‌କନ୍ୟାର ଅବସ୍ଥା କପରି ?'

'କଣ କହିବି ମା ! ଗୋପାଲମ୍ କହିଲେ, ବର୍ତ୍ତମାନ ଆଉ କିଛି ଆଶା ନାହିଁ । କାଲି

ପରଦିନ ...' କହି ସେ କାନ୍ଦିପକାଇଲା । ଶାରଦାମ୍ମା ତାକୁ କୁଣ୍ଢେଇ ପକାଇ ସାନ୍ତ୍ୱନା ଦବାକୁ ଲାଗିଲା ।

'କନକ୍‌ଜ୍ୟୋର ମା ଝୁଣ୍ଟ କରି ମୋତେ ପୁଅ ଦାନ କର୍‌, ମା' କହି ଶାରଦାମ୍ମାର ପାଦ ଦୁଇଟିକୁ ଧରି ପଡ଼ିଗଲା । ଶାରଦାମ୍ମା ଆଶ୍ଚର୍ଯ୍ୟ ହୋଇ ତାକୁ ଉଠାଇ ପକାଇଲା ଏବଂ କହିଲା—'କଣ କରିବା କୁହ ? ଭଗବାନଙ୍କ ଉପରେ ଭରସା ରଖ, କିଛି ଚିନ୍ତା କରିବାର ନାହିଁ । ମୁଁ ଯାଇ ଦେଖି ଆସିବି—ଯେପରି କି ସେ କିଛି ଜାଣିନାହିଁ ।'

'ଏପରି କଥା କୁହନ୍ତୁ ନାହିଁ—ମା, ବର୍ତ୍ତମାନ ଆପଣ ହିଁ ଭରସା । ମୋର ଏକୋଇର ବଳା । ଯଦି ସେ ନ ବଞ୍ଚେ ତେବେ ମୁଁ କଣ ନେଇ ଜୀବନ ରଖିବି ?'—କହି ସେ କହିଁ କହିଁ ହୋଇ କାନ୍ଦି ଉଠିଲା ।

'କଣ କରିପାରିବି ଭଉଣୀ ? ମୁଁ ତ ମଣିଷ । ଦେବୀଙ୍କର ସିନ୍ଦୂର ଦେଉଛି, ନେଇ ଯାଅ । ଭଗବାନ ବଡ଼ଲୋକ । ତୁମକୁ ଦୟା କରିବେ । ଧୈର୍ଯ୍ୟ ଧର ।' 'ଏମିତ ସେମିତ ଜ୍ୱର ହୋଇଥିଲେ ଚିନ୍ତା କରିବାର କିଛି କାରଣ ନଥିଲା । ଔଷଧ ଦିଆ ହୋଇଥାନ୍ତା । ସେ ଭଲ ହୋଇ ଯାଆନ୍ତା । କିନ୍ତୁ ଲୋକେ କହୁଛନ୍ତି ଏ 'ଦୋଷଗୁଣ' ରୋଗ । କେଜାଣି କେଉଁ ସ୍ତ୍ରୀ ଏଭଳି କରିଛି ।'

'ସେ ଗୋପେୟା କିଏ ? ତାକୁ କଣ ଜଣା । ତମେ ସବୁ ଡାକ୍ତରୀ ଔଷଧ କାହିଁକି ବନ୍ଦ କରିଦେଲ ? ପଇସା କଥା ଯଦି, ଆସି ଆମ ପାଖରୁ ନେଇଯାଇ ଥାଆନ୍ତ । ଦୋଷଗୁଣ—ଧୋକା ମାରି ତାକୁ । ଏଡ଼େ ଗ୍ରେଟ ପିଲାଟିଏ, ତାକୁ ଦୋଷ ଗୁଣ ? ଆମକୁ ସମସ୍ତେ ପାଗଳ ଭାବିବେ । ତମର ସବୁ କପରି ବିଶ୍ୱାସ ହେଲା ?'

'ନାହିଁ, ମା, ଏ ତ ଦୋଷଗୁଣ । ସବୁ ତାର ଲକ୍ଷଣ । ଆଉ କୌଣସି ଜ୍ୱର ହେଇଥିଲେ ଏପରି ସାଙ୍ଘାତିକ ହୁଅନ୍ତା ନାହିଁ ।'

'ତେବେ ଗୋପେୟା ତାକୁ ଠିକ୍ କାହିଁକି କରୁନାହିଁ ?'

'କେମିତି ଭଲ କରିବ ? ସେଥିପାଇଁ ତ ଔଷଧ ମିଳିବା ଦରକାର । କିଏ ଏପରି ସ୍ତ୍ରୀ ଅଛି-ଯେ ତାର ନିଜ ଦୋଷ ସ୍ୱୀକାର କରି ମୋ ପୁଅକୁ ବଞ୍ଚାଇ ମୋର କୁଳରକ୍ଷା କରିବ ।' ଶାରଦାମ୍ମା ଭଲ କରି ଦୁଇପଦ ଶୁଣାଇ ଦେଇ ପାରିଥାନ୍ତା; କିନ୍ତୁ ନିଜର ଅପମାନ ଆଶଙ୍କାରେ ସେ ସମ୍ଭାଳି ଯାଇ କହିଲା ।

'କନକ୍‌ଜ୍ୟୋକୁ ପଚାରୁ ନାହଁ ?'

'ପଚାରିଛି, ସେ ତ ହୋସରେ ନାହିଁ ।' ପୁଣି ସାହସ କରି ସେ କହିଲା, ଯେଉଁ ଦିନଠାରୁ ଜ୍ୱର ହେଉଛି ସେ ଖାଲି ଗୋଟିଏ ନାଁ କହୁଛି—ଶାରଦାମ୍ମା, ପୁଣି କିଛି ସମୟ ରହିଯାଇ ସେ କହିଲା, 'ଯେତେବେଳେ ପଚାରି ସେ ଖାଲି ଶାରଦାମ୍ମାର ନାଁ କହୁଛି ।'

'ବିଚରା ମତେ ଭାରି ଭଲପାଏ । ଭଲ ପିଲାଟିଏ । ଯେଉଁ କାମ ଦିଅ—ମନଦେଇ କରେ ।' ଏହା କହି ଶାରଦାମ୍ମା କାନ୍ଦିପକାଇଲା ।

କନକ୍‌କସ୍ୟାର ମା ସମ୍ଭାଳି ପାରିଲା ନାହିଁ; କାମ କରେଇବା ବାହାନାରେ ଆସ୍ତେ ଆସ୍ତେ ତା ରାଗ ପଦାକୁ ଫୁଟି ବାହାରିଲା ।

'ସେ ତ ବାରମ୍ବାର କହୁଛୁ, ଶାରଦାମ୍ମା, ମତେ ହଇରାଣ କରନା, ମୁଁ କିଛି ଜାଣି ନାହିଁ । ମୁଁ ସେପରି ପିଲା ନୁହେଁ ।'

'ହଁ, ମୋର ମନେ ପଡ଼ିଲା । ସ୍ୱଶହନ ଥିଲେ ମୁଁ ଆଲମାରିରେ ଛଅ ଟଙ୍କା ରଖିଥିଲି । ପାଇଲି ନାହିଁ । ମୁଁ ଭାବିଲି କା,ଳ ତାକୁ କିଛି ଜିନିଷ କିଣିବାକୁ ଦେଇ ଭୁଲିଯାଇଛି । ମୁଁ ତାକୁ ସେଇ କଥା ପଚାରିଥିଲି । ବୋଧହୁଏ ତାର ସେଇ କଥା ସ୍ମରଣ ଅଛି । ତା ମନଟା କେତେ ସଫା !'

'ବର୍ତ୍ତମାନ କନକ୍‌କସ୍ୟାର ମା ନାଗ୍ଭର ହୋଇ କହିବାକୁ ଆରମ୍ଭକଲା—ପାପ ପୁଣ୍ୟ କଥା ଭଗବାନ୍ ଜାଣନ୍ତି । ମା, ଆପଣଙ୍କୁ ଖୋଲି କରି କହିବାକୁ ଜିଭ ନେଉନ୍ତି ନାହିଁ । ଯେଉଁ ପତିବ୍ରତା ନାରୀ ହୁଉନା କାହିଁକି, କେତେବେଳେ—କାହିଁକି—କି ବିଗ୍ଭର ମନରେ ଉଠିବ ତାହା କହିବା କଠିନ । ଆପଣଙ୍କୁ ଆପଣଙ୍କର ରକ୍ତ ଦେଇ ମୋ ପୁଅର ଜୀବନ ବଞ୍ଚାଇବାକୁ ହେବ । ସେ ଆପଣଙ୍କ ନାଁ କହୁଛି । ମା, ମୁଁ ଏ କଥା କାହାରିକୁ କହିବ ନାହିଁ । ଏ କଥା ଆପଣଙ୍କ ଓ ମୋ ଭିତରେ ରହିବ । ଜୀବନ ସାରା ଆପଣଙ୍କ ଘରେ ଖଟିବି ।'

'ବର୍ତ୍ତମାନ ମଧ୍ୟ ଶାରଦାମ୍ମା ଏପରି ବ୍ୟବହାର କଲା ଯେପରି ସେ କିଛି ଜାଣିନାହିଁ । ମୋ ରକ୍ତ ନେଇ କଣ କରିବ ? ଡାକ୍ତରଖାନା ଲୋକ କଣ ରକ୍ତ ଦବାକୁ ଗ୍ଭହୁଛନ୍ତି ?—'

'ନାଁ ଏହା ଦୋଷଗୁଣ ରୋଗ ନା ?' ବର୍ତ୍ତମାନ ଶାରଦାମ୍ମା ବୁଝିଗଲା ଏବଂ ଖୁବ୍ ରାଗିଗଲା— 'କଣ କହିଲୁ ! କଣ ହେଲା ।' ସୂର୍ଯ୍ୟ ଉଦୟ ସମୟରେ ଆକାଶ ଯେପରି ରକ୍ତମ ଦେଖାଯାଏ ଶାରଦାମ୍ମାର ଆଖି ସେହିପରି ନାଲି ହୋଇଗଲା ।

'ଯେଉଁ ରକମର ଲୋକ ହୁଉ ନା କାହିଁକି—କେବେ କେବେ ଭୁଲ ହୋଇଯାଏ । ମୁଁ ଆପଣଙ୍କୁ କିଛି କହୁନାହିଁ । ଆପଣଙ୍କଠାରୁ ମୋ ପୁଅର ଜୀବନଭିକ୍ଷା ମାଗୁଛି ।' —ସେ କହୁ କହୁ ଶାରଦାମ୍ମା ରାଗିଉଠିଲା 'ପାଟି ବନ୍ଦ କର । ଏଠୁ ବାହାରି ଯା, ଆଚ୍ଛା, ତାହେଲେ କଥାଟା ଏଇଆ । ମତେ ଏଇଆ ଭାବିଛୁ ତୁ । କନକ୍‌କସ୍ୟା ତୋର ଯେମିତି ପୁଅ—ମୋର ମଧ୍ୟ ସେହିପରି । ଯା—ଏଠୁ ବାହାର । ଆଉ କାହା ଆଗରେ କହିବୁ ନାହିଁ । ତୋର ମୁଣ୍ଡ ଖରାପ ହୋଇଗଲାଣି । ସିଧା ସିଧା ଘରକୁ ଗ୍ଭଲିଯା । କିଏ ଶୁଣିଲେ ତୋ ମୁହଁକୁ ଗରମ ପାଣି ଫୋପାଡ଼ିବ, ଯା—ଯା—।' କହି ତାକୁ ବାହାରକୁ ବାହାର କରି ଦେଇ ଶାରଦାମ୍ମା ଭିତରକୁ ଗ୍ଭଲିଗଲା ।

"ସେହି ଦିନ ସଂନ୍ଧ୍ୟା ଯାଏଁ ଗାଁବାଲା କେହି କନକ୍‌କସ୍ୟା ଘର ଆଡ଼କୁ ଗଲେ ନାହିଁ । କେଜାଣି କାହାକୁ ଦେଖି ଦେଖି କାହା ନାଁ କହିଦବ ଏଇ ଭୟରେ । ସ୍ତ୍ରୀଲୋକମାନେ ତ ଜମା ସିଆଡ଼େ ଗଲେ ନାହିଁ । ସନ୍ଧ୍ୟା ହୁଉ ହୁଉ କନକ୍‌କସ୍ୟାର ଅବସ୍ଥା ଗୁରୁତର

ହୋଇପଡ଼ିଲା । ମା, ବାପ ହତାଶ ହୋଇ ପଡ଼ିଲେ । ଅଧରାତକୁ ସେ ବୁଢ଼ୀ ଶାରଦାମ୍ମାର ଘରକୁ ଯାଇ ତା ଦୁଆର ଖଡ଼ଖଡ଼ କରି ଗାଳି ଦବାକୁ ଲାଗିଲେ —'ତୁ ମୋ ପୁଅକୁ ଖାଇଲୁ··· କୁଳଟା, ବେଶ୍ୟା – ସାଦାସିଧା ଦେଖି ମୋର ପୁଅକୁ ଖାଇଲୁ । ତତେ ଆଉ କେହି ମିଳିଲେ ନାହିଁ । ଅଲୋ, ଏତେ ଅସମ୍ଭାଳ ହେଲା ଯଦି ବୁଲିଗଲୁ ନାହିଁ—ବାହାରେ ମୂଲିଆ ଭର୍ତ୍ତି ହୋଇଛନ୍ତି ।"

'ଶାରଦାମ୍ମାର ସ୍ୱାମୀ କବାଟ ଖୋଲି କଥା କଣ ବୁଝିଲା । କନକ୍‌କସ୍ଥାର ମା ବାପା ତା ଗୋଡ଼ ଧରି ଗୋଡ଼ତଳେ ପଡ଼ିଗଲେ । ତାଙ୍କ ପଛରେ ବୈଦ୍ୟ ଗୋପେୟା ବି ଠିଆହୋଇଥିଲା । ଶାରଦାମ୍ମା ମୋଟେ ବାହାରକୁ ବାହାରିଲା ନାହିଁ । ତାର ସ୍ୱାମୀର ଏମାନଙ୍କ କଥାରେ ଟିକେ ହେଲେ ବିଶ୍ୱାସ ହେଲା ନାହିଁ । ବିଶ୍ୱାସ ବା ସନ୍ଦେହ କଲେ ବି କିଏ ଏପରି ପୁରୁଷ ଅଛି ଯେ ନିଜର ବିଶ୍ୱାସକୁ ବାହାରେ ପ୍ରକାଶ କରିବ ? ଘର ଭିତରକୁ ଯାଇ ସେ ତା ସ୍ତ୍ରୀକୁ ଏ ବିଷୟରେ ପଚାରିଲା ।

'ଏ କଣ ... ତମେ କି ପାଗଳ ହେଲ ନା କଣ ? ସେମାନେ ତ ପାଗଳ । ତାଙ୍କୁ ସିନା ମୁହେଁ ମୁହେଁ ବତାଇ ଗୁଡ଼ିଥାନ୍ତି । ମୋ କଥା ତ ହେଲା ନାହିଁ । ଓଲଟି ମତେ ଆସି ପଚାରୁଛ ।'

'କିଏ ଜାଣେ—ସ୍ତ୍ରୀଲୋକମାନଙ୍କୁ କଣ ବିଶ୍ୱାସ ? ଯଦି କିଛି ନାହିଁ··ତେବେ ଏମାନେ ସବୁ ତୁମକୁ କାହିଁକି ଅବିଶ୍ୱାସ କରୁଛନ୍ତି ? ଏଥିରେ ସତ୍ୟତା ଥାଉ ବା ନ ଥାଉ, ଯଦି ସେ ପିଲାଟି ମରିଯିବ ତେବେ ସାରା ଜୀବନ ତୁମଠି ସେ କଳଙ୍କ ଲାଗିରହିବ । ଅପମାନ ତ ଯାହା ହବାର ହେଲାଣି । ବର୍ତ୍ତମାନ ରକ୍ତ ଦେଲେ କ୍ଷତି କଣ ? ସେ ତ ବଞ୍ଚିବ ନାହିଁ । ଲୋକେ ଭାବିବେ, ତମର କିଛି ଦୋଷ ନ ଥିଲା···'

ସ୍ୱାମୀ ବୁଝାଇଲା ।

'ଛିଃ, ଛିଃ । ଏପରି କଥା ମୋ ଆଗରେ କୁହ ନାହିଁ । ଯଦି ମୁଁ ରକ୍ତ ଦିଏ ତେବେ ବୁଝାଯିବ ଯେ ମୁଁ ଦୋଷ ସ୍ୱୀକାର କରୁଛି । ସେ ବୋକା ମୋ ନାଁ କାହିଁକି ନେଉଛି ? ତାକୁ ନେଇ ଏ ଲୋକ··· ।'

'ସବୁ ତୁମର ପ୍ରାରବ୍ଧ । କଣ କରିଯିବ । ତୁମେ ନିଜେ ଚିନ୍ତା କର । ଏମାନଙ୍କ କଥା ଛାଡ଼—ମୋ କଥା ଶୁଣ । ମୋ କଥାରେ ରକ୍ତ ଦେଇଦିଅ ।' ଏହିପରି ସ୍ୱାମୀ ସ୍ତ୍ରୀକୁ ବୁଝାଇବାକୁ ବହୁତ ଚେଷ୍ଟା କଲେ । କିନ୍ତୁ ସେ ସେକଥା ମାନିଲା ନାହିଁ ।

''କିନ୍ତୁ ତା ସ୍ୱାମୀ ବି ନିଜ ଜିଦ୍‌ରୁ ନ ଟଳିଲା । କାହାରି ଜୀବନ ବଞ୍ଚାଇବାରେ ଏଇଟା ତ୍ୟାଗ ବୋଲି ଧରିନବାକୁ ବୁଝାଇଲା । ପୁରାଣ-ଯୁଗର ପତିବ୍ରତା ସ୍ତ୍ରୀମାନଙ୍କର ଆଖ୍ୟାନ ବଖାଣିଲା । ଶରୀରରୁ ମାଂସ କାଟିକରି ଦେଇଥିବା ଶିବି ଏବଂ ଚମଡ଼ା କାଟି ଦେଇଥିବା କର୍ଣ୍ଣ ରାଜାଙ୍କର କଥା ସ୍ମରଣ କରାଇଲା । କନକ୍‌କସ୍ଥାର ବାପ, ମା ଓ ବୈଦ୍ୟ ଗୋପେୟାଙ୍କୁ ଶପଥ କରାଇଲା ଯେ ସେ ଏ କଥା ବାହାରେ ପ୍ରକଟ କରିବେ ନାହିଁ । ଏହା ପରେ ମଧ୍ୟ ଶାରଦାମ୍ମା ରାଜି ହେଲା ନାହିଁ । ଶେଷରେ ଗୋଟୁ

ଭଳି ତାର ହାତଗୋଡ଼ ବାନ୍ଧିପକାଇ ସେମାନେ ତାର ରକ୍ତ ବାହାର କରି ନେଇ ଗଲେ । ଅଞ୍ଜନ ତଆରି କରି ପୁଅର ଆଖିରେ ଲଗାଇଲେ ।

"ସପ୍ତାହକ ମଧ୍ୟରେ କନକ୍‌ଜାୟା ଭଲ ହୋଇଗଲା ଓ ସ୍କୁଲ୍ ଯିବାକୁ ଆରମ୍ଭ କଲା···" ଏତକ କହି ଡାକ୍ତର କାମେଶ୍ୱର ରାଓ ଚୁପ୍ ହୋଇଗଲେ ।

"ଡାକ୍ତର ସାହେବ, ଆପଣଙ୍କ ମତରେ କଣ ଦୋଷ-ଗୁଣ ବୋଲି କୌଣସି ବେମାରି ଅଛି ?" ଭେଙ୍କଟପ୍ପୟ୍ୟା ପଚାରିଲା ।

ସମୁଦ୍ର ଉପରେ ବାଦଲ ଘୋଟିଯାଇଛି । ସୁଲୁସୁଲିଆ ପବନ ଲହରି ଉପରେ ଖେଳି ଯାଉଛି । ସମୁଦ୍ରର ବିଭିନ୍ନ ଶାଖାର ଅଧିକାରୀମାନଙ୍କ ପାଇଁ ରାସ୍ତା କଲା ପରି ଗୋଟିଏ ଗାର ସମୁଦ୍ର ମଝିରେ ମେଲିଯାଉଛି । ପବନ କମିଆସୁଛି ।

"ବେମାରି ନାହିଁ କାହିଁକି ? ନିଶ୍ଚୟ ଅଛି ।"

"କିନ୍ତୁ ଆମ ବହିରେ ତ ନାହିଁ"—

"ଗୋଟିଏ କଥା ବୁଝିରଖନ୍ତୁ—, ପୁଣି ବୁଝାଇବା ନିରର୍ଥକ ହେବ । ଯେଉଁ-ବେଳେ ଆପଣମାନେ ଡାକ୍ତର ହୋଇଯିବେ ସେତେବେଳେ କିଛିଦିନ ମଧ୍ୟରେ ବହି ଉପରୁ ଆପଣଙ୍କର ବିଶ୍ୱାସ ଚାଲିଯିବ । ଯଦି ଏପରି ନ ହୁଏ—ତେବେ ଆପଣ ବୋକା ବୋଲି ପରିଚିତ ହେବେ ।"

"ତେବେ ଏ ସମସ୍ତ ଶିକ୍ଷା କୋଉଥି ପାଇଁ ?"

"ଏହା ଜାଣିବା ପାଇଁକି ଆମେ କଣ କରିବା ଉଚିତ । ଏହା ବୁଝିବା ପାଇଁକି ଯାଇ ଆମେ ବହୁତ କମ୍ ବୁଝିଛୁ ।"

"ତେବେ କଣ ସେଇ ଲକ୍ତ ତାର ଚିକିତ୍ସା ?"

"ବର୍ତ୍ତମାନ ପର୍ଯ୍ୟନ୍ତ ତ ଏତିକି ଜାଣିଛି ।"

"ତେବେ ଆମେ କିପରି ଜାଣିବୁ ଯେ ଏହା ଦୋଷ-ଗୁଣ ବୋଲି ?"

"ଜାଣି କାହିଁକି ଯିବ ?"

"ମାନେ—"

"ଜୀବନରେ ଥରେ ଚାଖିବା ଲୋକ ଦୋଷ ଗୁଣର ଚିକିତ୍ସା ପାଇଁ ଡାକ୍ତରଙ୍କ ପାଖକୁ ଆସିବେ ନାହିଁ ।"

"ସାଧାରଣ ଜ୍ୱର ଭାବି ଯଦି ଆମ ପାଖକୁ ଆସନ୍ତି ତ··· ।"

"ଆସିଯିବେ ତ ରୋଗୀ ମରିଯିବ । ସେଥିରେ ଆପଣଙ୍କର କଣ କ୍ଷତି ? ଆପଣଙ୍କ ପାଉଣା ତ ଆପଣଙ୍କୁ ମିଳିଯିବ ।"

"ତାହେଲେ ଡାକ୍ତରର ଅପଯଶ ହେବ ନାହିଁ ?"

"କିଛି ହେବ ନାହିଁ । ଆମେ କହିବୁ ଯେ ରୋଗୀର ପରମାୟୁ ପୂରିଥିଲା । ଆମେ କଣ ଭଗବାନ ହୋଇଛୁ, ତାକୁ ବଞ୍ଚାଇ ରଖିବୁ ।"

"ତେବେ ଆମ ଦେଶ ପାଇଁ ଆୟୁର୍ବେଦ ଔଷଧ ଅଧିକ ଉପଯୋଗୀ ?"

"ନାହିଁ; କାରଣ ଆୟୁର୍ବେଦ ବୈଦ୍ୟଙ୍କୁ କଣ କରିବା ଉଚିତ, କଣ ନ କରିବା ଉଚିତ, ସେ ବିଷୟରେ ଜଣାନାହିଁ ।"

ଏଲିଜାବେଥ କହିଲା - "ବର୍ତ୍ତମାନ ସେ ଚର୍ଚ୍ଚା ଛାଡ଼ । ଆପଣଙ୍କର କାହାଣୀ ଶେଷ ହୋଇ ଗଲା ତ; ନା ଆହୁରି ବାକି ଅଛି ? ମତେ ଯାଇ ଦେଖିବାକୁ ପଡ଼ିବ ସେ ରୋଗୀର ରକ୍ତ ବନ୍ଦ ହେଲାଣି କି ନାହିଁ ।"

"ଆଉ ଅଳ୍ପ ବାକି ଅଛି ।"

"ତେବେ ଏସବୁ ସୁଆଙ୍ଗ ସେଇ ସତୀ-ଶିରୋମଣୀର କୃତ" — ନର୍ସ ବଲାତ୍କା ଆଶ୍ଚର୍ଯ୍ୟ ହୋଇ କହିଲା ।

"ସୁଆଙ୍ଗ କଣ ଦେଖାଇଲା ? ଯେପରି ସବୁ ଲୋକମାନେ କରନ୍ତି ସେ ସେହିପରି କରିଥିଲା । ସେ ଭାବି ନ ଥିଲା ଯେ ତାହାର ପରିଣାମ ଏପରି ହେବ । ଏହା ତାର ଦୁର୍ଭାଗ୍ୟ ।"

"କିନ୍ତୁ ଯେବେ ତାର ଯୋଗୁଁ ଗୋଟିଏ ନିଷ୍ପାପ ପିଲାର ପ୍ରାଣ ଯାଉଥିଲା ଏବଂ ବିଚାରା ମା-ବାପ କାନ୍ଦୁଥିଲେ ତେବେ ତାର ହୃଦୟ କେତେ କଠୋର ହୋଇଥିବ ? ସେ ମଣିଷ ନୁହେଁ, ଡାକ୍ତାଣୀ ।"

"ଏ ପରିସ୍ଥିତିର ବାହାରେ ଥାଇ ଦୂରରୁ ଗପ ଶୁଣୁଥିବା ଲୋକଙ୍କୁ ତ ସେମିତି ଲାଗିବ । କିନ୍ତୁ ନିଜକୁ ତାର ଦଶାରେ ରଖି ଚିନ୍ତା କଲେ ଜାଣିପାରିବା ଆମେ ତା'ଠାରୁ ଅଧିକ ଉଦାରତା ଦେଖାଇ ପାରିବୁ କି ନାହିଁ । ପ୍ରାୟ ତିରିଶି ବର୍ଷର ପ୍ରୌଢ଼ା । ସେ ଖୁବ୍ ମାନ-ସମ୍ମାନ ସହିତ ... ।"

"ଏପରି ସ୍ତ୍ରୀଲୋକକୁ ସେପରି କାମ କରିବାର ନ ଥିଲା ।"

"ନିର୍ବୋଧ ବାଳକ ସାଙ୍ଗରେ..."

"କିଏ ଜାଣେ, ପ୍ରେରଣା କାହା ଆଡ଼ୁ ମିଳିଥିଲା ? ପିଲାଠାରୁ ନା ସେ ସ୍ତ୍ରୀଠାରୁ ? କାହାକୁ ଜଣା ।"...

"ସେ ତ ସ୍କୁଲ୍ ଯାଉଥିବା ଛୋଟିଆ ପିଲାଟା । ସେ କାହିଁକି ଜୋର୍ କରନ୍ତା ।"

"ତାର ବି ପରିବାର ଥିଲା, ସ୍ୱାମୀ ଥିଲା, ପୁଅଟିଏ ଥିଲା । ଦୁଇଟି ଝିଅ ଥିଲେ । ତିନୋଟି ସନ୍ତାନର ଜନନୀ ସେ । କନିଷ୍ଠ ପୁଅ ବୟସର ।"

"ଆପଣଙ୍କର କଣ ବିଚାର, ଡାକ୍ତର ?"

"ମୁଁ କହିପାରିବି ନାହିଁ । ତେବେ ନିଜର ଅନୁଭୂତିରୁ ମୁଁ କହିପାରେ..."

"ନିଜ ଅନୁଭବର ଆବଶ୍ୟକତା ନାହିଁ । ଆମ ପାଖକୁ ଯେଉଁ ରୋଗୀ ଆସନ୍ତି ତାଙ୍କର ବେମାରି କଣ ବୁଝି, ବହିରେ ଲେଖାହୋଇଥିବା ଔଷଧକୁ ଲେଖିଦେଲେ କୌଣସି ଅନୁଭବ ହୁଏ ନାହିଁ । କିନ୍ତୁ କୌଣସି ଲୋକ ଆମ ଉପରେ ବିଶ୍ୱାସ ରଖି ଆମ ସମ୍ପର୍କରେ ଆସିବା ପରେ ବେମାର ହୋଇପଡ଼ିଲେ ଏହା ଦେଖିବା ଉଚିତ ସେ ସେ କେଉଁ ପରିସ୍ଥିତିରେ ଏବଂ କାହିଁକି ବେମାର ପଡ଼ିଲା । ଖାଲି ଔଷଧ ଦେଇଦେଲେ

ଚଳିବ ନାହିଁ । ଆମେ ତାର ଶାରୀରିକ ଅବସ୍ଥା, ଖାଇବା-ପିଇବାର ଅଭ୍ୟାସ ଏବଂ ସବୁଠୁଁ ବଳି ତାର ମନ—ଏଇ ସବୁ ଆ ଭଲଭାବରେ ଜାଣିବା ଦରକାର । ବୈଦ୍ୟ ମାନେ କଣ ? କେତେ ଗମ୍ଭୀର ଅଟେ ଏହି ବାଳକ !"

"ଯଦି ଏଘର ଦେଖିବାକୁ ଲାଗୁ ତ ଆମେ କିଛି କରିପାରିବୁ ନାହିଁ ।"...

"କରିପାରିବୁ ନାହିଁ ? ଚାରି ଭାଗରୁ ତିନିଭାଗ ଲୋକ ଆମ ପରାମର୍ଶ ମୁତାବକ ଖାଦ୍ୟ ଖାଇବାର ଅବସ୍ଥାରେ ନାହାନ୍ତି । ଏସବୁ କଥା ଛାଡ଼ । ମୁଁ ତ ମୋର ଅନୁଭୂତି ମୋର ରୋଗୀମାନଙ୍କଠାରୁ ପାଏ ।" କହି କାଦମ୍ବରୀ ଦୂରେ ସମୁଦ୍ର ଆଡ଼କୁ ଚାହିଁ-ରହିଲେ ।

"ସିଆଡ଼େ ଦେଖୁଛ ସେ ଲହରୀମାଳ, ତା ଉପରେ ସେ ଫେଣ । ଯଦି ସେଇଗୁଡ଼ିକ ବେମାର ବୋଲି ଧରିନିଆଯାଏ ତେବେ ଆପଣମାନେ କେତେ ଲହରୀ ରୋକି-ପାରିବେ, କେତେ ଫେଣ ବାହାର କରିଦେଇ ପାରିବେ ?"

ନର୍ସ ବାଲ୍ଲମା କହିଲା "ମୋର ଜଲଦି ଯିବାର ଅଛି । କାହାଣୀ ଶେଷ କରିବେ ନାହିଁ ?"

"ତା ପରେ ? ତା ପରେ ଏହି କନକ୍‌କନ୍ୟା ଗୋଟିଏ ଅଜବ୍ ପୋକ ହୋଇଗଲା । ସ୍କୁଲରେ ଅଧ୍ୟାପକ କେବଳ 'କନକ୍‌କନ୍ୟା' ବୋଲି ଡାକୁ ଡାକୁ ଆମକୁ ହସ ମାଡ଼େ । ଘୃଣା ମଧ୍ୟ ହଉଥିଲା । କେତେକଙ୍କର ତା ଉପରେ ଦୟା ମଧ୍ୟ ଆସୁଥିଲା ।"

"କେମିତି ହେଲା ସାଙ୍ଗ—କେମିତି କଣ କଲୁ ?" ଏହିପରି ପ୍ରଶ୍ନରେ ଆମେ ତାକୁ ଅପ୍ରସ୍ତୁତ କରିଦଉଥିଲୁ । ସେ ଚିଡ଼ିଯାଇ କହୁଥିଲା, 'ଆରେ-ଯା-ଯା ।' ଆଉ କଣ ବା କହିପାରନ୍ତା । ଶାରଦାମ୍ବା ଘରଆଡ଼େ ଯିବା ନାଁ ପର୍ଯ୍ୟନ୍ତ ଧରୁ ନଥିଲା । ସେ ଯୁଆଡ଼େ ଯାଉଥିଲା ପିଲମାନେ ତା ପଛରେ 'ଶାରଦାମ୍ବା' 'ଶାରଦାମ୍ବା' କହି ପାଟିକରୁଥିଲେ । ଗାଁରେ କେହି ତାକୁ ନିଜ ଘରେ ପୂରାଉ ନଥିଲେ । କିଛି ଦିନ ମଧ୍ୟରେ ସେ ମା-ବାପାଙ୍କୁ ଛାଡ଼ି, ଗାଁ ଛାଡ଼ି କୁଆଡ଼େ ଚାଲିଗଲା ।"

"ଆଉ ଫେରିଲା ନାହିଁ ?"

"ନାହିଁ । ତା ପର ଦିନଠାରୁ ଶାରଦାମ୍ବାର ସ୍ୱାମୀ ତା ସହିତ କପଟ ବ୍ୟବହାର କରିବାକୁ ଆରମ୍ଭ କଲା, ସେ କଥା ଆମେ ଅତି ସହଜରେ ଅନୁମାନ କରିପାରିବା । ଚମଡ଼ା କାଟି କୁଣ୍ଡଳ ଦାନ ଦେଇଥିବା କର୍ଣ୍ଣ ଓ ଅସ୍ଥି ଦାନ ଦେଇଥିବା ଦଧୀଚିଙ୍କର କି ଦୁର୍ଦ୍ଦଶା ହୋଇଥିଲା ଜଣାନାହିଁ; କିନ୍ତୁ ଶାରଦାମ୍ବାର ସ୍ୱାମୀ ମନରେ ତ ପୂରା ବିଶ୍ୱାସ ଥିଲା ଯେ କନକ୍‌କନ୍ୟା ବଞ୍ଚିବ ନାହିଁ ଏବଂ ତା ସ୍ତ୍ରୀର ମର୍ଯ୍ୟାଦା ସମସ୍ତଙ୍କ ଆଖିରେ ଆହୁରି ଉଜ୍ଜ୍ୱଳ ହୋଇଉଠିବ । ଯଦି ସୀତା ଅଗ୍ନିପରୀକ୍ଷା ବେଳେ ଜଳିପୋଡ଼ି ଯାଇଥାନ୍ତେ ତ ଶ୍ରୀରାମଙ୍କର କଣ ଦଶା ହୋଇଥାନ୍ତା ? ଯଦି ଅର୍ଦ୍ଧ-ଦଗ୍ଧ ସୀତା ବାହାରକୁ ବାହାରି ଆସିଥାନ୍ତେ ତ ଶ୍ରୀରାମ କଣ କରିଥାନ୍ତେ ? ସାରା ଗାଁରେ ଉପହାସ ଓ କଳଙ୍କ ରଟିଗଲା ।

"କୌଣସି ନା କୌଣସି ବାହାନା କରି ତା ଘରକୁ ଯାଇ ତାକୁ ଦେଖିବା ସ୍ତ୍ରୀ-ଲୋକମାନଙ୍କର ସଂଖ୍ୟା ବଢ଼ିଗଲା । ସେମାନଙ୍କର ତା ପ୍ରତି ଥିବା ଉଚ୍ଚ ଧାରଣା ଓ ସମ୍ମାନ ଲୋପ ପାଇଗଲା ।

"ହଠାତ୍ ସେ ସେହି ଗାଁ ଛାଡ଼ି କୁଆଡ଼େ ଚାଲିଗଲା । ଲୋକେ କହିଲେ ଯେ ସେ ତା ଝିଆରୀର ପୋଷଣଘର ପାଇଁ ଯାଇଛି; କିନ୍ତୁ ଏପର୍ଯ୍ୟନ୍ତ ସେ ପୋଷଣକାଣ୍ଡ ସମାପ୍ତ ହେଲା ନାହିଁ । ତାର ପୁଅ ଶୁଭ୍ରମନସ୍ୟମ୍ ଆମ ସାଙ୍ଗରେ ସ୍କୁଲରେ ପଢ଼ୁଥିଲା । ଆମମାନଙ୍କ ଥଟ୍ଟା-ପରିହାସରେ ବିରକ୍ତ ହୋଇ ସେ ମଧ୍ୟ ସ୍କୁଲକୁ ଆସିବା ବନ୍ଦ କରିଦେଲା । ଗାଁରେ, ବାହାରେ ଖେଳିବା-ବୁଲିବା ବି ତା ପାଇଁ କଠିନ ହୋଇ ପଡ଼ିଲା । ଏତିକି ନୁହେଁ—ଦୁଇବର୍ଷ ଭିତରେ ତାର ବାପା ତାର ସମସ୍ତ ସମ୍ପତ୍ତି-ବାଡ଼ି ଶସ୍ତାରେ ବିକି କରି ପୁଅକୁ ନେଇ ଗାଁ ଛାଡ଼ି ଚାଲିଗଲା । ଦୁଇ ଝିଅଙ୍କର ସେତେବେଳକୁ ବିଭାଘର ହୋଇଯାଇଥିଲା ଏବଂ ସେମାନେ ତାଙ୍କ ଶ୍ୱଶୁର ଘରେ ଥିଲେ; ନଚେତ୍ ତାଙ୍କର ବାହାଘର ମଧ୍ୟ ହୋଇ ପାରି ନ ଥାନ୍ତା ।" ଏତିକି କହି କାମେଶ୍ୱର ରାଓ ଚୁପ୍ ହୋଇଗଲେ ।

ବାଲ୍ମା ପଚାରିଲା "କାହାଣୀ ଶେଷ ହେଲା ?"

"ହଁ..."

"ତେବେ କଣ ଏହିମାନେ ସେଇ ଲୋକ..."

"ବାହାରେ ଯେଉଁ ଅଧାବୟସୀ ଠିଆ ହୋଇଛି, ସେଇ ହଉଛି ଶାରଦାମ୍ବା । ସେ ଗାଁ ଛାଡ଼ି ଯିବା ପରେ ସେମାନେ ଗରିବ ହୋଇଗଲେ । ବାପ ତ ଶୀଘ୍ର ମରିଗଲେ ଏବଂ ପୁଅର ବାହାଘର ଏ ପର୍ଯ୍ୟନ୍ତ ହୋଇପାରିଲା ନାହିଁ । ପରିବାରରେ କେହି ନାହିଁ ।"

"ଏତେ ଦିନଯାଏ ପୁଅର ମା କୋଉଠି ଥିଲା ?"

"ଏଥିରେ ପଚାରିବାର କଣ ଅଛି ? ଏ ଆଗରୁ ସବୁ ଠିକ୍ କରି ରଖିଥିବ । କନକୁକମ୍ମା ସାଙ୍ଗରେ ସେ ଘର ସଂସାର କରିଥିବ । ସେ ପିଲାଟା ଏ ବୁଢ଼ୀକୁ କେତେ ଦିନ ସମ୍ଭାଳନ୍ତା—ସେଠୁ ହତାଶ ହୋଇ ଯାଇ କାହାରି ଘରେ ଚାକରାଣୀ ଥିବ ।" —ମେଡ଼ିକାଲ ଛାତ୍ର ଚୌଧୁରୀ ନାଗୟା କହିଲା ।

"ଦେଖନ୍ତୁ, ମଣିଷ କେଡ଼େ ସ୍ୱାର୍ଥପର । ଗୋଟିଏ ଶ୍ରେଷ୍ଠ ବାଳକର ଲୋଭରେ ପଡ଼ି ନିଜର ସାରା ସଂସାରଟାକୁ ବରବାଦ କରିଦେଲା ।"

"ସବୁ ଲୋକ ଏପରି ହୁଅନ୍ତି ନାହିଁ । କେତେକ ମହାତ୍ମା ସଂସାରର ଉଦ୍ଧାର କରିବା ପାଇଁ କେବେ କେବେ ଏପରି ଅବତାର ନେଇଥାନ୍ତି ।"

"ବର୍ତ୍ତମାନ ତାକୁ ଲଜ୍ଜା ଆସୁନାହିଁ ? ପୁଅକୁ କେମିତି ଦେଖିବାକୁ ଆସୁଛି ?"

"ଯାହା ବି ହଉ ନା କାହିଁକି ମା'ର ହୃଦୟ ତ; ଛଟପଟ ହୋଇ ଉଠୁଛି !"

"ଜଣାନାହିଁ, ସେ କନକୁକମ୍ମାର କଣ ହେଲା ।"

"ଛାଡ଼ି ପଳେଇଯାଇଥିବ, ସେ ଜବାନ ଟୋକା । ଏ ବୁଢ଼ୀ ଭରସାରେ କେତେ

ହିନ ରହିଲା ?"

"କେଜାଣି—କନକ୍‌କନ୍ୟାର ବାପା ମା କୋଉଠି ଥିବେ ?"

"କେଉଁ ଦିନରେ ମରିଗଲେ" କହି କାମେଶ୍ୱର ରାଓ ସେଠାରୁ ଚାଲିଯିବାକୁ ବସିଲେ ।

"ଆପଣ କ'ଣ ସେ କନକ୍‌କନ୍ୟାକୁ ଆଉ ଜମା ଭେଟି ନାହାନ୍ତି ।" ନର୍ସ ବାଲମ୍ମା ପଚାରିଲା ।

"ଭେଟି ନାହିଁ କାହିଁକି ? କନକ୍‌କନ୍ୟା ତ ମୁଁ ନିଜେ ।" କହୁ କହୁ ଡାକ୍ତର ବାରଣ୍ଡାର ମୋଡ଼ ପାରି ହୋଇଗଲେ ।

କିଛି କ୍ଷଣ ପାଇଁ ପାଞ୍ଚଜଣଯାକ ଚୁପ୍ ହୋଇଗଲେ; ତାପରେ ଝଟ୍ କରି ଉଠି ଯାଇ କାମେଶ୍ୱର ରାଓଙ୍କ ପାଖରେ ପହଞ୍ଚିଯାଇ ତାଙ୍କୁ ଘେରିଗଲେ ।

"କଣ ଏହା ସତ କଥା, ଡାକ୍ତର ?"

"ହଁ, ସତ ।"

ସମସ୍ତେ ତାଙ୍କୁ ଘେରି ଛିଡ଼ାହେଲେ । ତାଙ୍କୁ ଯିବାକୁ ଦେଲେ ନାହିଁ ।

"ବର୍ତ୍ତମାନ ଶୁଣନ୍ତୁ । ଅସଲ କଥା କଣ ? ପ୍ରକୃତରେ କଣ ହୋଇଥିଲା ?"

"କଣ ହେଲା ? କଅଣ ହେଲା ?"

"କୋଉ କଥା ?"

"ସେଇ—ଆପଣ ବେମାର କେମିତି ହେଲେ ?"

"ମୋର ଆଙ୍ଗୁଠିରେ ଆଘାତ ଲାଗିଥିଲା ଏବଂ ସେଇଟା ସେପ୍‌ଟିକ୍ ହୋଇଗଲା, ବାସ୍, ସେଥିପାଇଁ ମତେ ଜ୍ୱର ହେଲା ।"

"କଣ ତେବେ, ସେ ଦୋଷ-ଗୁଣ ନୁହେଁ ?"

"ନା..."

"ତେବେ ସେ କିଛି କଲା ନାହିଁ ସେ ବିଷୟରେ ?"

"ସେ କଣ କରିଥିଲା ନ କରିଥିଲା ମୁଁ ଜାଣେ ନାହିଁ, ତେବେ ମୋ ସାଙ୍ଗରେ କିଛି କରି ନ ଥିଲା । ମେଡ଼ିକାଲ କଲେଜରେ ପ୍ରବେଶ କରିବା ପର୍ଯ୍ୟନ୍ତ, ଯେତେବେଳ ଯାଏ ମହିଳା ଗୃହିଣୀମାନଙ୍କର ମୋ ଉପରେ ନଜର ନ ପଡ଼ିଥିଲା, ସେ ପର୍ଯ୍ୟନ୍ତ ସ୍ତ୍ରୀମାନଙ୍କ ସାଙ୍ଗରେ ମୋର କୌଣସି ପରିଚୟ ନ ଥିଲା । ମୁଁ ବହୁତ ଲାଜକୁଳା ଥିଲି ।"

"ତେବେ ସେ କିଛି ଜାଣି ନାହିଁ ? ଏକେବାରେ ନୁହେଁ ?"

"ବିଲ୍‌କୁଲ ସେ କିଛି ଜାଣିନାହିଁ ।"

"ତେବେ ଆପଣଙ୍କର ଅସୁସ୍ଥତା କିପରି ଠିକ୍ ହୋଇଗଲା ?"

"ଯେତେବେଳେ ତା ଉପରେ ଏତେ ବଡ଼ ଅନ୍ୟାୟ ହୋଇଗଲା । ଆପଣ କିପରି ଚୁପ୍ ହୋଇ ରହିଲେ ?"

"ମତେ ଜଣା ନ ଥିଲା ବାସ୍ତବରେ କଥା କଣ ? ଏତିକି ଜାଣିପାରୁଥିଲି ଯେ ଗାଁଟାଯାକର ଲୋକ ଆମର ଶତ୍ରୁ ହୋଇଯାଇଥିଲେ । ମୋର ମା ସେ ଚକାରୀ ବିଷୟ ନେଇ କିଛି କିଛି କଥା କହୁଥିଲା; କିନ୍ତୁ ମୁଁ ସେସବୁର ଅର୍ଥ କଣ ବୁଝିପାରୁ ନ ଥିଲି । ଯେତେବେଳେ ମୁଁ ଶୁଣିଲି ଯେ ଶାରଦାମ୍ମା ତାର ଜଙ୍ଘ କାଟି ରକ୍ତ ଦେଇ ମୋର ପ୍ରାଣ ବଞ୍ଚାଇଛି ମୋର ତା ପ୍ରତି ପ୍ରଗାଢ଼ ଭକ୍ତି ଆସିଲା । ମୋ ବିଚାରରେ କୌଣସି ସ୍ତ୍ରୀ ଏପରି ରକ୍ତ ଦବା ପାଇଁ ରାଜି ହବ ନାହିଁ ଏବଂ ଏତେ ବଡ଼ ଅପୂର୍ବ ତ୍ୟାଗ କରିବା ପାଇଁ ଶାରଦାମ୍ମା ମୋ ପାଇଁ ଆରାଧ୍ୟା ଦେବୀ ତୁଲ୍ୟ ହବା ଉଚିତ । ସେବେଠୁ ଏପର୍ଯ୍ୟନ୍ତ ସେ ମୋ ଦୃଷ୍ଟିରେ ଆଦର୍ଶ ନାରୀ । ଲୋକଙ୍କ ପ୍ରତି ତାର ଦୟା, ତାର ଶିଷ୍ଟାଚାର, ଅତିଥି-ସତ୍କାର, ବିନମ୍ରତା ଏବଂ ଉଦାରତା—ଏସବୁ ଗୁଣରେ ପରିପୂର୍ଣ୍ଣ ଆଦର୍ଶ ହିନ୍ଦୁ ଗୃହିଣୀ ସେ । ବେମାର ଠିକ୍ ହଉ ହଉ ମୁଁ ଯାଇ ତା ପାଖରେ ପହଞ୍ଚିଲି ତାର ଚରଣରେ ମୋର ସାରା ଜୀବନ ଅର୍ପିତ କରିଦବା ଉଦ୍ଦେଶ୍ୟରେ; କିନ୍ତୁ ମତେ ଦେଖୁ ଦେଖୁ ସେ ଏପରି ଡରିଗଲା ଯେପରି କୌଣସି ଭୂତ-ପ୍ରେତ ଦେଖୁଛି ଏବଂ ଶୀଘ୍ର କବାଟ ବନ୍ଦ କରିଦେଲା । ମୋ ହୃଦୟରେ ଏପରି ଗଭୀର ଆଘାତ ହେଲା ଯେ ଆଉ ସେ ଗାଁରେ ରହିବାକୁ ମନ ହେଲା ନାହିଁ । ମୋର ପଢ଼ିବା ପାଇଁ ଆର୍ଥିକ ସାହାଯ୍ୟ ମଧ୍ୟ ସେ ବନ୍ଦ କରିଦେଲା । ମତେ କେହି ତାଙ୍କ ଘରେ ପୂରାଉ ନ ଥିଲେ । ମା-ବାପା ମଧ୍ୟ ମତେ ହୀନଦୃଷ୍ଟିରେ ଦେଖିବାକୁ ଲାଗିଲେ ।"

"ତେବେ ପରେ ଆପଣ ତାର କୌଣସି ଖବର ନବାକୁ ଚେଷ୍ଟା କରି ନାହାନ୍ତି ?"

"ତା ପର କଥା ମତେ କଣ ଜଣା ? ତା ଆଗରୁ ମୁଁ କାଶୀ ଚାଲିଗଲି ଏବଂ ନିଜର ନାମ ବଦଳାଇ ଧର୍ମଶାଳାରେ ରହି ନିଜର ପଢ଼ାପଢ଼ି ଆରମ୍ଭ କଲି ତା ପରେ ଏଇ ଏବେ ମୁଁ ତାକୁ ଦେଖୁଛି ।"

"ଏବେ ତା ସାଙ୍ଗେ ଆପଣ କଥାବାର୍ତ୍ତା କରିନାହାନ୍ତି ?"

"ସେ ମତେ ଚିହ୍ନି ପାରିଲା ନାହିଁ । ଯେତେବେଳେ ମୁଁ ମୋ ନିଜ କଥା କହିଲି ସେ ଚିତ୍କାର କରି ଦୌଡ଼ି ପଳାଇଗଲା ।"

"ଆପଣଙ୍କ ଉପରେ ସେ ଏପରି କାହିଁକି ବିଗିଡ଼ିଛି ?"

"ଏଥିରେ ଆଶ୍ଚର୍ଯ୍ୟ କଣ ଅଛି ? ମୋରି ଯୋଗୁ ତାର ଗ୍ରେଟିଆ ସଂସାରଟି ଛିନ୍ନଭିନ୍ନ ହୋଇଯାଇଛି । ମୁଁ ତା ନାଁ ଧରି ବାଉଳି-ଚାଉଳି ହବାରୁ ତାର ଦୁନିଆଁ ଭାସି-ଯାଇଛି, ଏଣେ ବିଭ୍ରାଟ ହୋଇଛି ।"

"ଆପଣ କାହିଁକି ତା ନାଁ ଧରି ଏପରି ବିଳିବିଳୋଉଥିଲେ ?"

"ବର୍ତ୍ତମାନ ମୁଁ କଣ କହିପାରିବି ? ମୋ ମନରେ ତା ପ୍ରତି ବହୁତ ଆଦର ଥିଲା । ତାକୁ ମୁଁ ଦେବୀ ଭଗବତୀଙ୍କର ଅବତାର ଭଳି ମାନୁଥିଲି । ବୋଧହୁଏ ମୁଁ ଭାବୁଥିଲି ଯେ ତାର ନାମ ନେଲେ ମୋର ରୋଗ ଦୂର ହୋଇଯିବ ।"

"ତେବେ ଆପଣଙ୍କୁ ଏ ସମସ୍ତ କଥା କିପରି ଜଣାପଡ଼ିଲା ?"

"ପରେ ମୁଁ ସେ ଗାଁକୁ ଯାଇ ସବୁ ଖବର ନେଇଥିଲି।" କହି ଡାକ୍ତର କାମେଶ୍ୱର ରାଓ, ନିଜ ଓ୍ୱାର୍ଡ଼କୁ ଚାଲିଗଲେ ଓ ବାକି ଲୋକଙ୍କ ନିଜ ନିଜ କାମ କରିବାକୁ ଗଲେ।

"ଏ ସମସ୍ତ କାହାଣୀ ମୁଁ ପରଦା ପଛରେ ବସି ଶୁଣୁଥିଲି ଏବଂ ଶ୍ରୀକ୍ଷୀସାର ସମୁଦ୍ର ଆଡ଼କୁ ଅନାଇ ଭାବୁଥିଲି ଜୀବନ ଏବଂ ଜୀବନରେ ଘଟିଥିବା ଏଇ ଉପଦ୍ରବଗୁଡ଼ିକର କଣ ମାନେ ? ସେ ଲୋକଗୁଡ଼ିଙ୍କର ଜୀବନ ଏପରି ନଷ୍ଟ କାହିଁକି ହେଲା ? ସେ ସନ୍ତ-ସାଧ୍ୱୀଦ୍ୱାରା କରାଯାଇଥିବା ପୂଜା-ପାଠ, ଦାନ-ଧର୍ମ ଏସବୁର କଣ ଫଳ ମିଳିଲା ତାକୁ ? କୌଣସି ହତଭାଗ୍ୟ ସ୍ତ୍ରୀ ପ୍ରତି ଦୟା ଦେଖାଇବା ଫଳରେ ତ ତାର ଏ ସର୍ବନାଶ ହେଲା। ତାର ପୁଅ ଓ ସ୍ୱାମୀ ମଧ୍ୟ ଏହାର ଫଳ ଭୋଗିଲେ। ଏତେ ବର୍ଷ ହେଲା ଜଣାନାହିଁ ତା ଉପରଦେଇ କେତେ ଝଡ଼ ବୋହିଯାଇଥିବ, କେତେ କଷ୍ଟ ସେ ସହିଥିବ। ମଣିଷମାନେ କୁକୁର—ମାଲିକ କାହିଁକି ପେଟରେ ଗୋଇଠାଟାଏ ମାରିଲା, ତାର କାରଣ କିଛି ନ ବୁଝି, ବୋକାଙ୍କ ପରି ମାଲିକ ମୁହଁକୁ ଅନାଇ ରହିଥିବା କୁକୁର। ଏ ସବୁ ଅତ୍ୟାଚାର କରୁଛି କିଏ—ମଣିଷ ନା ଈଶ୍ୱର ?"

"ସମାଜ—ସମାଜ କରୁଛି। ଆଜିକାଲି ସବୁ ଲେଖକ ଏଇ ସମାଜ ନାଁରେ ଧୂଳି ଉଡ଼ାଉଛନ୍ତି।"

"ସମାଜ—ମାନେ, ଆମେ ସବୁ। ଆମର କଣ କରିବା ଉଚିତ ? କିପରି ପରିବର୍ତ୍ତିତ ହେବା ଉଚିତ ? ଯେଉଁମାନେ ତାକୁ ସେ ଗାଁରେ ରଖେଇଦେଲେ ନାହିଁ, ସେମାନେ ତ ଆମରି ପରି ମଣିଷ ନା ?"

"କିନ୍ତୁ ସେ ଦିନ ସେ ପ୍ରମାଣକୁ ଖଣ୍ଡନ କରି ଶାରଦାମ୍ମାକୁ ନିର୍ଦ୍ଦୋଷ ସିଦ୍ଧ କରିବାର ସାହସ କେହି କରିଥିଲା କି ? ଯେବେ ଏତେ ଉଚ୍ଚ କୁଳର ସ୍ତ୍ରୀ ଏଡ଼େ ଛୋଟ ବାଳକଟି ସାଙ୍ଗରେ ଏପରି ଜଘନ୍ୟ ବ୍ୟବହାର କରିପାରିଲା ତେବେ ତାକୁ ଘୃଣା କରିବାରେ, ଦୋଷ ଦେବାରେ ଲୋକଙ୍କର କଣ ଭୁଲ ହେଲା ? ପ୍ରଚଳିତ ନୈତିକତା ସଂଘ ନିୟମ ଅନୁସାରେ ଏହି ବ୍ୟକ୍ତିର କଣ ଭୁଲ କାମ ନ ଥିଲା ? ଏଇଟା ଗୋଟିଏ ଉଲ୍ଲିଷ୍ଟ ଗୁଣ ବୋଲି ଯଦି ମାନି ନିଆଯାଏ ତେବେ ବାକିସବୁ ବଦ୍‌ଗୁଣକୁ କଣ କୁହାଯିବ ? ଯଦି ଭଲ-ମନ୍ଦ ଭିତରେ ପ୍ରଭେଦ ନ ରହେ ତେବେ ସମାଜ ଓ ସଭ୍ୟତାର ଆଧାର କିଏ ହେବ ?"

"ବାସ୍, ଜୀବନଟା ଏମିତି ଚାଲିଛି। ଏହାକୁ ପ୍ରାରବ୍ଧ କହିବ ନାହିଁ ତ ଆଉ କଣ କହିବ ? ଯଦି ଏପରି ହୁଏତ ଭାଗ୍ୟଠାରୁବଳି କୌଣସି ଜିନିଷ ନାହିଁ। ଭଗବାନ୍ ନାହାନ୍ତି, ନ୍ୟାୟ ନାହିଁ, ସତ୍ୟ ନାହିଁ, ଏ ସାରା ସୃଷ୍ଟି ଚେତନହୀନ ଅନ୍ଧକାରମୟ। ଏଇ ଆଗରେ ଲମ୍ବିଯାଇଥିବା ସମୁଦ୍ରରୁ ଜଳବିନ୍ଦୁ ଉଛୁଳି ପଡ଼େ, ସେଥିରୁ କିଛି ସୂର୍ଯ୍ୟକିରଣରେ ଚମକିଉଠେ, କିଛି ଗୋଡ଼ରେ ବାଜି ଫାଟିଯାଏ; କିଛି

ବାଲିରେ ଶୁଖିଯାଏ, ଆଉ କିଛି ସେଇ ସମୁଦ୍ର ମଧ୍ୟରେ ବିଲୀନ ହୋଇଯାଏ । ମଣିଷ-ମାନେ ବି ଏହିଭଳି । ବାସ୍, ଆଉ କଣ କୁହାଯାଇ ପାରିବ ?”

“ଏ ଭଳି ଜୀବନର ପ୍ରୟୋଜନୀୟତା ଉପରେ ଭାବିବା ଅବିବେକତା; କିନ୍ତୁ ଯେଉଁମାନଙ୍କର ହୃଦୟ ଅଛି ସେ ଭାବନାହୀନ, ଚିନ୍ତାହୀନ ହୋଇ ଉଦାସୀନ କିପରି ରହିପାରିବେ ?”

“ସ୍ୱର୍ଗ-ସ୍ୱର୍ଗଧର ଚିନ୍ତା କରି ବି ପ୍ରକୃତ କଥା କଣ ବୁଝାପଡ଼ିଲା ନାହିଁ । କଣ ଲାଭ ? ଉଦାରଚେତା ଲୋକଙ୍କର ମସ୍ତିଷ୍କ ଥକିଗଲେ କୌଣସି ସୀମାରେ, କୌଣସି ସିଦ୍ଧାନ୍ତରେ ସନ୍ତୁଷ୍ଟ ହୋଇଯାଏ । କିନ୍ତୁ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତକୁ ଲକ୍ଷ୍ୟ ମାନିନେଇ ବିଚାର-ଧାରାକୁ ସମାପ୍ତ ନ କରିବା ଯାଏ ଶାନ୍ତି ମିଳିବ ନାହିଁ । ତେବେ ବି ସେ ସବୁ ଉପରେ ସବୁବେଳେ ସନ୍ଦେହ ହୁଉଥାଏ । ଯେଉଁ ଲୋକେ କହନ୍ତି—ବାସ୍, ଏତିକି ଜାଣିଲେ ହେଲା, ସେମାନେ ପୂରାପୁରି ଅଳସୁଆ, ଦୁର୍ବଳ । ହୋଇପାରେ କୌଣସି ସତ୍ୟ ଅବଶ୍ୟ ଅଛି, ଆମେ ହୁଏତ ତାହା ଜାଣିନୁ ବା ହୋଇପାରେ ଆମେ ତାହା କେବେହେଲେ ବୁଝିପାରିବା ନାହିଁ; କିନ୍ତୁ ଯଦି ଆମେ କହୁ ଯେ ଆମେ ସବୁକିଛି ଜାଣିଛୁ ଆଉ ଜାଣିଲା ପରି ବିଷୟ କିଛି ବାକି ନାହିଁ, ମୋ ବିଚାରରେ ତାହା କେବଳ ଆଳସ୍ୟର ଚିହ୍ନ ବୋଲି ଧରାଯିବା ଉଚିତ ।”

# ପଶ୍ଚାତ୍ତାପ ନାହିଁ

କମଳାକ୍ଷୀ ମୋତେ ଦୁଇଟି ଶାଢ଼ି କିଣିଆଣିବାକୁ କହିଲା । ଗତ ଥର ମୁଁ ଯେଉଁ ଶାଢ଼ିଗୁଡ଼ିକ ନେଇଯାଇଥିଲି, ତାକୁ କୁଆଡ଼େ ତା ସାଙ୍ଗମାନେ ବହୁତ ପସନ୍ଦ କଲେ । ତାର ବିଶ୍ୱାସ ଯେ କାହାକୁ କେଉଁ ଶାଢ଼ି ଭଲ ମାନିବ—ଏ କଥା ମୋତେ ଭଲଭାବେ ଜଣା । ଶାଢ଼ିର ବୁଣେଇ, ଶାଢ଼ିର ଗଢ଼ଣ, ଧଡ଼ିର ମ୍ୟାଚିଂ ଆଦି କଥାକୁ ଯେପରି ଭଲଭାବରେ ମୁଁ ଜାଣିଛି, ଏତେ ତନ୍ନତନ୍ନ କରି ଆଉ କେହି ଜାଣନ୍ତି ନାହିଁ । ସତରେ ମତେ ଏହି ଜିନିଷଗୁଡ଼ିକ ଭଲଭାବେ ଜଣାନାହିଁ । ଏସବୁ ବିଷୟରେ ମିଛ କହିବାର କୌଣସି ଆବଶ୍ୟକତା ନାହିଁ । ମୁଁ ମାନିଯାଉଛି ଯେ ମୋତେ ଏହି ଜିନିଷ ମୋଟେ ଜଣାନାହିଁ । ମହାଭାରତରେ କୌଣସି ପ୍ରସଙ୍ଗରେ ଧର୍ମରାଜ ଧର୍ମର ମୂର୍ତ୍ତିରୂପେ ବିଖ୍ୟାତ । ପରେ ଜଣାପଡ଼ିଲା ଯେ ଏହି ଯଶକୁ ଧରିରଖିବା ପାଇଁ ତାଙ୍କୁ ବହୁତ କଷ୍ଟ ସ୍ୱୀକାର କରିବାକୁ ହୋଇଛି । ଯେତେବେଳେ ଅନ୍ୟ ଲୋକ ଆମକୁ ଠିକ୍ ଭାବରେ ବୁଝିପାରୁନାହାନ୍ତି ସେତେବେଳେ ଆମକୁ ଅନେକ କଷ୍ଟ ସହିବାକୁ ପଡ଼ିଥାଏ । ଆଉ ଯଦି କେହି ଆମକୁ ଠିକ୍‌ଭାବେ ବୁଝିପାରେ ତେବେ କଷ୍ଟର ସୀମା ରହେ ନାହିଁ । କେତେକଙ୍କ ବିଷୟରେ କିଛି ଧାରଣା ହୋଇଯାଏ । ସେହି ଧାରଣାଗୁଡ଼ିକର ଅନୁକୂଳ ଆଚରଣ କରିବା ପାଇଁ ସେମାନେ ଚେଷ୍ଟା କରନ୍ତି ଏବଂ ଏହା ସିଦ୍ଧ କରିବା ପାଇଁ କେବେ କେବେ ନାଟକ ରଚନା କରିଦିଅନ୍ତି ଯେ ତାଙ୍କ ବିଷୟରେ ଲୋକଙ୍କର ସେ ଧାରଣା ଭୁଲ ନୁହେଁ ।

ଯେବେଠାରୁ କମଳାକ୍ଷୀ କହିଲା ଯେ ମୁଁ ଶାଢ଼ିର ଜଣେ ଚତୁର ଗ୍ରାହକ ସେବେଠାରୁ ଶାଢ଼ି ଦୋକାନରେ ଟହଲ ମାରିବା ମୋ ପାଇଁ ଅନିବାର୍ଯ୍ୟ ହୋଇପଡ଼ିଲା । କଣାଳ ସାଜି ଦୋକାନ ଭିତରକୁ ଯିବା, ଭିନ୍ନ ଭିନ୍ନ ଶାଢ଼ି ବାହାର କରି ଦେଖିବା, କେଉଁ ଶାଢ଼ି କାହାକୁ ଭଲ ଲାଗୁଛି, ଏହାର ଅନ୍ଦାଜ କରିବା, ତାର ମୂଲ୍ୟ ଆଦି ବିଷୟରେ ଖବର ନେବା—ଏକ ଅଭ୍ୟାସରେ ପଡ଼ିଗଲା ।

ସହରରେ ନିଜ କାମ ଶେଷ କରି କମଳାକ୍ଷୀ ପାଇଁ ଯେତେବେଳେ ମୁଁ ଦୋକାନରେ ପହଞ୍ଚେ ସେତେବେଳକୁ ସନ୍ଧ୍ୟା ସାତଟା ବାଜିଯାଇଥାଏ । ଦୋକାନୀ ବିଭିନ୍ନ ଶାଢ଼ି ମୋ ଆଗରେ ଖୋଲି ତା ବିଷୟରେ କହିବା ଆରମ୍ଭ କରିଦେଲା । ପନ୍ଦର କୋଡ଼ିଏ ମିନିଟ ପର୍ଯ୍ୟନ୍ତ ଧ୍ୟାନ ଦେଇ ଦେଖି ମଧ୍ୟ ସେଥିରୁ କେଉଁ ଶାଢ଼ିଟି ଭଲ ଏ କଥା ନିର୍ଣ୍ଣୟ କରିପାରିଲି ନାହିଁ । ସେପରି ତ ଦେଖିବାକୁ ଗଲେ ସବୁ ଶାଢ଼ି ଭଲ । ପୁଣି ଆଶ୍ଚର୍ଯ୍ୟ କଥା ଯେ ସବୁଠାରୁ ମୂଲ୍ୟବାନ ଶାଢ଼ି ସବୁଠାରୁ ଭଲ ଲାଗୁଛି । ଏହି ଶାଢ଼ିଗୁଡ଼ିକୁ ଦେଖିବାବେଳେ ଆମ ଦେଶର କାରିଗରମାନଙ୍କର କାରିଗରି କୌଶଳ

ସ୍ୱତଃ ମନକୁ ଆସିଯାଏ । (ପୂର୍ବ କାଳରେ ଏହାଠାରୁ ମଧ୍ୟ ଅଧିକ ଗୁଣକାରୀ କାରଗର ଥିବେ ।) ଉଆସିଲି ଖୋଲରୁ ଶାଢ଼ି ବାହାର କରି ପିନ୍ଧିଥିବା ମମତାଜ୍ ବେଗମ୍, ଝାନ୍ସୀରାଣୀ ଲକ୍ଷ୍ମୀବାଈ ଏବଂ ଆହୁରି ପୁରାତନ ଯୁଗର ଗାର୍ଗୀ, ମନ୍ଦୋଦରୀ, ଦମୟନ୍ତୀ ଏବଂ ଶାଢ଼ି ବସ୍ତ୍ରରୁ ସ୍ମରଣ କଲେ ଯାହାଙ୍କ ନାଁ ପ୍ରଥମେ ଆସେ ସେଇ ଦ୍ରୌପଦୀ ଆଦି ସୌନ୍ଦର୍ଯ୍ୟର ମୂର୍ତ୍ତିଗୁଡ଼ିକ କଳ୍ପନା କଲେ ବଡ଼ ଆନନ୍ଦ ଆସେ । ଶାଢ଼ିର ସୁନ୍ଦର ଡିଜାଇନ୍ ଏବଂ ପ୍ରିଣ୍ଟିଙ୍ଗ୍ ଦେଖିଲେ ତାର ପ୍ରଥମ ସ୍ରଷ୍ଟାଙ୍କର ପ୍ରଶଂସା କରିବାକୁ ଆହୁରି ଭଲ ଲାଗେ । କିନ୍ତୁ ଦୋକାନଦାର ଆମ ମୁଖମୁଦ୍ରା ଦେଖି ବ୍ୟତିବ୍ୟସ୍ତ ହୋଇ ଯେତେବେଳେ ବିରକ୍ତିରେ କହେ— 'କଣ ବାବୁ କିଛି କିଣିବାର ଅଛି ?' ତାର କୁଞ୍ଚିତ ଭ୍ରୂଲତାକୁ ଦେଖି ଆମ ଆରମାର ଛିଣ୍ଡା କନ୍ଥା ଭିତରୁ ବାହାରି ପଡ଼ିଥିବା ଛିଣ୍ଡା କନାପରି ଆମର ସମସ୍ତ କଳ୍ପନା ଛିନ୍ନଭିନ୍ନ ହୋଇଯାଏ ।

ବାସ୍ତବରେ ଆଜି ସେହି କଥା ଘଟିଗଲା । ଦୋକାନୀଟି ବ୍ୟତିବ୍ୟସ୍ତ ହୋଇ ଅନ୍ୟ ଗ୍ରାହକଙ୍କୁ ଦେଖେଇବା ପାଇଁ ଅନ୍ୟ ଜାଗାକୁ ଚାଲିଗଲା । ମମତାଜ ବେଗମ୍, ଝାନ୍ସୀରାଣୀ ଲକ୍ଷ୍ମୀବାଈ, ଗାର୍ଗୀ, ମନ୍ଦୋଦରୀ, ଦମୟନ୍ତୀ, ଦ୍ରୌପଦୀଙ୍କ ପରି ମଧ୍ୟବର୍ତ୍ତୀ ମହିଳା ସେଠାରେ ଏହା ଦରକାର, ତାହା ଦରକାର, ଏଇଟା ନୁହେଁ ସେଇଟା ଦରକାର, ଏହିପରି ନିଜ ନିଜ ରୁଚି ଅନୁସାରେ ଶାଢ଼ି ଗୁଡ଼ିକ ବାଛୁଛନ୍ତି । ତାଙ୍କ କଥା ଭିନ୍ନ । କାରଣ ସେମାନେ ଯାହା ଚାହିଁବେ କହିପାରିବେ । ତାଙ୍କ ଦେହର ରଙ୍ଗ ହଳଦିଆ ଗୋରା । ଯେଉଁ ଶାଢ଼ି ପିନ୍ଧନ୍ତୁ, ସେ ତାଙ୍କୁ ମାନିଯାଏ । କିନ୍ତୁ କମଳାକ୍ଷୀ ଦେହର ରଙ୍ଗ କଳା । କଳା ନ କହି ବରଂ ଶ୍ୟାମଳ କହିଲେ ସେ ଖରାପ ଭାବିବ ନାହିଁ । ଏଥିପାଇଁ ଗାଢ଼ ରଙ୍ଗର ରଙ୍ଗଢଙ୍ଗିଆ ଶାଢ଼ିକୁ ଛାଡ଼ି ଫିକା ରଙ୍ଗର ଶାଢ଼ି-ଗୁଡ଼ିକ ବାହାର କରି ଦେଖିବାକୁ ଲାଗିଲି । ଏଆଡ଼କୁ ସେଆଡ଼କୁ ଚାହିଁଲା କୌଣସି ସ୍ତ୍ରୀ ଲୋକ ବା ପୁରୁଷ ଲୋକ ଦେଖାଗଲେ ପଚାରି ବୁଝନ୍ତି । ସେହି ଭିଡ଼ ମଧ୍ୟରେ ଦୋକାନୀକୁ ମୁଁ କଲରେ ଶକ୍ତିପାତ ଠାରିକରି ତାକୁ ପାଖକୁ ଡାକିଲି ଏବଂ ଶାଢ଼ି ଗଦାରୁ ଗୋଟିଏ ଶାଢ଼ି ବାହାର କରି ପାଖରେ ଛିଡ଼ାହୋଇଥିବା ବ୍ୟକ୍ତି ଆଡ଼କୁ ଧ୍ୟାନ ନଦେଇ ମୁଁ ସହଜ ଭାବରେ ପଚାରିଲି—"କଣ ଏହି ଶାଢ଼ିଟି ଭଲ ହେବ ?"

'ଏହାଠାରୁ ସେ ସିମେଣ୍ଟ ରଙ୍ଗର ଶାଢ଼ି ଭଲ ହେବ ।' ସେ ବ୍ୟକ୍ତିଜଣକ ମନ୍ତବ୍ୟ କଲା । ମୁଁ ଚମକି ପଡ଼ିଲି । ପଛକୁ ଚାହିଁ ଦେଖିଲି, ସେ ଜଣେ ମହିଳା । ମନରେ ଭାବିଲି ସେ କ୍ଷମା ମାଗିନେବ । କିନ୍ତୁ ନିଜକୁ ସାନଠାରୁ କ୍ଷମା ମାଗିବା ପାଇଁ ମୋତେ ଭଲ ଲାଗିଲା ନାହିଁ । ସେ କୋଡ଼ିଏ ବର୍ଷରୁ କମ୍ ପରି ଜଣା ଯାଉଥିଲା— ।

'ନା, ସେ ସ୍କାଇ ରଙ୍ଗର ଶାଢ଼ି ମଧ୍ୟ ଭଲ' —ସେ ପୁଣି କହିଲା । ତାର ପସନ୍ଦ ମୁତାବକ ଶାଢ଼ିକୁ ଛାଡ଼ିବା ପାଇଁ ଇଚ୍ଛା ହେଲା ନାହିଁ । କିନ୍ତୁ କମଳାକ୍ଷୀ ପାଇଁ ସ୍କାଇ ଅଥବା ସିମେଣ୍ଟ ରଙ୍ଗର ଶାଢ଼ି ମାନିବ ନାହିଁ ।

"ଆପଣ କଣ ଭାବୁଛନ୍ତି କଳା ରଙ୍ଗ ଦେହକୁ ଏହା ଭଲ ଦିଶିବ ?"

"ମୋଠାରୁ କଳା ?" ସେ କଳା ନୁହେଁ, ଗୋରି ମଧ୍ୟରେ ଗଣାଯାଇପାରେ ।

"ନାଁ, ନାଁ ଆପଣଙ୍କ ରଙ୍ଗ ତ···ଆପଣ···"

ମୁଁ ଯାହା କହିବାକୁ ଚାହୁଁଥିଲି ତାହା କିପରି କହିବି ବୁଝିପାରିଲି ନାହିଁ । ସେ ହସିଲା । "ଧରିନିଅନ୍ତୁ ବହୁତ କଳା ।" କହୁ କହୁ ମନେ ହସ ମାଡ଼ିଲା ।

"ସେ ଶାଢ଼ି କାହା ପାଇଁ ନେଇଯାଉଛନ୍ତି ?"— ସେ ପଚାରିଲା । ଉତ୍ତର ଦେଲି, "କମଲାକ୍ଷୀ ନାମରେ ଜଣେ ସମ୍ପର୍କୀୟା ।"

ସ୍ତ୍ରୀଲୋକମାନେ ସଉଦା କରିବାରେ ଯେତେ ଡେରି କରନ୍ତୁ ପଛେ ଦୋକାନୀ ବିରକ୍ତ ହୁଅନ୍ତି ନାହିଁ । ଶୀଘ୍ର ସେ ଆମ ପାଖରେ ପହଞ୍ଚିଗଲା । ତାର ଖୋଲଖୋଲି କଥାବାର୍ତ୍ତାରେ ମୋର ଉତ୍ସାହ ବଢ଼ିଗଲା ।

"ଆପଣ ଯେଉଁ ଶାଢ଼ି ପିନ୍ଧିଛନ୍ତି, ସେ ବହୁତ ଭଲ ଶାଢ଼ି ।" ମୁଁ ଜାଣେ, ସ୍ତ୍ରୀଲୋକମାନଙ୍କୁ ଏପରି କହିଲେ ସେମାନେ ବହୁତ ଖୁସି ହୋଇଯାଆନ୍ତି ।

"ଏ ଶାଢ଼ି···" ସେ ତା ଶାଢ଼ିକୁ ଦେଖିଲା ।

"ଏହାକୁ ମୁଁ ମାଡ୍ରାସରୁ କିଣିଥିଲି । ପୁରୁଣା ହୋଇଗଲାଣି ।"

"ମୋର ଧାରଣା ଏପରି ଶାଢ଼ି ଏଠାରେ ମିଳେ ନାହିଁ ।" ମୁଁ ଗୁଣ୍ଡ ଗୁଣ୍ଡ ହୋଇ କହିଲି ।

କିଛି ସମୟ ପରେ ନିଜ ପସନ୍ଦ ମୁତାବକ ଦୁଇଟି ଶାଢ଼ି ବାଛି ସେ ବିଲ୍ ଆଣିବାକୁ କହିଲା ।

"କିଛି ସ୍ଥିର କରି ପାରୁନାହିଁ । ଆପଣ ବାଛିଦିଅନ୍ତୁନା । ମୋର ଧାରଣା ଆପଣ ଏସବୁ ବିଷୟରେ ପାରଙ୍ଗମ ।" ସେ ମୋ କଥାରେ ଖୁବ୍ ଗର୍ବ ଅନୁଭବ କରି ହସିବାକୁ ଲାଗିଲା ।

"ତେବେ ଆପଣ ସେହି କମଲାକ୍ଷୀକୁ ଦୋକାନକୁ କାହିଁକି ନ ଆଣିଲେ ?"

"କମଲାକ୍ଷୀ ଏଠାରେ ରୁହେ ନାହିଁ ।"

"ଆପଣ ?"

"ମୁଁ ମଧ୍ୟ ଏହି ସହରରେ ରହେ ନାହିଁ ।" ଶେଷରେ ସେ ଦୁଇଟି ଶାଢ଼ି ବାଛିକରି ଦେଇଦେଲା । କମଲାକ୍ଷୀ ଅସନ୍ତୁଷ୍ଟ ହୋଇପାରେ ସେ କଥାକୁ ପରବାଏ ନକରି ମୁଁ ସିମେଣ୍ଟ ରଙ୍ଗର ଶାଢ଼ିଟି ମଧ୍ୟ ନେଲି । ସେ ଗର୍ବର ସହିତ ନିଜର ସମ୍ମତି ପ୍ରକାଶ କରି ମୁଣ୍ଡ ହଲେଇଲା । ବାକି ପଇସା ନେବା ପୂର୍ବରୁ ମୁଁ ଖୁବ୍ ସହଜଭାବରେ ତା ଆଡ଼କୁ ଅନାଇଲି । ବାସ୍ତବରେ ସ୍ତ୍ରୀମାନଙ୍କ ସହିତ କଥାବାର୍ତ୍ତା କରିବାରେ ମୁଁ ବହୁତ ଲଜ୍ଜା କରେ । ପର ସ୍ତ୍ରୀକୁ ଦେଖି ଆହୁରି ଲାଜେଇଯାଏ ।

କିନ୍ତୁ ତାର ଅସ୍ୱୀକୃତି ଦେଇ ଭୁଲିଣିଆ କଥା, ମୋ ସହିତ ଖୋଲଖୋଲି ଭାବେ କଥାବାର୍ତ୍ତା କରିପାରନ୍ତି ବୋଲି ଘୋଷଣା କରୁଥିବା ତାର ମୂର୍ତ୍ତି ପରଖ କରି

ମୂଲ୍ୟାଙ୍କନ କରିବାର ପ୍ରବୃତ୍ତି ଏବଂ ଅପରାହତ ଯୌବନର ସାମୀପ୍ୟ—ତାର ଏ ସମସ୍ତ ବୈଶିଷ୍ଟ୍ୟ ମୋତେ ତା ଆଡ଼କୁ ଆକୃଷ୍ଟ କରାଇଲା । ଏଥର ଆସ୍ତେଲେ କଥାବାର୍ତ୍ତା କରିବାରେ ସମର୍ଥ ହୋଇଗଲି । ସେ ଦେଖିବା ପାଇଁ ସୁନ୍ଦର ନା ଅସୁନ୍ଦର ଏ ପ୍ରଶ୍ନ ତା ସାଙ୍ଗରେ କଥାବାର୍ତ୍ତା କରୁଥିବାଯାଏ ମୋ ମନରେ ଉଠୁ ନଥିଲା ।

ସେ କହିଲା—"ବ୍ଲାଉଜ୍ କନା ନେବେ ନାହିଁ ?"

ମୁଁ ହସି ହସି ତା କାନ୍ଧ ଆଡ଼କୁ ଚାହିଁଲି—ଦୁଇ ଡନୋଟି ହାର ଦେଖାଯାଉଛି । ନାଲି ରଙ୍ଗ ଶାଢ଼ିର ଅଞ୍ଚଳକୁ ଟାଣି ଆଣି ସେ କାନ୍ଧକୁ ଘୋଡ଼େଇ ପକାଇଲା ।

"ଏଥିମଧ୍ୟରୁ ଆପଣଙ୍କୁ କେଉଁଟି ପସନ୍ଦ ହେଉଛି ?" କିଛି କନା ଦେଖିକରି ସେ ପଚାରିଲା ।

ଭିଡ଼ କମିଗଲା— ।

ଦୋକାନରେ ଥିବା ଘଣ୍ଟାଟିର ଘଣ୍ଟି ବାଜି ଉଠିଲା । ଗାଡ଼ି ଥିବା ବ୍ୟାଗ୍‌କୁ ହାତରେ ଧରି ମୁଁ କବାଟ ପାଖରେ ପହଞ୍ଚିଲି । ବର୍ଷା ଆରମ୍ଭ ହୋଇଗଲା ଏବଂ ଜୋର୍‌ରେ ବର୍ଷିବାକୁ ଲାଗିଲା ।

ସେ ମଧ୍ୟ ମୋ ସାଙ୍ଗରେ ଆସିଲା ।

"ଏ ବର୍ଷାରେ କିପରି ଯିବା ?"

ମୁଁ ମଧ୍ୟ ଏହା ଚିନ୍ତା କରୁଛି । ଦୋକାନୀଟି ଚୌକି ଆଣି ବସିବାକୁ ଦେଲା । ସେ ବସିପଡ଼ିଲା ।

"ଆପଣଙ୍କ ପାଇଁ ?"

"କିଛି ଚିନ୍ତା ନାହିଁ ।"

"ଆପଣ କ'ଣ କରନ୍ତି ?"

"ମୁଁ କିଛି କରେ ନାହିଁ; ତେବେ, କେବେ କେବେ ଗଳ୍ପ ଲେଖେ ।"

"ଆଚ୍ଛା !" ସେ ଏ କଥା ଶୁଣି ଆଶ୍ଚର୍ଯ୍ୟ ହେଲାପରି ଲାଗିଲା । କିନ୍ତୁ ମୁଁ ପଶ୍ଚାତାପ କରିବାକୁ ଲାଗିଲି ଯେ ମୁଁ ଏକଥା କାହିଁକି କହିଲି । ଗଳ୍ପ ବିଷୟରେ ଅପରିଚିତ ବ୍ୟକ୍ତିମାନଙ୍କ ସଙ୍ଗରେ ସେଥିରେ ପୁଣି ସ୍ତ୍ରୀମାନଙ୍କ ସହିତ ଚର୍ଚ୍ଚା କରିବାକୁ ମୁଁ ଆଦୌ ପସନ୍ଦ କରେ ନାହିଁ ।

"ଆପଣଙ୍କ ନାଁ ତ ମୁଁ କେବେହେଲେ ଶୁଣିନାହିଁ । ବାସ୍ତବରେ ମୁଁ ତ ପଢ଼ି ନାହିଁ । ସ୍କୁଲର ବହି ପଢ଼ିବାରେ ସବୁ ସମୟ ଚାଲିଯାଏ ।"

ମୁଁ ନିଶ୍ଚିନ୍ତରେ ଟିକିଏ ନିଶ୍ୱାସ ନେଲି ।

"କାହାଣୀ ଅର୍ଥ ଉପନ୍ୟାସ ?"

"ବହୁତ ବଡ଼ କାହାଣୀକୁ ଉପନ୍ୟାସ କହନ୍ତି ।"

ମୋ ବିଷୟରେ ବହୁତ କିଛି ପଚାରିଲା ଏବଂ ନିଜ ବିଷୟରେ ମଧ୍ୟ ବହୁତ କିଛି କହିଲା । ଆମ ଦୁଇଜଣଙ୍କ ମଧ୍ୟରେ ମେଳଖାଇଲା ପରି କିଛି ନାହିଁ । ମୋ ବାପାଙ୍କ

ଧନ୍ଦା ଅଲଗା । ତା ମା, ବାପା ମରିଯାଇଛନ୍ତି । ବଡ଼ଭାଇ ଓକିଲ । ତାଙ୍କ ପାଖରେ ସେ ରହେ । ତା ନିଜ ମା ବିଷୟରେ ବହୁତ ସମୟ ପର୍ଯ୍ୟନ୍ତ ଚର୍ଚ୍ଚା କଲି । ଆଉ ସାଙ୍ଗ କଥା ପଡ଼ିଲା । ବର୍ଷା ବନ୍ଦ ହୋଇଗଲା । ସେ ଉଠି ଠିଆହେଲା । ମୁଁ ମଧ୍ୟ ଯିବାପାଇଁ ବାହାରିଲି । ସେ ସମୟରେ ସେ ଗୋଟିଏ ଗୁପ୍ତ ପ୍ରଶ୍ନ ପଚାରିଲା—

"ଆପଣଙ୍କ ବିବାହ ହୋଇଯାଇଛି ?"

"ନାଁ ।"

ଆମେ ରାସ୍ତା ଉପରେ ପହଞ୍ଚିଗଲୁ । ଥଣ୍ଡା ପବନ ବହୁଛି । ବେଙ୍ଗମାନଙ୍କର କାଟର ମିଟର ଶବ୍ଦରୁ ସେମାନେ ଯେ ଥଣ୍ଡାରେ ଥରୁଥିଲେ ତାହା ଜଣାପଡ଼ୁଥିଲା ।

"ଆପଣଙ୍କର ? ମୁଁ ଧୀର ସ୍ୱରରେ ପଚାରିଲି ।"

"ମୋର କଫି ପିଇବାକୁ ଇଚ୍ଛା ହେଉଛି ।" ମୁଁ ଯେପରି ଏତିକି କହୁଛି ସେ ମୋ ସହିତ କଫି ପିଇବାକୁ ରାଜି ହୋଇଗଲା । ପ୍ରଥମେ ତ ମୋତେ ଡର ଲାଗିଲା । କିନ୍ତୁ ଅନ୍ଧକାର ଯୋଗୁଁ ସାହସ ବାନ୍ଧିଲି । କିଏ ଆମକୁ ଦେଖି ନିଏ ତ, ତେବେ କିଛି କଥା ନାହିଁ । ଏ ସହର ମଧ୍ୟ ଜଣାଶୁଣା ନୁହେଁ ।

ଆମେ ହୋଟେଲର ଗୋଟେ କଣରେ ବସିଲୁ । "ଆପଣ ତ ନିଜକଥା କିଛି କହିଲେ ନାହିଁ ?" ମୋ ପ୍ରଶ୍ନର ପୁନରାବୃତ୍ତି କଲି ।

"ନା-ନା," କହି ଲଜ୍ଜାଯୋଗୁଁ ସେ ନିଜ କାନ୍ଧ ଆଡ଼କୁ ଗୁହିଁ ହସି ଉଠିଲା । ମୁଁ ତା ସହିତ କଥାବାର୍ତ୍ତା ହେଉଥିଲି କିନ୍ତୁ ମୋ ମନ ସେଠାରେ ନଥିଲା । କୌଣସି କଥାରେ ମେଳ ନଥିବା ସ୍ଥଳେ ଆମେ ବିବାହ ବିଷୟରେ ଏକମତ ହୋଇଗଲୁ । ଆମେ ଦୁଇଜଣ ଅବିବାହିତ, ଏହାହିଁ ଦୂରରୁ ଦେଖାଯାଉଥିବା ଆମ ସ୍ନେହ-ଭବନର ମୂଳଦୁଆ ।

ଏହାପରେ ଆମେ ନୀରବ ହୋଇଗଲୁ । କଥାବାର୍ତ୍ତା କରିବାପାଇଁ କିଛି ଭାବି ପାରିଲୁ ନାହିଁ ।

"କିଛି ଜିନିଷ ନେବ ?"

"ନେବାର ତ ନେଇଛି ।"

"କ'ଣ ନେଇଛ ?"

"ସେ କଥା ନୁହେଁ । ମୁଁ ପଚାରୁଥିଲି ଯେ ଖାଇବା ଜିନିଷ ନେବ କି ?" "ଆଚ୍ଛା ଏହି କଥା । ନାଁ ନାଁ", ସେ ହସି ପକାଇଲା । ସୁନ୍ଦର ଦାନ୍ତ ଧାଡ଼ି ଗୁଡ଼ିକରେ ସର୍ବଦା ହସ ଲାଗି ରହିଥାଏ ।

ଟୁଥ୍‌ପେଷ୍ଟ ବିଜ୍ଞାପନର ପ୍ରତିଯୋଗିତା ପାଇଁ ତାର ହସିଲା ମୁହଁର ଫଟୋ ପଠାଯାଇପାରେ ।

"ଏବଂ ଆପଣ ?"

"କ'ଣ ମୁଁ ?"

"କିଛି ନେବେ ନାହିଁ ?"

"ଆଚ୍ଛା ସେକଥା ।" ରୁମାଲ ମୁହଁରେ ଦେଇ ମୁଁ ହସି ପକାଇଲି । ମୋ ଦାନ୍ତ ମଝିରେ ଗୋଟିଏ ଫାଙ୍କ ଅଛି । ଏହି କାରଣ ଯୋଗୁ କିଛି ସମୟ ପୁଣି ଆମେ ନୀରବ ରହିଲୁ । ଦେବେନ୍ଦ୍ର କପି ଜପ୍ ଉଠାଇନେଲା । ସେ କଲା ଧଳା ଦାଗ ମୁଣ୍ଡରେ ନାଲି ରଙ୍ଗର ପଗଡ଼ି । ଅଜନ୍ତାର ଅନ୍ଧକାର ଗୁମ୍ଫାରେ ଅଙ୍କିତ ଛବିର ରାଜାଙ୍କ ଗୋଡ଼ ପାଖରେ ପିକଦାନ ଧରି ଝିକେ ନଇଁ ପଡ଼ିଥିବା ପିଲାଟିଏ ପରି ସେ ଦିଶୁଥିଲା ।

ବିଲ୍ ମୁଁ ଦେଇ ଦେଲି । ଆମେ ଦୋକାନରୁ ବାହାରି ଆସି ଚାଲିବାକୁ ଲାଗିଲୁ । କିଛି ଦୂର ଯିବା ପରେ ଦେଖିଲୁ ସଡ଼କ ଦୁଇ ଭାଗରେ ବିଭକ୍ତ ହୋଇଛି ।

"ଆପଣଙ୍କ ସହଯୋଗ ପାଇ ନଥିଲେ ଏତେ ଶୀଘ୍ର ଏବଂ ସୁବିଧାରେ କାମ ହୋଇ ପାରି ନଥାଆନ୍ତା ।" କଥା କହିବାର ଥିଲା ଏଥିପାଇଁ କହିଲି ।

"ମୋତେ 'ଆପଣ' କାହିଁକି କହୁଛନ୍ତି ? ମୁଁ ତ ଆପଣଙ୍କଠାରୁ ସାନ । ଆପଣ କୁହନ୍ତୁ ନାହିଁ ।

ଗ୍ରେଟ ବଡ଼ର ଏ ଝାମେଲା ଗୃହିଣୀ ବର୍ଷ ପାରହୋଇ ଯାଇଥିବା ଲୋକଙ୍କ ପାଇଁ । ଏଥିରେ ତାର ମୁଣ୍ଡ ଖେଳାଇବାର କଣ ଅଛି ? ବୟସର ହିସାବ ନିକାଶ ନେଇ ବ୍ୟସ୍ତ ରହିଲେ ଯୌବନଠାରୁ ଦୂରେଇଯିବାକୁ ପଡ଼େ ।

"ମୋ ନାମ—କମଳା ।"

"ଆମ କମଳାମ୍ମାର, ଆପଣଙ୍କର...ନା, ନା, ତୁମ ନାଁ ଗୋଟିଏ । ବେଶ୍ ଆଶ୍ଚର୍ଯ୍ୟ ବୋଧ ହେଉଛି ନାଁ ?"

ମୁଁ ଆମ ସହର ନାମ କହିଦେଲି ।

"ଆମ ଗାଁଟା ଏହି ସହରଠାରୁ ଅଳ୍ପ ଦୂରରେ ।" ସେ କହିଲା, ଏଠା କଲେଜରେ ସେ ପଢ଼ୁଛି । କଲେଜର ଛୁଟି ଆରମ୍ଭ ହୋଇଗଲାଣି । ଛୁଟିରେ ଗାଁକୁ ଯିବା ପୂର୍ବରୁ କିଛି ଶାଢ଼ି କିଣିବା ଉଦ୍ଦେଶ୍ୟରେ ଆସିଛି । ତାକୁ ଅମୁକ ଦୋକାନରେ ଅପେକ୍ଷା କରିବାକୁ କହି ତା ସଙ୍ଗିନୀ ଆଉ ଫେରିନାହିଁ । ତାର କଣ ହେଲା କେଜାଣି ।

ତାର ଗୋଟେ ସାନଭାଇ ଅଛି । ମାଡ୍ରାସର କୌଣସି କଲେଜରେ ପଢ଼ୁଛି । ସେ ଏଠାରେ, ତା ସାନଭାଇ ସେଠାରେ; ଭିନ୍ନ ଭିନ୍ନ କଲେଜରେ କାହିଁକି ପଢ଼ୁଛନ୍ତି, ଏହା ପଚାରିବାକୁ ଇଚ୍ଛା କରିଥିଲି । କିନ୍ତୁ ସେ କଥାରେ ମୋର କ'ଣ ଲାଭ ? ଯଦି ଲାଭ ନାହିଁ ତେବେ ପଚାରିବାର ଉଦ୍ଦେଶ୍ୟ କ'ଣ ? ମୁଁ କିଛି ବୁଝି ପାରୁ ନଥିଲି ।

ମୁଁ ଭାବିଲି, ସେ ବୋଧହୁଏ ମୋତେ ତା ଘରକୁ ଡାକିବ । କିନ୍ତୁ ସେ ମୋତେ ଏପରି କିଛି କହିଲା ନାହିଁ ।

"ଆପଣଙ୍କ ଗାଁରେ ଆପଣଙ୍କର ଘରଟା କେଉଁଠି ?"

ମୋ ଘର କେଉଁଠି ଏବଂ କେଉଁ ଭଳିଆ ମୁଁ ସବୁ ଜଣେଇଦେଲି ।

ମୁଁ କହିଲି, "ତେବେ ମୁଁ ଯାଉଛି... ।" ସେ ମୋ ଆଡ଼କୁ ବଡ଼ କରୁଣ ଓ ଦୟାପୂର୍ବକ ଦୃଷ୍ଟିରେ ଚାହିଁଲା । ତା ହୃଦୟର ବ୍ୟଥା ଏବଂ ମୁହଁର ଶବ୍ଦକୁ ମୁହଁରେ ରଖି ସେ କହିଲା, "କମଳାମ୍ମାକୁ ମୋର ନମସ୍କାର କହିଦେବେ ।" ଏହା କହି ସେ ଚାଲିଗଲା ।

ମୁଁ ସେଠାରେ ଛିଡ଼ାହୋଇ ତା ଆଡ଼କୁ ଚାହିଁଥାଏ । ଯାଉ଼୍ ଯାଉ ସେ ମଝିରେ ତିନିଥର ବୁଲିକରି ମୋତେ ଚାହିଁଲା ।

ଶାଢ଼ି ଭିତରେ ବେଣୀ । ପୁଣି ଏ ଦୁଇଟି ଅନ୍ଧକାର ସହିତ ମିଶି କିଛି ସମୟ ଆଖି ଝଲସାଇ ଦେଇ ଅନ୍ତର୍ଦ୍ଧାନ ହୋଇଗଲା । ମୋ ଆଖି ଓଦା ହୋଇଗଲା । ମୋତେ ଦୁଃଖ ଲାଗିଲା । ମୋ ଦୁଃଖରେ ଅନଭିଜ୍ଞ ମୋର ଶିରାପ୍ରଶିରାଗୁଡ଼ିକ ଦ୍ରୁତଗତିରେ ସଞ୍ଚାଳିତ ହେବାକୁ ଲାଗିଲେ । ମୁଁ ମିଛ କହିଲି । ମୁଁ କହିଲି, ମୋର ବିବାହ ହୋଇ-ନାହିଁ । ସେହି କୋମଳମତି ସ୍ତ୍ରୀକୁ ଏପରି ମିଛ କହିବାରେ ମୋର ଉଦ୍ଦେଶ୍ୟ କ'ଣ ଥିଲା । ଏହା ମୁଁ ବୁଝିପାରୁ ନଥିଲି । ବାକି ସବୁ କଥାରେ ସତ କହିଥିଲି । ଏହି ମାମଲାରେ ଏପରି କାହିଁକି ହେଲା ? ଠିକ୍ ସମୟରେ ମୋର ତର୍କଶକ୍ତି, ମୋ ବୁଦ୍ଧି ଜଡ଼ ପାଲଟିଗଲା । ମୋ ପରାମର୍ଶ ନ ନେଇ ମୋର ପଞ୍ଚେନ୍ଦ୍ରିୟ ମୋତେ ମିଛ କହିବାକୁ ବାଧ୍ୟକଲା । ବାସ୍, ଏହାହିଁ ଭାଷାର ମୂଲ୍ୟ । ତାହାର ଅର୍ଥ ହେଲା ମୋର ନିଜ ଶରୀର ଉପରେ ଯେତେଟା ଅଧିକାର ଅଛି, ସେତେ ନିଜ ବାଣୀର ଉପରେ ନାହିଁ । ମୁଁ ଲଜ୍ଜିତ ହୋଇଗଲି । ନିଜ ଉପରେ କ୍ରୋଧ ହେଲା । ମୋତେ ଅବିବାହିତ ଭାବି ବିନା ଈର୍ଷାରେ ଏବଂ ବିନା ସଙ୍କୋଚରେ କଥା କହିବ, କ'ଣ ଏହା ଭାବି ମୁଁ ଏପରି କହିଥିଲି ? ସତ କହିଥିଲେ ସେ ସ୍ୱଚ୍ଛନ୍ଦ ଅନୁଭବ କରି ନଥାନ୍ତା । ଯଦି ସତରେ ସେ ମୋତେ ପାଇବାକୁ ଚାହୁଁଥିଲା ଏବଂ ମୋତେ ପ୍ରେମ କରିବାକୁ ଚାହୁଁ-ଥିଲା ତେବେ କ'ଣ ମୋ ସ୍ତ୍ରୀ ତାର ପ୍ରେମରେ ବାଧକ ହୋଇଥାଆନ୍ତା ? ମୁଁ ତେବେ କାହିଁକି ମିଛ କହିଲି ?

ଅଥବା ମୋର ବ୍ୟକ୍ତିତ୍ୱ, ସଂସାର ସମ୍ମୁଖରେ ପରାଧୀନତା ସ୍ୱୀକାର କରିବାରେ ଅନିଚ୍ଛା ହେତୁ ବିଦ୍ରୋହ ଭାବନାଦ୍ୱାରା ମୋତେ ମିଛ କହିବାକୁ ବାଧ୍ୟ କଲା ? ଅବିବାହିତ ବ୍ୟକ୍ତି ନିଜକୁ ସ୍ୱଚ୍ଛନ୍ଦ ଓ ମୁକ୍ତ ଭାବେ । ତାର ବିଶ୍ୱାସ ଯେ ଅବିବାହିତ ଜୀବନରେ ପ୍ରେମ ବନ୍ଧନଶୂନ୍ୟ, ସତେଜ, ଗଭୀର ଓ ପବିତ୍ର ରହିଥାଏ । ବିବାହ ହୋଇଗଲେ ଏହି ସ୍ୱାଧୀନତା ଓ ସତେଜତା ନଷ୍ଟ ହୋଇଯାଏ । ନାରୀଜଗତ ସହିତ ତାର ପ୍ରେମ-ବନ୍ଧନ ନଷ୍ଟ ହୋଇଯାଏ । ଏହିପରି ନିରର୍ଥକ ଧାରଣାକୁ ଉପହାସ କରିବା ପାଇଁ ମୁଁ ମିଛ କହିଥିଲି । ବାହାଘର ହେବା ବର୍ତ୍ତମାନ ବର୍ଷେ ମାତ୍ର ହୋଇଛି । ଗୋଟିଏ ବର୍ଷ ନୁହେଁ; ଗୋଟିଏ ଦିନ ମଧ୍ୟ ହେଉ, ତେବେ ମଧ୍ୟ ବିବାହିତ ବ୍ୟକ୍ତିକୁ ଅବିବାହିତ କିପରି କୁହାଯିବ ?

ମିଛ କହିବାଦ୍ୱାରା ସେ ସ୍ତ୍ରୀ ପ୍ରସନ୍ନ ହୋଇ ମୋ ସହିତ ଅଧିକ ସ୍ୱଚ୍ଛନ୍ଦ ଭାବରେ କଥାବାର୍ତ୍ତା କରିବ; ଏହା ପ୍ରାୟ ମୋର ଆଶା ଥାଇପାରେ ।

ଏହା ବ୍ୟତୀତ ମୋର ଏ ଧାରଣା ମଧ୍ୟ ଥିଲା ଯେ ଆମେ ପୁଣି ଜୀବନରେ କେବେ ପରସ୍ପରକୁ ଭେଟିବୁ ନାହିଁ । ଏଥିଲାଗି କିଛି ସମୟ ପାଇଁ ମିଛ କହି ତାର ମନକୁ ପ୍ରସନ୍ନ କରିବାରେ ବିଶେଷ ଦୋଷ ମୋ ଦୃଷ୍ଟିରେ ପଡ଼ିଲା ନାହିଁ । ଆଚରଣ

ହୃଦୟରୁ ପ୍ରେରିତ ହୁଏ ଏବଂ ଆଚରଣ ପରେ ତାର ଔଚିତ୍ୟ ବିଚାର କରିବା କାମ ମସ୍ତିଷ୍କର । ହୃଦୟ ଗୃହିଁଲା ମିଛ କହି ତାଙ୍କୁ ପ୍ରସନ୍ନ ରଖିବାପାଇଁ; ତେଣୁ ଇନ୍ଦ୍ରିୟ ଗୁଡ଼ିକଦ୍ୱାରା ସେ ପ୍ରସ୍ତାବକୁ ଅନୁମୋଦନ କରାଇନେଲା ।

କିନ୍ତୁ ମୋ ବିବେକ ମାନୁନାହିଁ । ମୋତେ ଯନ୍ତ୍ରଣା ଦେଉଛି । କମଳା କେତେ ସରଳ ! ତା ଭିତରେ କେତେ ଉଦାରପଣ ! ତା ତୁଳନାରେ ମୁଁ କାପୁରୁଷ ଧୂର୍ତ୍ତ । ନିଜ ବିବେକ ସହିତ ଏକମତ ହେବାକୁ ମୋତେ ଅନେକ ସମୟ ଲାଗିଗଲା । କମଳା ସହିତ ମୋର ସାକ୍ଷାତ ଏବେ ଆଉ ହେବ ନାହିଁ । ଯଦି ସାକ୍ଷାତ ହୁଏ ତେବେ ମଧ୍ୟ ଏ ସମସ୍ତ କଥା ମନେ କେଉଁଠି ରହିବ ? ବରଂ ପରେ ମୁଁ କହିଦେବି ଯେ ମୋର ବିବାହ ହୋଇଯାଇଛି । ଘରେ ପହଞ୍ଚିବା ପରେ ମୋ ମନରେ ନିଜ ଉପରେ ବହୁତ ରାଗ ଲାଗିଲା । ମୋର ସ୍ତ୍ରୀ କମଳାଠାରୁ ମଧ୍ୟ ସୁନ୍ଦରୀ ଓ ରୂପବତୀ । ମୋ ମନରେ ଯାହା କିଛି ଥାଉ — ମିଛ କହିବା ଭୁଲ ଥିଲା । ଏହାର ପ୍ରମାଣ ହେଲା କିଛି ମାସ ପର୍ଯ୍ୟନ୍ତ ମୁଁ ଏହି ବିଷୟରେ ଚିନ୍ତିତ ହୋଇପଡ଼ିଲି । ମୋର ଏହି ଅଭାଗା ନୈତିକ ଦୃଷ୍ଟି ମତେ ଏପରି କଷ୍ଟ ଦେଉଛି । କରିଥିବା ଅପରାଧ ଅପେକ୍ଷା, ହେଉଥିବା ଅନୁତାପ ମୋତେ ଅଧିକ ଦୁଃଖ ଦେଉଛି ।

ଏପରି ଗୋଟେ ବର୍ଷ ବିତିଗଲା । ରବିବାର ଦିନ । ମୋ ନିଦ ଭାଙ୍ଗିଗଲା । ସେତେବେଳକୁ ଘଣ୍ଟା ବାଜିଯାଇଥିଲା । ଯଦି ମୋର ନିଦ ଭାଙ୍ଗି ନ ଥାଆନ୍ତା ମୁଁ ବୋଧହୁଏ ପ୍ରାୟ ଉଠି ନ ଥାଆନ୍ତି । ରଙ୍ଗନ୍ନା ଉଠେଇ କହିଲା, "ଆପଣଙ୍କ ସହିତ ସାକ୍ଷାତ ପାଇଁ କିଏ ଆସିଛନ୍ତି ।"

"କିଏ ରେ ?"

"କେହିଜଣେ କବାଟ ପାଖରେ ଛିଡ଼ାହୋଇ ଆପଣଙ୍କ ବିଷୟରେ ପଚାରୁଛନ୍ତି ।"

ଭିତରକୁ ଯାଇ ମୁହଁହାତ ଧୋଇଲି । ତଉଲିଆରେ ମୁହଁପୋଛି ଫ୍ଲାସ୍କରୁ କଫି ନେଇ ପିଇବାକୁ ଲାଗିଲି । ରଙ୍ଗନ୍ନା କବାଟ ପାଖରେ ଠିଆହୋଇଛି ।

ରଙ୍ଗନ୍ନା କହିଲା, "ମୁଁ କହିଲି ସାହାବ୍ ଘରେ ଅଛନ୍ତି । ତାପରେ କବାଟ ପାଖରେ ଠିଆହୋଇଥିବା ବ୍ୟକ୍ତିଜଣକ ସେପଟ ଗଳି ପାଖରେ ଠିଆହୋଇଥିବା ଗାଡ଼ି ପାଖକୁ ଗଲା । ସେହି ଗାଡ଼ିରୁ ଜଣେ ସ୍ତ୍ରୀ ଲୋକ ଓହ୍ଲାଇଲେ ଏବଂ ସିଧା ଆସି ଆମ ଅଗଣାରେ ଥିବା ଘରେ ବସିଲେ । ସେ ଯେଉଁ ବ୍ୟକ୍ତି ଆସିଛି, ସେ ନିଜ ସାଙ୍ଗରେ ଗୋଟେ ଟୋକେଇ ଆଣିଛି । ସେ ଟୋକେଇରେ କିଛି ଆମ୍ବ, ସାହାବ୍ ! ଆମ୍ବ ଟୋକେଇ ଏଠାରେ ରଖିଦେଇ ସେ ବ୍ୟକ୍ତିଜଣକ ଗାଡ଼ି ପାଖକୁ ଫେରିଗଲା ।"

"ସ୍ତ୍ରୀ ଲୋକଟି କେଉଁଠି ?"

"ପାଖଘରେ ବସିଛନ୍ତି, ସାହାବ !"

"ମା ?"

"ସେ ତ ମନ୍ଦିର ଆଡ଼କୁ ଯାଇଛନ୍ତି ସାହାବ୍ !"

ସେ କିଏ ଆସିଥିବ ? ଗ୍ରୁଡ ଜୋରରେ ଥରିବାକୁ ଲାଗିଲା । ଟିକେ ଡେରି ହୋଇଗଲା । କେଉଁଠି ଅଛନ୍ତି ? କହୁ କହୁ ମୁଁ ଉଠିଗଲି । ବାହାର ଘରେ କମଳା ବସିଛି । ଶୀଘ୍ରାତିଶୀଘ୍ର ରକ୍ତପ୍ରବାହ ବନ୍ଦ କରିବା ପାଇଁ ମୁଁ ହାତ ମୁଠା କରିନେଲି । ମୁଣ୍ଡରେ ସହସ୍ର ସହସ୍ର ବିଛା ଯେପରି କାମୁଡ଼ିବାରେ ଲାଗିଗଲେ । ଏହିପରି ମୋ ଅବସ୍ଥା ଥିଲା ।

କମଳାର ସେହି କଥା ହୁଏତ ମନେଥିବ । କାହିଁକି ମନେ ନଥିବ—ବାକି ସବୁକଥା ଭୁଲିଯାଇଥିବ—ତାର କିନ୍ତୁ ସେହି ଗୋଟିଏ କଥା ନିଶ୍ଚୟ ମନେଥିବ । ମୋର ମିଛକଥା ଏହା ଭିତରେ ନିଶ୍ଚୟ ତାକୁ ସ୍ପର୍ଶ କରିଥିବ;କାରଣ ବାହାର ଟେବୁଲ ଉପରେ ଆମ ବାହାଘରର ଫଟୋ ରଖାଯାଇଛି । ଫଟୋଗ୍ରାଫର୍ ନିଜ ଯଶକୁ ସମଗ୍ର ସଂସାରରେ ପ୍ରଚାର କରିବା ପାଇଁ ନିଜ ନାମ, ନିଜ ଦୋକାନର ନାମ, ଫଟୋ ଉଠାଇବାର ତାରିଖ, ମାସ ବର୍ଷ ଇତ୍ୟାଦି ବଡ଼ ବଡ଼ ଅକ୍ଷରରେ ଫଟୋକଡ଼ରେ କାର୍ଡରେ ଲେଖି ଲଗେଇଦେଇଛି । କାନ୍ଥରେ ଆହୁରି ମଧ୍ୟ କିଛି ଫଟୋ ଅଛି ।

ହିନ୍ଦୀ ଫିଲମ୍‌ର ଅଭିନେତ୍ରୀ, କଂଗ୍ରେସର ପ୍ରଥମ ପ୍ରେସିଡେଣ୍ଟ, ରବୀନ୍ଦ୍ରନାଥ ଠାକୁର ଆଦିଙ୍କର ଫଟୋ ସହିତ ପୋଛି ଶ୍ରୀରାମୁଲୁଙ୍କର ଫଟୋ ଥିବା କ୍ୟାଲେଣ୍ଡର ମଧ୍ୟ ଟଙ୍ଗାହୋଇଛି ।

"କେଉଁଠୁ ଆସିଲେ ? କେତେ ସମୟ ହେଲା ବସିଛନ୍ତି ?" ପଚାରୁ ପଚାରୁ ସେହି ଫଟୋରେ ତାରିଖ ଥିବା ଅଂଶକୁ ଲୁଚାଇବା ପାଇଁ ଏପଟ ସେପଟ ଖବରକାଗଜ ଉଦ୍ଦେଶ୍ୟରେ ଘୁଞ୍ଚିଲି ।

"ଏହି ଗାଁରେ ମୋର ପିଉସୀ ଅଛନ୍ତି ନାଁ—ଗ୍ରେଟ ଭାଇର ବାହାଘର ପାଇଁ ଝିଅ ଦେଖିବା ଉଦ୍ଦେଶ୍ୟରେ ଏଠାକୁ ଆସିଛି ।"

"ଆଚ୍ଛା !"

ଏଥିମଧ୍ୟରେ ସମ୍ବାଦପତ୍ର କିମ୍ବା କାଗଜ କିଛି ଦେଖାଗଲା ନାହିଁ । ଆଉ ବି ବର୍ତ୍ତମାନ କିଛି କରିବାରେ ମୂଲ୍ୟ ନାହିଁ । ମୋର ଏପରି ସନ୍ଦେହ କାହିଁକି ହେବ ଯେ ସେ ଫଟୋ ଉପରେ ଲେଖାଥିବା ତାରିଖ ଦେଖିପାରିଥିବ । ଯଦି ଦେଖି ପାରିଥାଏ, ତେବେ ତାକୁ ଫଟୋଗ୍ରାଫର୍‌ର ଦୋକାନ ଉଦ୍‌ଘାଟନର ତାରିଖ କହିଦେଇହେବ ।

ରଙ୍ଗନାୟକୁ କହିଲି କଫି ଆଣିବା ପାଇଁ ।

"ଆଉ, ବର୍ତ୍ତମାନ ପିଇ କରି ଆସିଛି ।"

"କିଛି କଥା ନାହିଁ,—ଏ ତ କଫି । ଆଚ୍ଛା କ'ଣ ଝିଅ ପସନ୍ଦ ହେଲା ?"

"ପୁଅକୁ ପସନ୍ଦ ହେଲେ ହେବ ନା ?"

"ବିଲ୍‌କୁଲ୍ ସତ କଥା ।"

"ମୋର ବିଶ୍ୱାସ ନଥିଲା ଯେ ଆମେ ଏତେ ଶୀଘ୍ର ପୁଣି ପରସ୍ପରକୁ ଭେଟିବା ।" ଏହା କହି ସେ ହସିଲା ।

"ହଁ, ଏତେ ଶୀଘ୍ର...ଭୁଲିଯିବା ତ ଗୋଲ ।"

"ଇଏ ସେହି ଶାଢ଼ି ସେ ଦିନର ।"

"ହଁ ସେ ଶାଢ଼ି । ବହୁତ ସୁନ୍ଦର । ଆପଣଙ୍କର ଶାଢ଼ି ବିଷୟରେ ଅଧିକ ଜ୍ଞାନ ଅଛି ।" ଗଳ୍ପଅର କଥାକୁ ଦୋହରାଇଲି ।

"ମୋ ନାମ କ'ଣ ଭୁଲିଗଲେ ?"

"ନା, ନା...କମଳା ।"

"ପୁଣି 'ଆପଣ' କପରି କହୁଛନ୍ତି ?"

ଦୁଇ ଜଣ ହସିଉଠିଲୁ ।

ପାଖରେ ଥିବା ଷ୍ଟୋକେଇକୁ ଚାହିଁଲି ।

"ଆମ୍ବ ଅଛି ?"

"ହଁ, ଆମ୍ବ ଅଛି ।"

"ତୁମେ ଆଣିଛ ?"

ସେ ହସିଲି ।

ପୁଣି କାନ୍ଥ ଆଡ଼କୁ ଚାହିଁଲି ।

"ଏହି ଶାଢ଼ି ମଧ୍ୟ ବହୁତ ଭଲ ଶାଢ଼ି । କ'ଣ କମଲକ୍ଷ୍ମୀ ଏଠାରେ ରୁହନ୍ତି ?" କହୁ କହୁ ହ୍ୟାଙ୍ଗର୍‌ରେ ଝୁଲାହୋଇଥିବା ନୀଳ ରଙ୍ଗ ଶାଢ଼ି ଆଡ଼କୁ ଚାହିଁଲି ।

ଯାହା ଘଟିବାର ଥିଲା ତାହା ଘଟିଲା । ହ୍ୟାଙ୍ଗର୍‌ରେ ମୋ କୋଟ୍ ପାଖରେ ତାର ଶାଢ଼ି ମଧ୍ୟ ଝୁଲାଯାଇଛି । ମୋତେ ମୋ ସ୍ତ୍ରୀ ଉପରେ ରାଗ ଚଢ଼ିଲା । ଶାଢ଼ିର ମର୍ଯ୍ୟାଦା ସମସ୍ତଙ୍କୁ ଦେଖାଇବା ପାଇଁ ବୋଧହୁଏ ସେ ବାହାର ଘରେ ମୋ କୋଟ୍ ପାଖରେ ଟାଙ୍ଗିଦେଇଛି । ଭିତରେ ଗୋଟେ ଆଲମାରୀ ଓ ଦୁଇଟି ଟ୍ରଙ୍କ ଅଛି । ସେଥିରେ କ'ଣ ଶାଢ଼ି ରଖିବା ପାଇଁ ଜାଗା ମିଳିଲା ନାହିଁ ? ଲୋକମାନେ ଠିକ୍ କହୁଥିଲେ, ସ୍ତ୍ରୀ ଲୋକମାନେ ସର୍ବଦା ନିଜ ସୌନ୍ଦର୍ଯ୍ୟ ଏବଂ ନିଜର ରୂପକୁ ସଜାଇବାରେ ବ୍ୟସ୍ତ ରହି, ଘରର ସୌନ୍ଦର୍ଯ୍ୟ ପ୍ରତି ମୋଟେ ଧ୍ୟାନ ଦିଅନ୍ତି ନାହିଁ ।

"ସେ...ସେହି ତ...ନା ।"

"କଥା କ'ଣ ? କ'ଣ ସେ ଶାଢ଼ି ନୁହେଁ ?"

"ନା, ନା...ସେ କମଲକ୍ଷ୍ମୀର...କଥା କ'ଣ, ନା କିଛି ନୁହେଁ ।" ବର୍ତ୍ତମାନ ମୁଁ ବୁଝିପାରିଲି ଯେ ପୁଣି ଦ୍ୱିତୀୟ ଥର ମିଛ କହିବାର କିଛି ଫାଇଦା ନାହିଁ । ଜଣା-ପଡ଼ିଯିବ । ଆଘାତ ସହିବାକୁ ପଡ଼ିବ । ସେଥିପାଇଁ ପ୍ରସ୍ତୁତ ହେବା ସବୁଠାରୁ ଭଲ ।

"ତୁମକୁ ବୋଧହୁଏ ଜଣାନାହିଁ...ଏଇ ଏଇ ମଧ୍ୟରେ... ।"

"କିଏ ନୂଆ ଆତ୍ମୀୟସ୍ୱଜନ ?"

ମୋତେ ଅଧିକ ରାଗ ଲାଗିଲା । କଥାବାର୍ତ୍ତା ପାଇଁ ହଜାର ହଜାର ବିଷୟ ଥାଉ ଥାଉ ଏହି ଶାଢ଼ି ବିଷୟରେ ବାରମ୍ବାର ତନ୍ନତନ୍ନ କରି ପଚାରିବା ସ୍ତ୍ରୀ ଲୋକ୍

ହିସାବରେ ତା' ସ୍ୱଭାବର ସଂକୀର୍ଣ୍ଣତାର ଦ୍ୟୋତକ ଥିଲା ।

"ନା ଆଉ କେହି ନାହାନ୍ତି···ଏହା ମୋର ସ୍ତ୍ରୀର ହିଁ ଅଟେ ।" କହି ମୁଁ ନିଜର ଦୃଷ୍ଟି ତା ଆଡ଼ୁ ଟାଣିଆଣି ଟେବୁଲ୍ ଉପରେ ରଖାଯାଇଥିବା ଟେବୁଲ୍-କ୍ଲଥ୍‌କୁ ଆଙ୍ଗୁଠିରେ ଗୁଡ଼ାଇବାକୁ ଲାଗିଲି । ସେ ନିଜର ଆଶ୍ଚର୍ଯ୍ୟ କିପରି ପ୍ରକାଶ କରିଥିଲା ମୁଁ ଧ୍ୟାନ ଦେଇ ନଥିଲି ।

"ତୁମର···ସ୍ତ୍ରୀ···" କହୁ କହୁ ସେ ମୋ ଆଡ଼କୁ ଆଙ୍ଗୁଳି ନିର୍ଦ୍ଦେଶ କଲା ।

"ଏଥିରେ ଆଶ୍ଚର୍ଯ୍ୟ ହେବାର କ'ଣ ଅଛି ?"

"ମୋତେ ସେତେବେଳେ ତ ଜଣାଇ ନଥିଲ ? କେବଳ କହିଥିଲ ଯେ ଏପରି କିଛି ଘଟିନାହିଁ ।" ସମ୍ମୁଖରେ ଫଟୋ ଦେଖି ଏବଂ ବାସ୍ତବ କଥାକୁ ଜାଣି ମଧ୍ୟ ସେହି କଥା ମୋ ମୁହଁରୁ ଶୁଣିବାକୁ ସେ ଚାହୁଁଥାଏ; ଯେପରି କି ସେ କିଛି ଜାଣିନାହିଁ । ଜଣାନାହିଁ ସେଥିରେ ସେ କ'ଣ ନାଟ ଦେଖିବାକୁ ଚାହୁଁଥିଲା । ଯଦି ମୁଁ କହେ ଯେ ଏବେ ଏବେ ମୋର ବିବାହ ହୋଇଯାଇଛି ତେବେ ସେ ବିଶ୍ୱାସ କରିବ ନାହିଁ । କାରଣ ନୂଆହୋଇ ଆସିଥିବା ବୋହୂ ଶାଢ଼ିକୁ ବାହାର ଘରେ ରଖିପାରେ ନାହିଁ । ଯେବେ ସତ କହିବ ତେବେ ସମ୍ପୂର୍ଣ୍ଣ ସତ କହିବା ଉଚିତ ।

"ହଁ, ସତ କଥା ।"

"କେଉଁ କଥା ସତ ?"

'ହୋଇସାରିଛି, ହୋଇସାରିଛି ।"

"କିପରି ?"

"ଯେପରି ସବୁ ଯୁବକ ଯୁବତୀମାନଙ୍କର ହୋଇଥାଏ ।"

"ସେ କଥା ପଚାରୁନାହିଁ । ସେତେବେଳେ ଏପରି କାହିଁକି କହିଲେ ?"

"ମନେ ନାହିଁ କାହିଁକି କହିଥିଲି । ସେ ସମୟରେ ଏପରି କହିବାକୁ ଚାହୁଁଥିଲି ।"

"ଆଶ୍ଚର୍ଯ୍ୟ କଥା ।"

"ତୁମକୁ ଜଣାଅଛି ?"

"ମୋତେ କଣ ଜଣା ?"

ରଙ୍ଗନ୍ନା କଫି ଟେବୁଲ୍ ଉପରେ ରଖିଲା । କମଳା କହିଲା, "ମୁଁ ପିଇବି ନାହିଁ ।"

"ବେଶ୍, ତେବେ ଆମ୍ଭ କାହିଁ ଦିଅଁ ।" କହି ଅମ୍ଭ ଟୋକେଇଟା ନିଜ ଆଡ଼କୁ ଟାଣି ଆଣିଲି । କମଳା ତାକୁ ନିଜ ଆଡ଼କୁ ଟାଣିନେଲା । ମୁଁ ରଙ୍ଗନ୍ନାକୁ ପାନ ଆଣିବା ପାଇଁ ବାହାରକୁ ପଠାଇଦେଲି । କମଳା ଉଠି ଚାଲିଗଲା ଏବଂ ବାହାର ଫାଟକ ପାଖରେ ପଡ଼ିଥିବା ଚଉକିରେ ବସିପଡ଼ିଲା । ସେ ରାଗିଯାଇଛି । ଈର୍ଷାରେ ଜଳୁଥିବା ଆଖିକୁ ବାରମ୍ବାର ବନ୍ଦ କରୁଥିଲା । ତାର କପାଳ କ୍ରୋଧରେ ଲାଲ୍ ପଡ଼ିଯାଇଥିଲା । ଉପହାସକୁ ବରଦାସ୍ତ କରିବାକୁ ନାରାଜ, ତାର ଭ୍ରୂଲତା ଠିଆହୋଇ ଚମଡ଼ାକୁ ନିଜ ଆଡ଼କୁ ଟାଣିନେଉଥିଲା । ବୋଧେ ସେ ଚିନ୍ତା କରୁଛି ଯେ ମୁଁ ମୋ ସ୍ତ୍ରୀ ସହିତ ମିଶି

ତାକୁ ଧୋକା ଦେଉଛୁ ।

"ସାମନାରେ ଥିବା ସେହି ଫଟୋ"—ମୁଁ କହିଲି ।

"ଜାଣିପାରିଲି । ବୁଝିଲୁ, ତମେ ମୋତେ ମିଛ କହି ମନେ ମନେ ଖୁସି ହେଉଛ ।" ଏହି ବାକ୍ୟରେ ଅଧିକ କ୍ରୁରତା ଓ ଈର୍ଷା ପ୍ରକାଶ ପାଉଥିଲା । ମୁଁ ମଧ୍ୟ କେତେ ମାସ-ଧରି ଅନୁତାପ କରୁଛି । ସେଥିପାଇଁ ମୁଁ ସେସବୁ ପାଇଁ ନିଜକୁ ପ୍ରସ୍ତୁତ କରିନେଇଛି । ତାକୁ ମୁଁ କୌଣସି ନାଟକର ନାୟିକାରୂପେ ଦେଖୁଛି ।

"ତୁମେ ଏଭଳି ଭାବିବା ଉଚିତ ନୁହେଁ । ସେ ସମୟରେ ମୋତେ ଲାଗିଲା ଏବଂ ମୁଁ କହିଦେଲି । ମୁଁ ସବୁ କିଛି ବୁଝିପାରୁଛି ।"

"ବାସ୍ତବରେ ତୁମେ ଏବଂ ତୁମର ଶ୍ରୀମତୀ ଦୁଇ ଜଣ ଏ କଥାରେ ଗର୍ବ ଅନୁଭବ କରୁଥିବ ଯେ ତୁମେମାନେ ବଡ଼ ଚମତ୍କାର କାର୍ଯ୍ୟ କରିଛ ।"

"ଏଥିରେ ତାକୁ ପୁରୁଷ ନାହିଁ ।"

"ବାହାରେ ବାଃ··· ସ୍ତ୍ରୀର ନାମ ନେବାରେ କେତେ ପୌରୁଷ ? କେତେ ଦୋଷ ?"

"ଚୁପ୍ ରହ କମଳା ! ମୋତେ ଯାହା ଗୁହୁଁଛ ତାହା କୁହ, ମୁଁ ଶୁଣିବାକୁ ପ୍ରସ୍ତୁତ । ତା କଥା ଉଠାଅ ନାହିଁ । ତାକୁ ଏସବୁ କିଛି ଜଣାନାହିଁ ।"

"ଯେତେବେଳେ ତୁମେ ମୋତେ ମିଛ କହିପାରିଲ ତେବେ ନିଜ ପତ୍ନୀକୁ କଣ ସେମିତି କହୁ ନଥିବ ? ମୋତେ ତମେ ଯେଉଁ ଧୋକା ଦେଇଛ ସେଥିରେ ଏପରି ଖୁସି ହେବାର କିଛି ଆବଶ୍ୟକତା ନାହିଁ । ଏମିତିକା ଦ'ଗୁରିଆ ମିଛ କଥା ଯଦି ତମ ଶ୍ରୀମତୀଙ୍କୁ ଶିଖେଇଦେବ ତେବେ ତୁମର ଶ୍ରୀମତୀ ମଧ୍ୟ ତୁମକୁ ଏପରି ଧୋକା ଦେବେ ।"

ଏଥିରେ ମୋତେ ବହୁତ ଦୁଃଖ ହେଲା । ମୋ ସାଥିରେ କମଳା ଏପରି ଲଗାମ-ଛଡ଼ା ହୋଇ କଥା କହିବାକୁ ସାହସ କିପରି କଲା ? ମୋର ମିଛ କହିବା ଯୋଗୁଁ ତ ? ସ୍ତ୍ରୀଲୋକମାନଙ୍କୁ ଯଦି ଆଗକୁ ବଢ଼ିବାକୁ ଦିଆଯାଏ ତେବେ କ'ଣ ଆଉ କୁହାଯିବ··· ସମସ୍ତେ ଜାଣନ୍ତି ।

"ଏପରି କଥା କୁହ ନାହିଁ କମଳା !" ମୁଁ ତମଠାରୁ କ୍ଷମା ମାଗିନେଉଛୁ ।" କିନ୍ତୁ ମୁଁ ଯେତେ ନରମ ହେବାକୁ ଯାଉଛି ଏବଂ ନମ୍ର ହୋଇ ଉତ୍ତର ଦେଉଛି, କମଳାର କ୍ରୋଧ ସେତେ ସେତେ ବଢ଼ି ଚାଲିଛି । ମୁଁ ଗମ୍ଭୀର ହୋଇ କର୍କଶ ସ୍ୱରରେ ଉତ୍ତର ଦେବାରୁ—

"ପତିବ୍ରତା ମହିଷୀ ନା, ପିଲାପିଚିକାବାଲା ଏପରି ମିଛ···"

"ବହୁତ ଦୁଃଖ ହୋଇଛି । ବର୍ତ୍ତମାନ ଟିକେ କଫି ପିଆଯାଉ ।" ମଝିରେ ମୁଁ କହିଦେଲି ।

ହଠାତ୍ ମୋ ଭିତରୁ କେମିତି କେଜାଣି ବିଜୁଳି ଭଳି ହସ ଆସି ଓଠରେ ଦେଖାଦେଲା ।

କମଳା ଉଠି ଠିଆହେଲା । ଚେୟାର ଓ ଟେବୁଲ୍‌କୁ ସମ୍ଭାଳୁ ସମ୍ଭାଳୁ ମୁଁ ମଧ୍ୟ ଠିଆହେଲି ।

"ଏତେ ହସିବାର ଆବଶ୍ୟକତା ନାହିଁ । ଯେପରି ତୁମେ ଗୋଟେ ବଡ଼ ଆଶ୍ଚର୍ଯ୍ୟ କାମ କରିଦେଇଛ । ତୁମେ ବୋଧହୁଏ ଭାବୁଛ ବିବାହ କେବଳ ତୁମର ହୋଇଛି; ଆଉ କାହାର ହୋଇନାହିଁ । ଯଦି ତୁମର ବିବାହ ଗୋଟେ ବର୍ଷ ଆଗରୁ ହୋଇଛି, ତେବେ ମୋର ବିବାହ ତା ପୂର୍ବରୁ ହୋଇସାରିଛି । ଯେଉଁ କାରଣରୁ ତୁମେ ମିଛ କହିଥିଲ, ସେହି କାରଣରୁ ମୁଁ ମଧ୍ୟ ମିଛ କହିଥିଲି । ଠିକ୍ ଅଛି । ବର୍ତ୍ତମାନ ମୋତେ ହସ ମାଡ଼ୁଛି । କିନ୍ତୁ ମୁଁ ତୁମ ଭଳି ଜୋର୍‌ରେ ହସି ପାରୁନାହିଁ···।"

ମୋତେ କହିବାର ସୁଯୋଗ ନଦେଇ ସେ ଚାଲିଗଲା । ବାସ୍, ଗଲା ତେବେ କାନ୍ଦିବା ଏବଂ ନଗଲା ତେବେ ହସିନା— ଏହିପରି କିଛି ଗୁଣୁଗୁଣୁ ହେବାର ସ୍ୱର ଶୁଣାଗଲା । ମୁଁ ମଧ୍ୟ ପଛେ ପଛେ ଗଲି । ରଙ୍ଗନ୍ନା ପାନ ଆଣିସାରିଥିଲା । ସେ ତ ଗାଡ଼ିରେ ଚଢ଼ି ବସିପଡ଼ିଲା । ମୁଁ ଆଶ୍ଚର୍ଯ୍ୟ ଚକିତ ହୋଇପଡ଼ିଲି । ମୁଁ ନିଜକୁ ହାଲୁକା କରିବାକୁ ଚେଷ୍ଟା କଲି । ମୋ ଅସତ୍ୟରୂପୀ ପାପର ଭାଗୀଦାର ମୋ ସହିତ ଆହୁରି ମଧ୍ୟ ଅଛନ୍ତି । ମୋତେ ଲାଗିଲା, ମୁଁ ଏତେଟା ଖରାପ ମଣିଷ ନୁହେଁ । ମୁଁ ଭାବୁଛି ପ୍ରାୟ ସବୁ ଲୋକ ଏହିପରି ହୋଇଥିବେ । ଏହି ସତ୍ୟକୁ ଜାଣିବା ପାଇଁ ମିଛ କହିବାକୁ ହେଲା ତ ସେଥିରେ ଖରାପ କ'ଣ ? କମଳା ପ୍ରତି ମୋ ମନରେ କୌଣସି କ୍ରୋଧ ନାହିଁ । ସ୍ତ୍ରୀମାନଙ୍କର କ୍ରୋଧର ପ୍ରତିଶୋଧ ନେବାରେ ଅନେକେ ଆପତ୍ତି ଉଠାଇ ପାରନ୍ତି । କିନ୍ତୁ ପ୍ରତିକ୍ଷଣ ସେହି ବୟସରେ ବଢ଼ି ବଢ଼ି ବାର୍ଦ୍ଧକ୍ୟରେ ପ୍ରବେଶ ହୋଇଯାଏ । ଏ କଥା କଳ୍ପନା କରି ନିଜ ମନକୁ ସାନ୍ତ୍ୱନା ଦେବାରେ କୌଣସି ଆପତ୍ତି ଥାଇ ନପାରେ । ସଡ଼କର ମୋଡ଼କୁ ଅନାଇଲି । ଦେଖିପାରିଲି ଯେ ମୋ ସ୍ତ୍ରୀ ମୁଣ୍ଡ ତଳକୁ କରି ମନ୍ଦିରରୁ ଫେରୁଛି ।

ମୁଁ ଆମ୍ବ ଟୋକେଇ ଗାଡ଼ିରେ ରଖିଆସିବାକୁ ରଙ୍ଗନ୍ନାକୁ କହି ଭିତରକୁ ଚାଲି-ଆସିଲି । ଯେବେ ଏ କଥା ସତ ଯେ ମୋ ସ୍ତ୍ରୀ ସ୍ୱେ ସମସ୍ତ କଥା ଗୁଏଁ-ଗୁଏଁ ଜାଣିପାରିବ ତେବେ ଅନ୍ୟ କେହି କହିବା ପୂର୍ବରୁ ମୁଁ ନିଜେ ନିଜେ ସ୍ତ୍ରୀକୁ ଏସବୁ କଥା କହିଦେବି । ବୋଧହୁଏ ତାହାହିଁ ମଙ୍ଗଳଜନକ ।

# ପାର୍ବତୀ–ପରିଣୟ

ପ୍ରଜାପତି ଦକ୍ଷଙ୍କର କନ୍ୟାମାନଙ୍କ ମଧ୍ୟରୁ ଏକା ଉମା ତାଙ୍କର ପିତାଙ୍କର ଇଚ୍ଛା ବିରୁଦ୍ଧରେ ଶଙ୍କରଙ୍କ ସହ ବିବାହ କରିଥିଲେ। ଦକ୍ଷ ନିଜର ଜ୍ୱାଇଁ ଶଙ୍କରଙ୍କୁ ନିଜର ସମାନସ୍କନ୍ଧ ମନେ କଲେ ନାହିଁ । ସେଥିପାଇଁ ସେ ଉମା ଏବଂ ଶଙ୍କରଙ୍କୁ ନିଜ ଘରେ ହେଉଥିବା ଯଜ୍ଞକୁ ଆମନ୍ତ୍ରଣ କଲେ ନାହିଁ । ଶଙ୍କରଙ୍କର କଥା ନ ମାନି ଉମା ବିନା ନିମନ୍ତ୍ରଣରେ ପିତାଙ୍କର ଯଜ୍ଞ ଦେଖିବାକୁ ଯାଇ, ସେଠାରେ ଅପମାନିତ ହୋଇ ଯଜ୍ଞକୁଣ୍ଡରେ ପଡ଼ି ଭସ୍ମ ହୋଇଗଲେ ।

ଏହାଠାରୁ ଅଧିକ ସ୍ୱାଭାବିକ କାହାଣୀ ଦୈନନ୍ଦିନ ଜୀବନରେ ବି ଘଟିପାରିବ ନାହିଁ । ଅନେକ ଦେଶରେ, ଅନେକ ସମୟରେ, ଅନେକ ଉମା ଅନେକ ଶଙ୍କରଙ୍କୁ ବିବାହ କରି ଅନେକ ଯାତନା ଏବଂ ଅପମାନ ଭୋଗିଛନ୍ତି ।

ତେବେ ମଧ୍ୟ ଏହି ପୌରାଣିକ ଇତିବୃତ୍ତ ନେଇ ଗତ କେତେ ଦିନଧରି ମୋ ମନରେ କେତେକ ସନ୍ଦେହ ଉତ୍ପନ୍ନ ହୋଇଛି । କଣ ସତରେ ଶଙ୍କରଙ୍କ ପ୍ରତି ପ୍ରେମ ଏବଂ ଆଦରର ଭାବନାରେ ପ୍ରେରିତ ହୋଇ ଉମା ଶଙ୍କରଙ୍କୁ ବିବାହ କରିଥିଲେ ? ନା ସଂସ୍କାରହୀନ ପ୍ରମଥଗଣ ଏବଂ ସଭ୍ୟତା-ଅଜଣିଙ୍କ ଶଙ୍କରଙ୍କ ଉପରେ ଆଧିପତ୍ୟ କରିବା ପାଇଁ ଏହି ବିବାହ କରିଥିଲେ ? ଶଙ୍କରଙ୍କର କଥାକୁ ଉପେକ୍ଷା କରି ପିତାଙ୍କ ଘରକୁ ଯିବାରେ ଉମା କେବଳ ନିଜର ସରଳତାର ପରିଚୟ ଦେଇଥିଲେ; ନା ଏହି କାମ ସେ ଜାଣିଶୁଣି କରିଥିଲେ ? ମୋ ମନରେ ଉଠୁଥିବା ଆଉ ଏକ ପ୍ରଶ୍ନ ହେଲା — ଉମା ସତରେ ଯଜ୍ଞକୁଣ୍ଡକୁ ଡେଇଁପଡ଼ିଥିଲେ ନା ଚୋରେଇ ଘରେ ଯାଇ ନିଜକୁ ଲୁଚାଇ ରଖିଥିଲେ ?

ଉମା ଏବଂ ଶଙ୍କରଙ୍କର ଅତ୍ୟନ୍ତ ପବିତ୍ର ଆଖ୍ୟାୟିକା ବିଷୟରେ ମୋ ମନରେ ଏପରି ନୀଚ ଧରଣର ସନ୍ଦେହ କାହିଁକି ଉତ୍ପନ୍ନ ହେଉଛି, ତାର କାରଣ ମୁଁ ଆଗକୁ ଯାହା ଲେଖିବି ତା'ରି ଆଧାର ଉପରେ ଆପଣ ନିଜେ ବୁଝିପାରିବେ । ମୋର ତ ବିଶ୍ୱାସ, ଯେଉଁଠି ଉମା-ଶଙ୍କରଙ୍କର ବିବାହ ହବ, ତାର ପରିଣାମ ନା ଦକ୍ଷଙ୍କୁ ଭୋଗିବାକୁ ହେବ ନା ଉମାଙ୍କୁ ? ତାର ଖରାପ ଫଳ ପଡ଼ିବ ଖାସ୍ ଶଙ୍କରଙ୍କ ଉପରେ ।

ପାର୍ବତୀ ରାମକୋଟିଙ୍କର ଝିଅ । ରାମକୋଟି ପିଲାଦିନୁ ସଂସ୍କାରକ । ସେ ନିଜ ପିଲାଦିନେ ବାରେଣ୍ଟଲିଙ୍ଗମଙ୍କୁ କେତେ ଥର ଦେଖିଛନ୍ତି । ଟିକେ ବଡ଼ ହେବା ପରେ ଗାନ୍ଧୀଙ୍କର ନୀତି ମଧ୍ୟ ତାଙ୍କୁ ଆକୃଷ୍ଟ କରିଥିଲା । କଂଗ୍ରେସ ଆନ୍ଦୋଳନ ସହ କୌଣସି ସମ୍ବନ୍ଧ ନଥିଲେ ମଧ୍ୟ ତାଙ୍କୁ ଗାନ୍ଧୀଭକ୍ତ ବୋଲି ନିର୍ଦ୍ୱନ୍ଦ୍ୱରେ କୁହାଯାଇପାରେ ।

ଏବେ ଏହା କହିରଖିବା ଉଚିତ ଯେ ରାମକୋଟିଙ୍କର ସଂସ୍କାରବାଦ ବା ଅନ୍ୟ

କୌଣସି ପ୍ରକାରର ସୁଧାରବାଦରେ ମୋର କୌଣସି ବିଶ୍ବାସ ନାହିଁ । ଏହାର ମୁଖ୍ୟ କାରଣ ହେଲା ସଂସ୍କାରକମାନଙ୍କର ବ୍ୟାବହାରିକ ରୂପ କେଉଁଭଳି ହେବ, ଏହା କହିବା କଠିନ । ରାମକୋଟି କେତେକ ବିଧବା-ବିବାହରେ ସହାୟକ ହୁଅନ୍ତି ଏବଂ ଏହିପରି କେତେ ବିବାହରେ ହାଜର ମଧ୍ୟ ହୁଅନ୍ତି; କିନ୍ତୁ ସେ କୌଣସି ବିଧବାକୁ ବିବାହ କରିନାହାନ୍ତି । ଗୋଟିଏ ସାଧାରଣ କନ୍ୟା ସହିତ···ସେ ବି ରଜସ୍ବଳା ହେବା ପୂର୍ବରୁ···ତାଙ୍କର ବିବାହ ହୋଇଛି । ବିଧବା ଆଶ୍ରମରେ ଉପଯୁକ୍ତ ସ୍ତ୍ରୀ ମିଳିଲେ ନାହିଁ ବୋଲି ଯେ ସେ ଏପରି ବିବାହ କଲେ ସେ କଥା ନୁହେଁ । ସେ କେତେଗୁଡ଼ିଏ ବିଧବାଙ୍କୁ ଦେଖାଦେଖି ମଧ୍ୟ କରିଥିଲେ । କିନ୍ତୁ ସେମାନଙ୍କ ମଧ୍ୟରୁ କାହାରି ରୂପ ତାଙ୍କୁ ସନ୍ତୁଷ୍ଟ କରିପାରିଲା ନାହିଁ ।

ଯେତେବେଳେ ତାଙ୍କର କୌଣସି ବନ୍ଧୁ ତାଙ୍କର ବିବାହ ବିଷୟ ଚର୍ଚ୍ଚା କରିଥିଲା ରାମକୋଟି ମହାଶୟ ସେ ମିତ୍ରଙ୍କୁ ଜବାବ ଦେଇ ଲେଖିଥିଲେ, 'ଯେଉଁ ଲୋକ କହୁଛନ୍ତି ମୁଁ ବିଧବା ନାରୀ ସହିତ ବିବାହ କରିବାକୁ ଚାହୁଁ ନଥିଲି, ତାଙ୍କ ମୁହଁରେ ପୋକ ପଡ଼ୁ ।···ମୁଁ ଏ କଥାକୁ ମାନେନାହିଁ ଯେ ବିବାହ କେବଳ ସାମାଜିକ ଦୃଷ୍ଟିରୁ ସମ୍ପୂର୍ଣ୍ଣ ହେବା ଉଚିତ । ସେଥିରେ ବିବାହ କରୁଥିବା ବ୍ୟକ୍ତିର ନିଜ ଆଶା-ଅଭିଳାଷ ପାଇଁ ପ୍ରମୁଖ ସ୍ଥାନ ଥିବା ଉଚିତ । ବିବାହ ତ ଖାସ କରି ବ୍ୟକ୍ତିଗତ ଅଟେ ଏବଂ ପରେ ଦୁହିଁଙ୍କ ମାଧ୍ୟମରେ ସମାଜ ସହିତ ଏହାର ସମ୍ବନ୍ଧ ସ୍ଥାପିତ ହୁଏ···

'ମୋର ଯେଉଁ ଝିଅ ପସନ୍ଦ ହେଲା, ତାକୁଇ ମୁଁ ବିବାହ କଲି । ଏ ବିଷୟରେ ଚର୍ଚ୍ଚା କରିବାର ବା ଭଲ ମନ୍ଦ କହିବାର କାହାରି ଦର୍କାର ନାହିଁ ।'

ରାମକୋଟି ମହାଶୟ ଏହିପରି ନିଜର ଆଚରଣକୁ ସମର୍ଥନ କରନ୍ତୁ ନା କାହିଁକି; କିନ୍ତୁ ତାଙ୍କର ଏହି ଉପସ୍ଥାପନା ଉପରେ ବିଶ୍ବାସ କରିବାର ଆମର କୌଣସି ଆବଶ୍ୟକତା ନାହିଁ । ରାମକୋଟି ମହାଶୟଙ୍କ ସ୍ତ୍ରୀକୁ ମୁଁ ଭରାଯୌବନରେ ହିଁ ଦେଖିଥିଲି । ତାଙ୍କଠାରେ ବିଶେଷ ଆକର୍ଷଣୀୟ କିଛି ନ ଥିଲା । ଯେଉଁମାନେ ତାଙ୍କୁ ସେଦିନେ ଦେଖିନାହାନ୍ତି, ସେମାନେ ଆଜି ପାଙ୍କତ୍ତାକୁ ଦେଖିପାରନ୍ତି । ପାଙ୍କତ୍ତି ଏକେବାରେ ନିଜ ମା' ପରି ଦେଖିବାକୁ । ରାମକୋଟି ବାବୁଙ୍କର କହିବା ଅନୁସାରେ ସେ ଯେଉଁ ବିଧବାମାନଙ୍କୁ ଦେଖିଥିଲେ, ସେମାନେ ଏହାଠାରୁ ବଳି ଅସୁନ୍ଦରୀ ସ୍ତ୍ରୀଲୋକ ହୋଇଥିବେ । ମୋ କଥାରେ ବୋଧହୁଏ ଆପଣମାନଙ୍କର ବିଶ୍ବାସ ହେବ ନାହିଁ; କିନ୍ତୁ ସତ କଥା ଏଇଆ—ଯେପର୍ଯ୍ୟନ୍ତ ରାମକୋଟି ବାବୁ ସମାଜ-ସଂସ୍କାରବିରୋଧୀ ନିଜ ଆଚରଣ ସପକ୍ଷରେ ଯୁକ୍ତି ବାଢ଼ୁଥିବେ ସେପର୍ଯ୍ୟନ୍ତ ସଂସ୍କାରରେ ମୋର ଆସ୍ଥା ହୋଇପାରିବ ନାହିଁ ।

ରାମକୋଟି ମହାଶୟଙ୍କର ସଂସ୍କାର ସମ୍ବନ୍ଧରେ ମୋ ମନରେ ଗୋଟିଏ ସନ୍ଦେହ ଅଛି । ତାର ସମାଧାନ ଏପର୍ଯ୍ୟନ୍ତ ହୋଇପାରିନାହିଁ । ସେ ବିଧବା-ବିବାହ, ଅସବର୍ଣ୍ଣ ବିବାହ, ହରିଜନଙ୍କ ସାଙ୍ଗରେ ପଂକ୍ତି-ଭୋଜନ ଆଦିକୁ ସମର୍ଥନ କରନ୍ତି; କିନ୍ତୁ

ତାଙ୍କର ବନ୍ଧୁବାନ୍ଧବଙ୍କ ମଧ୍ୟରେ ଯେଉଁମାନେ କପଟ ଘୂରୁଣାକାଳିଆ ଓ ରକ୍ଷଣଶୀଳ ସେମାନଙ୍କ ସହିତ କେବେହେଲେ ତାଙ୍କର ମତଭେଦ ବା ସଂଘର୍ଷ ହୋଇନାହିଁ। ଏହାର କାରଣ କଣ ? ସେ ନିଜେ ବା ତାଙ୍କର କୌଣସି ଭାଇ ବା ତାଙ୍କର କେଉଁ ଭଉଣୀ ବା ତାଙ୍କର ପିଲାମାନଙ୍କ ଭିତରୁ କେହି ବା ତାଙ୍କର ପୁଅ ରମାପତି ମଧ୍ୟ ଅତି କମ୍‌ରେ ଅସବର୍ଣ୍ଣ ବିବାହ ପର୍ଯ୍ୟନ୍ତ କାହିଁକି କରିନାହାନ୍ତି ? ଏହାର କାରଣ କଣ ହୋଇପାରେ ?···ଏତେ ଦିନ ପରେ ବର୍ତ୍ତମାନ ଯଦି ପାର୍ବତୀ କୌଣସି ହରିଜନକୁ ବିବାହ କରିବ, ତାକୁ ହିଁ ଭିତ୍ତିକରି "ପ୍ରେମକୋଟି ପରି ସଂସ୍କାରକ ଆଉ ଜନ୍ମିବେ ନାହିଁ" ଲୋକଙ୍କ ମନରେ ଏଇ ଧାରଣା ସୃଷ୍ଟି କରିବାକୁ ସେ ବେଶ୍ ଚେଷ୍ଟା ଏବଂ ପରିଶ୍ରମ କରିଥିଲେ। ମୁଁ ମଧ୍ୟ ସେ ସଂପର୍କରେ ସଚେତନ ଥିଲି। ତାର ଉଲ୍ଲେଖ ଦବା ଦର୍କାର।

ପାର୍ବତୀକୁ ମୁଁ ଭଲଭାବେ ଚିହ୍ନେ। ତାର ମାନସିକ ପ୍ରବୃତ୍ତି ମୋତେ କେବେ ହେଲେ ଭଲ ଲାଗିନାହିଁ; କିନ୍ତୁ ସେଥିପାଇଁ ମୁଁ ତାକୁ ଦୋଷ ଦେଉନାହିଁ। ସେ ଦେଖିବାକୁ ସୁନ୍ଦର ନୁହେଁ, ଶରୀର ବି ଦୁର୍ବଳିଆ। ଏଥିପାଇଁ ସେ ତା'ଠାରୁ ସୁନ୍ଦରୀ ଏବଂ ସୁସ୍ଥ ସାଙ୍ଗଙ୍କ ଉପରେ ହିଂସା କରୁଥିଲା। ସେମାନଙ୍କ ପରି ସୁନ୍ଦରୀ ଦେଖା-ଯିବାକୁ ସେ ବହୁତ ଚେଷ୍ଟା କରୁଥିଲା। ତେର ଚୌଦ ବର୍ଷ ବେଳଠୁଁ ସେ ଗୋଟିଏ ଖରାପ ଅଭ୍ୟାସର ଶିକାର ହୋଇଥିଲା। ପୁରୁଷମାନଙ୍କୁ ଆକୃଷ୍ଟ କରିବାରେ ନିଜର ଶକ୍ତି ପରୀକ୍ଷା କରିବାକୁ ସେ ସେଇ ବୟସରୁ ସାଧନା କରିବାରେ ଲାଗିପଡ଼ିଲା। ମୁଁ ତା'ଠାରୁ କୋଡ଼ିଏ ବର୍ଷ ବଡ଼, ତେବେ ବି ସେ ମୋତେ ଛାଡ଼ି ନ ଥିଲା। ଯଦି ମୁଁ ମନୋବିଜ୍ଞାନର ବିଶେଷଜ୍ଞ ହୋଇ ନଥାନ୍ତି ତେବେ ମୁଁ ତା ଉପରେ ଅସନ୍ତୁଷ୍ଟ ହୋଇ ଯାଇଥାନ୍ତି। ଅଳ୍ପବହୁତ ଅକଲ ମୋଠାରେ ନ ଥିଲେ ଢ଼ିଲୁଢ଼ାଲୁ ହୋଇଯାଇ-ଥାଆନ୍ତି। କିନ୍ତୁ ମୁଁ ପାର୍ବତୀକୁ ବୁଝେଇ-ଶୁଝେଇ କହିଲି, "ସ୍ତ୍ରୀ ଯେତେ ଅସୁନ୍ଦରୀ ହେଉ ନା କାହିଁକି, କୌଣସି ନା କୌଣସି ପୁରୁଷକୁ ଆକୃଷ୍ଟ କରିପାରିବ। ଯେ ପର୍ଯ୍ୟନ୍ତ ଏ ଶରୀର ଅଛି ସେ ପର୍ଯ୍ୟନ୍ତ ତା' ପ୍ରଲୋଭନରେ ପଡ଼ିବା ଭଳି ଶରୀର ଅବଶ୍ୟ ଥିବ।"

"ଆଚ୍ଛା, ଆପଣ ତ ବଡ଼ ଦର୍ଶନଶାସ୍ତ୍ର କଥା କହିପାରୁଛନ୍ତି" କହି ପାର୍ବତୀ ଠୋକ୍ କରି ଦେଲା। ସେହିଦିନୁ ସେ ମୋ ଉପରେ ଅସନ୍ତୁଷ୍ଟ।

ପାର୍ବତୀ ତାର ବଡ଼ଭାଇ ରମାପତିର ବନ୍ଧୁମାନଙ୍କ ଉପରେ ନିଜର ଆକର୍ଷଣୀ-ଶକ୍ତିର ପରୀକ୍ଷା କରେ। ଏପରି ମାନସିକ ପରିବର୍ତ୍ତନ ଦେଇ ଗତିକରୁଥିବା ସନ୍ତାନ-ସନ୍ତତିଙ୍କର ମନସ୍ତତ୍ତ୍ୱ ବୁଝିବାରେ ଅସମର୍ଥ ମାତା-ପିତା ପ୍ରକୃତରେ ଅନ୍ଧ ଅଟନ୍ତି। ମୋର ଆଶା ଥିଲା ଯେ ପାର୍ବତୀକୁ ତାର ମା-ବାପାଙ୍କ ଭିତରୁ କେହି ନା କେହି ଠିକ୍ ସମୟରେ ବୁଝାଇ ପାରିବେ। ମାତ୍ର ଏହା ହେଲା ନାହିଁ। ପାର୍ବତୀ ଭବିଷ୍ୟତରେ ଯେ ଭୀଷଣ ବିପଦରେ ପଡ଼ିବ ସେଇ ଆଶଙ୍କାରେ ମୁଁ ଆତଙ୍କିତ ହୋଇ

ପଢ଼ିଲି ।

ଶେଷରେ କିଛି ହେଲା ନାହିଁ । ଜଣାଯାଉଛି, ପାର୍ବତୀ ଏକେବାରେ ବିବେକହୀନ ନୁହେଁ । କେତେ ଦୂର ଆଗେଇ ପାରିବ ଏବଂ ନିଜକୁ କିପରି ବଞ୍ଚାଇବ, ଏହା ବୋଧହୁଏ ସେ ଜାଣିଛି । ଯାହା ହେଉ ନା କାହିଁକି, ପାର୍ବତୀ ନିଜ ଉପରେ କିଛି କଳଙ୍କ ନ ଲଗୁ ଏବଂ ପରିସ୍ଥିତି ବିଷମରୂପ ଧାରଣ ନ କରୁ, ଏହି କଥାକୁ ଧ୍ୟାନ ଦେଇ ତେର ଚୌଦ ବର୍ଷ ପର୍ଯ୍ୟନ୍ତ ସମ୍ଭାଳି ନେଲା । ଯେତେବେଳେ ଶଙ୍କରମ୍ ସାଙ୍ଗରେ ତାର ବିବାହ ହେଲା ସେତେବେଳେ ତାକୁ ସତେଇଶ ପୂରିଯାଇଥିଲା ।

ଶଙ୍କରମ୍ ଏବଂ ରମାପତି ତୃତୀବର୍ଷ ସାଙ୍ଗ ହୋଇ କଲେଜରେ ପଢ଼ି ସାରିଥିଲେ । ମୁଁ ଭାବୁଛି କି ପିତା ରାମକୋଟିଙ୍କଠାରୁ ଅଧିକ ସଂସ୍କାରବାଦୀ ହେଉଛି ପୁଅ ରମାପତି । ଶଙ୍କରମ ହରିଜନ ବୋଲି ଜାଣି ମଧ୍ୟ ରମାପତି ତା ସହିତ ମିଳାମିଶା କରୁଥିଲା । ହରିଜନମାନଙ୍କ ଉପରେ ଦୟା ଦେଖାଉଥିବା କେତେକ ବ୍ୟକ୍ତି ଶଙ୍କରମ୍‌କୁ ନିଜ ଉଦାରତା ବିଷୟରେ ଅବଗତ କରାଇବା ପାଇଁ ତା ସହିତ ମିଠା ଆଚରଣ କରୁଥିଲେ । ଶଙ୍କରମ୍‌ର ଏପରି ବହୁତ ବନ୍ଧୁ ଥିଲେ । ଶଙ୍କରମ୍ ସେମାନଙ୍କୁ ଦେବତୁଲ୍ୟ ମନେ କରେ । ସେମାନେ ଏହି ଭାବନାରେ ଆନନ୍ଦ ପାଉଥିଲେ । କାଳେ ଶଙ୍କରମ୍ ସେମାନଙ୍କର ଦେବତ୍ୱ କେବେ ଭୁଲିଯିବ, ଏହି ଭୟରେ ସେ ବ୍ୟକ୍ତିମାନେ ବେଳେବେଳେ କୌଣସି ନା କୌଣସି ଉପାୟରେ ଶଙ୍କରମ୍‌କୁ ସେ ହରିଜନ ବୋଲି ମନେ ପକାଇ ଦେଉଥିଲେ ।

ଏହି ବ୍ୟକ୍ତିମାନେ ଏବଂ ରମାପତି ମଧ୍ୟରେ ଯେଉଁ ପାର୍ଥକ୍ୟ ଥିଲା, ତାହା ବହୁତ ଦିନଯାଏ ଶଙ୍କରମ୍ ବୁଝିପାରି ନଥିଲା । ବରଂ ରମାପତି ଅପେକ୍ଷା ସେହିମାନଙ୍କଠାରେ ସେ ବେଶି ଉଦାରତା ଦେଖିବାକୁ ପାଉଥିଲା । କାରଣ ରମାପତି ସାଙ୍ଗରେ ରହୁଥିବା ବେଳେ ସେ ହରିଜନ ଏବଂ ସାମାଜିକ ସ୍ତରରେ ସେ ତା'ଠାରୁ ନୀଚ ଏ କଥା ମୋଟେ ଖିଆଲ ଆସୁ ନ ଥିଲା । ଅନ୍ୟମାନଙ୍କ ସାଙ୍ଗରେ ରହିଲାବେଳେ ଏ କଥା ଭୁଲିବାର ବାଟ ନ ଥିଲା ।

କିନ୍ତୁ ଶଙ୍କରମ୍ ଏକଦମ୍ ନିର୍ବୁଦ୍ଧିଆ ନୁହେଁ । ଯୁଗ-ଯୁଗଧରି ଦବାଇ ରଖାହୋଇ ଥିବା ତା ଜାତିର ପ୍ରତିଭା ଏବଂ ଚେତନା ସୁଯୋଗ ପାଇ ତାଠାରେ ବେଳେବେଳେ ପ୍ରକଟ ହେଉଥିଲା । ତାର ଅଜା, ଅଣଅଜା କିପରି ଜଘନ୍ୟ ଜୀବନ ବିତାଉଥିଲେ, ସେ କଥା ସେ ଏପରି ଗମ୍ଭୀରଭାବରେ ବୁଝିଯାଇଥିଲା ଯେ ସେ ସେକଥା ମୁହଁରେ କହି ପାରୁ ନଥିଲା । ସେମାନଙ୍କର ଜୀବନ ବଳଦଗାଡ଼ି ପରି ଚାଲୁଥିଲା ତ ଏବେ ତାର ଜୀବନ ଉଡ଼ାଜାହାଜର ତେଜ ନେଇ ଚାଲିଛି । ନିଜର ଜାତି ପାଇଁ ସେ ପ୍ରତ୍ୟେକ କ୍ଷଣରେ ନୂଆ ନୂଆ ରାଜ୍ୟ ଜିଣୁଛି ଏବଂ ନୂଆ ସଂସାର ଗଢ଼ୁଛି । ସ୍ୱାସ୍ଥ୍ୟକୁ ଉପେକ୍ଷା କରୁଥିବା ଏହି ଅଦ୍‌ଭୁତ ଉତ୍ସାହ ତାକୁ ପ୍ରାୟ ଆତ୍ମବିସ୍ମୃତ କରି ରଖିଥିଲା । କେବେ କେବେ ସେ ଏତେ ଉତ୍ସାହିତ ହୋଇଉଠୁଥିଲା ଯେ ନିଜକୁ ସମ୍ଭାଳି ପାରୁ

ନ ଥିଲା । ତାର ନାଁ ପଛରେ 'ବି. ଏ' ଲେଖା ହେବ, ଆଉ ଟିକେ ପରିଶ୍ରମ କଲେ 'ଏମ୍. ଏ.' ମଧ୍ୟ ଲାଗିପାରିବ । ତା ପରେ ତାକୁ ଚାକିରି ମିଳିବ । ସେତେବେଳେ ଏହି ସଭ୍ୟ ସମାଜରେ ତାକୁ ସ୍ଥାୟୀ ପ୍ରତିଷ୍ଠା ମିଳିବ । ସେ ମଧ୍ୟ ରମାପତି ପରି ଜୀବନ ଯାପନ କରି ପାରିବ । ତାକୁ ଯଦି ସଂସ୍କାର ଥିବାବାଲା ସ୍ତ୍ରୀ ମିଳିଯାଏ ତ ଆଉ କୌଣସି କଥାର ଅଭାବ ରହିବ ନାହିଁ । ତାର ପିଲା ତା ପରି ଚାଲିବାକୁ ବାଧ ହେବେ ନାହିଁ । କେତେ ପରିବର୍ତ୍ତନ ? କୋଉଠୁ କୋଉଯାଏ ?

ଶିକାର କରିବାକୁ ଯାଉଥିବା ଜନ୍ତୁ ଅଧିକ ଚଂଚଳ ଅଟେ । ଯେତେ ଦୂର ହୋଇପାରେ ଶଙ୍କରମ୍ ଏହା ଜାଣିବା ପାଇଁ ଚେଷ୍ଟା କରୁଥିଲା ଯେ ତା ସହିତ ମିତ୍ରତାର ଆଚରଣ କରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରେ ପ୍ରକୃତ ମିତ୍ର କିଏ ଏବଂ କିଏ ଟିକେ ବି ସ୍ନେହ ନ ଥାଇ ମିତ୍ରତାର ଅଭିନୟ କରୁଛି । ସେ ବୁଝିପାରିଲା ଯେ ରମାପତି ସବୁଠାରୁ ଭଲ ଏବଂ ପ୍ରକୃତ ମିତ୍ର ଅଟେ । ଯେତେବେଳକୁ ଏ କଥା ସେ ବୁଝିପାରିଲା ସେତେବେଳକୁ ସେ ଦୁହିଁଙ୍କର କଲେଜପଢ଼ା ଶେଷ ହୋଇଯାଇଥିଲା ।

ପଢ଼ା ଶେଷ କରି ସେ ଯେତେବେଳେ ଜୀବନରେ ପ୍ରବେଶ କଲା ତାର ପ୍ରକୃତିରେ ଉନ୍ନତ ହବାକୁ ଲାଗିଲା । ବର୍ତ୍ତମାନ ତା ତଳେ କେତେ ଜଣ କାମ କରୁଥିଲେ, ତା ପ୍ରତି ସେମାନେ ଆଦରପୂର୍ଣ୍ଣ ବିନମ୍ର ବ୍ୟବହାର ଦେଖାଉଥିଲେ । ତାର ଯୋଗ୍ୟତା ବିଷୟରେ ସେମାନଙ୍କ ଭିତରେ ବେଶ୍ ଅଛା ହେଉଥିଲା—ଏହି ସବୁ କଥାଗୁଡ଼ିକ ଧୀରେ ଧୀରେ ତାଠେଇଁ ଆତ୍ମବିଶ୍ୱାସ ବଢ଼ାଇ ଦେଲା । ଏପରି ଲାଗିଲା ଯେ ସେ ଜାତିଭେଦ, ଛୁଆଁ-ଛୁତିରୁ ରକ୍ଷା ପାଇଗଲା । ତାର ସହଯୋଗୀ ଅଫିସରମାନେ ମଧ୍ୟ ଜାତିଭେଦ ମାନୁ ନଥିଲେ । ତା ଛଡ଼ା ସହରି ଜୀବନରେ ଅଭ୍ୟସ୍ତ ହବାରୁ ବିଗତ ଜୀବନକୁ ଭୁଲିଯିବା ତା ପକ୍ଷରେ ସମ୍ଭବପର ହୋଇପାରିଲା । ଏହି ଅତୀତ ଜୀବନ କେବେକେବେ ତା ଘରକୁ ଆସୁଥିବା ତାର ଆତ୍ମୀୟ-ସ୍ୱଜନଙ୍କ ମାଧ୍ୟମରେ ଦେଖା-ଦେଉଥିଲା । କିନ୍ତୁ ଯେତେଦୂର ସମ୍ଭବ ସେ ସେମାନଙ୍କଠାରୁ ଦୂରେଇ ରହିବାକୁ ଚେଷ୍ଟା କରୁଥିଲା ।

ଥରେ ତା ପାଖକୁ ଗୋଟିଏ ଚିଠି ଆସିଲା । ଚିଠି ଲେଖିଲାବାଲା କେହି ହରିଜନ ହିଁ ହୋଇଥିବ—"ତୁମେ ନିଜ ମୁକ୍ତି କଥା ଚିନ୍ତା କରୁଛ; କିନ୍ତୁ ନିଜ ଲୋକଙ୍କଠାରୁ ଦୂରେଇ ଯାଉଛ । ତୁମେ ତୁମର ଭାଗ୍ୟକୁ ନିଜର ଲୋକଙ୍କ ସାଙ୍ଗରେ ବାଣ୍ଟି କରି କାହିଁକି ଭୋଗ କରୁନ ? ନିଜ ଜାତିର ଉଦ୍ଧାର କରିବା ପାଇଁ ତୁମେ କଣ କରିଛ ? ନିଜ ଛାତି ଉପରେ ହାତ ରଖି ତୁମେ ନିଜେ ଭାବନାଅ ।"

କିନ୍ତୁ ଶଙ୍କରମ୍ କାହାରି ବିଷୟରେ କିଛି ଭାବିବାକୁ ଚାହୁଁ ନଥିଲା । ଜୀବନରେ କୌଣସି ମାତ୍ରାରେ ସ୍ଥାୟୀ ଯଶ ପାଇବା ପାଇଁ ତାର ଇଚ୍ଛା ନ ଥିଲା । ସେ ଆହୁରି ଆଗକୁ ବଢ଼ିବାକୁ ଚାହୁଁଥିଲା ।

କଲେଜପଢ଼ା ଶେଷ ହବା ପରେ ଶଙ୍କରମ୍ ଏବଂ ରମାପତି କୌଣସି ହୋଟେଲରେ

ଭେଟିଲେ । ରମାପତି ଶଙ୍କରମ୍‌କୁ ଚିହ୍ନି ପାରିଲା ନାହିଁ; ଶଙ୍କରମ୍ ରମାପତିକୁ ଚିହ୍ନି ପାରିଲା । ଶଙ୍କରମ୍‌ର ଭଲ ଅବସ୍ଥା ଏବଂ ଉନ୍ନତି ଦେଖି ରମାପତି ବହୁତ ଖୁସି ହେଲା । ରମାପତି ସହରରେ ଓକିଲାତି ଆରମ୍ଭ କରିଥିଲା । ବର୍ତ୍ତମାନ ସେ ଆଡ୍‌ଭୋକେଟ୍ ।

"ମୁଁ ଟ୍ରିପ୍ଲିକେନ୍‌ରେ ଅଛି । ଥରେ ଆମ ଘରକୁ ଆ । ସମସ୍ତେ ତତେ ଦେଖି ଖୁସି ହେବେ ।" ନିଜର ଭିଜିଟିଙ୍ଗ କାର୍ଡ଼ ଦେଇ ଦେଇ ରମାପତି କହିଲା ।

ପରଦିନ ସନ୍ଧ୍ୟାରେ ଶଙ୍କରମ୍ ନିଜ ମଟରରେ ରମାପତି ଘରେ ଯାଇ ପହଞ୍ଚିଗଲା । ରମାପତି ତାକୁ ଭିତରକୁ ନେଇ ବସାଇଲା । ଅଳ୍ପ ସମୟରେ ଦୁହିଁଙ୍କ ପାଇଁ କଫି ନେଇ ପାର୍ବତୀ ଆସିଲା ।

ଲୋକଙ୍କର ପ୍ରଶଂସା କରିବାରେ ପାର୍ବତୀ ବଡ଼ ଚତୁରୀ—"ଆପଣ ଦୁହେଁ ଏକା ସାଙ୍ଗରେ ପଢ଼ିଛନ୍ତି, ଏ କଥା ମୋର ବିଶ୍ୱାସ ହେଉନାହିଁ । ଆପଣ ତ ମୋ ଭାଇଠାରୁ ପାଞ୍ଚ, ଛଅ ବର୍ଷ ସାନ ଜଣାପଡ଼ୁଛନ୍ତି । ଯଦି ମୋ କଥାରେ ବିଶ୍ୱାସ ହେଉନାହିଁ ତେବେ ଆଉ କାହାକୁ ପଚାରି ଦେଖନ୍ତୁ ।" ପାର୍ବତୀ କହିଲା ।

ଫେରେ ଆଉ ଗୋଟିଏ କଥା ନେଇ କହିଲା—"କେହି ବି ଜାଣି ପାରିବେ ନାହିଁ ଯେ ଆପଣ ବିରଜନ ବୋଲି । ମତେ ବୋକା ବନେଇବା ପାଇଁ ବୋଧହୁଏ ମୋ ଭାଇ ଏପରି ମିଛ କଥା କହୁଛନ୍ତି । ଆପଣଙ୍କର କଥାବାର୍ତ୍ତା, ଢଙ୍ଗ-ଢାଙ୍ଗରୁ ଏପରି ମନେ ହେଉ ନାହିଁ ।"

ଏ ଦୁଇଟି କଥା ଶଙ୍କରମ୍ ସେଦିନ ଶୋଇବା ପୂର୍ବରୁ କେତେ ଥର ଯେ ମନେ ପକାଇଛି କଳ୍ପନା କରିଯାଇ ପାରିବ ନାହିଁ ।

ମୁଁ କହିପାରିବ ନାହିଁ ପାର୍ବତୀ ଶଙ୍କରମ୍‌କୁ ବାନ୍ଧି ହେବା ପାଇଁ ସ୍ଥିର କରିଥିଲା କି ନାହିଁ । କିନ୍ତୁ ଏହା ତ ନିଶ୍ଚିତଭାବେ କୁହାଯାଇପାରେ ଯେ ଆଗପଛ ସବୁ ଭାବି-ଚିନ୍ତି ହାନି-ଲାଭ ତଉଲି କରି ସେ ଏହି କଥାତିକ କହିଥିଲା । କିନ୍ତୁ ପାର୍ବତୀ ଯେ ଢବାହି-ପାଶରେ ଶଙ୍କରମ୍‌କୁ ଫସେଇବା ପାଇଁ ଗୃହୁଛି ଏ ବିଷୟରେ ଲେଶମାତ୍ର ସନ୍ଦେହ ସେ ଭଗବାନଙ୍କ ମନରେ ମଧ୍ୟ ଉଠିବାକୁ ଦେଲା ନାହିଁ ।

ଶଙ୍କରମ୍‌କୁ ନିଜ କବଳକୁ ଆଣିବା ପାଇଁ ସେ କେତେ ରକମର ଜାଲ ବିଛାଇଥିଲା, ଏହାର ଅନୁମାନ ପର୍ଯ୍ୟନ୍ତ କରି ହେବ ନାହିଁ ଏବଂ ସେ କାମ ଏତେ ସହଜ ମଧ୍ୟ ନଥିଲା । ତାର ଏବଂ ଶଙ୍କରମ୍ ମଧ୍ୟରେ ଯେଉଁ ଜାତିଗତ ବ୍ୟବଧାନ ଅଛି ସେ ବ୍ୟବଧାନର ଭାବନାକୁ ତା ମନରୁ ଦୂର କରିଦେବାକୁ ହେବ । ତାର ବିଶ୍ୱାସ ଆସିଯିବା ଉଚିତ ଯେ ଏଭଳି ପ୍ରସ୍ତାବକୁ ବୋଧହୁଏ ପାର୍ବତୀ ସ୍ୱୀକାର କରିନବ । କିନ୍ତୁ ତାର ନିଜ ତରଫରୁ ଆଉ ପାଦେ ବି ଆଗେଇବା ଉଚିତ ନୁହେଁ । ଏସବୁ ପାର୍ବତୀ କିପରି ସମ୍ଭାଳି ନେଲା ସେ କଥା ମୁଁ କହିପାରିବ ନାହିଁ; କିନ୍ତୁ ସମ୍ଭାଳି ନେଲା ଏ କଥା ମୁଁ କହିପାରିବ ।

ପୂରା ଗୋଟାଏ ବର୍ଷଧରି ତା ସହିତ ସମ୍ପର୍କ ରଖି ତା ସହିତ ମିଶିବରେ ମିଶିରେ

ବୁଲାବୁଲି କରିବା ଏବଂ ସିନେମା ଥିଏଟର ଦେଖିବା ପରେ ଦିନେ ରମାପତିର ପରିଚିତ ଏବଂ ରମାପତି ଘରକୁ ଯାତାୟାତ କରୁଥିବା ଜଣେ ବନ୍ଧୁ ଶଙ୍କରମ୍‌କୁ କହିଲା, "ଅସବର୍ଣ୍ଣ ବିବାହରେ ମୁଁ ବିଶ୍ୱାସ କରେ । ଏହିପରି ବିବାହ ହେଲେ ସିନା ଆମ ସମାଜର ପରିବର୍ତ୍ତନ ହେବ ।"

ବାସ୍, ଏତିକି କଥା ଲୋକଙ୍କ ମନରେ ଉତ୍ତେଜନା ସୃଷ୍ଟି କରିଦେଲା । ଶଙ୍କରମ୍‌କୁ ଅଳ୍ପ-ବହୁତେ ଜାଣିଥିବା ଲୋକ ରମାପତି ଘରକୁ ଆସୁଥିବା କେତେକ ବନ୍ଧୁ ଉପଦେଶ ଦେଲେ, "ଭାଇ ରମାପତି, ତୁମେ ଏହି ଅଜଗର ସାପକୁ ନିଜ ଘରେ ସ୍ଥାନ ଦେଇଛ ! ସେ ତ କୌଣସି ବ୍ରାହ୍ମଣ କନ୍ୟା ବିବାହ କରିବା ଅଭିପ୍ରାୟରେ ଅଛି । ବାହାରୁ ଦେଖିବାକୁ ସିଧାସଳଖ; କିନ୍ତୁ ଜଣାନାହିଁ ଭିତରେ ଭିତରେ କଣ ଚିନ୍ତା କରୁଥିବ…! ବାସ୍ତବରେ ଏ ଚମାରଗୁଡ଼ାଙ୍କୁ ପାଖ ପୂରାଇବା ଠିକ୍ ନୁହେଁ ।… ପାର୍ବତୀକୁ ହୁସିଆର କରିଦିଅ ସେ ଶଙ୍କରମ୍ ସହିତ ଦେଖି-ଗୁହିଁ ମିଳାମିଶା କରୁ ।"

ତାଙ୍କର ସବୁ କଥା ମୁଁ କହି ପାରୁ ନାହିଁ । ଦୁର୍ଭାଗ୍ୟବଶତଃ ମୁଁ ମଧ୍ୟ ତାଙ୍କର ଭିତରୁ ଜଣେ । ସେଥିପାଇଁ ସେମାନଙ୍କର ଏ କଦର୍ଯ୍ୟ କଥା ମୁଁ ଖୋଲିକରି କହିବାକୁ ଡରରେ ଥରହର ହେଉଛି । କିନ୍ତୁ ଗୋଟିଏ କଥା ସତ । ଏ ଲୋକମାନେ ବାହାରେ ଜାତିଭେଦ ଖଣ୍ଡନ କରିବାରି ଅଟନ୍ତି । ଶଙ୍କରମ୍ ନିଜ ଖର୍ଚ୍ଚରେ ହୋଟେଲରେ ଖୁଆଇ ବା ନିଜ ଘରେ ଡାକିକରି ଖୁବ୍ ପିଆଇବ ତ ଖୁସିରେ ସ୍ୱୀକାର କରିବା ଲୋକ ବି ଏଇମାନେ । ଏ କଥାରେ କୌଣସି ସନ୍ଦେହ ନାହିଁ ।

ମୁଁ ଜାଣେନା ରମାପତି ଏମାନଙ୍କ କଥାରେ ଏକମତ ହୋଇଥିଲା କି ନାହିଁ । କିନ୍ତୁ ଏମାନଙ୍କ କଥାର ପ୍ରଭାବ ନିଶ୍ଚୟ ପଡ଼ିଥିଲା । ସେ ପାର୍ବତୀକୁ ପ୍ରକାରାନ୍ତରେ କହିଥିଲା, ଶଙ୍କରମ୍ କୌଣସି ବ୍ରାହ୍ମଣ କନ୍ୟା ସହିତ ବିବାହ କରିବାକୁ ଚାହେଁ ।

"ନନ୍‌ସେନ୍ । ଏଥିରେ ଖରାପ କଣ ଅଛି ? ଯଦି କେହି ବିବାହ କରିବା ପାଇଁ ମନସ୍ଥ କରିନେଇଛି ତ ବିବାହ କରିବା ଉଚିତ । ବିବାହ ନ ହୋଇ ଘରେ ବସିଥିବା କନ୍ୟାମାନେ ବାଧ୍ୟ ହୋଇ କୌଣସି ଅକର୍ମଣ୍ୟକୁ ବାହା ହବାଠାରୁ ଏପରି ଲୋକକୁ ବିବାହ କଲେନ୍ତ ତ ଉଭୟ ସୁଖରେ ରହିପାରିବେ ।"— ପାର୍ବତୀ କହିଲା ।

ପାର୍ବତୀ ଏ କଥା ନିଜ ଆଡ଼କୁ ଇଙ୍ଗିତ କରି କହୁଛି ବୋଲି ରମାପତି ବୁଝିଯାଇଥିଲା । ପ୍ରକୃତରେ ଗତ ଦଶ ବାର ବର୍ଷ ଧରି ପାର୍ବତୀର ବିବାହ କଥା କେହି ଭାବୁ ବି ନଥିଲେ ।

ଏହାର ଅଳ୍ପ କେତେଦିନ ପରେ ଶଙ୍କରମ୍ ପାର୍ବତୀକୁ ବିବାହ କରିବାର ପ୍ରସ୍ତାବ ଦେଲା । ପାର୍ବତୀ କହିଲା, "ଯଦି ଘରଲୋକ ରାଜି ହୁଅନ୍ତି…ତେବେ ମୋର କୌଣସି ଆପତ୍ତି ନାହିଁ ।"

ତା ପରେ ପନ୍ଦର ଦିନକାଳ ପାର୍ବତୀ ନିଜ ମା-ବାପାଙ୍କ ସଙ୍ଗେ କଜିଆ-ଗୋଳ କଲା । ଏଇ ଝଗଡ଼ାରେ ରାମକୋଟି ମହାଶୟ କେତେକ ଲୋକଙ୍କୁ ନିଜର ପକ୍ଷପାତୀ

କରି ତାଙ୍କ ଦ୍ୱାରା ପାର୍ବତୀଙ୍କୁ ବୁଝାଇ ଦେଇଥିଲେ ଯେ ସେ ଏଇଟା ଭୁଲ କାମ କରୁଛି । କେବଳ ସେଥିରେ ତାକୁ ଠକାଇବାରୁ ମୁଁ ଏକା ଥିଲି ।

ମୁଁ କହିଲି, "ଯଦି ପାର୍ବତୀ ଶଙ୍କରମ୍ ସହିତ ବିବାହ କରେ ତେବେ ଶଙ୍କରମ୍‌ର କ୍ଷତି ହେବ ।"

ଶେଷରେ କାହାର କଥା ରହିଲା ନାହିଁ । ଯେତେବେଳେ ପାର୍ବତୀ କହିଲା, "ଯଦି ତମେସବୁ ରାଜି ହେବ ନାହିଁ ତେବେ ତମର ଇଚ୍ଛା ବିରୁଦ୍ଧରେ ଆମେ ବାହା ହୋଇ ଯିବୁଁ ।" ତେବେ ଯାଇଁ ରାମକୋଟି ମହାଶୟ ପଛକୁ ହଟିଲେ ।

ବାହାଘର ହୋଇଗଲା । ରାମକୋଟି ମହାଶୟ ଏହି କଥାକୁ ଲୋକଙ୍କ ଆଗରେ ପ୍ରଚାର କରି କେତେକ ସରଳବିଶ୍ୱାସୀ ଲୋକଙ୍କ ମନରେ ବିଶ୍ୱାସ କରାଇଦେଇଥିଲେ ଯେ ସେ ଗୋଟାଏ ମସ୍ତବଡ଼ କାମ କରିପକାଇଛନ୍ତି ଆଉ ଭୁଷୁଡ଼ି ପଡ଼ୁଥିବା ସମାଜକୁ ଗୋଟାପଣେ ଉଦ୍ଧାର କରିପକାଇଛନ୍ତି ।

ଜଣାନାହିଁ, ଶଙ୍କରମ୍ ତାର ସ୍ୱପ୍ନଗଢ଼ା ସ୍ୱର୍ଗରେ କେତେଦିନ ରହିଲା । ପାର୍ବତୀ ଧୀରେ ଧୀରେ ତାକୁ ନର୍କର ରୂପ ଦେଖାଇବାକୁ ଆରମ୍ଭ କଲା । ଶଙ୍କରମ୍‌ର ଚାଲିଚଳନକୁ ସେ ବଦଳାଇବା ପାଇଁ ସ୍ଥିର କରିନେଲା । ତାର ପରିବାରର ସମସ୍ତ ଲୋକଙ୍କୁ ସେ ଦୂରେଇଦେଲା । ସହସ୍ର ବନ୍ଧନ ତା ଚାରିପଟେ ଯେଉଁଠିକି ସେ ଲଙ୍ଘନ କଲେ ତା ସହିତ ଲଢ଼ୁଆ କଲା । ଶଙ୍କରମ୍ ଏଥିପୂର୍ବରୁ ତା ଜୀବନରେ କେବେହେଲେ ଦାସତ୍ୱ ସ୍ୱୀକାର କରି ନ ଥିଲା । ବହୁତ ଦିନଯାଏ ସେ ଏହା ସବୁ ସହିଲା; କେବେହେଲେ ବିଦ୍ରୋହ କଲା ନାହିଁ । କେତେ ଥର ପାର୍ବତୀର ଅହଙ୍କାର ଆଗରେ ସେ କ୍ଷମା ମାଗିଛି । ତାର ଅନୁଗ୍ରହ ପାଇବା ପାଇଁ କେଉଁ ସୀମାଯାଏ ତାକୁ ଆତ୍ମାଭିମାନ ଛାଡ଼ିବାକୁ ପଡ଼ିବ, ବୋଧହୁଏ ସେଇଆ ଜାଣିବା ପାଇଁ ସେ ଚେଷ୍ଟା କରିଥିଲା; କିନ୍ତୁ କିଛି ଲାଭ ହେଲା ନାହିଁ । ବହୁତ ଭାବିବାପରେ ମଧ୍ୟ ପାର୍ବତୀ ତାକୁ ଯେତେ ଦୂଷିତ ମନେ କରୁଥିଲା ସେତେ ଦୋଷ ସେ ନିଜଠାରେ ଦେଖି ପାରୁନଥିଲା । ସେ ନିଜକୁ ବୁଝାଇବାକୁ ବହୁତ ଚେଷ୍ଟା କଲା ଯେ ପାର୍ବତୀର ସଂସ୍କାର ତାଠାରୁ ବେଶୀ ।

ଦିନେ ସେ ଦୁହିଁଙ୍କ ମଧ୍ୟରେ ବହୁତ କଳିଗୋଳ ହୋଇଗଲା । ଶଙ୍କରମ୍ ସେଦିନ ନିଜର ଧୈର୍ଯ୍ୟ ହରାଇ ବସିଥିଲା । କେତେ ସମୟଯାଏ ସେ ସହିଷ୍ଣୁତା ଦେଖାଇଲା । ସେ ଭାବିଲା ବର୍ତ୍ତମାନ ପାର୍ବତୀଠାରେ ସେ ସହିଷ୍ଣୁ ହେବା ଉଚିତ । ସେ ଭାବୁଥିଲା ଯେ ସେ ଆଗକୁ ମାଡ଼ିଗଲେ ପାର୍ବତୀ ପଛକୁ ହଟିଯିବ । କିନ୍ତୁ ତାହା ବି ହେଲା ନାହିଁ । ସେ ଯେତେ ଦୂର ଆଗେଇଲେ ବି ପାର୍ବତୀ ତା'ଠାରୁ ଆହୁରି ଅଧିକ ଆଗକୁ ଚାଲିଲା' ଏବଂ ସେ ପ୍ରକୃତରେ ଚାଲି ବି ଗଲା ତା ବାପଘରକୁ ।

ପାର୍ବତୀ ସହିତ ସେ ଯାହା ଭୋଗୁଥିଲା ତାହା ଯଦି ନର୍କ ହୁଏ ତେବେ ପାର୍ବତୀ ଚାଲିଯିବା ପରେ ଯାହା ସେ ଅନୁଭବ କରୁଛି ତାର ବର୍ଣ୍ଣନା କଲା ଭଳି ଶବ୍ଦ ତା

ପାଖରେ ନାହିଁ । ସେ କୋଠରୀରେ ଏକା ବସି କାନ୍ଦିପକାଇଲା—ପାର୍ବତୀ ପାଇଁ ନୁହେଁ । ସେହି ଶାନ୍ତି ପାଇଁ ଯାହା ସେ ହଜେଇ ବସିଛନ୍ତି; ସେହି ସହନଶୀଳତା ପାଇଁ ଯାହା ସେ ଅନ୍ୟ ଉପରେ ଅର୍ପଣ କରିଛନ୍ତି ଏବଂ ସେହି ଅପମାନର ଯାହା ସେ ଅନୁଭବ କରୁଛନ୍ତି ।

ଦୁଇ ତିନି ଦିନ ଯାଏ ଖାଇବା ପିଇବା ଓ ଶୋଇବା ସବୁ କିଛି ଛାଡ଼ି ସେ ପାଗଳ ପରି ହୋଇଗଲା ଏବଂ ନିଜର ସ୍ତ୍ରୀକୁ ଦେଖିବାକୁ ଗଲା । ସେ କେମିତି ଅଦ୍ଭୁତ ଜଣାଗଲା । ଶଙ୍କରମ୍ ତା ସାଙ୍ଗରେ ବିଶେଷ କଥାବାର୍ତ୍ତା ମଧ୍ୟ କଲା ନାହିଁ ।

"ଏପରି ବିବାହ ଆମର କରିବା ଉଚିତ ହୋଇନାହିଁ । ମୁଁ ମାନୁଛି, ଏଥିରେ ମୋର ଭୁଲ୍ । କିନ୍ତୁ ଯେବେ ବାହା ହୋଇସାରିଛୁ ତ ଆମେ ସଂସାର ଆଗରେ ଏ କଥା କିଆଁ ସିଦ୍ଧ କରି ଦେଖାଇବା ଯେ ଏପରି ବିବାହ ସୁଖମୟ ହୋଇପାରେ ନାହିଁ ? ଭବିଷ୍ୟତରେ ଏହିପରି ବିବାହ କରିବାକୁ ଇଚ୍ଛୁକ ବ୍ୟକ୍ତିମାନଙ୍କ ମନରେ ଭୟ ଆସିବାର କାରଣ ଆମେ କାହିଁକି ହେବା ?" ସେ ଏତିକି କହିଥିଲା ।

"ମୁଁ ଭାବିଥିଲି ସେଇଠି ମୋର ଘର ହେବ; କିନ୍ତୁ ସେ ମୋର ଭ୍ରମ ଧାରଣା ଥିଲା । ବର୍ତ୍ତମାନ ସେ ଭ୍ରମ ମୋର ଦୂର ହୋଇଗଲାଣି । ଏ ଘରେ ମୁଁ ଯେତେ ସ୍ୱାଧୀନତା ପାଇଛି ଏହାର ତିନି ଭାଗରୁ ଭାଗେ ମଧ୍ୟ ସେଠି ପାଏ ନାହିଁ—ହୋଇ ବି ପାରିବ ନାହିଁ । ମୁଁ କାହିଁକି ସେଠିକି ଯିବି ? ମୁଁ ତ ଏଇଠି ରହିବି । ତମେ ଯଦି ଚାହୁଁଛ ଏଠିକି ଆସିଯାଇପାର । ମୋର କିଛି ଆପତ୍ତି ନାହିଁ । ତେବେ ଆମର ଦାମ୍ପତ୍ୟଜୀବନ ସାଙ୍ଗରେ ଏହାର କିଛି ସମ୍ପର୍କ ନାହିଁ ।" ପାର୍ବତୀ ଜବାବ ଦେଲା ।

ଶଙ୍କରମ୍ ଏହି ପ୍ରସ୍ତାବକୁ ସ୍ୱୀକାର କରିନେଲା । ତା ପାଖରେ ଚାକିରି ଅଛି, ପଇସା ଅଛି । ବର୍ତ୍ତମାନ ତ ପିଲାପିଲି ବି ହେଲେଣି । ତାର ନିଜସ୍ୱ ଜୀବନ କିଛି ନାହିଁ । ବର୍ତ୍ତମାନ ତାର କିଛି ଲୋଡ଼ା ନାହିଁ । ତାର ଆତ୍ମା ମରୁଭୂମିରେ ବିଗଷ୍ଟାନ ହୋଇ ବିଚରଣ କରୁଛି । ମରିବା ପରେ ଯାଇ ସେହି ଆତ୍ମାକୁ ଶାନ୍ତି ମିଳିପାରିବ ।

## ଆମ୍ବଗଛ

ପାଞ୍ଚ ଶହ ଗଜ ଜମି, ବାଡ଼ି, କୂଅ, ପୋଖରୀ, ବାଗବଗିଚା ସହିତ କିଣିକରି ନୀଳମଣି ସେଥିରେ ଏକ କୋଠା ତିଆରି କରିନେଲେ । ଘର ତିଆରି କରି ବର୍ତ୍ତମାନ ସେ ଗୃହ ପ୍ରବେଶ ମଧ୍ୟ କରିସାରିଛନ୍ତି । ମୁଁ ମଧ୍ୟ ସେହି କୋଠାରେ ଭଡ଼ାଟିଆ ହୋଇ ରହିଛି । ଜମି ସହିତ ତାଙ୍କୁ ଯେଉଁ ବାଗବଗିଚା ମିଳିଛି ସେଥିରେ କେବଳ ଗୋଟିଏ ଆମ୍ବଗଛ ଅଛି ।

ଆମ୍ବଗଛ ମୋତେ ପ୍ରାଣଠାରୁ ଅଧିକ ପ୍ରିୟ ଲାଗେ । ଆମ୍ବଗଛ ମୋତେ କେଉଁଠି ମିଳିଯାଏ ତ ଅନେକ ସମୟ ଧରି ତାକୁ ଦେଖୁ ଦେଖୁ ତା ସାମନାରେ ବସିଯାଏ । ମୋ ଜୀବନରେ ଯେଉଁ ମଧୁର ଭାବନାର ଲହରୀଗୁଡ଼ିକ ଅଛି ସେଗୁଡ଼ିକ ଆମ୍ବଗଛକୁ ଆଶ୍ରୟ କରି ଲହେଇବାକୁ ଭଲ ପାଆନ୍ତି ।

ଦଶବର୍ଷ ପୂର୍ବେ—ଯେତେବେଳେ ମୋତେ ପନ୍ଦର ବର୍ଷ ହୋଇଥିଲା ଦିନେ ଖରାବେଳେ ଗାଁ ବାହାରେ ଉତ୍ତର ଦିଗରେ, ସବୁ ଜମିର ସେପଟେ, ଯେଉଁଠାରେ ଆକାଶରେ କଳା କଳା ବାଦଲଗୁଡ଼ିକ ଆଖିର ତୃଷ୍ଣା ମେଣ୍ଟାଇବା ଭଳି ଘୁରି-ଘୁରି ଖରାରେ ଚକ୍‌ମକ୍ ହୋଇ, ଗରଜି ଗରଜି, ପବନ ସହିତ ଶସ୍ୟକ୍ଷେତ ଉପରେ ଓହ୍ଲାଇ ପଡ଼ୁଥିଲା, ସେତେବେଳେ ଗାଁ ବାହାର କୂଅ ପାଖରେ ଝଙ୍କାଳିଆ ଆମ୍ବଗଛ ମୁଁ ଦେଖିଥିଲି । ମୁଁ ତା ସୌନ୍ଦର୍ଯ୍ୟର ବର୍ଣ୍ଣନା ସମ୍ପୂର୍ଣ୍ଣଭାବେ କରିପାରୁନାହିଁ । ଏତିକି କହିପାରେ ଯେ ସେ, ଶାଶୁଘରକୁ ଯିବାପାଇଁ ପ୍ରତୀକ୍ଷା କରିଥିବା ନବବଧୂ ପରି, ଖରାରେ ଝାଉଁଳି, ଗମ୍ଭୀର ହୋଇ ଦୟନୀୟ ମୁଦ୍ରାରେ ସେ ସମୟରେ ବହୁଥିବା ପବନରେ କିଛି କ୍ଷୁଣ୍ଣ ଏବଂ ମ୍ଳାନ ଦେଖାଯାଉଥିଲା ।

ସେହି ଦ୍ୱିପହର ସମୟରେ ଗୋଟିଏ ପଲ୍ଲୀବଧୂ କୂଅରୁ ପାଣି କାଢ଼ି ଗୋଟେ ହାତରେ ବାଲ୍‌ଟି ନେଇ ମୁଣ୍ଡ ଉପରେ ପାଣିର କଳସ ରଖି ଏକା ଏକା ବୋଧହୁଏ ଶାଶୁଘରକୁ ଧୀରେ ଧୀରେ ଯାଉଥିଲା । ତା ଦେହରେ ଗହଣାଗୁଡ଼ିକର ଭାରସାମ୍ୟ ନଥିଲା; କିନ୍ତୁ ସୌନ୍ଦର୍ଯ୍ୟର ସୁଷମାରେ ତାର ଅଙ୍ଗପ୍ରତ୍ୟଙ୍ଗରୁ ସୌନ୍ଦର୍ଯ୍ୟ ଫୁଟି ଉଠୁଥିଲା । କଳସୀରୁ ଚହଲି ଚହଲି ପାଣି ଛିଟିକା ମୁଣ୍ଡବାଳକୁ ଓଦା କରି ସେଠାରୁ ତାର ଗଣ୍ଡଦେଶକୁ ରହି ରହି ସ୍ପର୍ଶ କରୁଥିଲା । ସେହି ଦିନ ଦ୍ୱିପହର ସମୟରେ ନିଃସହାୟ ସୌନ୍ଦର୍ଯ୍ୟଦ୍ୱାରା ଉଦ୍‌ଭାସିତ ହୋଇଉଠୁଥିବା ସେହି ଆମ୍ବଗଛଟି ଆଉ ପାଣି ନେଇ ଧୀରେ ଧୀରେ ଘର ଆଡ଼କୁ ଯାଉଥିବା ସେହି ଗ୍ରାମ୍ୟବଧୂ, ମୋ ସ୍ମୃତିପଟରେ ଅଙ୍କିତ ହୋଇଯାଇଛନ୍ତି । ଶ୍ରମ ଏବଂ ସୌନ୍ଦର୍ଯ୍ୟ, ଦୁଃଖ ଏବଂ ମାଧୁର୍ଯ୍ୟ, ବେଦନା ଏବଂ ଚେତନାର ଜୀବନ ଯେ କି ଏକ ସୁନ୍ଦର ସମାବେଶ ସେ କଥା ମଧ୍ୟ ଛୁଇଁ-ଛୁଇଁ ମୋ

ମନକୁ ଚାଲିଆସୁଛି ।

ସେହି ଦିନ, ସେହି ଗ୍ରାମ୍ୟ ବଧୂଟି ଖରାରେ ମେଘଖଣ୍ଡ ପରି ସୁନ୍ଦର ଦିଶୁଥିଲା । ବଉଳଥିବା ଆମ୍ବଗଛ ଆଉ ତା ଭିତରେ ଏକ ବିଚିତ୍ର ଏବଂ ଅନିର୍ବଚନୀୟ ସାମ୍ୟ ମୋତେ ଦେଖାଯାଉଥିଲା । ଯଦି କେତେବେଳେ ଦିପହର ସମୟରେ ମୁଁ ବାଦଲକୁ ଦେଖେ, ସେହି ବଉଳଥିବା ଆମ୍ବଗଛ ଏବଂ ପାଣି ନେଇ ଯାଉଥିବା ସେହି ପ୍ରସନ୍ନ ଗ୍ରାମ୍ୟ ବାଳାର ମୁଖମଣ୍ଡଳ ମୋର ମନେ ପଡ଼ିଯାଏ । ଯଦି କେତେବେଳେ କୌଣସି ମଧୁର ସ୍ୱର ମୁଁ ଶୁଣେ ତେବେ ତତ୍‌କ୍ଷଣାତ୍ ସେହି ଦିନର ଦୃଶ୍ୟ—ଗାଁର ସୌନ୍ଦର୍ଯ୍ୟ ବଢ଼ାଇ-ଥିବା ସେହି ଖରା—ଦିଗ୍‌ବଳୟରେ କଳା କଳା ମେଘଖଣ୍ଡ ଆଖିଆଗରେ ନାଚିଯାଏ ଏବଂ ମୋ ମନରେ ଦୂରପତ୍ର ସୁଖ ଏବଂ ଏକପ୍ରକାର ଯନ୍ତ୍ରଣା ଅନୁଭବ ହୁଏ । ପବନରେ ଦୋହଲି ଦୋହଲି ବହୁଥିବା ତରଙ୍ଗ, ଆମ୍ବ ବଗିଚାରୁ ଭାସିଆସୁଥିବା ସଂଗୀତ, ଗ୍ରାମ୍ୟ ବାଳିକା, କଳା କଳା ମେଘଖଣ୍ଡ ମୋ ମନରେ ବିଚିତ୍ର ଭାବନାର ପୁନରାବୃତ୍ତି କରନ୍ତି । ସେଥିପାଇଁ ଯଦିଓ ନୀଳମଣି ନିଜ ଘର ଆଗରେ ଥିବା କୋଠରୀର ଭଡ଼ା କୋଡ଼ିଏ ଟଙ୍କା କହିଥିଲେ ଏବଂ ମୋ ପାଇଁ ତାହା ବହୁତ ଥିଲା, ତଥାପି ଘର ଆଗରେ ଥିବା ଆମ୍ବଗଛକୁ ଦେଖି ମୁଁ ରାଜି ହୋଇଯାଇଥିଲି । ଏହାଠାରୁ କମ୍ ଭଡ଼ାରେ ମୁଁ ଦୁଇ, ତିନୋଟି କୋଠରୀ ଦେଖିପାରିଥିଲି । କିନ୍ତୁ ସେଗୁଡ଼ିକ ବହୁତ ଛୋଟ ଥିଲା ଏବଂ ତାର ପାଖଆଖରେ କୌଣସି ଗଛ-ବୃକ୍ଷ ନଥିଲା, ସେଥିପାଇଁ ନୀଳମଣିର ସମସ୍ତ ସର୍ତ୍ତକୁ ସ୍ୱୀକାର କରି ମୁଁ ତା ଘର ଭଡ଼ାରେ ନେଇଥିଲି ।

ନୀଳମଣିଙ୍କର କେତେଗୁଡ଼ିଏ ସର୍ତ୍ତ ଥିଲା—ପହିଲା ତାରିଖର ସନ୍ଧ୍ୟା ସୁଦ୍ଧା ଗୋଟି ଗୋଟି ପଇସାର ହିସାବ କରି ଭଡ଼ା ଦେଇଦେବା ଉଚିତ । ବିଜୁଳିବତୀର ମାସକୁ ଦୁଇ ଟଙ୍କା ହିସାବରେ ତାକୁ ମଧ୍ୟ ସେହିଦିନ ଦେଇଦେବା ଉଚିତ । ରାତି ଏଗାରଟା ପରେ ବିଜୁଳିବତୀ ଜଳାଇ ପାରିବ ନାହିଁ । ସେହି କୋଠରୀରେ ମୋର କୌଣସି ସାଙ୍ଗ ଭଡ଼ାଟିଆ ହୋଇ ପାରିବେ ନାହିଁ । ମୋ ମା, ଭଉଣୀ, ଝିଅ ଏବଂ ଚାକରାଣୀ ବୁଢ଼ୀ ଛଡ଼ା ମୋ ଘରକୁ ଅନ୍ୟ ସ୍ତ୍ରୀମାନଙ୍କର ପ୍ରବେଶ ନିଷେଧ । ପାର୍ଟିଫଣ୍ଡ କରିବ ନାହିଁ । ଭଲ ବ୍ୟବହାର କରି ରହିବା ଉଚିତ ।

ସେ ଏହିପରି ନିୟମାବଳୀ କହୁଯାଉଥାଆନ୍ତି, ମୁଁ ସେହି ସମୟରେ ମଝିରେ ବାହାରି କହିଲି—“ଠିକ୍ ଅଛି ମହାଶୟ, ଆଉ ଆଗକୁ କହିବା ଆବଶ୍ୟକତା ନାହିଁ । ମୁଁ ସବୁ ବୁଝିପାରିଲିଣି । ବେଶ୍, ଆପଣଙ୍କର ଦୟା ।”

ଏହା ପରେ ତାଙ୍କ ଚେହେରାରେ କିଛି ପରିବର୍ତ୍ତନ ଦେଖି ମୁଁ ଶୀଘ୍ର ଦଶଟଙ୍କିଆ ଦୁଇଟି ନୋଟ୍ ବାହାର କରି ତାଙ୍କ ହାତକୁ ବଢ଼ାଇ ଦେଇ କହିଲି, “ନିଅନ୍ତୁ, ଏହା ଏ ମାସର ଅଗ୍ରିମ ଭଡ଼ା ।”

ସେ ଦୁଇଟିଯାକ ନୋଟ୍‌କୁ ଅଲଗା ଅଲଗା ହାତରେ ନେଇ ଗେଞ୍ଜି ପକେଟ୍‌ରେ ରଖିଦେଲେ ଏବଂ ଟିକେ ଉଦାସ ଦେଖାଗଲେ । ପଇସା ନେବା ପୂର୍ବରୁ ତାଙ୍କ ମନରେ

ଯେଉଁ ବଗିଚାରୁ ଆସିଥିଲା, ପଇସା ନେବା ପରେ ସେ ସେହି ବଗିଚାକୁ ଏକବାର ଭୁଲିଗଲେ ।

ମୁଁ କହିଲି—"ରସିଦର କୌଣସି ଆବଶ୍ୟକତା ନାହିଁ ।"

ସେ କହିଲେ, "ସେଥିରେ କ'ଣ ଅଛି ? ମିଳିଯିବ ।"

"ଆବଶ୍ୟକତା ନାହିଁ—ମାତ୍ର ଗୋଟିଏ କଥା, ବର୍ତ୍ତମାନ କିଛି ସମୟ ପୂର୍ବରୁ ମୁଁ ବାରଣ୍ଡାରେ ଦେଖିଥିଲି—ସେ ଝିଅଟିଏ ନାଁ ?" ମୁଁ ପଚାରିଲି ।

"କିଏ ? କେଉଁଠି ? ହଁ ହଁ··· ସେ ଝିଅଟିଏ ।"

"ତାଙ୍କୁ ମୋ କୋଠରୀକୁ ଆସିବାକୁ ଦେବ ନାହିଁ । ଝିଅମାନେ ଆସିବା ଯିବା ନେଇ ମୋତେ ଭଲ ଲାଗେ ନାହିଁ ।" କହି ମୁଁ ଜିନିଷ ଆଣିବା ପାଇଁ ଶୀଘ୍ର ସେଠାରୁ ଚାଲିଗଲି ।

ନୀଳମଣି ମାଲ୍‌ଗୁଜାର ଅଫିସରେ କାମ କରିବା ସମୟରେ ଦୁଇଟି ବିଶ୍ୱଯୁଦ୍ଧର ସମ୍ମୁଖୀନ ହୋଇଥିଲେ । ବିଦେଶୀ ଶାସନ ମହତ୍ତ୍ୱର ଆଘାତ ସେ ଦେଖିଥିଲେ । ଜନତା ମଧ୍ୟରେ ବିଦ୍ରୋହ ଭାବନା ମଧ୍ୟ ସେ ଦେଖିଥିଲେ । ଗାନ୍ଧିଜୀଙ୍କୁ ମଧ୍ୟ ଦେଖିଥିଲେ । ପ୍ରତି ସପ୍ତାହର ଶନିବାର ଏବଂ ରବିବାର ଦିନରେ ମଧ୍ୟ ଅଫିସକୁ ଯାଇ ସେ ପରିଶ୍ରମ କରୁଥିଲେ; କିନ୍ତୁ ଶେଷରେ ତହସିଲଦାରଟିଏ ହୋଇଥିଲେ । ବର୍ତ୍ତମାନ ଅବସର ନେଇ ଘର ତିଆରି କରିଦେଇଛନ୍ତି, ମୋ ଘର ବ୍ୟତୀତ ଆଉ ଦୁଇଟି କୋଠରୀ ଭଡ଼ାରେ ଦେଇଦେଇଛନ୍ତି । ସେ ଭିଖାରୀମାନଙ୍କୁ ବାହାର କରିଦିଅନ୍ତି, ପିଲାମାନଙ୍କୁ ଦୂରରେ ରଖନ୍ତି, ଖାଉ ପତ୍ରିର ପଚାରି ପନିପରିବା କିଣନ୍ତି ଏବଂ ସମ୍ବାଦପତ୍ର କେଉଁଠାରୁ ମାଗିକରି ପଢ଼ି ଦିଅନ୍ତି ।

ନୀଳମଣି—

ନାଁଟା ମୋତେ ବହୁତ ଭଲ ଲାଗିଲା, କିନ୍ତୁ ତାଙ୍କ ସହିତ କିମ୍ବା ତାଙ୍କ ପରିବାରର କୌଣସି ସଦସ୍ୟଙ୍କ ସହିତ ମିଶିବାର ପସନ୍ଦ ମୁଁ କରୁନଥିଲି । ଯେପରି ସେ ଶୁଖିଲା ତେନ୍ତୁଳି କାଠ—କାଟି ଦେଖିଲେ ଖଟାର ଗୁଣ ନିଶ୍ଚୟ ମିଳିବ । ତାଙ୍କର ସ୍ତ୍ରୀ ଗଛର ଶୁଖିଲା ବକଳ ପରି, ଛୁଇଁବାକ୍ଷଣି କଣ୍ଟା ଭଳି ଗଳିଯିବ । ଆପଣ ପ୍ରାୟ ଦେଖିଥିବେ କିମ୍ବା ଦେଖି ନଥିବେ—କେତେକ ନଡ଼ିଆ ଗଛ ଅଛି, ଦେଖିବାକୁ ଲମ୍ବା ଏବଂ ଗମ୍ଭୀର ଜଣାଯାଏ; କିନ୍ତୁ ତାର ଫଳ ହୁଏ ନାହିଁ । ସବୁ ବାହ୍ୟ ଆଡ଼ମ୍ବର—ଭିତର ସବୁ ଫମ୍ପା । ନୀଳମଣିଙ୍କର ଏହିପରି ଏକ ପୁଅ ଅଛି । ସେହି ସମୟରେ ସେ ଓକିଲାତି ପଢ଼ୁଥିଲା ଏବଂ କୌଣସି ତେଲ କମ୍ପାନୀରେ ଚାକିରି ପାଇଁ ଚେଷ୍ଟା କରୁଥିଲା । ନୀଳମଣିଙ୍କର ଝିଅକୁ ଅନ୍ଧାରରେ ଦେଖିବ ତ ସେ ଏକେବାର୍ ବବୁଲ୍ ଗଛର ଝଟାପରି ଦିଶିବ । କୁଆଁରି ତାକୁ ପାଖରେ ଦେଖି ଡରିଗଲା, ତାକୁ ଛାଡ଼ି ଚାଲିଗଲା । ତାର ଗୋଟିଏ ଝିଅ ଅଛି, ଅର୍ଥାତ୍ ଗୋଟିଏ ବିଲେଇ ଯାହାକୁ କି ସେ ପାଳୁଛି ।

ଏଥିପାଇଁ—

ଏହା ସ୍ପଷ୍ଟ ଯେ ମାଲମଣିଙ୍କର ପରିବାରରେ ମୋ ପାଇଁ ପ୍ରିୟ ହେବା ଭଳି କେହି ନାହାନ୍ତି ।

କିନ୍ତୁ ବାହାର ଝରକା ପାଖେ, ଚଉକି ପକାଇ ବସି ଆଗରେ ଥିବା ଆମ୍ବଗଛକୁ ଦେଖିବାରେ ଆନନ୍ଦ ଅଛି । ଟିକିଏ ଡାହାଣ ପାଖରେ, କୋଡ଼ିଏ ଫୁଟ ଦୂରରେ ସେହି ଗଛ ଠିଆହୋଇଛି, ବାଁ ପାଖରେ ଦୁଇ ତିନୋଟି ଅନ୍ୟ ଗଛ ଅଛି । ଆଉ ସେପରି ଭଲ ଗଛ ନାହିଁ । ସେହି ଆମ୍ବଗଛ ମଧ୍ୟରୁ ସୂର୍ଯ୍ୟ ଏବଂ ଚନ୍ଦ୍ର ଉଦୟ ହୁଅନ୍ତି । ତା ଉପରେ ରାତିରେ ତାରାଗୁଡ଼ିକ ନାଚିବା ପରି ଦେଖାଯାଆନ୍ତି । ତାହାର ତଳେ, ଦିନରେ ଖରା ଏବଂ ଛାଇ ବୋହୂଚୋରୀ ଖେଳୁଥାଏ । ସେହି ଛାଇରେ ବସି ଗୋଟେ ବୁଢ଼ୀ ମକ୍‌କାର ଗୁଗୁନି ଚକ୍ର କରେ । ତା ଡାଳରେ ଶୁଆଗୁଡ଼ିକ ଆସି ବସିଯାଆନ୍ତି । ତାର ଡାଳଗୁଡ଼ିକ ଦୋହଲିବାଦ୍ୱାରା ବହିଯାଉଥିବା ପବନ ଯେତେବେଳେ ମୋତେ ସ୍ପର୍ଶ କରେ ଅନେକ ମଧୁର ଅନୁଭୂତି ମୋତେ ତା ଦେହରେ ବୁଡ଼ାଇଦିଏ ।

ସେହି ଆମ୍ବଗଛ ମୋତେ ବହୁତ ଆନନ୍ଦ ଦିଏ । କିନ୍ତୁ···

ଗୋଟିଏ ରାତି । ବହୁତ ପରିଷ୍କାର, ବାଦଲ ନ ଥିଲା, ଜହ୍ନ ମଧ୍ୟ ନ ଥିଲା । ଆକାଶର ଅନ୍ଧକାରରେ ତାରାର ଦୀପଗୁଡ଼ିକ ପିଲାମାନଙ୍କର ଆଖି ଭଳି ମିଟିମିଟି କରୁଥିଲେ । ପବନ ଜୋରରେ ବହୁନଥିଲା; କିନ୍ତୁ ଶୀତଳତା ଥିଲା । ମୁଁ ସବୁଦିନ ପରି ଝରକା ପାଖରେ ଚଉକି ଉପରେ ବସିଥିଲି । ଆମ୍ବଗଛ ଓଢ଼ଣା ଟାଣି ନବବଧୂ ପରି ଆଗରେ ଠିଆହୋଇଥିଲା । ରାତି ଆଠଟା ବାଜିଥିଲା, ଚାରିଆଡ଼େ ନୀରବତା ଘୋଟିଯାଇଥିଲା । ସେହି ସମୟରେ ସବୁଜମାଭରା ସୁଗନ୍ଧପୂର୍ଣ୍ଣ ହୋଇ ଏବଂ ମନ୍ଦ ମଧୁର ଗତିରେ ପବନର ଲହଡ଼ିରେ ଭ୍ରମଣ କରୁଥିବା କେଉଁଠାରୁ ମଧୁର ସଙ୍ଗୀତର ମୂର୍ଚ୍ଛନା ଧୀରେ ଧୀରେ ଶୁଣାଗଲା । ସେହି ଗୀତ କେଉଁଠାରୁ ଧୀରେ ଧୀରେ ଆସି, ମଝିରେ ରାସ୍ତା ଭୁଲିକରି, କେଉଁଠି ଅନ୍ୟ ଜାଗାକୁ ଯାଇ ପୁଣି ମୋ ପାଖ ରାସ୍ତା ଖୋଜିକରି ଆସୁଥିଲା । ମୁଁ ଚାହୁଁଥିଲି ତାକୁ ଧରି ନିଜ ପାଖେ ଲୁଚେଇ ରଖିନେବି, ଏତେ ମାଦକତା ଥିଲା ସେ ସଙ୍ଗୀତର ମାଧୁର୍ଯ୍ୟରେ । ଆହୁରି ମଧ୍ୟ ଆନନ୍ଦ ପାଇବା ଚିନ୍ତାରେ ମୁଁ ସିଗାରେଟ ଲଗାଇଲି । ଧୀରେ ଧୀରେ ଧୂଆଁ ଟାଣି ଛାଡ଼ିଦେଲି ଏବଂ ଆଖି ବନ୍ଦ କରିଦେଲି ।

ଯେତେବେଳେ ମୁଁ ଆଖି ଖୋଲିଲି—ସେତେବେଳେ ଦେଖେ ତ ସାମନାରେ ସେ ସ୍ତ୍ରୀ ଓଢ଼ଣା କାଢ଼ି ଛିଡ଼ା ହୋଇଛି । ଦୀପ ଆଲୋକରେ ତାର ଧ୍ୱଂସ ଶରୀର ହଦବ୍ଭାସିତ ହେଉଥିଲା । ମୁଁ ଆଶ୍ଚର୍ଯ୍ୟ ହେଲି ।

ଆଉ କିଛି ନୁହେଁ । ପଡ଼ୋଶୀମାନେ ସେହି ଗଛଡ଼ାଳରେ ବିଜୁଳିବତି ଲଗାଇ ଦେଇଛନ୍ତି । ତା ତଳେ ଗୋଟେ ଟେବୁଲ ଅଛି । ଟେବୁଲ ଚାରିପାଖରେ ଚଉକି ପଡ଼ିଛି ଏବଂ ଚଉକି ଉପରେ ଚାରିଜଣ ଭଦ୍ରଲୋକ ବସି ତାସ୍ ଖେଳୁଛନ୍ତି । ଏ ସ୍ଥାନଟି ବହୁତ ଭଲ । କିଏ ଜଣେ କହିଲା—'ଏପର୍ଯ୍ୟନ୍ତ କିଛି ସନ୍ଧାନ ମିଳିଲା

ନାହିଁ ।' କେହି ଦ୍ୱିତୀୟ ବ୍ୟକ୍ତି ଚିନ୍ତିତ ହୋଇ କହିଲା । ତୃତୀୟ ବ୍ୟକ୍ତି ଜଣକ ଆକ୍ଷେପ କଲା ପରି କହିଲା—'ଆମେ ଖାଇ, ଆମ୍ବ ତୋଳିବା ବ୍ୟତୀତ ଏହି ଗଛ ଆଉ କେଉଁ କାମରେ ଲାଗିବାର ଜାଣିନାହୁଁ ।' 'ଯଦି ନୀଳମଣି କାନ ପର୍ଯ୍ୟନ୍ତ ଏ କଥା ପହଞ୍ଚିଯାଏ ତେବେ ସେ ଆମକୁ କଞ୍ଚା ଖାଇଯିବ । ଏପରି କଥା କହ ନାହିଁ ।' ବୋଧେ ପଢ଼ଶାରେ ରହୁଥିବା ନିଜ ସାଥୀମାନଙ୍କୁ ସତର୍କ କରିଦେଲା । 'ପର ତାର, ଆମ୍ବ ଆମର !' ଜଣେ ଭଦ୍ରଲୋକ ଖୁବ୍ ଜୋରରେ ହସିଉଠିଲେ ।

ମୁଁ ମନେ ମନେ ଚିନ୍ତା କରୁଥିଲି—'ଯଦି ନୀଳମଣି ଏ କଥାସବୁ ଶୁଣିନଥାନ୍ତି ତେବେ ·· ।' ଏଥିମଧ୍ୟରେ ବାରଣ୍ଡାରେ ପାଦଧ୍ୱନି ଶୁଣାଗଲା । ମୁଁ ବାହାରକୁ ଯାଇ ଦେଖିଲି ଯେ ଗହଳିଆ ଡାଳତଳେ ବସି, ସୁଯୋଗ ପାଇଁ ଛକିରହିଥିବା ଜଙ୍ଗଲି ଜନ୍ତୁଙ୍କ ପରି ନୀଳମଣି ସେହି ଅନ୍ଧାରରେ ବାରଣ୍ଡାରେ ଠିଆହୋଇ ସେହିଆଡ଼କୁ ଚାହିଁଥିଲେ । ସେ ସମୟରେ ତାଙ୍କ ମୁହଁର ଚେହେରାକୁ ଦେଖି ଡର ଲାଗିଲା ।

ଲାଗି ଲାଗି ଚାରିଦିନ ପର୍ଯ୍ୟନ୍ତ ରାତିବେଳା ପଡ଼ୋଶୀମାନଙ୍କୁ ତାସ୍ ଖେଳିବାର ମୁଁ ଦେଖିଛି । ପଞ୍ଚମ ଦିନ ସନ୍ଧ୍ୟାବେଳକୁ ନୀଳମଣି ମୋ କୋଠରିକୁ ଆସି ପଚାରିଲେ—"ଦେଖିଲୁ, ପୁଅ ?"

ତାଙ୍କୁ ଚଉକି ଉପରେ ବସିବାକୁ କହି ମୁଁ ପଚାରିଲି—"କ'ଣ ଦେଖିବି ?"

ସେ ବସିଲେ ନାହିଁ । ମଇଳା ଗେଞ୍ଜି ଏବଂ ନାଲିରଙ୍ଗର ଧୋତିରେ ଅଧଘୋଡ଼ା କାଠପରି ସେ ଠିଆହୋଇ ରହିଲେ । ପଡ଼ୋଶୀ ଘରଆଡ଼କୁ ସଙ୍କେତ କରି, ସେ କହିଲେ—"ଦେଖ, ସେମାନେ ନିଜ ଗାଡ଼ ନିଜେ ଖୋଳୁଛନ୍ତି ।"

ମୁଁ କହିଲି—"ହଁ, ତାସ ଖେଳିବା ଭଲ କାମ ନୁହେଁ ।" "ଭଲ ହେଉ ବା ମନ୍ଦ ହେଉ—ଖେଳିବାର ଇଚ୍ଛା ଅଛି ତ ନିଜ ଘରେ ଖେଳିବ, କିଛି ଆପତ୍ତି ନାହିଁ । ଯଦି ଘରେ ଜାଗା ନାହିଁ ତେବେ ମଶାଣିରେ ଯାଇ ଖେଳ । ଖେଳି ଖେଳି ନିଜେ ଧ୍ୱଂସ ହୁଅନ୍ତୁ ମୋର କ'ଣ ଅଛି ? ଖେଳାଳିବାଲା ଏ ବେକୁଫ୍‌ମାନେ କୁଆଡ଼େ ନ ଯାଇ ମୋ ଗଛତଳେ କାହିଁକି ଖେଳୁଛନ୍ତି, ମୁଁ ବୁଝିପାରୁନାହିଁ ।'

"ଜାଗା ତାଙ୍କର ପରା ?"

"ହୋଇପାରେ; କିନ୍ତୁ ମୋ ଗଛତଳେ ତ ଖେଳିପାରିବେ ନାହିଁ ।"

"ତେବେ ସେ କଥା ତାଙ୍କୁ ଜଣାଇ ଦେଉ ନାହାନ୍ତି ?"

"ଜଣେଇ କାହିଁକି ଦେବି ନାହିଁ ? ବତେଇ ଦେଇଛି । କହିଲେ ଯେ ସେ କଥା କହିବାକୁ ତୁମେ କିଏ ?"

"ଆପଣ କ'ଣ କହିଲେ ?"

"ଅପେକ୍ଷା କର, ଜଣାପଡ଼ିବ ମୁଁ କିଏ । ଜଣାଯିବ ଯେ ।" କହି ନୀଳମଣି ଚାଲିଗଲେ ।

ସେହି ଆମ୍ବଗଛ ଯେ ନୀଳମଣିର, ଏଥିରେ କୌଣସି ସନ୍ଦେହ ନାହିଁ । କିନ୍ତୁ ତାର ତଳ-

ାଗି ତାଙ୍କ ଶାନ୍ତି ହାତରେ । ଭଲ ଡାଳଗୁଡ଼ିକ ଏବଂ ଡେମ୍ଫ ସଡ଼କ ଉପରକୁ ଲମ୍ବି-ଯାଇଛି ଏବଂ କିଛି ପଡ଼ୋଶୀର ବାଡ଼ଆଡ଼କୁ । ସେଥିପାଇଁ କିଏ କ'ଣ କରିପାରିବ ?

ଦୁଇଦିନ ପରେ ରବିବାର ଥିଲା । ସହରରେ ବୁଲାବୁଲି କରି ଖାଇବେଳେ ପ୍ରାୟ ଗୋଟାଏ ବେଳକୁ ମୁଁ ମୋ ଘରେ ଆସି ପହଞ୍ଚିଲି । ଘରେ ପହଞ୍ଚି ଦେଖେ ତ ବାହାର ସଡ଼କ ଉପରେ ଖୁବ ଜୋରରେ ପାଟିତୁଣ୍ଡ ହେଉଥିଲା । ବାଳ ମୁକୁଳା କରିଥିବା ଗୋଟାଏ ବୁଢ଼ୀ ଖୁବ୍ ଗାଳି ଦେଉଥିଲା । ଜଣାନାହିଁ, ସେ କାହାକୁ ଗାଳି ଦେଉଥିଲା । ଗାଳିଗୁଡ଼ିକ ଏପରି ଥିଲା ଯେପରି ଶୁଣିବାବାଲାର କାନ ଫାଟିଯିବ । ମୁଁ ତା ପାଖକୁ ଯାଇ ଦେଖିଲି ଯେ ସେ ଆଉ କେହି ନୁହେଁ—ମକ୍କା ବିକ୍ରି କରୁଥିବା ବୁଢ଼ୀ । ତା କଥାରୁ ମତେ ଏତିକି ଜଣାଗଲା ଯେ ଝଗଡ଼ା ବର୍ତ୍ତମାନ ସରିଗଲାଣି, ବୁଢ଼ୀର ଜୟ ହୋଇଛି; କିନ୍ତୁ ଶାନ୍ତି ହାତ ଲଗାଇଲି ନାହିଁ, ବରଂ ପଳେଇଗଲି ।

ମୁଁ ପଚାରିଲି, "କ'ଣ ମାଉସୀ, କଥା କଅଣ ?"

"ଦେଖନ୍ତୁ ବାବୁ, ସେହି ପାଚଲାମୁଣ୍ଡିଆ ନୁହେଁ ? ତା ଯୋଗୁ ଏ ସବୁ ଝଗଡ଼ା ଆରମ୍ଭ ।" ନୀଳମଣିଙ୍କର ବାଳ ପ୍ରକୃତରେ ଧଳା ।

"କାହିଁକି, କ'ଣ ହେଲା ?"

"ଶୁଣ ବାବୁ ! ସେ କହୁଛି ଗଛ ମୋର, ସେଥିପାଇଁ ଗଛର ଡାଳଗୁଡ଼ିକ ମୋର; ଏହି ଗଛତଳେ କେହି ବସିପାରିବେ ନାହିଁ । ସେ କହୁଛି, ଆମେ ରହିବା ଯୋଗୁ ସେ ହଇରାଣ ହେଉଛି, ସେପରି ସେ ରହିବାଦ୍ୱାରା ଆମେ ମଧ୍ୟ ହଇରାଣ ହେଉଛୁ । କିନ୍ତୁ ସେ କୁଆଡ଼େ ଯିବ ? ଯିବ ନାହିଁ । ଜମି ତାର ଅଛି । ବାବୁ ଆଜ୍ଞା, ମୋତେ ଗୋଟେ କଥା କୁହନ୍ତୁ, ଯେ ରାସ୍ତା ମଧ୍ୟ କ'ଣ ତାର ? ପଇସା ଦେଇ ଏହାକୁ କିଣି ନେଇଛି ? ନାଁ ପିଚୁ ଏବଂ ପଥର ଆଣି ମୂଲିଆଦ୍ୱାରା ନିଜେ ତିଆରି କରିଛି ? ପାଚଲା-ମୁଣ୍ଡିଆ, ବାଡ଼ପଡ଼ା କେଉଁଠିକାର । ଏହି ରାସ୍ତା ଉପରେ ଚାଲିବାକୁ କ'ଣ ତାର ଏକା ଦାବି ଅଛି ? ସାହସ ଅଛି ତ ପୁଣି କହୁ ଦେଖି ମୁଁ ଏକା ହକ୍‌ଦାର । ତାର କଣାତଡ଼ା ମୁଣ୍ଡ ଠିକ୍ କରେଇ, ତା ସ୍ତ୍ରୀକୁ ବାଟରେ ଏବଂ ଝିଅକୁ ଘାଟରେ ଟାଣି ନ ନେଇଛି ତ ମୁଁ, ମୁଁ' ନୁହେଁ; ମୁଁ ବାପଠାରୁ ଜନମ ନୁହେଁ; ମୋ ସ୍ୱାମୀ, ସ୍ୱାମୀ ନୁହେଁ"—ବୁଟ ବିକୁଥିବା ବୁଢ଼ୀଟି ଶପଥ ନେଇ କହିଲା ।

ସଡ଼କ ଗ୍ରୀଷ୍ମରେ ମଧ୍ୟ ତାର ଅଧିକାର ସାବ୍ୟସ୍ତ କରୁଥିବା ନୀଳମଣିଙ୍କର ଜିଦ୍ ମୋତେ ଭଲ ଲାଗିଲା ନାହିଁ । ତିନିଦିନ ପରେ ବାଉଁଶର ବାଡ଼କୁ ପାରହୋଇ ବାରଣ୍ଡାରେ ପହଞ୍ଚିଲା ବେଳକୁ ତାଙ୍କର ପୁଅ ସହିତ ଦେଖାହେଲା ।

ମୁଁ ପଚାରିଲି, "କ'ଣ ହେଉଛି ?"

ସେ ଉତ୍ତର ଦେଲା, "ଗାଳି ଶୁଣୁଛି ।"

ମୁଁ କହିଲି, "କ'ଣ କରାଯିବ ?"

"ସେହି କଥା ମୁଁ ମଧ୍ୟ କହୁଛି । କିଛି କରିପାରୁ ନାହିଁ । ଏହି ଲୋକମାନଙ୍କ ଯୋଗୁ

ବହୁତ ହଇରାଣ ହେଉଛୁ ।''

ଦୁଇଦିନ ମଧ୍ୟରେ କଥା ଆହୁରି ବଢ଼ିଗଲା । ସେ ଦିନ ରାତି ସାଢ଼େଆଠ ବେଳେ ମୋ ଘରେ ପହଞ୍ଚିଲି (ଅର୍ଥାତ୍ ମୋ କୋଠରୀରେ) । ପଡ଼ୋଶୀ ଲୋକମାନେ ସେ ପର୍ଯ୍ୟନ୍ତ ଖେଳରେ ବ୍ୟସ୍ତ ଥିଲେ । କିନ୍ତୁ ଗଛ ଉପରେ ବତି ଜଳୁ ନଥିଲା । ଟେବୁଲ୍ ଲ୍ୟାମ୍ପ ଜଳାଇ ଖେଳୁଥିଲେ । ନୀଳମଣି ବାରଣ୍ଡାରେ ଚଉକି ଉପରେ ବସିଥିଲେ । ମୋତେ ଦେଖି ଦେଖି କହିଲେ—''ଆଜି ଗଛ ଉପରେ ବତି ଜଳାଇ ନାହାନ୍ତି—ଦେଖୁଛ ?''

''ଆଜ୍ଞା ହଁ, ଦେଖୁଛି ।''

''ଆଲୁଅ ଜଳାଇଥିଲେ ମୁଁ ଏମାନଙ୍କୁ ମାରିପକାଇ ଥାଆନ୍ତି ।'' ନୀଳମଣିଙ୍କୁ ବୋଧେ ଏହି କଥାରେ ଦୁଃଖ ହେଉଥିଲା ଯେ ବତି ଗଛ ଉପରେ ନ ଜଳି ତଳକୁ ଆସିଯାଇଛି । ଏହି କାରଣରୁ ତାଙ୍କୁ ମାରିବାର ସୁଯୋଗରୁ ସେ ବଞ୍ଚିତ ହୋଇଛନ୍ତି ।

''କିନ୍ତୁ ନିଶ୍ଚୟ ଧରାପଡ଼ିଯିବେ । ସେତେବେଳେ ତାଙ୍କୁ ମୁଁ ପାଠ ପଢ଼ାଇ ଦେବି ।''

ମୁଁ କହିଲି—''ଦେଖିନେବା ।''

''ତାରି ଫଇସଲା ଆଜି ହୋଇସାରିଛି ।'' ପୁଣି ସେ କହିଲେ ।

''କାହାର ଫଇସଲା ?''

''ରୁଟି ବିକୁଥିବା ବୁଢ଼ୀର । ଯା'ର ଡାଳିକା ଭଲ ଗଣ୍ଡି । ତାକୁ ପାନେ ହୋଇଛି ।''

''ଆଚ୍ଛା, କ'ଣ ହେଲା ?''

''ମୁଁ ନଗରପାଳକଙ୍କୁ ଏ ବିଷୟରେ କହିଲି ଯେ ରାସ୍ତା ତୁମର । ପୁଣି ସେ ଚୁପ୍ ଚାପ୍ ବସିରହିଲେ । ତେଣୁ ମୁଁ ଦାୟିତ୍ୱରେ ଥିବା ସହରରକ୍ଷୀ ହାତରେ ଦଶ ଟଙ୍କା ଦେଇଦେଲି, ତେବେ ସିଏ ଆସି ତାରି ଚୁଟି ଧରି ଘୋଷାଡ଼ି ଘୋଷାଡ଼ି ନେଇଗଲା; ନଚେତ୍ ସେ କହୁଥିଲା ଯେ ମୋର ମଧ୍ୟ ଦାବି ଅଛି । ତାର କିପରି ଦାବି ଅଛି ?''

ତା ପରଦିନ ରାତିରେ କିଛି ସମୟ ତେଣରେ ଘରେ ପହଞ୍ଚିଲି ତ ନୀଳମଣି ରାଗରେ ଅଗ୍ନିଶର୍ମା ହୋଇଥିଲେ । ଅନ୍ଧାରରେ, ମୁଣ୍ଡକୁ ନୁଆଁଇ ତାଙ୍କର ସ୍ତ୍ରୀ ଏବଂ ଝିଅ ଏପରି ଉଦାସରେ ବସିଥିଲେ ଯେପରି ସେ ଘରୁ କୌଣସି ଶବ ବାହାରି ଯାଇଛି । ମୁଁ ସେଠାରେ ପହଞ୍ଚିଯିବା ପରେ ମଧ୍ୟ ନୀଳମଣି ସେମାନଙ୍କୁ ଘରକୁ ଯିବାକୁ କହିଲେ ନାହିଁ । ଅର୍ଥାତ୍, ମାମଲା ବଡ଼ 'ସିରିୟସ୍' ।

ବାସ୍ତବରେ ପରିସ୍ଥିତି ବଡ଼ ଗୁରୁତର ଥିଲା ।

ସେ ଦିନ ଦି'ପହର ବେଳକୁ ପିଲାମାନେ ଆମ୍ବଗଛ ଡାଳରେ ଦୋଳି ବାନ୍ଧି ଆନନ୍ଦରେ ଦୋଳି ଖେଳୁଥିଲେ । ନୀଳମଣି ସେମାନଙ୍କୁ ଦୋଳିରୁ ଓହ୍ଲାଇବାକୁ ଏବଂ ସେଠାରୁ ଚାଲିଯିବା ପାଇଁ ବାରମ୍ବାର କହିଲେ; କିନ୍ତୁ କିଛି ଫଳ ହେଲା ନାହିଁ । ତାହା ପରେ ସେ ଅସ୍ତ୍ର ଧାରଣ କଲେ । ଏଥିରେ ସେମାନେ କହିଲେ ଯେ ଯଦି ଆମ ଜାଗା ଉପରେ ପାଦ ରଖିବ ତ ତୋ ଗୋଡ଼ ଭାଙ୍ଗିଦେବୁ । ଶ୍ରେଷ୍ଠ ପିଲାମାନେ ଯେତେବେଳେ

ମାଡ଼ ଦେବା କଥା କହିଲେ, ତ ସେ ସେମାନଙ୍କ ଉପରେ ଆକ୍ରମଣ କଲେ । ସେମାନେ ପଥର ପକାଇବା ଆରମ୍ଭ କରିଦେଲେ ।

"ମାଡ଼ଗୋଳ ତ ହୋଇନାହିଁ ?"

"ମୁଁ ମଝିରେ ଠିଆ ହୋଇଗଲି ପୁଅ ! ନଚେତ୍ ମୁଣ୍ଡ ଫାଟି ଯାଇଥାଆନ୍ତା ।" ନୀଳମଣିଙ୍କର ସ୍ତ୍ରୀ କହିଲେ ।

"ଲାଗୁଛି, ମକ୍‌କା ବର୍ଣ୍ଣ କରୁଥିବା ବୁଢ଼ୀ, ପୁଣି ନିଜ ସ୍ଥାନକୁ ଆସିଗଲାଣି । ପୁଲିସ୍‌ବାଲାଙ୍କୁ ଖବର ଦେଲୁ ତ ସେମାନେ କହିଲେ ଗରିବ ବୁଢ଼ୀ ଛାଡ଼ନ୍ତୁ । ତାଠାରୁ ପ୍ରତିଦିନ କିଛି କିଛି ମକ୍‌କା ପୁଲିସ୍‌ବାଲାଙ୍କୁ ମିଳିଯିବ ଏହା ମଧ୍ୟ ସ୍ଥିର ହୋଇଯାଇଥିଲା ।"

"ଯଦି ଏଭଳି ସମାଧାନ ନ ହୋଇଥାଆନ୍ତା ତେବେ ତାର କ'ଣ ଏତେ ସାହସ ଥିଲା, ସେ ପୁଣି ଏଠାରେ ଆସି ବସିଯାଆନ୍ତା ! ପଡ଼ୋଶୀରେ ଥିବା ପୋଲିସବାଲା ନାମରେ ବେନାମି ରିପୋର୍ଟ ଯାଇଛି ବିନା ଦସ୍ତଖତରେ । ଜଣାନାହିଁ କିଏ ଲେଖିଛି । ଛାଡ଼ନ୍ତୁ ସେ କଥା । ବର୍ତ୍ତମାନ ଏ ଢୋଲ ମୋ ଗଳାରେ ଦଉଡ଼ି ବାନ୍ଧିଲା ଭଳି ବନ୍ଧା ହୋଇଛି । ଏଥିପାଇଁ କ'ଣ କରାଯାଏ ? ପୋଲିସଙ୍କୁ ରିପୋର୍ଟ ପଠାଇଦେବି କି ? ପୁଲିସ୍‌ବାଲାଙ୍କ ମଧ୍ୟରେ ଜଣାଶୁଣା ତୁମର ଅଛି କି ?" ନୀଳମଣି ପଚାରିଲେ ।

ପୋଲିସ୍ ବିଭାଗରେ ଜଣାଶୁଣା ଅଫିସର, ସାହୁକାର ଏବଂ ପଇସାବାଲା ହେଲେ ଲାଭ ଅଛି । କିନ୍ତୁ ଆମମାନଙ୍କ ଭଳି ଲୋକମାନଙ୍କ ପାଇଁ ଏଭଳି ପରିଚୟ କୌଣସି କାମକୁ ନୁହେଁ; ବରଂ ତାହା କେବେ କେବେ ବିପଜ୍ଜନକ ହୋଇପଡ଼େ । ତା ଛଡ଼ା ମୁଁ ପୁଲିସରେ କାହାକୁ ଚିହ୍ନେ ନାହିଁ । ଏହି କଥା ନୀଳମଣିଙ୍କୁ କହିଦେଲି ।

"ତୁମେ ପୋଲିସ ବିଭାଗରେ କାମ କରୁଛ ନାଁ ? ତଥାପି କାହା ସହିତ ପରିଚୟ ନାହିଁ ?" ସେ ମୋ ଉପରେ ରାଗିଗଲେ ।

"ମୁଁ ମାଜିଷ୍ଟ୍ରେଟ୍ ଅଦାଲତରେ ମ୍ୟାନେଜର ।"

"ତେବେ କ'ଣ ହେଲା ?"

"ମୁଁ ନୂଆ ନୂଆ ଆସିଛି, ଏଥିପାଇଁ କାହାକୁ ଜାଣିନାହିଁ ।'

"ତୁମର ପରିଚୟ ହେବା ଉଚିତ । ଏଥିରେ ତ ତୁମେ ମନାକରି ପାରିବ ନାହିଁ ।"

"କେଣେଅଧେକୁ ମୁଁ ନିଶ୍ଚୟ ଜାଣିଛି ।"

"ସେ ହତଭାଗାମାନେ କିପରି ?"

"ଉଦ୍ଦେଶ୍ୟ ?"

"ଉଦ୍ଦେଶ୍ୟ, ପରାମର୍ଶ ପାଇଁ, ଫିସ୍ ନେବେ ନା ନାହିଁ ?"

"ଜଣାନାହିଁ, ମୁଁ କିପରି କହିପାରିବି ?"

ଶେଷରେ ବୁଲେଇ ବଙ୍କେଇ ଓକିଲଙ୍କଠାରୁ ପରାମର୍ଶ ନେବା କାର୍ଯ୍ୟ ନୀଳମଣି ମୋ

ଉପରେ ସମର୍ପଣ କରିଦେଲେ । ମୁଁ ଟାଳିପାରିଲି ନାହିଁ ।

ଓକିଲ ପରାମର୍ଶ ଦେଇଥିଲା । ପ୍ରଥମ କଥା ଯେ, ନୀଳମଣିଙ୍କର ଗଛର ଡାଳଗୁଡ଼ିକ ପଡ଼ୋଶୀର ଜମିକୁ ଯିବା ଉଚିତ ନୁହେଁ । ଯଦି ସେମାନେ ତାକୁ ପଥ ସହିତ କାଟି ନୀଳମଣି ଘରେ ଫୋପାଡ଼ି ଦିଅନ୍ତି, ତେବେ କେହି କିଛି କହିପାରିବେ ନାହିଁ ।

ଏହାଦ୍ୱାରା ଆମେ ଦୁହେଁ ଡରିଗଲୁ । କାଳେ ସେମାନେ ଡାଳ କାଟି ପକାନ୍ତି କିନ୍ତୁ ନୀଳମଣି କିଛି ସମୟ ଚିନ୍ତା କରି କହିଲେ, "ହାଣିବେ ନାହିଁ ।"

"କାହିଁକି ହାଣିବେ ନାହିଁ ?"

"ହାଣି ଦେବେ ତ ଆମ୍ବ କେଉଁଠାରୁ ଆସିବ ?"

"ନ ଆସିଲେ ଭଲ ।"

"ତୁମେ ଦୁନିଆର ହାଲ୍‌ଚାଲ୍ ଜାଣନାହିଁ । ଆମ୍ବ ତୋଳିବା ପାଇଁ ତ ସେମାନଙ୍କର ଏତେ ଫିକର । ତାଙ୍କର ସେ ଫିକରକୁ, ଆମର ନୀଳମଣି ଅନନ୍ତକାଳମୟେ ପଣ୍ଡ କରି ଦେଇପାରନ୍ତି ।"

"ଗୃହିଣୀ କହୁଥିଲା ଯେ କାଲି ସେମାନେ ଆହୁରି ଗୋଳମାଳ କରିବେ ।" ନୀଳମଣିର ଝିଅ କହିଲା ।

ମୋତେ ଜଣାଯାଉଛି ଯେ, ଏହା ଧୀରେ ଧୀରେ ତୋଫାନର ରୂପ ଧାରଣ କରିବ ।

ଏବଂ ଏହା ମଧ୍ୟ ହେଲା ।

ମୁଁ ତା ପରିଦିନ ସନ୍ଧ୍ୟାବେଳେ ଯେତେବେଳେ ଘରେ ପହଞ୍ଚିଲି, ସେତେବେଳେ ନୀଳମଣି ଘରେ ନଥିଲା । ପ୍ରତିଦିନ କବାଟ ପାଖରେ ଚଉକି ଉପରେ ବସିରହି ଏହି ପାପପୂର୍ଣ୍ଣ ସଂସାର ଆଡ଼କୁ ଧ୍ୟାନ ଦେଇ ଦେଖିବା ତାଙ୍କର ଅଭ୍ୟାସରେ ପଡ଼ିଯାଇଥିଲା । କିନ୍ତୁ ସେଦିନ ସେ ସିଟ୍‌ରେ ସେ ନଥିଲେ । ଘରେ ମଧ୍ୟ କୌଣସି ପାଟିତୁଣ୍ଡ ଶୁଭୁ ନଥିଲା । ମୁଁ ଭାବିଲି କିଛି ଘଟଣା ଘଟିଯାଇଛି ବୋଧହୁଏ । ଏବଂ ଧୀରେ ଧୀରେ କବାଟ ଖୋଲି ନିଜ କୋଠରିରେ ପ୍ରବେଶ କଲି । କବାଟ ଖୋଲିବା ଶବ୍ଦ ଶୁଣି ତାଙ୍କ ସ୍ତ୍ରୀ ଘରୁ ବାହାରି ଆସିଲେ ।

ମୁଁ ପଚାରିଲି, "ନୀଳମଣି ବାବୁ କୁଆଡ଼େ ଗଲେ ?"

"କ'ଣ କହିବି ପୁଅ, ମୋ ତୁଣ୍ଡ ଖୋଲୁନାହିଁ ।"

"କାହିଁକି, କ'ଣ ହେଲା ?"

"ଖୁନ୍ ହୋଇ ଯାଇଥାଆନ୍ତେ ।" ସେ ଆରମ୍ଭ କଲେ ।

"ଖରାବେଳେ ଗୋଟାଏ ବାଜିଛି—ସେ ଘଣ୍ଟା ସଜାଡୁ ଥିଲେ । ବାହାରେ ପାଟିତୁଣ୍ଡ ଆରମ୍ଭ ହୋଇଗଲା । ଯାଇ ଦେଖିଲେ ଯେ ମାଙ୍କଡ଼ ପଲ ଭଳି ଛୋଟ ଛୋଟ ପିଲା ପଡ଼ୋଶୀ ଘରକୁ ଆସିଲେ । ଆସିଲେ, ତା' ଗଛ ଉପରେ ଚଢ଼ିଗଲେ ଏବଂ ଦୋଳି ଖେଳିବାକୁ ଲାଗିଲେ । ସିଏ ଯେତେବେଳେ କହିଲେ

ଓହ୍ଲାଇ ଆସି ସେମାନେ ଗାଳି ଗୁଲଜ ଆରମ୍ଭ କରିଦେଲେ । ଏପରି ଗାଳି ଯେ, ଆମେ ଛୋଟ ଜାତି ଲୋକଙ୍କ ମୁହଁରୁ ମଧ୍ୟ କେବେ ଶୁଣିନାହୁଁ । ଏହି ସମୟରେ ମୋ ଝିଅର ସେ 'ବିଲେଇ'ଟି—ତୁମେ ତାକୁ ଦେଖିଥିବ ବୋଧହୁଏ—ମୂଷାକୁ ମଧ୍ୟ ମାରେ ନାହିଁ । 'ଗାଈ' ଭଳି ଶାନ୍ତ ସରଳ ହେଲେ ବିଲେଇଟି ଭୁଲବଶତଃ ତାଙ୍କ ମନ୍ଦିରେ ଯାଇ ପହଞ୍ଚିଗଲା । ସେ ଯେପରି ସେଠାରେ ପହଞ୍ଚି ଯାଇଛି—ସେ ହତଭାଗା ପକ୍ଷାଘାତ ରୋଗରେ ମରିଯିବ—ଯେପରି ପହଞ୍ଚିଲା, ସମସ୍ତେ ତାର ଲାଞ୍ଜ ଧରି ଆମ ଜାଗାକୁ କାହିଁକି ଆସିଲୁ ? କିପରି ଆସିଲୁ ? କହି ତାକୁ ଧରି ବୁଲେଇ ବୁଲେଇ ପକେଇ ଦେଲେ । ସେମାନେ କ'ଣ ମଣିଷ ପିଲା ? କିନ୍ତୁ ଯେତେବେଳେ ବଡ଼ ବଡ଼ ମଣିଷ ପିଲା ପଛରେ ରହି ଏପରି କାମ କରାଉଛନ୍ତି ତେବେ ଏହି ଗ୍ରେଟ ଗ୍ରେଟ ପିଲାଙ୍କ ଭୁଲ କ'ଣ ? ଶେଷରେ ବିଲେଇର ଗୋଡ଼ ଭାଙ୍ଗିଗଲା । ତାର ଯନ୍ତ୍ରଣା ଦେଖି ଆମେ ସହି ପାରିଲୁ ନାହିଁ । ତୁମେ ମଧ୍ୟ ଦେଖି ପାରିବ, ବର୍ତ୍ତମାନ ସେମାନେ ତାକୁ ଥାନାକୁ ନେଇ ଯାଇଛନ୍ତି ।"

ମୁଁ ପଚାରିଲି "ଥାନାକୁ କାହିଁକି ନେଇ ଯାଇଛନ୍ତି ?"

"କ'ଣ କହିବୁ ପୁଅ, ଆମ ବିଲେଇ ଗୋଡ଼ ଭାଙ୍ଗିଦେଲେ, ଆମକୁ ଦୁନିଆଯାକର ଗାଳି ଗୁଲଜ କଲେ, ଆମ ଘରକୁ ନଷ୍ଟଭ୍ରଷ୍ଟ କଲେ । ସେ ସବୁ ସେଇମାନେ କରିଛନ୍ତି ନାଁ ? ଏତେ କରି ପୁଣି ସେମାନେ ପୁଲିସରେ ରିପୋର୍ଟ କରିଦେଲେ ଯେ ଆମେମାନେ ସେମାନଙ୍କୁ ମାରିଛୁ । ବିଲେଇ ଛୁଆ ଯେତେବେଳେ ଚିତ୍କାର କଲା ତାର ଖରାପ ଅବସ୍ଥା ଦେଖି ମୋ ଝିଅ ଠିଆ ଠିଆ ପଡ଼ିଯାଇ ବେହୋସ ହୋଇଗଲା । ଏପରି ଝିଅ କାଠ ଫାଳିଆରେ ତାଙ୍କ ପିଲାମାନଙ୍କୁ କିପରି ମାରିପାରନ୍ତା ? ସେମାନେ ରିପୋର୍ଟ କରିଦେଲେ ଯେ ମୋ ଝିଅ ତାଙ୍କ ଝିଅମାନଙ୍କୁ ମାରିଛି । ତାଙ୍କର ବୁଦ୍ଧି କିପରି ନଷ୍ଟ ହୋଇ-ଗଲାଣି ? ବର୍ତ୍ତମାନ ସେ ମଧ୍ୟ ରିପୋର୍ଟ କରିବାକୁ ଯାଇଛନ୍ତି ।"

ମୁଁ ଜାଣିଥିଲି ଯେ ଏହି ମାମଲା କୌଣସିପ୍ରକାରରେ ହେଉ ଆମ ଅଦାଲତରେ ପେଶ୍ ହେବ । ଏଥିପାଇଁ ମୁଁ ଆରାମରେ ଶୋଇଗଲି । ଅଧରାତିକୁ କିଏ ମୋ କବାଟରେ ଆଘାତ ଦେଲା । କବାଟ ଖୋଲି ଦେଖିଲି ଯେ ମୋତେ ଶୀଘ୍ର ଘରକୁ ଯିବା ପାଇଁ ଘରୁ ତାର ଆସିଛି । କୌଣସି ଘରୋଇ କଥା ନେଇ ।

ସକାଳୁ ସକାଳୁ ମୁଁ ଚାଲିଗଲି । ଗାଁରେ ତିନଦିନ ରହିବାକୁ ହେଲା । ମାମଲା ତ ସ୍ଥିର ହୋଇ ପାରିଲା ନାହିଁ; କିନ୍ତୁ ଚତୁର୍ଥ ଦିନ ସକାଳୁ ମୋତେ ସହରକୁ ଫେରିବାକୁ ପଡ଼ିଲା ।

ମୁଁ ଏପରି ବ୍ୟସ୍ତତା ଭିତରେ ଆମ୍ଭଗଛ ସମସ୍ୟା ବିଷୟ ପୁରାପୁରି ଭୁଲି ଯାଇଥିଲି । ଗାଡ଼ିରୁ ଓହ୍ଲାଇ ରିକ୍ସାରେ ବସି, ନୀଳମଣି ଘରେ ପହଞ୍ଚିଲି । ରିକ୍ସାବାଲାକୁ ପଇସା ଦେଇ ଦେଇ ହାତରେ ବ୍ୟାଗ ଧରି ଆଗକୁ ଗଲେ ମୋତେ ସନ୍ଦେହ ହେଲା ଯେ ଆଉ କାହାଘର ନୁହେଁ ତ ? ମୁଁ ଭୁଲରେ ଅନ୍ୟ କାହା ଘରକୁ ଆସିଯାଇଛି କି ? କିନ୍ତୁ ନାଁ,

ଏହା ତ ନୀଳମଣିର ଘର । ମୁଁ ବ୍ୟସ୍ତ ହୋଇପଡ଼ି କିଛି ସମୟ ପର୍ଯ୍ୟନ୍ତ ସେଠାରେ ଠିଆ ହୋଇଗଲି ।

ପରେ ଭିତରେ ନୀଳମଣିଙ୍କୁ ଡାକି ମୁଁ ପଚାରିଲି, "ଏସବୁ କ'ଣ ହେଲା, ନୀଳମଣି ବାବୁ ? ଇଏ ଆପଣ କ'ଣ କଲେ ?"

ମୋ କଥା ଶୁଣି ଶୁଣି ନୀଳମଣି ବାବୁଙ୍କର ଚେହେରା ପାଣ୍ଡୁର ହୋଇଗଲା । ସେ ଚିତ୍କାର କରି ମୋତେ ମାରିବେ କି ଗାଳିଦେବେ ସେହିପରି ମୁହଁଟାକୁ କରିଦେଲେ । ତାଙ୍କ ମୁହଁରୁ ଯେଉଁ କଥା ବାହାରିଥିଲା, ସେଥିରେ ଭଲ କଥା କମ୍ ଓ ଖରାପ କଥା ବେଶି ଥିଲା; ଏହିପରି ଲାଗୁଥିଲା ଯେ, ତାଙ୍କ କହିବାକୁ ବାଟ୍ଟିଲ ବାକୁନାହିଁ ।

ତାଙ୍କ କହିବାର ସାର କଥା ହେଲା—"ମୁଁ ମୋ ଇଚ୍ଛାରେ କରିବି । ଯାହା ଚାହିଁବି କରିବି । ପଚାରିବାକୁ ତମେ କିଏ ? ସେ କିଏ ? ଏବଂ ଆଉ ଅନ୍ୟ ବ୍ୟକ୍ତି କିଏ ? ଅନ୍ୟ କଥା ଛାଡ଼, ତମେ ମତେ ପଚାରିବାକୁ କିଏ ? ଯଦି ସାହସ ଅଛି ଏବଂ ପଚାରିବାକୁ ଚାହୁଁଛ ତେବେ ଯାଇ ସେହି ହତଭାଗାମାନଙ୍କୁ ପଚାରି ବୁଝ । ମୁଁ ସତ ସତ ରିପୋର୍ଟ ଦେଇଛି । ମାନନ୍ତୁ କି ନାହିଁ, କିଏ ଏହାକୁ ଅସ୍ୱୀକାର କରିବ ? ସେମାନେ ମୋ ଶିର ଦେଖି ପାରିଲେ ନାହିଁ । ମିଛ ସତ ରିପୋର୍ଟ ଦେଇ ମୋ ଘରେ ନିଆଁ ଲଗାଇବାକୁ ଚେଷ୍ଟା କଲେ । ଶେଷରେ ମୋତେ ବୋକା ବନେଇ ଦେଲେ । ମୋ ପାଖରେ ସେ ଗୁଇ ମଧ୍ୟ ରହିଲା ନାହିଁ । ଆମ୍ବ ଫଳିବ ତ କ'ଣ ତୁମେ ଭାବୁଛ ଯେ ମୋତେ ସେମାନେ ଖୁଆଇ ଦେବେ ? ଏହି କଥାରୁ ତୁମେ ଅନୁମାନ କରି ପାରୁଥିବ, ଲେଖିକରି ମୋତେ ଦେଇ ପାରିବ ? ସେ ହତଭାଗ୍ୟମାନଙ୍କୁ ବନ୍ଦକରି ପାରିବ ? ମୋ ଆଡ଼କୁ ଆସିବେ ନାହିଁ ? ସଡ଼କରେ ଯାଉଥିବା ସବୁ ଗଣ୍ଡ ସବୁ ତୋଳି ନେଇଯିବେ । ତାଙ୍କୁ ବନ୍ଦ କରିବା ପାଇଁ ତୁମେ କ'ଣ ପହରୀ ଦେଇ ପାରିବ ? ମୋ ଡାଳଗୁଡ଼ିକ ମୋତେ ମିଳିବ ନାହିଁ । ଯାହା ମୋତେ ମିଳିବ ନାହିଁ ତାକୁ ମୁଁ ଅନ୍ୟକୁ ଦେଇ ପାରିବି ନାହିଁ । କାହିଁକି ଦେବି ? ଯଦି ଏସ୍ତେ ଗଛ ତୁମର ହୋଇଥାଆନ୍ତା ତେବେ ଆଉ ପରରୁ ବି ବକଟେ ମୋତେ ମିଳନ୍ତା କି ? କ'ଣ ସେ ମୋତେ ଦେବେ ? ମୋ ଇଚ୍ଛା ଯାହା ଏଥିପାଇଁ ମୁଁ ମୋ ଜିନିଷ ଉପରେ କରିବି ।"

ବର୍ତ୍ତମାନ ନୀଳମଣି ସହିତ ତର୍କ କରିବା ଉଚିତ ନଥିଲା । ତା ମୁଣ୍ଡ ଖୁବ୍ ଗରମ ଥିଲା । ସମ୍ମୁଖର ଖାଲି ସ୍ଥାନ ଯେପରି ମଶାଣି ପରି ଦିଶୁଛି । ସବୁ ଡାଳଗୁଡ଼ିକ କଟା ହୋଇ ଛିନ୍ନଛିନ୍ନ ହୋଇଯାଇଛି । ଗଛଟା ସାରା କଟା ଯିବାରୁ ଖଣ୍ଡବିଖଣ୍ଡ ହୋଇ-ପଡ଼ିଛି । ଗଛର ସବୁ ପତ୍ର ଶୁଖିଯାଇ ପବନରେ ଉଡ଼ିଯାଉଛି । ସାରା ଘରଟା ଯେପରି ଶ୍ମଶାନ, କଳାଶ୍ମାନ—ମଶାଣି ପରି ଭୟାନକ ଜଣାଯାଉଛି । ମୋ କୋଠରୀଟା ଖରାରେ ଗୁଇଁ ଗୁଇଁ ହୋଇଯାଉଛି । ସଡ଼କରେ ବସିଥିବା ମକ୍କା ବିକାଳି ବୁଢ଼ୀଟି ଖରାରେ ସିଝି ଯାଉଥିବ ।

ମୁଁ ତା ପରଦିନ ସେ ଘରକୁ ଛାଡ଼ି ଦେଇଥିଲି । ଏହି ସମସ୍ତ ବିଷୟ ମୁଁ ବଡ଼

ବନ୍ଧୁଙ୍କ ହାତରେ ଏଥିପାଇଁ ଲେଖାଇଲି କାହିଁକି କି—

ଏ ଘରର ମାଲିକ, ଏ ପଡ଼ୋଶୀମାନେ—ଏ ବୃଦ୍ଧ ମଣିଷ, ଏ ଝଗଡ଼ା, ଏ ଅଦାଲତ, ଏଠାକାର ଜଜ୍, ଓକିଲ, ମାଉନ୍ଦାବାଲା, ଥାନାବାଲା, ଜେଲ୍‌ଖାନା, ଏ ଲୁହା ଶିକୁଳି, କଏଦୀ ଜୀବମାନଙ୍କୁ ବାନ୍ଧୁଥିବା ଲୁହା ଶିକୁଳି— ଏହି ସବୁକୁ ଦେଖିବା ପରେ ମୋତେ ଲାଗୁଛି ଯେ ମଣିଷ ନାମକ କ୍ଷୁଦ୍ରଜୀବ ଏବେ ମଧ୍ୟ ବଦଳିବେ ନାହିଁ। ଏହି ସଂସାର ଘୋର ନରକ। ଏଠାରେ ବର୍ତ୍ତମାନ କିଛି ହୋଇ ପାରିବ ନାହିଁ। ମୋତେ ଜୀବନ ଅସହ୍ୟ ଜଣାପଡ଼ୁଛି—

କିନ୍ତୁ ଏହା ସହିତ ମଧ୍ୟ—

ଚକ୍‌ମକ୍ ହେଉଥିବା ଖରା, ମା' ଭଳି କରୁଣା ବର୍ଷାଉଥିବା କଳା କଳା ବାଦଲ, ବଢ଼ୁଥିବା ଆମ୍ବର ଗଛ, ଖରାରେ ଧୀରେ ଧୀରେ ଝାଉଁଳୁଥିବା ଗ୍ରାମ୍ୟବଧୂର ମୁଖମଣ୍ଡଳ ଏ ସବୁ ବି ମନେ ପଡ଼ୁଛି। ବର୍ଷାରେ ସେଠାର ଲୋକ ମନେପଡ଼ୁଛନ୍ତି। ଖଷିରେ ମନ ପୂରାଇ ହାଡ଼ଭଙ୍ଗା ପରିଶ୍ରମ କରୁଥିବା ଜନତାର ଦୃଶ୍ୟ ଆଖି ଆଗରେ ନାଚି ଉଠୁଛି। ଗଛର ଛାଇ ପାଇଁ ଛଟ୍‌ଛଟ୍ ହେଉଥିବା ଦେହ ବୁଢ଼ୀଟି ମୋ ସ୍ମୃତିପଟରେ ସବୁବେଳେ ଆଙ୍କି ହୋଇ ରହିବ। ସେ ସମୟରେ ମୁଁ ମଧ୍ୟ ଚିନ୍ତା କରୁଛି, ନାଁ, ନିରାଶ ହେବାର କୌଣସି କାରଣ ନାହିଁ। ଏହି ନରକକୁ ଆମେ ଦୂର କରି ପାରିବୁ, ପରିଶ୍ରମର ଆନନ୍ଦକୁ ପ୍ରତିଷ୍ଠିତ କରିପାରିବୁ। ପୁଣି ମୋ ମନରେ ଆଶାର କ୍ଷୀଣ ରେଖା ଉଦିତ ହେଉଛି।

ଭେଙ୍କଟେଶ୍ୱର୍ଲୁ ବୁଲିବୁଲି ଗୋଟାଏ ବାଜିବା ପରେ ଘରେ ପହଞ୍ଚିଲା । ତାକୁ କେଉଁଠି ହେଲେ ଚାଉଳ ମିଳିଲା ନାହିଁ । ସେ ଜାଣିଥିଲା ଯେ ତାକୁ ବର୍ତ୍ତମାନ ଚାଉଳ ମିଳିବ ନାହିଁ । ସେ କେଉଁଠାରୁ ମଧ୍ୟ ଚାଉଳ ଆଣିବା ଅବସ୍ଥାରେ ନଥିଲା । ପୁଣି ମଧ୍ୟ ପାଗଳ ପରି ବେକାରରେ ବୁଲିବାକୁ ଗଲା । କ୍ଷୁଧା, ନୈରାଶ୍ୟ ଏବଂ ଶୀତ ଦିନର ଦ୍ୱିପ୍ରହର— ଏ ତିନିହେଁ ମିଶି ତାକୁ ବୋକା କରିଦେଲେ । ଶେଷରେ ସେ ଗୋଟିଏ ଚାଉଳ ଦୋକାନରେ ପହଞ୍ଚିଲା ।

ପଚାରିଲା—"ଚାଉଳ ଦର କେତେ ?" ଦୋକାନୀଟି କିଛି ସମୟ ପର୍ଯ୍ୟନ୍ତ ତାର ଆଶ୍ଚର୍ଯ୍ୟ ରୂପକୁ ସନ୍ଦେହ ଦୃଷ୍ଟିରେ ଚାହିଁ କହିଲା, "ମହଣ ଅଶୀଟଙ୍କା ।"

"ଆଚ୍ଛା ।" କହି ଭେଙ୍କଟେଶ୍ୱର୍ଲୁ ପଛକୁ ଫେରିଲା । ରାସ୍ତାରେ ଧର୍ମଶାଳାର ବାହାର ଚବୁତରା ଉପରେ ସେ କିଛି ସମୟ ପର୍ଯ୍ୟନ୍ତ ବସିଗଲା । ଭିକାରୀମାନେ ମାଟି ହାଣ୍ଡିରେ ଖାଦ୍ୟ ତିଆରି କରୁଥିଲେ । ସେମାନଙ୍କ ଆଡ଼କୁ ସେ ବଡ଼ ଆଶା ଏବଂ ଈର୍ଷା ଦୃଷ୍ଟିରେ ଚାହିଁଲା । ତା ଆଖିରେ ଲୁହ ଆସିଗଲା । ତାର ମନେପଡ଼ିଲା ପିଲାଦିନେ ଯଦି ସେ କାନ୍ଦୁଥିଲା ତେବେ ତାର ମାଁ ତାକୁ ପାଖକୁ ଡାକି ସାନ୍ତ୍ୱନା ଦେଉଥିଲା । ବର୍ତ୍ତମାନ ତାର ସ୍ତ୍ରୀ ତାକୁ ଶାସନ କରୁଛି ଏବଂ ପିଲାମାନେ ହଇରାଣ ହୋଇ ତା ଆଡ଼କୁ ଚାହିଁଛନ୍ତି । ସେ ଲୋକଯୋଗୁ ମଧ୍ୟ କାନ୍ଦି ପାରୁନାହିଁ । ଚାଉଳ ନ ମିଳିବା ଯୋଗୁ ସେ କାନ୍ଦୁନାହିଁ, ସେ ତାର ଅକର୍ମଣ୍ୟତା ଯୋଗୁ କାନ୍ଦୁଛି । ତାର ଅସହାୟତା ହେତୁ କାନ୍ଦୁଛି । ତା କାନ୍ଦିବାରେ ମଧ୍ୟ ଅର୍ଥ ନାହିଁ । ହୃଦୟ ଫଟେଇ ପାହାଡ଼ ଫଟେଇବା ଭଳି ଶବ୍ଦ ତା ମୁହଁରେ ନାହିଁ । କାଦୁଅରେ ଘୁଷୁରି ଘୁଷୁରି, ବର୍ଷା ପାଣିରେ ଖସି-ଯାଉଥିବା ପୋକ ଉପରେ ଯଦି କାହାର ପାଦ ପଡ଼ିଯାଏ ସେ ପୋକ ଯେମିତି ଅନୁଭବ କରିବ ସେମିତି ଅନୁଭବ କରି ସେ କାନ୍ଦୁଛି । ତାର ଦୁଃଖ ଜଣେ ଅକର୍ମାର ନିର୍ମମ ଦୁଃଖ ଅଟେ ।

ସେ ଆଖି ମଳି କିଛି ସମୟ ପର୍ଯ୍ୟନ୍ତ ସେଆଡ଼େ ସେଆଡ଼େ ବୁଲି ପୋଲ ପାଖରେ ପହଞ୍ଚିଲା । ପୁଣି ନାଳ କୂଳେ କୂଳେ କିଛି ଦୂର ଯାଇ ପଛକୁ ଫେରିଲା । ପୁଣି ଆଗକୁ ଯାଇ ଶେଷରେ ଘରେ ପହଞ୍ଚିଲା । ଏହିସବୁ ଲୋକଙ୍କୁ କ'ଣ ଲୁହାଯାଇପାରେ ? ଘରେ ସେ ସବୁ ମଣିଷ, ସ୍ତ୍ରୀ ଏବଂ ପାଞ୍ଚୋଟି ପିଲା ଭୋକରେ ଛଟପଟ ହୋଇ ଯଦି ମରି ଯାଆନ୍ତି ତେବେ ହୁଏତ ସେ ଆରାମରେ ନିଶ୍ୱାସ ନେଇ ପାରିବ । କେହି କହିବାକୁ ନଥିବେ ଯେ ତୁମେ ଚାଉଳ ଆଣିଲ ନାହିଁ । ତା ଆଡ଼କୁ ଦୟା ଏବଂ ଅସନ୍ତୋଷ ଭାବନା ନେଇ ଦେଖିବାକୁ କେହି ନଥିବେ । କିନ୍ତୁ ସେମାନେ ମଲେ ନାହିଁ । ରାସ୍ତାରେ ଖାଲି ମାଟିରେ

ଜାନ ପାଖ ସ୍ତ୍ରୀ ଶୋଇ ଯାଇଛନ୍ତି । ସ୍ୱାମୀଙ୍କୁ ଦେଖି ଦେଖି ସେ ଆଖି ଖୋଲି ଚାହିଁଲା । ପୁଣି ଶୂନ୍ୟ ହସ୍ତରେ ଫେରିଥିବା ଜାଣି ଆଖି ବନ୍ଦ କରିଦେଲା । ସେ—ଦୀର୍ଘ ନିଶ୍ୱାସ ଛାଡ଼ି ଘରେ ପାଦ ରଖିଲା । ଦେଖିଲା ବଡ଼ ଝିଅ ଜାନକୀ ଛୋଟ ପୁଅକୁ କୋଳରେ ଧରି, ସେଠାରେ କବାଟକୁ ଆଉଜି ବସିଛି । ଶୁଖିଲା ମୁହଁରେ ସେ ଦ୍ୱାରକୁ ଚାହିଁ ଦେଖୁଛି । ବାକି ପିଲାମାନେ କୁଆଡ଼େ ଯାଇଛନ୍ତି କିଛି ଜଣାପଡ଼ୁନାହିଁ । ଭେଙ୍କଟେଶ୍ୱରଲୁ ନିଜ ଝିଅ ଆଖିରୁ ଲୁଚି ଲୁଚି ପଛପଟକୁ ଚାଲିଗଲା । କୂଅରୁ ପାଣି କାଢ଼ି ହାତ ମୁହଁ ଧୋଇଲା ଏବଂ ବାଦାମ ଗଛ ତଳେ ବସିଲା ।

ତାକୁ ଲାଗିଲା ଯେ, ସେ ହାଲିଆ ହୋଇ ପଡ଼ୁଛି । କିଛି ସମୟ ପାଇଁ କୂଅ, ଗଛ ଏବଂ ଗଛ ଉପରେ ବସିଥିବା କାଉ ସବୁ ଘୂରିବାକୁ ଲାଗିଲେ । ସେହି ଶୁଖିଲା ପତ୍ର ଉପରେ ଶୋଇଗଲା । ସେ ଅନୁଭବ କଲା ଯେ, ତା ଦେହ ଥରିବାକୁ ଲାଗୁଛି । ସେ ଯେପରି ମରିଯାଉଛି, ସେ ଡରିଗଲା । ସେପରି ତ ମରିଯିବା ଭାବନା ତା ମନରେ କେତେଥର ଉଠୁଛି; କିନ୍ତୁ କୌଣସି ପୂର୍ବ ସୂଚନା ନଥାଇ ମରିଯିବା ସେ ଅକର୍ମଣ୍ୟତାର ଲକ୍ଷଣ ବୋଲି ଭାବିଲା । ସେ ମନେ ମନେ କହିଲା, ମୁଁ ଗୋଟାଏ ମସ୍ତବଡ଼ କରମ-କୋଡ଼ି । ତା ଆଖିରୁ ଲୁହ ଗଡ଼ି ପଡ଼ିଲା ।

ଯଦି ସେ ଚାଉଳ ଦୋକାନର ମାଲିକ ପାଖରେ କାକୁତି ମିନତି ହୋଇ କହି-ଥାଆନ୍ତା, 'ବାବୁ, ମୁଁ ଗରିବ । ଦୁଇଦିନ ହୋଇଯିବ କିଛି ଖାଇ ନାହିଁ, କିଛି ଚାଉଳ ଦିଅନ୍ତୁ । ଆପଣଙ୍କର ଦୟା ହେବ ।' ତାହେଲେ ବୋଧହୁଏ ସେ କିଛି ଦେଇଥାଆନ୍ତେ । କିନ୍ତୁ ଏପରି ଛୋଟ କାମ ସେ କାହିଁକି କରି ପାରୁନାହିଁ ? କାହିଁକି ନା ସେ ବେକାର ଅଟେ । ଭିକାରି ବଞ୍ଚି ରହୁଛନ୍ତି । କାଉ ଏବଂ ଗଧ ମଧ୍ୟ ବଞ୍ଚି ରହୁଛନ୍ତି । ବଞ୍ଚିରହିବା ପାଇଁ କେବଳ ସେ ଅସମର୍ଥ ଅଟେ ।

ସେ ଭାବିଲା, ଘରେ ପହଞ୍ଚିବାକ୍ଷଣି ସ୍ତ୍ରୀ ତାକୁ ଗାଳି ଦେବ, କିନ୍ତୁ ସେ କିଛି କହିଲା ନାହିଁ । ତାକୁ ସନ୍ଦେହ ହେଲା, ବୋଧହୁଏ ଏମାନେ କେଉଁଠାରୁ ଚାଉଳ ଆଣି ରୋଷେଇ କରି ଖାଇସାରିଛନ୍ତି । ଯଦି ଏପରି କଥା ହୋଇଥାଆନ୍ତା ତେବେ ମୋତେ କ'ଣ ଖୁଆନ୍ତେ ନାହିଁ ? କେହି ତ ମତେ ଖାଇବା ପାଇଁ ଡାକିଲେ ନାହିଁ । ତା ମନରେ ଆଶା ହେଲା । ଆସ୍ତେ ଉଠି ସେ ରୋଷେଇ ଘରକୁ ଚାଲିଗଲା । ଭାତ କଂସାର ଢାଙ୍କୁଣୀ କାଢ଼ି ଦେଖିଲା ସେଥିରେ ଭାତ ଅଛି । ତା ପାଖରେ କିଛି ଚଟଣି ମଧ୍ୟ ଅଛି । ସେ ଏପଟ ସେପଟକୁ ଡରି ଡରି ଚାହିଁ ଭାତ ଏବଂ ଚଟଣିକୁ ମିଶାଇ ଖାଇବା ପାଇଁ ପ୍ରସ୍ତୁତ ହେଲା । ସେହି ସମୟରେ ତାର ସ୍ତ୍ରୀ ଶୀଘ୍ର କବାଟ ଖୋଲି ଭିତରକୁ ପଶିଆସିଲା ଏବଂ ବାହୁକୁ ଧରି ବାହାରକୁ ବାହାର କରିଦେଲା ।

"ସକାଳୁ ଚାଉଳ ଆଣିବା ପାଇଁ ଯାଇଥିଲ ଏବଂ ବର୍ତ୍ତମାନ ଆସୁଛ । ମୋର ଏବଂ ପିଲାମାନଙ୍କର କଥା ହେତୁ ଅଛି ତ ତମର ? ବିଚାରି ବଡ଼ଝିଅ ଘର ଘର ବୁଲି କେଉଁଠାରୁ ଚାଉଳ ଅଧସେର ଆଣିଛି । ନହେଲେ ପିଲାମାନେ କାଲି ରାତିରୁ କିଛି

ଖାଇନାହାନ୍ତି ଏବଂ ଆଜ ସଖାଳୁ ଉପାସରେ ପଡ଼ିଛନ୍ତି । ଏପର୍ଯ୍ୟନ୍ତ ମର ଯାଆନ୍ତେଣି ତ ତୁମେ ଖୁସି ହୋଇ ଯାଇଥାଆନ୍ତ । ତମର କ'ଣ ଚିନ୍ତା ଅଛି ? କେଉଁଠୁ କ'ଣ ଖାଇନେଇଥିବ । ବିଚରା ଶ୍ରେଷ୍ଠ ପୁଅ କେଉଁଠୁ ଘୋଳ ଦହି ଆଣିବା ପାଇଁ ଯାଇଛି— କିଛି ଖାଇନାହିଁ । ତା ପାଇଁ ରଖିଥିବା ଭାତକୁ ତୁମେ ଚୋର ପରି ଛଡ଼େଇ ନେବାକୁ ବସିଛ ? ନିଜ ପୁଅ ପେଟରୁ କାଟି ଖେଣ୍ଡିବାକୁ ଚାହୁଁଛ ?''

ସେ ତାକୁ ଜୋରରେ ଗାଳି ଦେବାକୁ ଲାଗିଲା । କିନ୍ତୁ ପରକ୍ଷଣରେ ସେ ବହୁତ ଉଦାସ ହୋଇଗଲା ଏବଂ କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲା । ଭେଙ୍କଟେଶ୍ୱରଲୁ ଶିରା ପ୍ରଶିରାରେ ଯନ୍ତ୍ରଣା ଆରମ୍ଭ ହୋଇଗଲା । ତାକୁ ଲାଗିଲା ତା ମୁହଁରେ କିଛି ଅଶୁଦ୍ଧ ବସ୍ତୁ ଅଛି । ସେ ନିଜକୁ ଘୃଣା କରିବାକୁ ଲାଗିଲା । ତାକୁ ନିଜ ସ୍ତ୍ରୀ ଉପରେ ଦୟା ଆସିଲା । ଯେତେବେଠାରୁ ସେ ଶାଶୁଘରକୁ ଆସିଥିଲା ସେ ସମୟରେ ସେ ଅତ୍ୟନ୍ତ ଶାନ୍ତ ଏବଂ ମଧୁର ସ୍ୱଭାବର ଥିଲା । ବର୍ତ୍ତମାନ ସେ ଏପରି କାହିଁକି ବଦଳି ଯାଇଛି ତାର କାରଣ ତାକୁ ଜଣାଅଛି । ସେ ତାକୁ ସାନ୍ତ୍ୱନା ଦେବାକୁ ଚାହୁଁଥିଲା, ବୁଝାଇବାକୁ ଚାହୁଁଥିଲା— କିନ୍ତୁ ସେ ପୁଣି ବାହାରକୁ ଚାଲିଗଲା ।

ପୁଣି ସେ ଧର୍ମଶାଳା ପାଖକୁ ଯାଇ ସେଠାର ଗୋଟିଏ ଚଉତରା କୋଣରେ ବସିଗଲା । କେତେକ ଭିକାରି ଚଉତରା ଉପରେ ଶୋଇ ଶୋଇ କଥାବାର୍ତ୍ତା କରୁଛନ୍ତି । ସମସ୍ତେ ନିଜ ନିଜର ଲୁଗା ଏବଂ ବାସନ ନିଜ ପାଖରେ ରଖିଛନ୍ତି । ଫଟା, ପୁରୁଣା, ମଇଳା ଚିକଟା ଲୁଗା, ଫୁର୍ ଫୁର୍ ହୋଇ ଉଡ଼ୁଥିବା ବାଳ, ଅସଭ୍ୟଙ୍କ ପରି ବେଶଭୂଷା । ଧୂସର ଶରୀରର ଆକାର ପ୍ରକାର, ଠିକ୍ ପଶୁ ନାଳରେ ହୋଇଥିବା ପୋକଯୋକଙ୍କ ପରି ଦଳ ଦଳ ହୋଇ ସେଠାରେ ମଳା ବାନ୍ଧିଲା ପରି ପଡ଼ିଛନ୍ତି । ଭେଙ୍କଟେଶ୍ୱରଲୁ ଥରେ ନିଜକୁ ଏବଂ ନିଜ ଲୁଗାକୁ ଚାହିଁଲା । ତାକୁ ତାର ଓ ସେମାନଙ୍କ ମଧ୍ୟରେ ବିଶେଷ କିଛି ପାର୍ଥକ୍ୟ ଜଣାପଡ଼ିଲା ନାହିଁ । କିନ୍ତୁ ସେମାନେ ବଞ୍ଚି ରହିଛନ୍ତି । କୌଣସିପ୍ରକାରେ ବଞ୍ଚି ରହିଛନ୍ତି । ଏତେ ହୀନ ଅବସ୍ଥାରେ କାହିଁକି ବଞ୍ଚି ରହିବ ? ଜୀବନ ପ୍ରତି ଏହି ମୋହ ମମତା କାହିଁକି ?

ଅନ୍ଧ ଓ ଛୋଟା ହୋଇ ମଧ୍ୟ ରାସ୍ତା ଉପରେ ଧୂଳିରେ ଘୁଷୁରି ଘୁଷୁରି ସମସ୍ତଙ୍କ ପାଖରେ ଏହି ଦୟନୀୟ ଅବସ୍ଥା ଦେଖାଇ, ଶୁଣାଇ ସେମାନଙ୍କ ଦୟା ଉପରେ ବଞ୍ଚି ରହିବାର ଲାଳସା କାହିଁକି ? ବଞ୍ଚି ରହିବା ପାଇଁ ଯେ ଯେଉଁ ଆକର୍ଷଣ ଅଛି ହଠାତ୍ ତାକୁ ଲାଗିଲା ତାକୁ ଏହାର ରହସ୍ୟ ଜଣାଗଲାଣି । ଯେ ସବୁ ଧୋକା ଅଟେ । ମାଛଙ୍କ ପରି କଣ୍ଟାରେ ଧରିନେଇ କେତେବେଳେ ପାଣିରେ ବୁଡ଼ାଇ ଏବଂ କେତେବେଳେ ଆଶା ଦେଖାଇ କେହି ଏ ସବୁ ଲୋକମାନଙ୍କୁ ଧୀରେ ଧୀରେ ମାରୁଛି, କନ୍ଦାଉଛି ଏବଂ ଛିନ୍ନଭିନ୍ନ କରୁଛି ।

ଭେଙ୍କଟେଶ୍ୱରଲୁ ଦୀର୍ଘଶ୍ୱାସ ଛାଡ଼ିଲା । ସେ ମରିବା ନିମନ୍ତେ ସ୍ଥିର କରିନେଲା । ସେ ଭାବିଲା, ବଞ୍ଚି ରହିବା ପାଇଁ କଷ୍ଟ ଛଡ଼ା ଏ ସଂସାରରେ ଆଉ କୌଣସି ଦୁଃଖ

ନାହିଁ । ବର୍ତ୍ତମାନ ସେ ଆଉ ବଞ୍ଚିପାରିବ ନାହିଁ ଏବଂ ନିଜ ପରିବାରକୁ ବଞ୍ଚାଇରଖିବାର ସମ୍ବଳ ଦେଇପାରିବ ନାହିଁ । ସେ ଅକର୍ମଣ୍ୟ ଅଟେ । ଏପରି ହତଭାଗାଙ୍କୁ, ଅପଦାର୍ଥଙ୍କୁ ଭଗବାନ କାହିଁକି ଜନ୍ମ ଦିଅନ୍ତି ? ଧର୍ମଶାଳାର କାନ୍ଥକୁ ଆଉଜି, ବସି ବସି ସେ ନିଜର ଜୀବନକୁ ନିରୀକ୍ଷଣ କରିବାକୁ ଲାଗିଲା ।

ତା ଜୀବନରେ ଏହି ଦୁଃଖର ପରମ୍ପରା ସେହି ଦିନଠାରୁ ଆରମ୍ଭ ହୋଇଥିଲା। ଯେଉଁଦିନ ତାକୁ ଚାକିରିରୁ ବାହାର କରି ଦିଆଗଲା । ଯେ ପର୍ଯ୍ୟନ୍ତ ସେ ପ୍ରାଇମେରି ସ୍କୁଲର ଶିକ୍ଷକ ଥିଲା ସେ ପର୍ଯ୍ୟନ୍ତ ପରିବାରର ପାଳନ ପୋଷଣ କୌଣସିପ୍ରକାରେ ଚାଲୁଥିଲା; କିନ୍ତୁ ସେ ବୋକା, ପାଗଳ ଅଟେ, ନଚେତ୍ ସ୍କୁଲ 'ଇନ୍‌ସ୍ପେକ୍ଟ୍ରେସ'ଙ୍କ କାନ ଧରି କାହିଁକି ସେ ଟାଣିଆଣନ୍ତା ? ସେ କହୁଛି ତାର କୌଣସି ଖରାପ ଉଦ୍ଦେଶ୍ୟ ନ ଥିଲା । କିନ୍ତୁ କିଏ ବିଶ୍ୱାସ କରୁଛି ? ତାହାର ଶ୍ରେଣୀ ପରିଦର୍ଶନ କରିବା ସମୟରେ ସେ ଏପରି ହସିବାକୁ କାହିଁକି ଲାଗିଥିଲା ? ପରିଦର୍ଶନର ଦୁଇଦିନ ସେ ତା ସହିତ ହସମଜାର କଥାବାର୍ତ୍ତା କାହିଁକି କରିଥିଲା ? ସେ କୌଣସି ନା କୌଣସି କାମ ବାହାନାରେ ତାକୁ ନିଜ ଘରକୁ ବାରମ୍ବାର କାହିଁକି ଡାକୁଥିଲା ? ସେ ଭାବିଲା ଯେ ମେମ୍‌ସାହେବଙ୍କର ତା ପ୍ରତି ବେଶ୍ ଶୁଭଦୃଷ୍ଟି ଅଛି । ଶେଷଦିନ ଯେତେବେଳେ ସେ ତା କ୍ଲାସକୁ ପଶିଗଲେ ସେତେବେଳେ ସେ ଶୋଇଥିଲା । ବାସ୍ତବରେ ସେଇକ୍ଷଣି ଆଖି ବନ୍ଦ ହୋଇଆସିଥିଲା । ସେ ବିରକ୍ତ ହୋଇ ତାକୁ ଗାଳି ଦେଇଥିଲେ । ପିଲାଙ୍କୁ ପ୍ରଶ୍ନ ପଚାରନ୍ତି ତ ସମସ୍ତେ ବୋକାଙ୍କ ଭଳି କିଛି କହିନପାରି ଠିଆହୋଇଗଲେ । ସେ ଦୁର୍ଗାରୂପ ଧାରଣ କଲେ । ସବୁ ଶିକ୍ଷକଙ୍କ ସାମନାରେ, "ସ୍କୁଲ କୌଣସି ମଇଁଷି ଚରାଇବା କାମ ନୁହେଁ; ଭେଙ୍କଟେଶ୍ୱଲୁ, ମୁଁ ଆପଣଙ୍କ ବିରୁଦ୍ଧରେ ରିପୋର୍ଟ ଦେଉଛି; କହି ସେ ଚାଲିଗଲେ । ସେ ଡରିଗଲା, ତାଙ୍କ ପଛେ ପଛେ ରାସ୍ତା ପର୍ଯ୍ୟନ୍ତ ଚାଲିଗଲା ମ୍ୟାଡ଼ାମ୍ ମ୍ୟାଡ଼ାମ୍ କହି । ଯେତେବେଳେ ମ୍ୟାଡ଼ାମ୍ ତାଆଡ଼େ ଧ୍ୟାନ ନ ଦେଇ ଚାଲିଯାଉଥିଲେ ସେତେବେଳେ ସେ ବିବ୍ରତହୋଇ ତାଙ୍କ ପଣତକାନି ଧରି ମ୍ୟାଡ଼ାମ୍ କହି ଟାଣିଦେଲା । ତାଙ୍କର ପଣତକାନି କାନ୍ଧରୁ ଖସିପଡ଼ିଲା । ସମସ୍ତେ ହସି ଉଠିଲେ । ଅଭଦ୍ର ଅଶିଷ୍ଟ କହି ନିଆଁବାଣ ହୋଇ ସେ ଚାଲିଯାଇଥିଲେ । ବାସ୍, ତାର ଚାକିରି ଚାଲିଗଲା—ତାର ଅଞ୍ଚଳଠାରୁ ମଧ୍ୟ ଅଧିକ ପ୍ରକଟ ଏବଂ ଅଧିକ ସ୍ଥାୟୀ ଭାବରେ ।

ସେହିପରି କାନ ଧରି ଟାଣିବା ଭୁଲ ଥିଲା । ସେ କଥା ସେ ଭଲଭାବେ ଜାଣିଥିଲା । କିନ୍ତୁ ସେହି ବିବ୍ରତ ଅବସ୍ଥାରେ ତାକୁ ଜଣାପଡ଼ିଲା ନାହିଁ ଯେ ସେ କ'ଣ କରୁଛି । ତାର ଉଦ୍ଦେଶ୍ୟ କେବଳ ତାଙ୍କୁ ଅଟକାଇ ତାଙ୍କ ପାଖରେ ବିନୀତ ପ୍ରାର୍ଥନା କରିବା ନିମନ୍ତେ ଥିଲା । କିନ୍ତୁ ତାର ଭାଗ୍ୟ ଖରାପ । ଏଇଥି ପାଇଁ ଶେଷରେ ତାର ସ୍ତ୍ରୀ ମଧ୍ୟ ତାକୁ ଅପଦାର୍ଥ ଭାବେ ।

ତାପରେ କିଛି ଟିଉସନ ଧରିଲା । କିନ୍ତୁ ସେ କାମ ଫଳପ୍ରଦ ହେଲା ନାହିଁ ।

ଜଣାନାହିଁ ତା ମଧ୍ୟରେ କ'ଣ ଦୁର୍ବଳତା ଥିଲା । ସମସ୍ତେ ଜଣ ଜଣ କରି ତା ପାଖକୁ ଯିବା ଛାଡ଼ିଦେଲେ । କେତେ ଜାଗା ଚାକିରି ପାଇଁ ଚେଷ୍ଟାକଲା । କିନ୍ତୁ କେଉଁଠାରେ ହେଲେ କାର୍ଯ୍ୟ ସିଦ୍ଧ ହେଲା ନାହିଁ । ଯେଉଁଠାରେ ମଧ୍ୟ ଚାକିରି ମିଳିଲା ତାହା ତିଷ୍ଠିଲା ନାହିଁ । ଅଭିମାନ ମାରି ସିନେମା ଘରେ ଟିକେଟ ବିକିବା କାମ କଲା । କିନ୍ତୁ ସେଠାରେ ମଧ୍ୟ ତିଷ୍ଠିପାରିଲା ନାହିଁ । ଘର ଘର ବୁଲି ପାମ୍ପଡ଼ ଏବଂ ସମ୍ବର ପାଉଡ଼ର୍ ବିକ୍ରି କରିବା କାମ ମଧ୍ୟ କଲା; କିନ୍ତୁ କେହି ତାକୁ କିଣିଲେ ନାହିଁ । ସେଥିରେ ବିକ୍ରି କରିବାର କୌଶଳ ନାହିଁ । ଶେଷରେ କିଂକର୍ତ୍ତବ୍ୟବିମୂଢ଼ ଓ ବିବଶ ହୋଇ ତାର ସ୍ତ୍ରୀ ଅନ୍ୟ ଘରେ ରାନ୍ଧୁଣିଆ କାମ କରି ପିଲାଙ୍କର ଭରଣପୋଷଣ କରିବାକୁ ଲାଗିଲା । ସମସ୍ତେ ତାର ନିନ୍ଦା କରିବାକୁ ଲାଗିଲେ । ଲୋକେ କହୁଥିଲେ— ଭିକ ମାଗି ଅଥବା ଚୋରିକରି କିନ୍ତୁ ଘରର ସ୍ତ୍ରୀକୁ ବାହାରକୁ କାହିଁକି ପଠାଉଛ ? କେତେକ ଗାଁକୁ ଯାଇ ଲୋକଙ୍କଠାରୁ ପଇସା ମାଗିଲା କିନ୍ତୁ ତାର ମାଗିବାର ଢଙ୍ଗ ଦେଖି ଲୋକମାନେ ତାକୁ ସନ୍ଦେହ ଦୃଷ୍ଟିରେ ଦେଖିଲେ । କେଉଁ କେଉଁଠାରୁ ମଧ୍ୟ ଖାଲି ହାତରେ ଫେରିବାକୁ ପଡ଼ିଲା । ତାପରେ ଚୋରି କରିବାକୁ ଚେଷ୍ଟାକଲା । ପ୍ରଥମେ ରେଲ ଷ୍ଟେସନରେ ଆରମ୍ଭକଲା—ତାକୁ ଜଣାନଥିଲା ଚୋରି କପରି କରାଯାଏ । ଦିନେ ସାହସ କରି ରେଲରେ ଚଢ଼ୁଥିବା ଲୋକଙ୍କ ଭିତରେ ପଶିଯାଇ କାହାରି ପକେଟରେ ହାତ ପୂରାଇଲା । ସେ ପକେଟବାଲା ତାକୁ ଧରି ପକାଇଲା ଏବଂ ଲୋକମାନେ ତାକୁ ମାଡ଼ ମାରିବାକୁ ଲାଗିଲେ । ଏଥିମଧ୍ୟରେ ଜଣେ ଜଣାଶୁଣା ପଛେ ରାସ୍ତା ପର୍ଯ୍ୟନ୍ତ ଚାଲିଗଲା ମ୍ୟାଡ଼ାମ୍ ମ୍ୟାଡ଼ାମ୍ କହି । ସେତେବେଳେ ମ୍ୟାଡ଼ାମ୍ ତାଆଡ଼େ ଧ୍ୟାନ ନ ଦେଇ ଚାଲିଯାଉଥିଲେ ସେତେବେଳେ ସେ ବିବ୍ରତହୋଇ ତାଙ୍କ ପଣତକାନି ଧରି ମ୍ୟାଡ଼ାମ୍ କହି ଟାଣିଦେଲା । ତାଙ୍କର ପଣତକାନି କାନ୍ଧରୁ ଖସିପଡ଼ିଲା । ସମସ୍ତେ ହସି ଉଠିଲେ । ଅଭଦ୍ର ଅଶିଷ୍ଟ କହି ନିଆଁବାଣ ହୋଇ ସେ ଚାଲିଯାଇଥିଲେ । ବାସ୍, ତାର ଚାକିରି ଚାଲିଗଲା—ତାର ଅଞ୍ଚଳଠାରୁ ମଧ୍ୟ ଅଧିକ ପ୍ରକଟ ଏବଂ ଅଧିକ ସ୍ଥାୟୀ ଭାବରେ ।

ସେହିପରି କାନି ଧରି ଟାଣିବା ଭୁଲ ଥିଲା । ସେ କଥା ସେ ଭଲଭାବେ ଜାଣିଥିଲା । କିନ୍ତୁ ସେହି ବିବ୍ରତ ଅବସ୍ଥାରେ ତାକୁ ଜଣାପଡ଼ିଲା ନାହିଁ ଯେ ସେ କ'ଣ କରୁଛି । ତାର ଉଦ୍ଦେଶ୍ୟ କେବଳ ତାଙ୍କୁ ଅଟକାଇ ତାଙ୍କ ପାଖରେ ବିନୀତ ପ୍ରାର୍ଥନା କରିବା ନିମନ୍ତେ ଥିଲା । କିନ୍ତୁ ତାର ଭାଗ୍ୟ ଖରାପ । ଏଇଥି ପାଇଁ ଶେଷରେ ତାର ସ୍ତ୍ରୀ ମଧ୍ୟ ତାକୁ ଅପଦାର୍ଥ ଭାବେ ।

ତାପରେ କିଛି ଟିଉସନ ଧରିଲା । କିନ୍ତୁ ସେ କାମ ଫଳପ୍ରଦ ହେଲା ନାହିଁ । ଜଣାନାହିଁ ତା ମଧ୍ୟରେ କ'ଣ ଦୁର୍ବଳତା ଥିଲା । ସମସ୍ତେ ଜଣ ଜଣ କରି ତା ପାଖକୁ ଯିବା ଛାଡ଼ିଦେଲେ । କେତେ ଜାଗା ଚାକିରି ପାଇଁ ଚେଷ୍ଟାକଲା । କିନ୍ତୁ କେଉଁଠାରେ ହେଲେ କାର୍ଯ୍ୟ ସିଦ୍ଧ ହେଲା ନାହିଁ । ଯେଉଁଠାରେ ମଧ୍ୟ ଚାକିରି ମିଳିଲା ତାହା

ତୃପ୍ତି ଲଭି ନାହିଁ । ଅଭିମାନ ମାରି ସିନେମା ଘରେ ଟିକେଟ ବିକିବା କାମ କଲା । କିନ୍ତୁ ସେଠାରେ ମଧ୍ୟ ତୃପ୍ତି ପାଇଲା ନାହିଁ । ଘର ଘର ବୁଲି ପାମିଡ଼ ଏବଂ ସମ୍ବର ପାଉଡ଼ର୍ ବିକ୍ରି କରିବା କାମ ମଧ୍ୟ କଲା; କିନ୍ତୁ କେହି ତାକୁ କିଣିଲେ ନାହିଁ । ସେଥିରେ ବିକ୍ରି କରିବାର କୌଶଳ ନାହିଁ । ଶେଷରେ କିଂକର୍ତ୍ତବ୍ୟବିମୂଢ଼ ଓ ବିବଶ ହୋଇ ତାର ସ୍ତ୍ରୀ ଅନ୍ୟ ଘରେ ରାନ୍ଧୁଣିଆ କାମ କରି ପିଲାଙ୍କର ଭରଣପୋଷଣ କରିବାକୁ ଲାଗିଲା । ସମସ୍ତେ ତାର ନିନ୍ଦା କରିବାକୁ ଲାଗିଲେ । ଲୋକେ କହୁଥିଲେ— ଭିକ ମାଗ ଅଥବା ଚୋରିକର କିନ୍ତୁ ଘରର ସ୍ତ୍ରୀକୁ ବାହାରକୁ କାହିଁକି ପଠାଉଛ ? କେତେକ ଗାଁକୁ ଯାଇ ଲୋକଙ୍କଠାରୁ ପଇସା ମାଗିଲା କିନ୍ତୁ ତାର ମାଗିବାର ଢଙ୍ଗ ଦେଖି ଲୋକମାନେ ତାକୁ ସନ୍ଦେହ ଦୃଷ୍ଟିରେ ଦେଖିଲେ । କେଉଁ କେଉଁଠାରୁ ମଧ୍ୟ ଖାଲି ହାତରେ ଫେରିବାକୁ ପଡ଼ିଲା । ତାପରେ ଚୋରି କରିବାକୁ ଚେଷ୍ଟାକଲା । ପ୍ରଥମେ ରେଳ ଷ୍ଟେସନରେ ଆରମ୍ଭକଲା—ତାକୁ ଜଣାନଥିଲା ଚୋରି କିପରି କରିଯାଏ । ଦିନେ ସାହସ କରି ରେଲରେ ଚଢ଼ୁଥିବା ଲୋକଙ୍କ ଭିତରେ ପଶିଯାଇ କାହାର ପକେଟରେ ହାତ ପୂରାଇଲା । ସେ ପକେଟବାଲା ତାକୁ ଧରି ପକାଇଲା ଏବଂ ଲୋକମାନେ ତାକୁ ମାଡ଼ ମାରିବାକୁ ଲାଗିଲେ । ଏଥିମଧ୍ୟରେ ଜଣେ ଜଣାଶୁଣା ଶୋଇଗଲା । ବାଦାମଗଛ ଡାଳ ମଝିରେ ଦୁଇଟି ତାରା ଦେଖାଯାଉଛନ୍ତି । ପାଖ ଘର କୋଠାରୁ କେହି ଗୀତ ଗାଇବାର ଶୁଣାଯାଉଛି । କୃଷ୍ଣପକ୍ଷ ଅନ୍ଧକାର ଭଳି ଅନ୍ଧାର ମାଡ଼ି ମାଡ଼ି ଆସୁଥିଲା ଏବଂ ସେହି ଗୀତ ସଙ୍ଗୀତ ମିଶିକରି ଦୁଃଖ, ତା ଶରୀରର ଶିରାପ୍ରଶିରା ଭେଦି ଯାଉଛି । ସେ ନିରାଶାରେ ବେହୋସ୍ ହୋଇ ଶୋଇପଡ଼ିଲା ।

କିଛି ସମୟ ପରେ ଯେତେବେଳେ ତା ସ୍ତ୍ରୀ ତାକୁ ଉଠାଇବାକୁ ଲାଗିଲା, ତାର ନିଦ ଭାଙ୍ଗିଗଲା, ସେ ଉଠି ବସିଲା ଏବଂ ପଚାରିଲା "କଥା କ'ଣ ?"

"ନଅଟା ବାଜିଛି । ଜଗ୍ଗା ଏବଂ ତାର ଛୋଟ ପୁଅ ସନ୍ଧ୍ୟାବେଳୁ ବାହାରକୁ କେଉଁଆଡ଼େ ଯାଇଛନ୍ତି ଏପର୍ଯ୍ୟନ୍ତ ଘରକୁ ଫେରି ନାହାନ୍ତି ।"

"ଭଲ—ମତେ ଏ କଥା କାହିଁକି କହୁଛ ?"

"ଭଲ କହିବା ଦ୍ୱାରା କୌଣସି କାମ ହୋଇ ପାରିବ ? ଜଣାନାହିଁ ତାଙ୍କର କ'ଣ ହେଲା ? କୌଣସି ବାହାର ଲୋକଙ୍କ ପରି ଭଲ କହୁଛ ?"

ପୁଣି ଗାଳି ଆରମ୍ଭ ହୋଇଗଲା । ଜୀବନସାରା ଗାଳି ହିଁ ଗାଳି । ବାସ୍, କେବେ କ୍ଷଣକ ପାଇଁ ଅଥବା ତାଠାରୁ ଆହୁରି କମ୍ ସମୟ ପାଇଁ ସେ ସ୍ନେହରେ କଥା କହୁଛି । ପୁଣି ସେହି ଗାଳି, ଗୁଲଜ୍ ଓ ଶାସନ କରିବା ଆରମ୍ଭ କରି ଦେଉଛି । ଏଥିରେ ତାର ଦୋଷ ବା କ'ଣ ? ଘରେ ପିଲାମାନେ ଭୋକରେ ରହିବାଦ୍ୱାରା ତାର ହୃଦୟ ଫାଟି ଯାଉଛି । ମା'ର ହୃଦୟ ଦୁଃଖରେ ଦ୍ରବୀଭୂତ ହୋଇଯାଉଛି । ନିକମ୍ମା ସ୍ୱାମୀ ଉପରେ, ତାର ପଥର ହୃଦୟ ଉପରେ ମୁଣ୍ଡ ପିଟି କାନ୍ଦିବାକୁ ଲାଗୁଛି ।

କାନ୍ଦି କାନ୍ଦି ତାର ସ୍ତ୍ରୀ କହିବାକୁ ଲାଗିଲା--

"ସତର ବର୍ଷ ପୂରିଗଲାଣି, ସେ ଆଜିପର୍ଯ୍ୟନ୍ତ କୌଣସି ହସ ଖୁସି ଦେଖିନାହିଁ । ଆଖ ପାଖ ପଡ଼ୋଶୀ ଘରକୁ ଯାଇ, ଆମର ଏଠାରେ ଏହା ନାହିଁ, ତା ନାହିଁ କହି, ସେମାନଙ୍କଠାରୁ ମାଗି, ସବୁ ଜିନଷ ଆଣି ଆମକୁ ଦିଏ । ଗୁଲାବ୍ ଝିଅ । ବାହାଘରର ନାଁ ଧରୁନାହିଁ, ପେଟକୁ ମୁଠାଏ ପୂର୍ଣ୍ଣକରି ଖାଉନାହିଁ । ଛୋଟ ଛୋଟ ସାନଭଉଣୀ ଭାଇଙ୍କୁ ଦେଖି ତା ମନ କଷ୍ଟ ହେଉଛି । ସେ ମୋତେ କହୁଛି, ବାପା ତରଳ ମଣିଷ, ତାଙ୍କୁ କିଛି କହିବୁ ନାହିଁ । ବିଚରା ସେ ମଧ୍ୟ କ'ଣ କରିବେ ? ପିଲାଙ୍କୁ ଜ୍ୱର ହୁଏତ ସେ ନାକେ ସେମାନଙ୍କୁ କବିରାଜଙ୍କ ପାଖକୁ ନେଇଯାଏ । ଘରେ ସର୍ବଦା ଦୁଃଖ ହିଁ ଦୁଃଖ । ସେ ସବୁବେଳେ ଦେଖେ ମତେ ଏବଂ ଶ୍ମଶାନପରି ଏ ଘରକୁ ଦେଖି ସେ ବହୁତ ମନଦୁଃଖ କରେ । ଏଥିପାଇଁ ସେ ଆଡ଼ୁ ସାଡ଼ୁ ବୁଲିବାକୁ ଆସେ । କ'ଣ କରିବି କୁହ । ମୋତେ କେଉଁଠାରେ ହେଲେ ରାନ୍ଧୁଣିଆ କାମ ମଧ୍ୟ ମିଳୁନାହିଁ ।"

ସେ କହି କହି ହୋଇ କାନ୍ଦୁଛି । ତାକୁ ଲାଗୁଛି ଯେ କିଏ ଯେପରି ଧୀରେ ଧୀରେ କୌଶଳରେ ତା ପେଟକୁ ଦାଢ଼ଥିବା ଛୁରିରେ ଚିରୁଛି । ସେ ମରିବା ପାଇଁ ଯେଉଁ ସିଦ୍ଧାନ୍ତ କରିଥିଲା, ତାକୁ ତାର ସ୍ତ୍ରୀ ଆଗରେ କହିବାକୁ ଚାହୁଁଥିଲା । ପୁନର୍ବାର ଭାବିଲା ଯଦି ସେ କହିଦେବ ତେବେ ସବୁ ବିଗିଡ଼ିଯିବ ଏବଂ ମରିବା ସମୟରେ ସେ ଶାନ୍ତିରେ ମରିପାରିବ ନାହିଁ ।

ସେ ଚଟେଇରେ ଶୋଇଛି । ଦୁଇଟିଯାକ ଝିଅ ଘରକୁ ଫେରି ଆସିଲେଣି । ସେ କବାଟ ବନ୍ଦ କରି ଘର ଭିତରକୁ ଚାଲିଗଲାଣି । ସେ ଅନ୍ଧାରରେ ବସି ଚିନ୍ତା କରୁଛି, ସତକଥା ଜସ୍ନା'ର ବାହାଘର ହୋଇ ଯିବ ତ ସେ ଆରାମରେ ରହିବ । କିନ୍ତୁ ତାକୁ ବାହା ହେବ କିଏ ? ବାହାଘର କିପରି ହେବ ? ଜସ୍ନା ବେଶି ସୁନ୍ଦରୀ ନହେଲେ ମଧ୍ୟ ଅସୁନ୍ଦରୀ ତ ନୁହେଁ : ଏତେ ଦୁଃଖ କଷ୍ଟରେ ମଧ୍ୟ ତାର ଯୌବନ ବଡ଼ ଆଶ୍ଚର୍ଯ୍ୟ ଭାବେ ସମ୍ପୂର୍ଣ୍ଣ ଭାବରେ ଓଲେଇ ପଡ଼ୁଛି । ଲମ୍ବାଯୋଗୁ ଦେଖିବାରେ ଆକର୍ଷଣ ଅଛି । କିନ୍ତୁ ଗରିବ ଝିଅକୁ କିଏ ବାହା ହେବ ? ଦ୍ୱିତୀୟପକ୍ଷ କି ତୃତୀୟପକ୍ଷ ହେଲେ କିଛି ଆପତ୍ତି ନାହିଁ । ···ମୁଠାଏ ଚାଉଳ କମାଇବାପାଇଁ ତ ଯୋଗ୍ୟ ନୁହେଁ—ମୁଁ ନିଜ ଝିଅପାଇଁ ବରପାତ୍ର କେଉଁଠାରୁ ଆଣିବି । ମୋର କୌଣସି ମାନ୍ ମର୍ଯ୍ୟାଦା ଅଥବା ଆଦର-ସମ୍ମାନ୍ ଥାଆନ୍ତା କି ତେବେ ଅବା କୌଣସି ବଡ଼ଲୋକ ଏଠାରେ ପାଦ ରଖିବାକୁ ପ୍ରସ୍ତୁତ ହୁଅନ୍ତା ।

ସେ ଜାଣେ ଯେ ମୃତ୍ୟୁ ତା କଡ଼ପଟେ ଯାଉଛି । ବାସ ସେ ଶୋଇଗଲା ।

—2—

ଦୁଇ ଦିନ ହେବ ଭେଙ୍କଟେଶ୍ୱରଲୁ ଘରକୁ ଯିବା ବନ୍ଦ କରି ଦେଇଛି । ଏହା ମଧ୍ୟରେ ତାର ସାନପୁଅ ବେମାର ପଡ଼ିଗଲା । ଭୀଷଣ ରୋଗରେ ପଡ଼ିଗଲା । ବାନ୍ତି ଏବଂ

ଝାଡ଼ା ହେବାକୁ ଲାଗିଲା । ବୁଲାବୁଲି କରି ଯେତେବେଳେ ସେ ଘରକୁ ଗଲା ତାକୁ ଏକଥା ଜଣା ନଥିଲା । ପୁଅର ହାତଗୋଡ଼ ଅଣ୍ଡା ହୋଇଗଲା ତ କଥା, ତାକୁ ଡାକ୍ତରଖାନାକୁ ନେଇ ଯାଇଥିଲା । ସ୍ତ୍ରୀ ଘରେ ବାରଣ୍ଡାରେ ପଡ଼ିଥିଲା । ସେ ବୋଧହୁଏ କାନ୍ଦୁଛି । କିନ୍ତୁ ଭେଙ୍କଟେଶ୍ୱରଲୁ ସେଆଡ଼କୁ ଧ୍ୟାନ ଦେଲାନାହିଁ । ଘରେ ପହଞ୍ଚିବାମାତ୍ରେ ସେ ତାର ସ୍ତ୍ରୀକୁ ପଚାରିଲା, "ଭୋକ ହେଉଛି, କେଉଁଠାରୁ ଚାଉଳ ମିଳିଛି ତ କିଛି ଖାଇବାକୁ ଦେ ।"

କିଛି ଦିନ ହେବ ସେ ଖାଇବାକୁ ମାଗି ନଥିଲା । କେହି ଖାଇବାକୁ ଡାକି ନାଏ ତ ଯାଇ ଖାଇ ନେଉଥିଲା । ନଚେତ ଏହା ଭାବି ସେ ପଡ଼ିରହେ ଯେ ଘରେ ଆଜି କାହାକୁ ଖାଇବାକୁ ମିଳିବ ନାହିଁ । ଆଜି ଜଣାନାହିଁ କ'ଣ ହେଲା ! ଜୀବନ ମରଣ ମଧ୍ୟରେ ପଡ଼ି ଛଟପଟ ହେଉଥିବା ପୁଅର ଚିନ୍ତାରେ ବଧୁରି ନିଜ ସ୍ତ୍ରୀ ପାଖକୁ ଯାଇ ସେ କହିଲା, "ଖାଇବାକୁ ଦେବୁ ?"

ସେ ଏକଦମ୍ ବିରକ୍ତ ହୋଇଗଲା । ମୁକୁଳା ବାଳ ଏବଂ ଜଳୁଥିବା ଆଖି ଏହି ବିକଟାଳ ରୂପରେ ସେ ଖିଙ୍କାରି ଉଠିଲା । "ତୁ ଜଙ୍ଗଲ ଜୋଉଁଠିକାର ।" କହୁ କହୁ ତା ନିଜ ପାଖରେ ଥିବା ଲୋଟାକୁ ଜୋରରେ ତା ଉପରକୁ ଫୋପାଡ଼ିଲା । କିନ୍ତୁ ଲକ୍ଷ୍ୟଭ୍ରଷ୍ଟ ହୋଇ ସେହି ଲୋଟା ପାଖରେ ଥିବା ଫାଟକରେ ବାଜିଲା ଏବଂ ବଡ଼ ଜୋରରେ ଶବ୍ଦ ହେଲା, ସେ ବ୍ୟସ୍ତ ହୋଇପଡ଼ିଲା । ସେ କିଛି ବୁଝିପାରିଲା ନାହିଁ । ସ୍ତ୍ରୀ ମାଟି ଉପରେ ଗଡ଼ି ଗଡ଼ି "ପୁଅରେ" କହି କାନ୍ଦୁଛି । କ'ଣ ମରିଯାଇଛି ? ସେ ଡରିଗଲା । ତାକୁ ଲାଗିଲା ଯେ ଘରର ସମସ୍ତ ଲୋକେ ତାକୁ ଦେଖାଇ କହୁଛନ୍ତି "ତୁମେ ହତ୍ୟାକାରୀ ଅଟ" ଏବଂ ପୁଲିସ୍‌ବାଲା ଆସି ଯେପରି ତାକୁ ଟାଣି ଟାଣି ନେଇ ଯାଉଛନ୍ତି । ସେ ଶୀଘ୍ର ଶୀଘ୍ର ଘରୁ ବାହାରି ଚାଲିଗଲା ।

ସେ ସମସ୍ତଙ୍କ ପାଖରୁ ବହୁ ଦୂରକୁ ଚାଲିଯିବାକୁ ଚାହିଁଲା । ରାତ ସାରା ସେ ରାସ୍ତାରେ ବୁଲୁଥିବା ଅବସ୍ଥାରେ କେବେକେବେ ଏଠାରେ ସେଠାରେ ବସି ସମୟ କଟାଉଥିଲା । ସେ ମନେ ମନେ ଭାବିଲା; କୁଆଡ଼େ ଚାଲିଯିବ ? ହଠାତ୍ ବିଜୁଳି ପରି ତା ମୁଣ୍ଡରେ ବୁଦ୍ଧି ଖେଳିଗଲା — ନିଜଠାରେ, ନିଜ ଜୀବନଠାରେ ଆଉ କିଛି ବାଟ ନାହିଁ । ସେ ଧର୍ମଶାଳାର ଚଉତରା ଉପରେ ଶୋଇଗଲା । କିପରି ମରିବ, କେବେ ମରିବ, ସେ ସବୁ କଥା ଠିକ୍ କରିନେଲା । ବର୍ତ୍ତମାନ ସେ ଆଉ ବଞ୍ଚିପାରିବ ନାହିଁ । ତାର ପରିବାର ମଧ୍ୟ ବଞ୍ଚି ପାରିବ ନାହିଁ । ବଞ୍ଚିବାର କୌଣସି ରାସ୍ତା ମଧ୍ୟ ଦିଶୁନାହିଁ । ଏହା ପୂର୍ବରୁ ମଧ୍ୟ ଜଣାଯାଇଛି ଯେ ସେ କିଛି କରି ପାରିବ ନାହିଁ । ଅକର୍ମାଙ୍କ ପରି ବଞ୍ଚିବା ଦ୍ୱାରା କାହାକୁ କିଛି ଫାଇଦା ନାହିଁ । ଆସନ୍ତା କାଲି ରେଳଗାଡ଼ି ତଳେ ମୁଣ୍ଡ ରଖିବା ହିଁ ଏକମାତ୍ର ଉପାୟ । ମରିବାର ଉପାୟ ଚିନ୍ତା କରି କରି ସେ ଶୋଇ ଗଲା ।

ଯେତେବେଳେ ଖରା ପଡ଼ିଲା ଭେଙ୍କଟେଶ୍ୱରଲୁ'ର ନିଦ ଭାଙ୍ଗିଗଲା । ଭିକାରୀମାନେ ଚାଲି ଗଲେଣି । ତାଙ୍କର ମାଟିପାତ୍ରଗୁଡ଼ିକ ଖରାରେ ଚକଚକ ହେଉଛି । ସେ ଥରେ

ନିଜ ସ୍ତ୍ରୀ ଏବଂ ପିଲାମାନଙ୍କୁ ଦେଖିବାକୁ ଚାହୁଁଥିଲା । ନିଜ ପଡ଼ାର ଛକ ପାଖରେ ସେ ପହଞ୍ଚିଗଲା । ଆଗକୁ ବଢ଼ିବାକୁ ତାର ସାହସ ହେଲାନାହିଁ । ହୁଏତ ତାର ସ୍ତ୍ରୀ ତାକୁ ଭିତରକୁ ଯିବାକୁ ନଦିଏ ? ପୁଣି ଏପରି ମମତା କାହିଁକି ? ଆଗରେ ପଡ଼ୋଶୀର ପିଲା ଯାଉଥିଲା । ତାକୁ ଅଟକାଇ ପଚାରିଲା "କ'ଣ ପୁଅ, ଆମର ଗ୍ରେଟପୁଅ ବେମାର ଅଛି । କ'ଣ ତୁ ଜାଣିଛୁ କି ସେ ବର୍ତ୍ତମାନ ବଞ୍ଚିଛି କି ମରିଛି ?"

"ବଞ୍ଚିଗଲା । କାଲି ସନ୍ଧ୍ୟାବେଳକୁ ଡାକ୍ତରଖାନାରୁ ଫେରି ଆସିଲା ।" କହି ସେ ଚାଲିଗଲା ।

'ଗୁଡ଼ ।' କହି ସେ ଫେରିଗଲା, ପୁଣି ଧର୍ମଶାଳାର ଚଉତରା ପାଖରେ ପହଞ୍ଚିଗଲା । ତାକୁ ତାର ପିଲାଦିନ କଥା ମନେ ପଡ଼ିଗଲା । ତାକୁ ଟିକେ ଆଘାତ ଲାଗୁଥିଲା ତ, ତାର ମା' ବହୁତ ସ୍ନେହ ଓ ଧ୍ୟାନ ସହିତ ଏବଂ ସାବଧାନତା ସହିତ ତାର ଯତ୍ନ ନେଉଥିଲା । ବର୍ତ୍ତମାନ କିଏ ଦେଖୁଛି ? 'ପୁଅ ! ତୋର ଅବସ୍ଥା ଏପରି କାହିଁକି ହୋଇଛି ? କ'ଣ ହୋଇଛି ପୁଅ ? ନେ ଟିକେ ଦୁଧ ପିଇ ଦେ !' ବର୍ତ୍ତମାନ ଏପରି କଥାବାର୍ତ୍ତା କରିବାବାଲା କେହି ନାହିଁ । ସେ କାନ୍ଦି ପକାଇଲା । ମରିବା ପାଇଁ ପ୍ରସ୍ତୁତ ହେଉ ହେଉ ଭେଙ୍କଟେଶ୍ୱର୍ଲୁ ର ନିଜ ଜୀବନ ଉପରେ ଥରେ ଦୟା ଆସିଲା । ବହୁତ ସମୟ ପର୍ଯ୍ୟନ୍ତ ସେ କାନ୍ଦିଲା । ମଧ୍ୟାହ୍ନବେଳକୁ ଧର୍ମଶାଳାର ମାଲିକ ବାହାରକୁ ଯିବା ସମୟରେ ତାକୁ ଦୁଇଟି କଦଳୀ ଦେଇ ଯାଇଥିଲେ । ଦୁଇଟି କଦଳୀ ଖାଇ ସେ ପାଣି ପିଇନେଲା ଏବଂ ସେ କାନ୍ଥ ପାଖରେ ବସି ରହିଲା ।

ସନ୍ଧ୍ୟା ହେଉ ହେଉ ତାକୁ ଡର ଲାଗିଲା । ବର୍ତ୍ତମାନ ତା ମରିବା ଅନିବାର୍ଯ୍ୟ ଅଟେ । ସେ ସିଦ୍ଧାନ୍ତରେ କୌଣସି ପରିବର୍ତ୍ତନ ହେବ ନାହିଁ । କିନ୍ତୁ ତା ଭିତରେ କୌଣସି ଯନ୍ତ୍ରଣା, କିଛି ମମତା ତାକୁ ବ୍ୟସ୍ତ କରୁଛି । ସେ ତାର ଦାନ୍ତ ଏବଂ ଆଖିକୁ ବନ୍ଦକରି ବସିଗଲା । ପିଲା ଦିନ, ପରିବାର, ପିଲାଏ, ସ୍କୁଲ୍, ମେମ୍ ସାହେବ······ସବୁ କଥା ତା ମନରେ ଗୋଲ୍ ପରି ଘୂରିବାକୁ ଲାଗିଲା । ରାସ୍ତାରେ କେତେକ ଲୋକ କୌଣସି ମୁରଦାର୍‌କୁ ନେଇ ଯାଉଛନ୍ତି । ସେ ଦୃଶ୍ୟକୁ ସେ ଦେଖି ପାରିଲା ନାହିଁ । ସେ ମୁହଁକୁ ଫେରେଇ ନେଲା । ତାକୁ ପୁଣି ଶୋକ କଲା ।

ଶୋକ ଏବଂ ଦୁର୍ବଳତା ଯୋଗୁ ସାରା ଦେହଟା ଥରିବାକୁ ଲାଗିଛି । ପରମୁହୂର୍ତ୍ତରେ ସେ ଦୃଢ଼ତାର ସହିତ ଠିକ୍ କରିନେଲା ଯେ ମରିଯିବା ଦ୍ୱାରା ତାର ମଙ୍ଗଳ ।

ଅନ୍ଧାର ଘୋଟି ଯାଉ ଯାଉ ସେ ଉଠି ଠିଆହେଲା । ବର୍ତ୍ତମାନ ରେଲଗାଡ଼ି ଆସିବାରେ ଏବଂ ତା ମରିବାରେ ଗୋଟିଏ ଘଣ୍ଟା ମାତ୍ର ବାକି ଅଛି । ସେ ଶୀଘ୍ର ଶୀଘ୍ର ଚାଲିବାକୁ ଲାଗିଲା । ପୋଲ୍ ପାରହୋଇ ସାରିଛି, କିଆରି ମଝି ଦେଇ ସେ ଚାଲିଲା, ସେଠାରେ ରେଲ ଲାଇନ୍ ପାଖରେ ଲୋକ ଯିବାଆସିବା ମୋଟେ ନଥାଏ । ସେ ଜାଗାଟା ଷ୍ଟେସନ୍ ଠାରୁ ପ୍ରାୟ ମାଇଲିଏ ଦୂରରେ ହେବ । ଦୁଇ କଡ଼ରେ ଗହଳିଆ ଗଛ ଗୁଡ଼ିକ ଅଛି । ରେଲଗାଡ଼ି ସେଠାରେ ମୋଡ଼ ଘେରେ, ସେଠାରେ ମୁଣ୍ଡ ରଖାଯିବ

ତ ରେଲଗାଡ଼ି ଆସିବାର ସୂଚନା ମଧ୍ୟ ମିଳିବ ନାହିଁ । ହଠାତ୍ ରେଲଗାଡ଼ି ମୋଡ଼ ତା ଉପର ଦେଇ ଚାଲିଯିବ ଏବଂ ତାକୁ ଜଣା ପଡ଼ିବ ନାହିଁ । ଭେଙ୍କଟେଶ୍ୱଲୁ ହୃଦୟକୁ କଠିନ କରି କ୍ଷେତ ମଝିରେ ଯାଉଛି ।

ଗୋଧୂଳିର ନାଲି ରଙ୍ଗରୁ, ଧୀରେ ଧୀରେ ଅନ୍ଧକାରରେ ପରିଣତ ହେଉଥିବା ବାଦଲ୍, ଝଙ୍କାଳିଆ ବରୁଡ଼ି ଗଛ, ସୁଲୁସୁଲିଆ ପବନ, ପକ୍ଷୀମାନଙ୍କର ଧ୍ୱନି, ସେ ସମସ୍ତେ ଯେମିତି ତାକୁ 'ମରଯା, ମରଯା' କହି ତାକୁ ଚେତେଇ ଦେଉଛନ୍ତି । ସାରି ପ୍ରକୃତି ତାର ମରଣ ଚାହୁଁଛି ଏବଂ ତାକୁ ମରିବା ପାଇଁ ବିବଶ କରୁଛନ୍ତି, ଏଭଳି ସେ ଅନୁଭବ କଲା ।

'ଆରେ ଭେଙ୍କଟେଶ୍ୱଲୁ । ତମକୁ ଡାକୁଛି—ଟିକେ ରୁହନା ।' ପଛରୁ କିଏ ଡାକିଲା ।

ପଛକୁ ଚାହିଁ ଦେଖିଲା ଯେ ସୂର୍ଯ୍ୟନାରାୟଣ ସାଇକେଲ୍‌ରେ ଯାଉଛି । ଭେଙ୍କଟେଶ୍ୱଲୁ ଅଟକିଗଲା । ସେ ଜାଣେ ଯେ ସ୍କୁଲ୍ ଛୁଟି ହୋଇଗଲେ ସୂର୍ଯ୍ୟନାରାୟଣ, ପ୍ରତିଦିନ ସେହି ପାଖବାଟ, କିଆରି ମଝି ଦେଇ ତାର ଶଶୁର ଘରକୁ ଯାଏ ।

"ଏଆଡ଼େ କେଉଁଠାକୁ ଯାଉଛ ଭେଙ୍କଟେଶ୍ୱଲୁ ।" ସୂର୍ଯ୍ୟ ନାରାୟଣ ପଚାରିଲା । ଭେଙ୍କଟେଶ୍ୱଲୁ କିଛି ଉତ୍ତର ଦେଲା ନାହିଁ । ସୂର୍ଯ୍ୟନାରାୟଣ ସେହି ପ୍ରାଇମେରି ସ୍କୁଲ୍‌ର ଶିକ୍ଷକ । ଯେଉଁଠାରେ ଭେଙ୍କଟେଶ୍ୱଲୁ ପ୍ରଥମେ କାମ କରୁଥିଲା ।

"ତମର କ'ଣ ଟିକେ ବୁଦ୍ଧି ଅଛି ? ତୁମେ ମଣିଷ କି ?" ସୂର୍ଯ୍ୟନାରାୟଣ ବିରକ୍ତ ହୋଇ କହିଲା ।

ହତାଶ ହୋଇ ଭେଙ୍କଟେଶ୍ୱଲୁ ଅନାଇ ରହିଲା । ତାକୁ ସୂର୍ଯ୍ୟନାରାୟଣ ପ୍ରତି କ୍ରୋଧ ଆସିଲା ନାହିଁ । ବାସ୍ତବରେ ସେ କିଛି ବୁଝି ପାରୁନାହିଁ ।

"ନିଜ ଜାତି ଏବଂ ନିଜ ପ୍ରତିଷ୍ଠାର ତୁମେ ଟିକେହେଲେ ଖିଆଲ୍ କରୁନାହଁ ? ତୁମଯୋଗୁ ଆମର 'ଇଜ୍ଜତ୍' ମଧ୍ୟ ଯାଉଛି । ମୁଣ୍ଡଟେକି ବାହାରେ ଚାଲିବାର ଅଧିକାର ମଧ୍ୟ ଆଉ ନାହିଁ । ଛି—ଲଜ୍ଜା ଆସିବା ଦରକାର୍ ! ନିଜ ଝିଅକୁ ରାସ୍ତାରେ ଛାଡ଼ି ଦେଉଛ ? କୁକୁର ପରି ସେ ଘର ଘର ବୁଲୁଛି । ଆଜି ସୂର୍ଯ୍ୟା ଲଜରୁ ସେ ବାହାରିବା ସମୟରେ ତାକୁ ଦେଖି ମୁଁ ଅବାକ୍ ହୋଇଗଲି । ସେ ଯେଉଁ ଦଲାଲ୍ ବେଁକେୟା ? ତାକୁ ପଚାରିବାରୁ ସେ କହିଲା, ପନ୍ଦର ଟଙ୍କାରେ ଏଜେଣ୍ଟ ସହିତ ତାର ଠିକ୍ ହୋଇ ଯାଇଛି । ମୋର ମୁହଁରେ କଳା ବୋଳି ହୋଇଗଲା । ଯଦି ମୋ ଝିଅ ହୋଇ ଥାଆନ୍ତା ତେବେ ତାକୁ ସେ ) ରାସ୍ତା ଉପରେ ଟିକି ଟିକି କରି ଦେଇ ଥାଆନ୍ତି । ଏ ବୟସରେ ମଧ୍ୟ ତୁ ନିଜ ପିଲାଙ୍କୁ ନିଜ ଅଧୀନରେ ରଖି ପାରୁ ନାହୁଁତ କ'ଣ ଫାଇଦା ଅଛି ? ଏହାଠାରୁ ମରିବା ଭଲ । ନିଜକୁ ବଞ୍ଚିବାର ଯୋଗ୍ୟ ଭାବି ଏପର୍ଯ୍ୟନ୍ତ ବଞ୍ଚିଛୁ । ଯଦି ମୁଁ ତୋ ସ୍ଥାନରେ ଥାଆନ୍ତି ତେବେ ରେଳଗାଡ଼ି ତଳେ ମୁଣ୍ଡ ରଖି ମରି ଯାଆନ୍ତି । ଛିଃ, ନିର୍ଲଜ, ଏପରି ବଞ୍ଚି ରହିବାକୁ କ'ଣ ବଞ୍ଚିବା କୁହାଯାଏ ?" ଏପରି କହି

ସୂର୍ଯ୍ୟନାରାୟଣ ଛେପ ପକାଇ ସାଇକେଲ୍‌ରେ ଚଢ଼ି ଚାଲିଗଲା ।

ଭେଙ୍କଟେଶ୍ୱର୍ଲୁ ସ୍ତମ୍ଭୀଭୂତ ହୋଇ କୋଡ଼ିଏ ପଚିଶ ମିନିଟ ପର୍ଯ୍ୟନ୍ତ ସୂର୍ଯ୍ୟନାରାୟଣ ଆଡ଼କୁ ପାଗଳ ପରି ଚାହିଁରହିଲା । ପୁନର୍ବାର ଧୀରେ ଧୀରେ ତା ଚେହେରାରେ ଆନନ୍ଦର କିରଣ ଖେଳିଗଲା । ସେହି ନିର୍ଜନ ସ୍ଥାନରେ ବାଲି ମଝିରେ ଠିଆହୋଇ ସେ ଏକବାରୁ ଜୋରରେ ହସି ଉଠିଲା । ସେ ଭାବିଲା ବର୍ତ୍ତମାନ ମୋର ମରିବାରେ କିଛି ଆପତ୍ତି ନାହିଁ । ସମୁଦ୍ର ମଝିରେ ବୁଡ଼ି ଯାଉଥିବାବେଳେ କୌଣସି ନୌକା ମିଳିଗଲା ପରି ତାକୁ ଲାଗୁଥିଲା । ପାଗଳ ଭଳି ସେ ମନେ ମନେ ଖୁସି ହେଉଥିଲା । ସେ କାହାକୁ ନିଜ ହୃଦୟରେ ଲଗାଇ ନିଜ ଭାଗ୍ୟର କାହାଣୀ ଶୁଣାଇବାକୁ ଚାହୁଁଥିଲା । ଏତେଦିନ ପରେ ତାର ଜୀବନ ଗୋଟେ ରାସ୍ତା ଖୋଜି ପାଇଛି, ବଞ୍ଚିବାର ସାହାରା ପାଇଛି । ବର୍ତ୍ତମାନ ମରିବାର ଆବଶ୍ୟକତା ନାହିଁ ।

ଭେଙ୍କଟେଶ୍ୱର୍ଲୁ ପଛକୁ ଫେରି ଖୁସିରେ ଚାଲିଲା । ବର୍ତ୍ତମାନ ଦେହରେ ଦୁର୍ବଳତା ନାହିଁ । ଅନ୍ଧାରରେ କିଆରି ମଝିରେ ଚାଲି ଏକାଟିଆ ଘରେ ପହଞ୍ଚିଲା । ରାସ୍ତାରେ କେହି ନାହାନ୍ତି । ଘର ଭିତରେ ପହଞ୍ଚି ଦେଖିଲା ସ୍ତ୍ରୀ ଏବଂ ପିଲାମାନେ ବର୍ତ୍ତମାନ ଶୋଇ ପଡ଼ିଛନ୍ତି । 'ଆରେ, ସେମାନେ ସମସ୍ତେ କ'ଣ ମୋତେ ଖୋଜୁ ନାହାନ୍ତି ମଧ୍ୟ ? କ'ଣ ମୋତେ ଏବଂ ମୋର ଅସ୍ତିତ୍ୱକୁ ଭୁଲିଗଲେ ?' ତାକୁ ରାଗ ଲାଗିଲା । ପଛପଟ ଚଉତରା ଉପରେ ଯାଇ ବସିଲା । ବାଦାମଗଛ ଡାଳରେ ଅନ୍ଧାର ଘୋଟି ଯାଇଛି । ଡାଳର ଫାଙ୍କରେ ଦୁଇଟି ତାରା ଚକ୍ ଚକ୍ ହେଉଛନ୍ତି ।

"ବାପା, ଚାଲ, ଖାଇବା ।" ଶବ୍ଦ ଶୁଣି ଭେଙ୍କଟେଶ୍ୱର୍ଲୁ ମୁଣ୍ଡ ଉଠାଇ ଦେଖିଲା, ତାର ବାରବର୍ଷର ଜ୍ୟେଷ୍ଠ ଝିଅ । ସେ ଉଠି ତା ପଛେ ପଛେ ରୋଷେଇ ଘରକୁ ଗଲା । ଥାଳରେ ଭାତ ବଢ଼ା ହୋଇଛି—ତରକାରି, ଚଟଣି ଏବଂ ରସମ୍ । ବା ! କେତେ ସୁଆଦିଆ ଖାଦ୍ୟ । ପେଟଭରି ଖାଇ ଭେଙ୍କଟେଶ୍ୱର୍ଲୁ ଆରାମରେ ହାକୁଟି ମାରିଲା ।

ପଲଙ୍କ ଉପରେ ଶୋଇ ଭେଙ୍କଟେଶ୍ୱର୍ଲୁର ନିଦ ଅଧରାତିକୁ ହଠାତ୍ ଭାଙ୍ଗିଗଲା । ସେ ଏକ ଅଦ୍ଭୁତ ସୁଖ ଓ ସନ୍ତୋଷ ଅନୁଭବକଲା । ସେ ସମସ୍ତଙ୍କୁ ଉଠାଇ ସେମାନଙ୍କ ସହିତ ଖୁସିରେ କଥାବାର୍ତ୍ତା କରିବାକୁ ଚାହିଁଲା । ପିଲାଦିନେ ଶିଖିଥିବା ଜୟଦେବଙ୍କ ଗୀତ ଗାଇବାକୁ ଚାହୁଁଥିଲା । ହଠାତ୍ ତାକୁ ଲାଗିଲା ସେ ବୋଧହୁଏ କିଛି ଭୁଲ କରିଛି, ଏତେଗୁଡ଼ାଏ ସୁଖସନ୍ତୋଷର ସୂତ୍ରଧାରିଣୀ ବଡ଼ଝିଅକୁ ସେ ଏପର୍ଯ୍ୟନ୍ତ ଅଭିନନ୍ଦନ ଜଣାଇ ନାହିଁ । ତା ପାଖକୁ ଯାଇ କହିବା ଉଚିତ୍ ଥିଲା, 'ଝିଅ, ମୁଁ ତୋ ଉପରେ ବହୁତ ଖୁସି ଅଛି ।'

ସେ ଏପରି କୃତଘ୍ନ କିପରି ହୋଇପାରେ ? ସେ ଘରେ ଯାଇ ଦେଖିଲା—ଜୟା ସେଠାରେ ନାହିଁ । ପଛପଟ କବାଟ ଖୋଲି ଦେଖିଲା—ପଛପଟ ବାଦାମଗଛ ତଳେ ଜୟା ବସିଛି । ଚତୁର୍ଥୀ ଚନ୍ଦ୍ରର ଧୀର ଜ୍ୟୋତ୍ସ୍ନାରେ ତାର ଚେହେରା ଶୁଖିଲା ଦେଖାଯାଉଛି । ସେ ଆଣ୍ଠୁ ମଝିରେ ମୁହଁ ଢାଙ୍କି ବସିଛି । ଭେଙ୍କଟେଶ୍ୱର୍ଲୁ

ଦୁଇପାଦ ତାଆଡ଼କୁ ଆଗେଇଗଲା । କିନ୍ତୁ ସେ କାନ୍ଦୁଥିବାର ଶବ୍ଦ ଶୁଣିପାରିଲା । ସେ କିଛି ବୁଝିପାରିଲା ନାହିଁ । କିଛି ସମୟ ତା ଆଡ଼କୁ ଚାହିଁ ପୁଣି ପାଦ ଚିପି ଚିପି ପଛକୁ ଫେରିଆସିଲା ଏବଂ ଘର ମଝିରେ ତଳେ ଶୋଇଗଲା--- । ''ବର୍ତ୍ତମାନ ନୁହେଁ, ଆଉ କେଉଁବେଳେ ନିଜର କୃତଜ୍ଞତା ପ୍ରକାଶ କରିବ ।''

ଏଇଆ ସ୍ଥିର କରି ସେ ଆଖି ବୁଜିଦେଲା ।

# ବେହେଲ

ରାଜ୍ୟମ୍ ଏକେବାରେ ବେହୋଷ୍ ହୋଇ ପଡ଼ିଛି । ଏ ଦୁନିଆରେ କଣ ହେଉଛି ନ ହେଉଛି କିଛି ଜାଣିପାରୁନାହିଁ । ଭେଙ୍କଟପପ୍ପାର ଜୀବନ ହାହାକାରମୟ ଲାଗୁଛି । ସେ ତା ସ୍ତ୍ରୀ ପାଖକୁ ଯାଇ ଧ୍ୟାନପୂର୍ବକ ଦେଖିଲା ।

ରାଜ୍ୟମ୍‌ର ଓଠ ଥରୁଛି । ସେ କିଛି କହୁଛି । କଥା ତ କିଛି ଶୁଭୁ ନାହିଁ ତେବେ ମନେ ମନେ ସେ କିଛି କହୁଛି ।

"ରାଜ୍ୟମ୍ !" ବିବ୍ରତ ହୋଇ ସେ ଡାକିଲା । କିନ୍ତୁ ସେ କିଛି କହିଲା ନାହିଁ । ସେ ଆଉ ଏ ଦୁନିଆରେ ନାହିଁ । ମନଭୁଲାଣିଆ ଡୋଡ଼ି ରାଗିଣୀକୁ ନିଜର ସାଥୀ କରି ସେ ଆକାଶ ମାର୍ଗରେ ବିଚରଣ କରୁଛି ।

ଅଗଣାରେ ପିଲମାନେ ପାଟିଗୁଣ୍ଡ କରୁଛନ୍ତି ।

"ଆରେ ଅପଦାର୍ଥଗୁଡ଼ାକ ! କାହିଁକି ଏତେ ଗୋଳମାଳ କରୁଛ ?" ଭେଙ୍କଟପପ୍ପା ପିଲମାନଙ୍କୁ ଗାଳି ଦେଇ କହିଲା । ସେମାନେ ଯଦି ତା ହାତ ପାଖରେ ଥାନ୍ତେ ତ ତାଙ୍କୁ ବିପୁଳା ମଧ୍ୟ ବସେଇ ଦେଇଥାନ୍ତା ସେ ।

"ବାପଲେ, ମୁଁ କାବା ହୋଇଗଲିଣି । ପିଲମାନଙ୍କ ଉପରେ ଏମିତି ଚଡ଼ଚଡ଼ି ମାରିଲା ପରି କାହିଁକି ଗର୍ଜନ କରୁଛ ?" ରାଜ୍ୟମ୍ ହୋସ୍‌ରେ ଆସି କହିଲା ଏବଂ ଭ୍ରୂକୁଟି କରି ନିଜ ସ୍ୱାମୀ ଆଡ଼କୁ ଅନାଇଲା ।

"ଆଗ କହିଲ, ତୁମର ଦେହ କିପରି ଅଛି ?" ବଡ଼ ବ୍ୟାକୁଳ ହୋଇ ସେ ପଚାରିଲା ।

"ପିଲମାନଙ୍କୁ କାହିଁକି ଗାଳିଦେଲ ତମେ ?"

"ଗାଳି ଦେଲି ତ କଣ ହେଲା ? ଆଗ ତମ ଦେହ କଥା କୁହ ।"

"ଦେହ ତ ଏକଦମ୍ ଭଲ ଅଛି । ପ୍ରକୃତରେ କେତେବେଳେ ଖରାପ ହୋଇଥିଲା କି ?"

"କେତେଥର ଡାକିଲି, ତମେ ଜବାବ୍ ଦେଲ ନାହିଁ ।"

"ତମେ ଡାକୁଥିଲ ?"

"ଡାକି ନାହିଁ ଆଉ କଣ ?"

"ଆଚ୍ଛା" କହି ରାଜ୍ୟମ୍ ହସି ପକାଇଲା । ତାର ହସ ଦେଖି ଡର ମାଡ଼ୁଛି । ସେପରି ଆଖି ପରି ବାହାରିପଡ଼ିଥିବା ଡ଼ମା ଡ଼ମା ଆଖି ଏବଂ ଆଗକୁ ବାହାରିପଡ଼ିଥିବା ଦାନ୍ତଗୁଡ଼ିକ ତାର ଚେହେରାକୁ ଆହୁରି ବିକଟାଳ କରି ଦେଉଛି ।

"ତମର ହୋସ୍ ନଥିଲା ।" ରାଜ୍ୟମ୍ ପୁଣି ହସି ଦେଲା ।

"ବାପ୍, ଏତିକି !" କହି ଭେଙ୍କଟପ୍‌ପୟ୍ୟା ସ୍ୱସ୍ତିର ନିଶ୍ୱାସ ମାରିଲା । ରାଜ୍ୟମ୍ ବହୁତ ଦିନ 'ଟାଇଫଏଡ୍' ଜ୍ୱର ଭୋଗି ଏବେ ଚଲାବୁଲା କରିବା ଯୋଗ୍ୟ ହୋଇଥିଲା । ଠିକ୍‌ଭାବେ ଖାଇବା ପିଇବା କରିବାର ସପ୍ତାହେ ବି ହୋଇନାହିଁ କି ନାହିଁ । ସେଥିପାଇଁ ଭେଙ୍କଟପ୍‌ପୟ୍ୟାର ମନ ବର୍ତ୍ତମାନ ପର୍ଯ୍ୟନ୍ତ ଶଙ୍କାକୁଳ । ସେହି ଦୁରୁହ ଟାଇଫଏଡ୍ ଜ୍ୱର ତିନି ସପ୍ତାହ ପରେ ଛାଡ଼ିଯାଇଥିଲା କିନ୍ତୁ ପୁଣି ତା ପରଦିନ ଓଲଟିଲା । ଆଉରି ତିନି ସପ୍ତାହ ପର୍ଯ୍ୟନ୍ତ ତାର ପ୍ରକୋପ ଦେଖାଇ ବ୍ୟତିବ୍ୟସ୍ତ କରି ପକାଇଲା । ଡାକ୍ତରଖାନାରୁ ଘରକୁ ନେଇଆସି ଖାଇବା ପିଇବା ଆରମ୍ଭ କଲା ପରେ ମଧ୍ୟ ଭେଙ୍କଟପ୍‌ପୟ୍ୟା ମନରୁ ସେ ଡର ଯାଉନାହିଁ !

"ବର୍ତ୍ତମାନ ତ ମୋ ଦେହ ପୁରାପୁରି ଭଲ ହୋଇଗଲାଣି । ଯାହା ଖାଉଛି ତାହା ହଜମ ହୋଇଯାଉଛି । ରାତିରେ ମଧ୍ୟ ଭଲ ନିଦ ହେଉଛି । ଏତେଦିନଯାଏ ବେମାର ପଡ଼ି ଗୋଟିଏ ଦିନରେ ଆଉ କେମିତି ଠିକ୍ ହୋଇଯାଆନ୍ତି ?" ରାଜ୍ୟମ୍ କହିଲା ।

ରାଜ୍ୟମ୍‌କୁ ଦେଖିଲେ ଆଶ୍ଚର୍ଯ୍ୟ ଲାଗୁଛି ତାର ପ୍ରାଣ କିପରି ରହିଛି । ମାଂସପେଶୀଗୁଡ଼ିକ ଶୁଖି ଯାଇଛି ଏବଂ ହାଡ଼ ଉପରେ ଖାଲି ଚମଡ଼ା ଡାଙ୍କି ହୋଇ ରହିଛି ।

"ଯେତେବେଳେ ତୁମେ ବେହୋସ୍ ହୋଇଯାଇଥିଲ ମୁଁ ଘାବରେଇଗଲି ।" ଭେଙ୍କଟପ୍‌ପୟ୍ୟା ଯେତେବେଳେ ତାର ସ୍ତ୍ରୀକୁ ଶୋଇଥିବାର ଦେଖେ ତ ତାର ସନ୍ଦେହ ହୁଏ ଯେ ସେ ଜୀଇଁଛି ନା ନାହିଁ । ନିଶ୍ୱାସରେ ତାର ପେଟ ଉପରକୁ ତଳକୁ ହେଉଥିବା ଦେଖିଲେ ସେ ଜୀବିତ ଅଛି ଭାବି ନେଇ ଆଶ୍ୱାସନା ନେବାରେ ତାର ଅଭ୍ୟାସ ହେଇଗଲାଣି ।

"ମୁଁ ଟିକେ ଥକି ଯାଇଛି । ଦେହ ମୋର ଏକଦମ୍ ଭଲ ଅଛି । ପ୍ରକୃତରେ ଆମେ ଯେବେଠୁଁ ଏ ଘରକୁ ଆସିଲୁଣି ସେବେଠୁଁ ମତେ ବିଶ୍ରାମ ମିଳୁଛି ।" ରାଜ୍ୟମ୍ କହିଲା ।

"ମତେ ବି ଏ ଘରକୁ ଆସିଲା ଦିନୁ ଆରାମ ମିଳୁଛି । ମୁଁ ମନେ ମନେ ଆନନ୍ଦ ଅନୁଭବ କରୁଛି । କେବଳ କଥା ଏତିକି ଯେ ଭଡ଼ାଟା କିଛି ବଢ଼ି ଯାଇଛି ।"

"ହଁ, ମୁଁ ମଧ୍ୟ ସେଇଆ ଭାବୁଛି । ଭଡ଼ାଟା ଟିକେ ଅଧିକ ହୋଇଯାଉଛି ।"

"ଯେତେବେଳେ ଜୀବନ ଯାଉଛି ସେତେବେଳେ ଭଡ଼ା ଗୋଟାଏ' କଣ ଏମିତି ଜିନିଷ ଯେ । ତୁମେ କିଛି ଚିନ୍ତା କରନାହିଁ ।"

ଏଥି ପୂର୍ବରୁ ସେମାନେ ଗୋଟିଏ ସଂକୀର୍ଣ୍ଣ ଗଳିରେ ଗୋଟିଏ ପୁରୁଣା ଧରିଭା କୋଠରୀରେ କମ୍ ଭଡ଼ା ଦେଇ ରହୁଥିଲେ । ଯେପର୍ଯ୍ୟନ୍ତ ସେଠି ଥିଲେ ଘରେ କେହି ନା କେହି ବେମାର ପଡ଼ୁଥିଲା । ଶେଷରେ ରାଜ୍ୟମ୍‌ର ପାଳି ପଡ଼ିଲା । ଘରେ କେହି ସାହାଯ୍ୟ କରିବାକୁ ନାହାନ୍ତି । ଯେତେବେଳେ ତାର ସ୍ତ୍ରୀ ଡାକ୍ତରଖାନାରେ ପଡ଼ିଥିଲା, ତାକୁ ବହୁତ ହଇରାଣ ହବାକୁ ପଡ଼ିଛି । ସେ ଏବଂ ପିଲାମାନଙ୍କ ସୌଭାଗ୍ୟରୁ ସେ ବଞ୍ଚିଗଲା ଓ ସେମାନଙ୍କ ସାଙ୍ଗରେ ଜୀବନଯାପନ କରିପାରିଲା । ବର୍ତ୍ତମାନ ଏଇ ନୂଆ ପକ୍କା ଘରେ ସେମାନେ ଦୁଇଟି ଛୋଟ ଛୋଟ ବଖରା ଓ ଗୋଟିଏ ଅଗଣା ଭଡ଼ା ନେଇଛନ୍ତି ।

ଘର ପାଖରେ ଖାଲି ଖୋଲା ଜାଗା ମଧ୍ୟ ଅଛି ଏବଂ ପ୍ରତ୍ୟେକ ଘରେ ବଗିଚା ଅଛି ।
"ଆମେ ବେକାର ପଇସା ହିସାବ ଯୋଡ଼ୁଛୁ । ତୁମେ ବଞ୍ଚିଗଲ ସେଇ ଯନ୍ତ୍ରଣାରୁ ।"
ଭେଙ୍କଟପ୍ପୟା କହିଲା ।

"ଏପରି କିଛି ନାହିଁ । ମୋର ବେମାରି ଯୋଗୁ କେତେଗୁଡ଼ାଏ ଟଙ୍କା ଖର୍ଚ୍ଚ ହେଲା । ସେ ପଇସା କୋଉଠୁ ମିଳିଲା ଏପର୍ଯ୍ୟନ୍ତ ସେ କଥା ତମେ ମତେ କହିଲ ନାହିଁ । ସେଇଟା ବି ଚିନ୍ତାର ବିଷୟ ।"

"ମୁଁ ତ କହୁଛି, ସେ କଥା ଜମା ଭାବ ନାହିଁ । ଆଗ ତୁମ ଦେହ ପ୍ରତି ଯତ୍ନନେବା କଥା । କୌଣସି କଥାରେ କୃପଣତା କରିବ ନାହିଁ । ଯେତେବେଳେ ଚାହିଁ 'ଓଭାଲଟିନ' ପିଅ, ଯେତେ ଫଳ ଆଣୁଛି, ସବୁ ଖାଇବ । ପିଲାଙ୍କୁ ବି ଦବ ନାହିଁ ।"

"ଖାଉଛି ତ । ଆଉ କଣ କରୁଛି ? ଗୋଡ଼ ହାତ ଲମ୍ବାଇ ବସି ତମକୁ ଖଟାଉଛି । ତୁମକୁ ରାନ୍ଧିବାକୁ ପଡ଼ୁଛି, ମୁଁ ବସି ବସି ଖାଉଛି । ଯାହା କିଛି ପଡ଼ୁ, କରଜ ତ କରଜ; ଆମର ତ ଆଉ କିଛି ରୋଜଗାରର ଉପାୟ ନାହିଁ ।" ଏସବୁ ଚିନ୍ତା ତମେ ମୋଟେ କରନାହିଁ । ଭେଙ୍କଟପ୍ପୟା ପଇସା କଥା ପଡ଼ିଲେ ବିବ୍ରତ ହୋଇପଡ଼େ । ଦୁଇ ମାସର ଦରମା ବ୍ୟତୀତ ଆହୁରି ଶହେ ଟଙ୍କା ଖର୍ଚ୍ଚ ହୋଇ ଯାଇଛି । ଡାକ୍ତରଟି ଦେବତା ଭଳି --ଗୋଟିଏ ପଇସା ନେଲା ନାହିଁ । ତେବେ ମଧ୍ୟ ଔଷଧପତ୍ରରେ ଯଥେଷ୍ଟ ପଇସା ଖର୍ଚ୍ଚ ହୋଇଯାଇଛି । ଦାତବ୍ୟ ଚିକିତ୍ସାଳୟରେ ଚିକିତ୍ସା କରାଇ ମଧ୍ୟ ଖରଚ ବହୁତ ହୋଇଛି ।

"ଠିକ୍ ଅଛି, ମୁଁ ଆଉ ଚିନ୍ତା କରୁନାହିଁ । ଆସ୍ତେ ଆସ୍ତେ ସୁଝି ଦବା । ହିସାବ ଯୋଡ଼ିବାକୁ କେତେ ସମୟ ଲାଗିବ ଯେ । ସେଇଟା ତ ମୋ ହାତର କଥା ।"

"ଭଲ କଥା । ପରେ ଦେଖା ଯିବ ।" କହି ଭେଙ୍କଟପ୍ପୟା ବାରି ଆଡ଼କୁ ଚାଲି ଗଲା । ସେ ଏହି ଯୁକ୍ତିକୁ ଆଗକୁ ବଢ଼ାଇବାକୁ ଚାହେଁ ନାହିଁ । ହାତ ମୁହଁ ଧୋଇ ପକାଇଲା । ମୁଣ୍ଡ କୁଣ୍ଡାଇ, ଲୁଗା ପିନ୍ଧି ବାହାରକୁ ଯିବାପାଇଁ ବାହାରି ପଡ଼ିଲା ।

ରାଜ୍ୟମ୍ ପୁଣି ବେହୋସ ହେଇ ଯାଉଛି । ଅନ୍ଧକାର କୋଠରି ମଧ୍ୟରେ ପ୍ରବେଶ କରୁଛି । ସୂର୍ଯ୍ୟାସ୍ତର ସୁନେଲି କିରଣ ଝରକା ବାଟ ଦେଇ ରାଜ୍ୟମ୍ ଉପରେ ପଡ଼ି ତାର ସୌନ୍ଦର୍ଯ୍ୟ ବଢ଼ାଉଛି ।

ଭେଙ୍କଟପ୍ପୟା ରାଜ୍ୟମ୍‌ର ମୁଖମଣ୍ଡଳକୁ ବଡ଼ ଧ୍ୟାନପୂର୍ବକ ଚାହିଁ ଛିଡ଼ା ହୋଇ ରହିଲା । ଏଥର କ ତାକୁ ଡର ମାଡ଼ୁ ନ ଥିଲା । ଭାବିଲା ସେ ପିଲାଦିନର କୌଣସି ମଧୁର ପ୍ରସଙ୍ଗ ସ୍ମରଣ କରି ସେ ଆତ୍ମବିଭୋର ହୋଇଅଛି । ତାର ଚେହେରାରେ ପ୍ରସନ୍ନତାର ଶୋଭା ଖେଳିଯାଉଛି ।

ବହୁ ଦିନ ଧରି ଭେଙ୍କଟପ୍ପୟା ରାଜ୍ୟମ୍‌କୁ ଏପରି ପ୍ରସନ୍ନ ମୁଦ୍ରାରେ ଦେଖି ନ ଥିଲା । ଯେତେବେଳେ ସେ ଶାଶୁ ଘରକୁ ଆସିଥିଲା ନୂଆ ନୂଆ ବେଳେ ସେ ବହୁତ ଖୁସି ଥାଇ ଆଠ ପ୍ରହର ଆନନ୍ଦ ଲହରୀରେ ନାଚ-କୁଦ କରୁଥିଲା । ବର୍ଷଟିଏ ଭିତରେ ସେ ମା

ହୋଇଗଲା । ଜୀବନ ତାକୁ ସଂସାରରୂପୀ ସାଗରରେ ପ୍ରବେଶ କରାଇଲା ।

ବର୍ତ୍ତମାନ ଛଅ ବର୍ଷ ମଧ୍ୟରେ ସେ ଯେଉଁଟି ସନ୍ତାନର ମା ହୋଇ ଏହି ସଂସାରରୂପୀ ସାଗରରେ ପହଁରୁଛି ।

ହଠାତ୍ ଶ୍ୟାମ୍ ମୁହଁ ଖୋଲିଲା । ମୁଣ୍ଡ ଏପଟ-ସେପଟ କରି କଣ କହୁଛି । ତାର ମୁଖଭଙ୍ଗୀ ଦେଖି ଭେଙ୍କଟପ୍‌ପୟାଙ୍କୁ ହସ ମାଡ଼ିଲା । ହସି ହସି କାଶି ପକାଇଲା ଏବଂ ଅନେକ ସମୟ ପର୍ଯ୍ୟନ୍ତ କାଶ ରୋକି ପାରିଲା ନାହିଁ । ଶେଷରେ ସେହି ହସ-ଶୂନ୍ୟ ଆକାଶରେ ବିଚରଣ କରୁଥିବା ଶ୍ୟାମ୍‌କୁ ଧରିତଳକୁ ନେଇ ଆସିଲା ।

"କାହିଁକି ଏପରି ଠୋ ଠୋ ହୋଇ ହସୁଛ ।" ସେ ତାର ସ୍ୱାମୀଙ୍କୁ ପଚାରିଲା ।

"ଟିକେ ପୁଣି ମୁଖଭଙ୍ଗୀ କରି ମୁଣ୍ଡ ହଲାଇ ଦେଲେ ମଜା ଆସିବ"—ସେ କହିଲା ।

"ଆଚ୍ଛା —ଏଇ କଥା । ସାମନା ଘରେ ତାଙ୍କ ଝିଅ ଗୀତ ଗାଉଛି, ଶୁଣ ।" ଶ୍ୟାମ୍ କହିବାରୁ ଭେଙ୍କଟପ୍‌ପୟାଙ୍କୁ ଗୋଚର ହେଲା ଯେ ସାମନା ଘରେ କିଛି ସଙ୍ଗୀତ ଶୁଣା ଯାଉଛି ବୋଲି । କାନରେ କିଛି ଗୁଞ୍ଜନ ତ ବାଜୁଥିଲା; କିନ୍ତୁ ସିଆଡ଼କୁ ଧ୍ୟାନ ଦେବାର ଆବଶ୍ୟକତା ଏତେବେଳ ପର୍ଯ୍ୟନ୍ତ ତାକୁ ପ୍ରତୀତ ହୋଇ ନ ଥିଲା ।

"ଆଚ୍ଛା । ଏଠି ସଙ୍ଗୀତର କାର୍ଯ୍ୟକ୍ରମ ଚାଲୁଛି । ଏହିକଥା; ଆଉ ବୁଝିଗଲି । ପିଲାଦିନେ ତୁମେ ବେହେଲା ବଜାଇବାରେ ନିପୁଣ ଥିଲ ନା ? ମୁଁ ଭୁଲି ଯାଇଥିଲି ।"

'କାମବର୍ଦ୍ଧିନୀ' ରାଗିଣୀରେ ଉତ୍‌ଫୁଲ୍ଲ ହୋଇ, ଫୁଲର ସୁଗନ୍ଧରେ ମହକି ଉଠି, ସୁଲୁସୁଲିଆ ପବନ ଘର ଭିତରେ ପ୍ରବେଶ କରୁଛି ।

"ଆରେ ପିଲାଏ, ଏଠି ସଙ୍ଗୀତ ସଭା ହେଉଛି, ଆସିକରି ଶୁଣ"—ଭେଙ୍କଟପ୍‌ପୟା ଘୋଷଣା କରି କହିଲା । ତାଙ୍କର ଦୁଇଟି ପିଲା ସିଡ଼ି ଉପରେ ଠିଆ ହୋଇ ବଡ଼ ଧ୍ୟାନରେ ସଙ୍ଗୀତ ଶୁଣୁଥିଲେ ।

ଭେଙ୍କଟପ୍‌ପୟା କହିଲା "ମୁଁ ଭାବିଥିଲି ନୂଆଘରେ ଆରାମରେ ରହିପାରିବ । କିନ୍ତୁ ଏଠି ଏ ଅଧାଭଙ୍ଗା ବୋତଲ ଠାରୁ ରକ୍ଷା ପାଇବାର, ଉପାୟ ଦେଖା ଯାଉନାହିଁ ।"

"ସେ ସ୍ମୃତି ନିଜ ପାଖରେ ରଖ"—ଶ୍ୟାମର ମନରେ ବଡ଼ ଆଘାତ ଲାଗିଥିଲା । ଯେପରିକି ସ୍ମୃତି-ମଲମ ଲଗାଇ ତାର ସାରା ଦେହ ଜଳିପୋଡ଼ି ଯାଉଛି ।

"ଅନ୍ଧାର ହେଇ ଗଲାଣି । ବର୍ତ୍ତମାନ ବାହାରକୁ କାହିଁକି ଯାଉଛ ? ଜଳଖିଆ ଖାଇ ନିଅ ନା" ଶ୍ୟାମ୍ କହିଲା ।

"ମୁଁ ପ୍ରତିଦିନ ଭାବୁଛି, ପୁଣି ଡେରି ହେଇ ଯାଉଛି । ଶୀଘ୍ର ଯାଇ ପାପର ପ୍ରାୟଶ୍ଚିତ୍ତ ସ୍ୱରୂପ କିଛି ଭଲ କାମ କରିବା ଦରକାର ।"

"କଣ ପାପ କାମ କି କରୁଛ ?"

"ପାପ କାର୍ଯ୍ୟ କରିବା ବିନା ଜୀବନ ଚଳନ୍ତା ନାହିଁ ।"

ପିଲା ଦୁଇଟି ଧ୍ୟାନଦେଇ ସଂଗୀତ ଶୁଣୁଛନ୍ତି । ବୋଧହୁଏ ସେମାନଙ୍କ କାନକୁ ସେ ଶବ୍ଦ ଭଲ ଲାଗୁଛି । ପିଲାଙ୍କ ହୃଦୟ ସ୍ୱଭାବତଃ ନିର୍ମଳ । ସେଥିପାଇଁ ସଂଗୀତ ତାଙ୍କୁ ତା

ଆଡ଼କୁ ଆକୃଷ୍ଟ କରେ । ପିଲାଦିନୁ ଯଦି ରାଗ ଓ ତାଳର ସାଧାରଣ ତାଲିମ ଦିଆଯାଏ ତେବେ ଜୀବନରେ ସଂଗୀତ ଆନନ୍ଦର ଅକ୍ଷୟ ସ୍ରୋତ ହୋଇଯାଆନ୍ତା ।

"ବାଃ ରେ ବାଃ, ତମେ ବୁଝେଁ ତ ମା'ର ଉପଯୁକ୍ତ ସନ୍ତାନ । ସା-ରେ-ଗା-ମା ର ସ୍ୱର, ଗନ୍ଧ, ତମକୁ ଲାଗିଲାଣି ଜଣା ଯାଉଛି"—କହି କହି ଭେଙ୍କଟପ୍ପୟା ବାହାର ଆଡ଼କୁ ଚାଲିଗଲା ।

ରାଜ୍ୟମ୍ ଧୀରେ ଧୀରେ ଉଠି ବତି ଜଳାଇଲା । ବିଜୁଳିବତି ନୂଆ ଘରେ ଯେପରି ଦିଶେ, ସେପରି ପୁରୁଣା ବଡ଼ ଘରେ ଦିଶେ ନାହିଁ । କାନ୍ଥରେ ପୁରୁଣା 'ବଲ୍‌ବ' ପରି ରାଜ୍ୟମର ସଂଗୀତ ଦୁଇଦିନ ପାଇଁ ତରଙ୍ଗାୟିତ ହୋଇ ପୁଣି ଫିକା ହୋଇଗଲା । ତାର ବେହେଲା କୋଉ କୋଣରେ ଅଳିଆ ଗଦାରେ ପଡ଼ି ରହିଲା । ଏହିପରି ସଂଗୀତ ତାର ଜୀବନରୁ ଦୂରେଇ ଗଲା । ତେବେ ବି ସାମନା ଘରେ ସେ ଗ୍ଲୁଅଟିର ଗୀତ ଶୁଣି ରାଜ୍ୟମ୍ ଫେରେ ସେଇ ଅତୀତର ସଂଗୀତ ସୁଖ ଓ ଆନନ୍ଦ ଉପଭୋଗ କରୁଥିଲା ।

ରାଜ୍ୟମର ଜୀବନରେ ସବୁ ଜିନିଷ ନିୟମିତ ରୂପରେ ଚାଲୁଛି । କୋଉଠି କିଛି ବ୍ୟାଘାତ ନାହିଁ ।

ଛଅ ବର୍ଷ ତଳେ ରାଜ୍ୟମକୁ ଦେଖିବାକୁ ବର ପକ୍ଷ ଆସିଥିଲେ । ଭେଙ୍କଟପ୍ପୟା ମଧ୍ୟ ସେମାନଙ୍କ ସାଙ୍ଗରେ ଆସିଥିଲା । ସମସ୍ତେ ଝିଅକୁ ଗୀତ ଗାଇବା ପାଇଁ ଅନୁରୋଧ କଲେ । ରାଜ୍ୟମର ପିତା ତାକୁ ଚାରିବର୍ଷ ହେଲା ସଂଗୀତ ଶିକ୍ଷା ଦିଆଉଥିଲେ । ଗାୟନ କଳାରେ ନିଜର କୌଶଳ ପ୍ରଦର୍ଶନ କରିବାର ଶୁଭ ଅବସର ତାକୁ ବର୍ତ୍ତମାନ ମିଳିଲା ।

ସଙ୍କୋଚ ସହିତ ତୋଡ଼ି ରାଗରେ ଗୀତ ଆରମ୍ଭ କଲା । ଆରମ୍ଭରୁ ହିଁ ବେସୁରା ହେଲା । ତାଳ ଦବାରେ ଭୁଲ ହୋଇଗଲା । ରାଜ୍ୟମ ବିବ୍ରତ ହୋଇ ପଡ଼ିଲା । ଗୀତ ଭଲ ହେଲା ନାହିଁ । ଗୀତ ଶେଷକରି ରାଜ୍ୟମକୁ ବହୁତ କାନ୍ଦ ମାଡ଼ୁଥିଲା ।

କିନ୍ତୁ ଆଗନ୍ତୁକ ଭଦ୍ରଲୋକମାନେ ତାର ଗୀତକୁ ପ୍ରଶଂସା କରିବାକୁ ଲାଗିଲେ । ବିଚାରି କୁମାରୀ କନ୍ୟାମାନଙ୍କ ଜଣ ଜଣା ଅଛି ଯେ ବିବାହ ପ୍ରସଙ୍ଗରେ ଝିଅକୁ ଦେଖିବାକୁ ଆସିଥିବା ଭଦ୍ରଲୋକମାନଙ୍କର ସଂଗୀତରେ ରୁଚି ବା ପରୀକ୍ଷା କରିବାର ଶକ୍ତି ନ ଥାଏ ।

"ଆପଣଙ୍କ ଜୁଆଁଇକୁ ଆଉ ଚାକିରି କରିବାକୁ ପଡ଼ିବ ନାହିଁ" କେହି ମହାଶୟ ତାଙ୍କ ମଧ୍ୟରୁ କହିଲେ । ଏମାନଙ୍କର ଅନଭିଜ୍ଞତା ଦେଖି ରାଜ୍ୟମକୁ ହସ ମାଡ଼ିଲା ।

ଭେଙ୍କଟପ୍ପୟା ନିଜର ଆନ୍ତରିକ ଇଚ୍ଛାରେ ରାଜ୍ୟମ୍‌କୁ ବିବାହ କରିଥିଲା । ହଁ, ତାର ଭେଙ୍କଟପ୍ପୟା, କିନ୍ତୁ ସେ ଏମିତି ସେମିତି ପିଲା ନୁହେଁ । ବାହାଘର ପରେ ଶୀଘ୍ର ହିଁ ରାଜ୍ୟମ୍ ତାର ନିଜ ଭାଗ୍ୟ ଉପରେ ସନ୍ତୁଷ୍ଟ ହୋଇଗଲା । ବିବାହବେଳେ ଭେଙ୍କଟପ୍ପୟା ଆନ୍ଧ୍ର ବିଶ୍ୱବିଦ୍ୟାଳୟର କୃତି ସ୍ନାତକମାନଙ୍କ ମଧ୍ୟରୁ ଜଣେ ଥିଲା ।

ମାଡ୍ରାଜ ରାଜ୍ୟ ସରକାରର ବାଆସ୍ତରି ଟଙ୍କା ବେତନଶ୍ରେଣୀ ମହତ୍ତ୍ୱପୂର୍ଣ୍ଣ ଲୋଅର-ଡିଭିଜନ କିରାଣି ଥିଲା ।

ବିବାହ ପରେ ପ୍ରଥମେ ପ୍ରଥମେ ରାଜ୍ୟମ୍ ଯେତେବେଳେ ଗାଁର ପରିଚିତ ବ୍ୟକ୍ତି-ମାନଙ୍କ ଘରକୁ କୌଣସି ସାମାଜିକ ମିଳନ ପାଇଁ ଯାଉଥିଲା ତ ଲୋକମାନେ ତାକୁ ଗୀତ ଗାଇବା ପାଇଁ ଅନୁରୋଧ କରୁଥିଲେ । କିନ୍ତୁ, ଘରେ ତାର ସ୍ୱାମୀ ମହାଶୟ କେବେହେଲେ ତାର ଗୀତ ଶୁଣିବାର ଇଚ୍ଛା ପ୍ରକାଶ କରି ନାହାନ୍ତି ଏବଂ ସେ ମଧ୍ୟ ନିଜେ ନିଜେ ଗାଇନାହିଁ ।

ନିଜ'ର ହୋଇ ଶାନ୍ତି ଘରେ ନିଜେ ନିଜେ ଗାଇବାର ସୁଯୋଗ ଆସିବା ପୂର୍ବରୁ ତା ଜୀବନରେ ମା' ହେବାର ଶୁଭ ଅବସର ଆସିଥିଲା ଏବଂ ମା' ହେବା ପାଇଁ ସେ ତାର ବାପ ଘରକୁ ଚାଲି ଯାଇଥିଲା । ଏହାପରେ ତାର ନାସ୍ତାନାବୁଦ ସଫଳ ହେଲା ।

ବାରଣ୍ଡାରେ ପିଲାମାନେ ଏକାଠି ହୋଇ ହୋ ହା ହେବାକୁ ଲାଗିଲେ । "କାହିଁକି କଜିଆ କରୁଛ ପିଲାଏ, ଏଠି ଆସି ବସ"—କହି କହି ଘରଭିତର ମଧ୍ୟରେ କଜିଆ କରୁଥିବା ତାର ଦୁଇଟି ପୁଅ ଆସି ମା ପାଖରେ ବସିଲେ । ଜଣେ ସେଥିରୁ ପାଞ୍ଚ ବର୍ଷ ବୟସର, ଆରଟିକୁ ଚାରିବର୍ଷ ।

"ଛୋଟ ପୁଅ ଶୋଇଛି ନା ?" ସେ ପଚାରିଲା ।

ବଡ଼ପୁଅ କହିଲା, "ଘୁଙ୍ଗୁଡ଼ି ମାରୁଛି ।"

"ତମେମାନେ ପାଟିଗୋଳ କଲେ ସେ ଉଠି ପଡ଼ିବ ନା ?" ମା'ର କଥା ଶୁଣି ବଡ଼ ପୁଅ ଗେଲ୍ହେଇ ହୋଇ ହସିଲା । ଦୁଇଜଣଯାକ ନିଜ ଭୁଲ ବୁଝିପାରି ଅନାଅନି ହେଲେ ।

"ସାମନା ଘର ଝିଅ ମଧୁର ସ୍ୱରରେ ଗୀତ ଗାଉଛି, ବସି କରି ଶୁଣ ।" ମା କଥା ଶୁଣି ଭଲ ପିଲା ପରି ଦୁହେଁ ବସିଗଲେ । ପିଲାଙ୍କୁ ସମ୍ଭାଳିବା, ମିଠା ମିଠା କଥା କହି ତାଙ୍କୁ ଭଲ ବାଟରେ ନେବା ଏବଂ ଧୂଆଁରେ ବ୍ୟତିବ୍ୟସ୍ତ ନ ହୋଇ ଚୁଲି ଧରାଇବା—ଏ ସବୁ କାମ ରାଜ୍ୟମ୍ ଅନାୟାସରେ ଶିଖି ଯାଇଛି ।

ସାମନା ଘର ଝିଅ ସ୍ୱର ସାଧନା ଆରମ୍ଭ କଲା । ତାର କଣ୍ଠରୁ ସ୍ୱର ଝରଣା ପରି ଝରଝର ହୋଇ ମଝିରେ-ମଝିରେ ଜଳପ୍ରପାତ ପରି ଉଦ୍‌ବେଳିତ ହୋଇ ମୁଖରିତ ହୋଇ ଉଠିଲା । ତାର କଣ୍ଠ ଉପରକୁ ଉଠି ଗାନ୍ଧାରରେ ସ୍ଥିର ହୋଇ ସ୍ୱର ସାଧନା କରୁଛି ।

ରାଜ୍ୟମର ଦେହରେ ବଳ ଆସିଗଲା ପରି ଲାଗିଲା । ଦୈନନ୍ଦିନ ଜୀବନରେ ସ୍ୱାସ୍ଥ୍ୟ ଏବଂ ଆନନ୍ଦ ପାଇବା ପାଇଁ ସଂଗୀତ ଆବଶ୍ୟକ । ନିଜେ ଗାଇବାରେ ସମର୍ଥ ନ ହେଲେ ମଧ୍ୟ ଶୁଣିକରି ରସ ଆସ୍ୱାଦନ କରିବାରେ ଲାଭ ଅଛି ।

ଏହି ରସାସ୍ୱାଦନରେ ବ୍ୟାଘାତ ଘଟାଇ, ସରବତରେ ମାଛି ପଡ଼ିଗଲା ପରି, ସାମନା ଘର ଝିଅ ପାଖରେ ତାର ଛୋଟ ଭାଇ ଆସି ପହଞ୍ଚିଗଲା ।

ଗାମା ପାଧାନି···ସାରେ ସାନି ପାଧାନି · କହି ସେ କଣ୍ଠ ଫଟେଇ ବେସୁରା ସ୍ୱର ବାହାର କଲା । ଝିଅ ବିରକ୍ତ ହୋଇ ଗୀତ ବନ୍ଦ କରିଦେଲା ।

“ଆରେ, ଅପଦାର୍ଥ । ଗୀତ ଶିଖାଇବାକୁ ଡାକିଲେ ଆସୁ ନାହୁଁ । ଗୋଳମାଳ କଲା ବେଳକୁ ସବୁଠୁ ଆଗ ।”

“କଣ ମୋର ସ୍ୱର ଠିକ୍ ହେଉ ନାହିଁ ?”

“ବାପା ଆସନ୍ତୁ, ସବୁ କହୁଛି ।”

“ଦାନି, ପାନି ସାରେ ସାନି ଦାନି ପାଧାନି···” ସେ ପିଲା ଆହୁରି ଗୋଟିଏ ସ୍ୱର ବାହାର କରିବାରେ ଲାଗିଗଲା । ଏଇ ଚଗଲାମି ମଧ୍ୟରେ ବି ସେ ଝିଅଟି ସ୍ୱର ସାଧନା କୌଣସି ପ୍ରକାରେ କରି ନଥିଲା । ଯଦି ବାତାବରଣ ଭିତରେ ସଙ୍ଗୀତର ବନ୍ଧୁମାନ ଅଛି ତ କାଠ ପଥର ବି ଗୀତ ଗାଇ ପାରିବେ । ଏଥିରେ କିଛି ଆଶ୍ଚର୍ଯ୍ୟ ହେବାର ନାହିଁ ।

“ବାପା ଆସନ୍ତୁ, ଫାଜିଲ୍” କହି ସେ ଝିଅ ଏକଦମ୍ ଗାଇବା ବନ୍ଦ କରି ଦେଲା । ରାଜ୍ୟମ୍‌କୁ ବହୁତ ରାଗ ମାଡ଼ିଲା । ସେ ଝିଅଟି ଯେଉଁ ଗୀତ ଗାଉଥିଲା ତାର ରାଗ-ରାଗିଣୀ ସବୁ ରାଜ୍ୟମ୍‌ର ପରିଚିତ ।

“ଅଳ୍ପ ସମୟ ପାଇଁ ହେଉ ପଛେ—ମନଟା ପ୍ରଫୁଲ୍ଲ ଲାଗୁଥିଲା । ଆଉ କଣ ଗୀତ ଗାଇବ ?” ରାଜ୍ୟମ୍ କହିଲା ।

“ଆଉ କାହିଁକି ସେ ଗାଉନାହିଁ ?” ବଡ଼ ପୁଅ କହିଲା ।

“ଦେଖୁନୁ ! ତୋ ପରି ଦୁଷ୍ଟ ପିଲାଟିଏ ଆସି ମଝିରେ ସବୁ ଗୋଳମାଳ କରିବାରୁ ସେ ବିରକ୍ତ ହୋଇ ଗୀତ ବନ୍ଦ କରିଦେଲା ।”

“ସେ କେମିତି ଗାଇ ପାରୁଛି ?”

“ଶିଖି କରି ଗାଉଛି ।”

“ତୁ ଗାଇବୁ ?”

“ହଁ ବେଶ୍ ଗାଇ ପାରିବି, ତମେ ଶିଖାଇ ଦେବ ?”

“ଛି, ପୁଅ ପିଲାମାନେ ଗାଆନ୍ତି ନାହିଁ ।”

“ପୁରୁଷମାନେ ବି ଗୀତ ଗାଆନ୍ତି, ପୁଅ, ତମେ ତ ଶିଖାଇ ଦେବ ?”

“ଶିଖାଇ ଦେ ।”

“ପରେ ଶିଖାଇଦେବି ।” କହି ରାଜ୍ୟମ୍ ଗୋଡ଼ ହାତ ଲମ୍ବାଇ ଶୋଇଗଲା ।

“ଟିକେ ଗୋଡ଼ ଘଷିଦେଲୁ ।”

ସେ ପୁଅ ତା ମା ର ଗୋଡ଼ ଚିପି ଦବାକୁ ଲାଗିଲା

“ମୁଁ ତୋ ହାତ ଘଷି ଦେବି, ମା ?”—କହି ଜ୍ୟେଷ୍ଠ ପୁଅ ହାତ ଘଷିବାକୁ ଲାଗିଲା ।

ରାଜ୍ୟମ୍ ଗଡ଼ୁ ଗଡ଼ୁ ‘କଲ୍ୟାଣ’ ରାଗରେ କୋଉ ଗୀତ ଗାଉଛି । ସେ ତ ବହୁତ କିଛି ଭୁଲି ଚାଲିଣି । ମୁର୍ଚ୍ଛନା ଏବଂ ପ୍ରସାର ଅଡୁଆ କେଶ ଭଳି ଛନ୍ଦୁଡ଼ିଇ ହୋଇ

ଯାଉଛି ।

"ସେ ନିଅ ତୋଠାରୁ ବେଶୀ ଭଲ ଗାଉଛି ମା"—ବଡ଼ ପୁଅ କହିଲା ।

"ମୁଁ ତ ଭୁଲି ଗଲିଣି ପୁଅ ।"

ପଛ ପାଖ କୋଠରୀରେ ଗୋଟିଏ କିଛି ତାଳୁଙ୍କଣି ପଡ଼ିବାର ଶବ୍ଦରେ ସାରା ଘର କମ୍ପିଗଲା ।

"ବୋଧହୁଏ କୁକୁର ପଶିଛି, ତଡ଼ିଦେଲୁ ତାକୁ । ସେଠି ଭାତ ହାଣ୍ଡି ଅଛି" ଶ୍ୟାମ୍ କହିବାରୁ ଦୁଇ ପୁଅ ଦୌଡ଼ି ଗଲେ ।

"କୁକୁର ନୁହେଁ···ମା, ବିଲେଇ । ଭାତ ହାଣ୍ଡି ଉପରେ ଘୋଡ଼ା ହୋଇଥିବା ଥାଳିଆ ପକାଇ ଦେଇଛି"—ବଡ଼ ପୁଅ କହିଲା ।

"ଯାଃ ଭଲ ହେଲା, ନଚେତ୍ ପୁଣି ରାନ୍ଧିବାକୁ ପଡ଼ିଥାନ୍ତା । ଆଜିକାଲି କୁକୁର୍ ଅଇଁଠା ଖାଇବା ଦିନ ବି ଆସିଗଲା । କବାଟ ବନ୍ଦ କରି କିଳଣି ଲଗାଇ ଦବାର ଥିଲା"—ଶ୍ୟାମ୍ କହିଲା ।

"ତୁଚ୍ଛ ତ କହିଲୁ, ଗୀତ ଶୁଣିବାକୁ ଆସ"—ବଡ଼ ପୁଅ କହିଲା ।

ହଁରେ ପୁଅ, ମୁଁ ଡାକିଥିଲି । ନିଜେ କବାଟ ବନ୍ଦକରି ଆସିବା ଉଚିତ, ଭୁଲିଗଲି" ଶ୍ୟାମ ଧୀରେ ଧୀରେ ବୁଝାଇଦେଲା ।

ଭେଙ୍କଟପ୍ପୟା ଫେରି ଆସିଲା ।

"ପଛ ପଟେ ଜ୍ୟୋତ୍ସ୍ନା ଏବଂ ସୁଗନ୍ଧରେ ମନ ମୁଗ୍ଧ ହୋଇଯାଉଛି ।" ଭେଙ୍କଟପ୍ପୟା କହିଲା ।

ଶ୍ୟାମ ପଚାରିଲା "ଆରେ, ଏତେ ଶୀଘ୍ର କିପରି ଆସିଲ ?"

"ସ୍ନାନ ସରିଗଲା ।"

"ପାପର ପ୍ରାୟଶ୍ଚିତ ହୋଇଗଲା ?"

"ହଁ କିଛି କିଛି ତ ହେଲା ।"

"ଏଥି ମଧ୍ୟରେ ଆଉ କୁଆଡ଼େ ଯାଇଥିଲ କଣ୍ଟୟ ?"

"ରାମ, ରାମ ।"

"ତମର ମୁଖଭଙ୍ଗୀ ଓ କଥା କହିବା ଢଙ୍ଗରୁ ସେପରି ମନେ ହେଉଛି ।"

"ଛିଃ, ଛିଃ ।"

"ଏପରି କଥା ମୁଁ କେମିତି କହିବି ?"

ଭେଙ୍କଟପ୍ପୟା କାଖରେ ଡୋଲିଆ ଭିତରେ କିଛି ଜିନିଷ ଅଛି । ଗୋଲାକାର କାଗଜରେ ଗୁଡ଼ା ହୋଇଛି ।

"ସେଇଟା କଅଣ"—ଶ୍ୟାମ୍ ପଚାରିଲା ।

"ଖୋଲି କରି ଦେଖାଇବି, କଣ୍ଟୟ ।"

"ସେ ପୁଟୁଳିରେ ଗୋଟିଏ ଅଙ୍ଗୁଳିଆ ଜରି ଧଡ଼ି ଥିବା ଶାଢ଼ି ଖଣ୍ଡେ ଅଛି ଏବଂ ତା

ସହିତ ମନେଇ କରି ବ୍ଲାଉଜ ପିସ୍ ମଧ୍ୟ ଅଛି । ମହାରାଣୀ ଠାରୁ ଆରମ୍ଭ କରି ସାମାନ୍ୟ ସାଧାରଣ ସ୍ତ୍ରୀ ଲୋକର ମନକୁ ଗଲାପରି ଶାଢ଼ି ଟିଏ ।"

"କିଣିଲ ତମେ ?"

"କିଣି ପକାଇଲି, ସବୁ ପଇସା ଖର୍ଚ୍ଚ ହୋଇଯିବା ପୂର୍ବରୁ କିଣି ପକାଇଲି ।"

"ପଇସା କେଉଁଠୁ ମିଳିଲା ?"

"ଯଦି ମୁଁ ସତ କଥା କହି ଦିଏ, ତେବେ ତମେ ବୋଧହୁଏ ମତେ କ୍ଷମା କରି ପାରିବ ନାହିଁ ।"

"କଣ କରିଛ ତମେ ? କୁହ ନା ।"

"ମତେ ଆଗ କଥା ଦିଅ ଯେ ତମେ ଖରାପ ଭାବିବ ନାହିଁ," କହି ସେ ନିଜ ହାତ ବଢ଼ାଇଲା । ତାର ହାତ ଥରୁଥିଲା । ରାଜ୍ୟମ୍ ତା ହାତରେ ନିଜ ହାତଟି ରଖିଦେଲା ।

"ଏପରି କାହିଁକି ଥରୁଛ ତମେ ? କଣ କରିଛ ତମେ ? ଚୋରି ତ କରିନାହିଁ ?"

"ତା ଠାରୁ ବଳି ଖରାପ କାମ କରିଛି । ଯେତେବେଳେ ଟାଇଫଏଡ଼ ଜ୍ୱର ତମକୁ ନେଉଥିଲା । ମୁଁ ହତାଶ ହୋଇ ପଡ଼ିଲି । ମୋର ଜଣେ ସାଙ୍ଗ ଘରକୁ ଆସି ତାକୁ ଦେଖି ବିକି କରି ଦବାର ପରାମର୍ଶ ଦେଲା । ସାହସ ବାନ୍ଧି ମୁଁ ତାକୁ ଦେଇଦେଲି ।"

"କଣ ଦେଇ ଦେଇଛ ?"

"ତମେ ଏପର୍ଯ୍ୟନ୍ତ ଜାଣି ନାହଁ । ସେଇ ନେଇ ଯାଇଛି । ଅଢ଼େଇଶହ ଟଙ୍କାରେ କାହାକୁ ବିକି କରି ଦେଇଛି । ମୁଁ ସ୍ୱପ୍ନରେ ବି ଭାବି ନ ଥିଲି ଏତେ ଗୁଡ଼ାଏ ପଇସା ମିଳିବ ବୋଲି । ମୁଁ ଭାବିଥିଲି, ପୁରୁଣା ଜିନିଷ ବୋଲି । କିନ୍ତୁ ସେ ଲୋକ କହୁଛନ୍ତି ଯେ ପୁରୁଣା ଜିନିଷ ବୋଲି ତାର ମୂଲ୍ୟ ବେଶି ।"

ଏବେ ରାଜ୍ୟମ ବୁଝିଗଲା । ଚାରିଆଡ଼େ ଅନାଇ ଦେଖିଲା ।

"ଆଉ ଦେଖି କଣ ଲାଭ ?"

"ଚାଲି ଗଲା" କହି ଦୀର୍ଘଶ୍ୱାସ ଛାଡ଼ିଲା ।

"ମୁଁ ଜାଣିଥିଲି ଯେ ତୁମ ମନରେ ଦୁଃଖ ହବ ବୋଲି । ମୁଁ ଭଲ କାମ କରିଛି ।" ଦୋଷୀପରି ସେ ଛିଡ଼ା ହୋଇ ରହିଲା । ରାଜ୍ୟମ ବୁଝି ପାରିଲା ଯେ ତା ସ୍ୱାମୀ ମନରେ କଷ୍ଟ ହଉଛି ବୋଲି, ସେଥିପାଇଁ ସେ ତାର ଅନ୍ତରର ଦୁଃଖ ପ୍ରକାଶ କଲାନାହିଁ ।

"ତୁମେ କିଛି ଭଲ କାମ କରିନା । ଯେକୌଣସି ଗୃହସ୍ଥ ଏହିପରି କରି ଆଆନ୍ତା । ହତାଶ ହୋଇ ତମେ ସେପରି କରିଛ । ତମେ ତ ସେ ପଇସା ଖାଇଯାଇ ନାହଁ ।"

"ମୁଁ ଭାବିଲି ଆମର ତ ଗୋଟିଏ ପୁଅ । ଝିଅ ତ ନାହିଁ । ସେଥିପାଇଁ ମୁଁ ସାହସ କଲି ।"

"ଯାଉ । ମୋ ମୁହଁ ତ ବହୁତ ଆଗରୁ ବନ୍ଦ ହୋଇ ଯାଇଥିଲା । ଏବେ ମତେ ସେ ବେହେଲାରୁ କଣ ସାହାଯ୍ୟ ମିଳିଥାନ୍ତା ? ମା ସରସ୍ୱତୀଙ୍କର ମତେ ଏତିକି ବରଦାନ ମିଳିଛି । ମା ଚାଲିଗଲେ—ଯାଉ ଯାଉ ତାଙ୍କ ମାତୃତ୍ୱର ପରିଚୟ

ଦେଇଗଲେ । ମତେ ପ୍ରାଣଦାନ ଦେଇ ଗଲେ । ମତେ ଶାଢ଼ି ଓ ବ୍ଲାଉଜ ବି ଦେଇଗଲେ । କହୁ କହୁ ରାଜ୍ୟମ୍‌ର ଆଖିରେ ଲୁହ ଭରିଗଲା । ସାମନାରେ ରଖା ହୋଇଥିବା ଶାଢ଼ି ସେ ଖୋଲିକରି ବି ଦେଖିଲା ନାହିଁ ।

“ଘର ପୁରୁଷ ପର୍ଯ୍ୟନ୍ତ ରହିବ, ଏହା ଭାବି ମୁଁ ଏହି ଶାଢ଼ି କିଣି ନେଲି”—କହି ଭେଙ୍କଟପ୍ପୟ୍ୟା ଶାଢ଼ି ଅଧା ଖୋଲି ରାଜ୍ୟମ୍‌ର କାନ୍ଧ ଉପରେ ପକାଇ ଦେଲି ।

ରାଜ୍ୟମ୍ କହିଲା “ସୁନ୍ଦର ତ ରହିବ”—

# ପୂର୍ଣ୍ଣାହୁତି

"କେତେ ଥର କହୁଛି ଯେ ଏହା ହୋଇ ପାରିବ ନାହିଁ ? ତୁମେ ତ ମୋ ପଛରେ ଶନିଗ୍ରହ ପରି ଲାଗି ରହିଛ । ମୁଁ ତ ତୁମକୁ କହୁଛି ସାଇକେଲ ଛାଡ଼ିଦିଅ···ମୋର ଡେରି ହୋଇଯାଉଛି ।" ପେରିଶାସ୍ତ୍ରୀ ଚିଡ଼ିଚିଡ଼ି ହୋଇ କହିଲା ।

ମୁଁ କାବା ହୋଇ ଛିଡ଼ା ହୋଇ ରହିଲି ଏବଂ ପେରିଶାସ୍ତ୍ରୀ ଚଟ୍‌କରି ସାଇକେଲରେ ଚଢ଼ି ଚାଲିଗଲା ।

ଖରା ଚହଁ ଚହଁ ମାରୁଥିଲା । ସୂର୍ଯ୍ୟ ଉଦୟ ହେଉ ହେଉ ନିଆଁ ଭଳି ଖରା ଚାରିଆଡ଼େ ବିଛେଇ ହୋଇପଡ଼ିଲା । ଜଣାନାହିଁ ସନ୍ଧ୍ୟା ପର୍ଯ୍ୟନ୍ତ ପବନ କେଉଁଠି ଲୁଚିଯାଏ । ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ପତ୍ରଟିଏ ବି ହଲେ ନାହିଁ ।

ସବୁଦିନ ପରି ଯାଇ ମନ୍ଦିରର ଚଉତରା ଉପରେ ଗାମୁଛା ବିଛାଇ ଗଡ଼ିପଡ଼ିଲି । ଉପରୁ ଟିକେ ଟିକେ ଚୁଇ ପଡ଼ୁଥିଲା । ଚାରିପାଞ୍ଚଟି ଗୁଣ୍ଡୁଚିମୂଷା ଚିଁ ଚିଁ କରି ଏପାଖ-ସେପାଖ ଦୌଡ଼ା ଦୌଡ଼ି କରୁଛନ୍ତି । ମନ୍ଦିର ସାମନାରେ ଥିବା ପାନଦୋକାନରେ ଦଶବର୍ଷର ବାଳକଟିଏ ଛିଡ଼ା ହୋଇ ସୋଡ଼ା ପିଉଛି । ଦଶଦିନ ପୂର୍ବରୁ ଏ ବିଚରାର ବାପା, ଯିଏ ମସ୍ତ ହାଣ୍ଡି ଭଳି ଚାରିଆଡ଼େ ବୁଲାବୁଲି କରୁଥିଲା, ହଠାତ୍ ମରିଗଲା । ପୁଅଟି ସାନ, ସେଥିପାଇଁ ତାର ଅନ୍ତ୍ୟମକ୍ରିୟା ସେ କରିପାରିନଥିଲା । ସେଥିପାଇଁ ପେରିଶାସ୍ତ୍ରୀ ମୋର ଦ୍ୱାରା ସବୁ କାମ କରାଇଥିଲା । ସେହି ବାବଦରେ ମତେ ପଚାଶି ଟଙ୍କାରୁ ଅଧିକ ମିଳିଥିଲା ।

ଛାଡ଼, ବର୍ତ୍ତମାନ ଆଜି ଦିନଟା କିପରି ଚଳିବ । କାଲି ଦ୍ୱିପ୍ରହରୁ କିଛି ଖାଇନାହିଁ··· ସେ କେଉଁ 'ଲେବର ଅଫିସର', ପାଞ୍ଚ ଛଅ ଦିନ ହେବ ଗ୍ରହ ଶାନ୍ତି କରାଉଥିଲେ । କାଲି ସେ ପୂଜାର ପୂର୍ଣ୍ଣାହୁତି ଥିଲା । ବୋଧହୁଏ ପେରିଶାସ୍ତ୍ରୀ ହିଁ ତାଙ୍କୁ ଏ ପୂଜା କରିବା ପାଇଁ କହିଥିବେ । ତାଙ୍କର ଗ୍ରହ ଭଲ ନାହିଁ ଏବଂ ସେଥିପାଇଁ ଶାନ୍ତି କରାଇବା ଦରକାର କହି ତାଙ୍କଠାରୁ ନୂଆ ଧାନ ଏବଂ ନଗଦ ପଇସା ଦାନ କରାଇଲା । କାଲି ଏଗାରଟାବେଳେ ମୁଁ ତାଙ୍କ ଘରେ ପହଞ୍ଚି ଯାଇଥିଲି । ସବୁ କାମ ସରିଲାବେଳକୁ ଦିନ ଦୁଇଟା ବାଜି ଯାଇଥିଲା । ପେରିଶାସ୍ତ୍ରୀର ବିଶେଷତ୍ୱ ଏଇଥିରେ ଯେ ସେ ସେହିସବୁ କାମରେ ଅଧିକ ବିଳମ୍ବ କରାଇ ଯଜମାନ ମନରେ ବିଶ୍ୱାସ ଜନ୍ମାଇଦିଏ, ସବୁ କର୍ମକାଣ୍ଡ ବିଧିମୁତାବକ ହୋଇଛି ବୋଲି । ବାପ୍‌ରେ ! ପେରିଶାସ୍ତ୍ରୀ କିଛି ଏମିତିସେମିତି ଲୋକ ନୁହନ୍ତି···ହାତମୁଠାରେ ଅଣ୍ଡା ରଖି ଚଢ଼େଇ ବାହାର କରିବାଲା ସେ ।

ଗତକାଲିର ଘଟଣା ମନେପକାଇ ମତେ ବର୍ତ୍ତମାନ ହସ ମାଡ଼ୁଛି । ନବଧାନ୍ୟ

ଦାନ କଲାବେଳେ ଗହମ ଦାନ ନେଇ ଗୋଟିଏ ସମସ୍ୟା ସୃଷ୍ଟି ହୋଇଗଲା । ଗହମ ବଜାରରେ ମିଳୁନାହିଁ ନା ? ଏଥିନେଇ ପେରଶାସ୍ତ୍ରୀ ଏବଂ ନରସିଂହମ୍‌ଙ୍କ ମଧ୍ୟରେ ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହୋଇଗଲା । ମୋର ଚୁପ୍ ରହିବା ଉଚିତ ଥିଲା । କେବେହେଲେ ମୁଁ ମୁହଁ ଖୋଲି କିଛି କହେ ନାହିଁ । କେଜାଣି ମୋର କାଳି କଣ ହୋଇଥିଲା, ମୁଁ ସେ ମାମଲାରେ ହସ୍ତକ୍ଷେପ କରି ସ୍ୟାଡ଼୍ ସ୍ୟାଡ଼୍ ବକିବାକୁ ଲାଗିଲି । ସେତେବେଳେ ପେରଶାସ୍ତ୍ରୀର ଚେହେରା ଦେଖିଲା ଭଳି···ଡିମା ଡିମା ଆଖି କରି ମୋ ଆଡ଼େ କଟ୍ ମଟ୍ କରି ଅନାଇ ମୋ ଉପରେ ପାଟି କରି ଉଠିଲା, "ତୁ ମଝିରେ କାହିଁକି ବକ୍ ବକ୍ ହଉଛୁ. ଚୁପ୍ ଚାପ୍ ବସି ପାରୁନୁ ? ସମସ୍ତେ କଥା କହିଲାବାଲା ହେଲେଣି ! ଶ୍ରେଷ୍ଠ ବଡ଼ର ଜ୍ଞାନ ପର୍ଯ୍ୟନ୍ତ ନାହିଁ ?"

ମତେ ପ୍ରକୃତରେ ବଡ଼ ଡର ମାଡ଼ିଲା । ତା ପରେ ମୋର ପାଳି ଆସିଲା । ମୋର ଶନିଦାନ ଏବଂ ମୃତ୍ୟୁଞ୍ଜୟ ଦାନ ଗ୍ରହଣ କରିବାର ଥିଲା । ଏଥିରେ ମୋର କେହି ପ୍ରତିଦ୍ୱନ୍ଦ୍ୱୀ ନଥିଲେ । ଆଜି ନୁହେଁ, ସାତ ଆଠ ବର୍ଷ ହେଲାଣି ଏ ଗାଁରେ ଏହି ଦାନ ଗ୍ରହଣ କଲାବାଲା ମୋ ଛଡ଼ା ଆଉ କେହି ନଥିଲେ । ଯେମିତ ମୋ ପାଳି ଆସିଲା ଗାମୁଛା ଝାଡ଼ି, କାନ୍ଧରେ ପକାଇ ଯାଇ ଆସନରେ ବସି ପଡ଼ିଲି । ସେହି ଦମ୍ପତି ମୋର ପାଦ ଧୋଇ ପ୍ରଥମେ ମତେ ଶନିଗ୍ରହର ଦାନ ଦେଲେ । ଅଳ୍ପ କିଛି ଗୁଡ଼ଳ, ତେଲ ଏବଂ ଗୋଟିଏ ଟଙ୍କା ନଗଦ···ପତ୍ର ଉପରେ ରଖିକରି ଦେଇଦେଲେ । ତାକୁ ଗ୍ରହଣ କଲାବେଳେ ମୁଁ ସଂକଳ୍ପ କରି କହିଲି, "ବାବୁ, ଆପଣ ପିଲାପିଲି ସହ ସୁଖରେ ରହନ୍ତୁ । ଆପଣଙ୍କୁ ସବୁ ପ୍ରକାରର ଧନ ସମ୍ପତ୍ତି ପ୍ରାପ୍ତ ହେଉଥାଉ । ଶନିଚର ଆପଣଙ୍କ ପଥର ପ୍ରତିବନ୍ଧକ ନ ହଉ । ଶନିଗ୍ରହର ବକ୍ରଦୃଷ୍ଟି ସମ୍ବନ୍ଧିତ ଯଦି କୌଣସି ଖରାପ ଦଶା ଥାଏ ତାହା ଏହି ଦାନର ମାଧ୍ୟମରେ ମତେ ପ୍ରାପ୍ତ ହଉ···ତାହା ମୁଁ ମୁଣ୍ଡପାତି ଗ୍ରହଣ କରି ନେଉଛି ।"

ତା ସାଙ୍ଗେ ସାଙ୍ଗେ ମତେ ମୃତ୍ୟୁଞ୍ଜୟ ଦାନ ମଧ୍ୟ ମିଳିଲା—ଗୁଡ଼ଳ କିଛି, କିଛି କପା, ତେଲରେ ବୁଡ଼ା ହୋଇଥିବା ଲୁହା କଣ୍ଟା, ନଗଦ ଗୋଟିଏ ଟଙ୍କା··· ଦାନ ଗ୍ରହଣ କରୁ କରୁ ମୁଁ ପୁଣି ସଂକଳ୍ପ କଲି, "ବାବୁ, ଅସିବାକୁ ଡ଼ର ! ଯଦି ଆପଣଙ୍କ ପରିବାରରେ କାହାର କପାଳରେ ଅପମୃତ୍ୟୁ ଲେଖା ଅଛି, ତେବେ ଏହି ଦାନ ମାଧ୍ୟମରେ ତା ମତେ ଭୋଗ ହେଉ । ଆପଣମାନେ ସୁଖରେ ରହନ୍ତୁ ।" ତା ପରେ ବାରଣ୍ଡାରେ କିଛିକ୍ଷଣ ମୁଁ ଗୋଟିଏ କଣରେ ବସି ରହିଲି । ପେରଶାସ୍ତ୍ରୀ ବରାବର ମୋ ଆଡ଼େ କ୍ରୋଧଭରା ଦୃଷ୍ଟିରେ ଅନାଉ ଥାଏ । ବୋଧହୁଏ ମୋ କଥା ନେଇ ରାଗ ଏ ପର୍ଯ୍ୟନ୍ତ ଅଛି । ନ ହେଲେ ଏପରି ଚଢ଼ା ଚଢ଼ି ହବାର କାରଣ କଣ ? ଜଣାପଡ଼ୁଛି, ମୋ ମସ୍ତିଷ୍କରେ ଶନି ମହାରାଜ ବିରାଜମାନ କରି ମତେ ଏ କଥା କୁହାଇଲେ । ପେରଶାସ୍ତ୍ରୀର ଶତ୍ରୁ ହୋଇ ଦିନ କଟାଇବା କଷ୍ଟକର ହୋଇଯିବ ।

କଡ଼ ନେଉଟାଇ ମୁଁ ଶୋଇଲି । ମନ୍ଦିର ସାମ୍ନା ଦେଇ ସିନେମାର ପ୍ରଚାର କରିକରି

ଗାଡ଼ିଟିଏ ଯାଉଛି । ପାଟି, ଗୋଳମାଳ, ବାଜା···ଫେର କିଛି ସମୟ ପରେ ସବୁ ଗୋଲମାଲ ବନ୍ଦ···ଆଗ ପର ଗୁଣ୍ଡୁଚିମୂଷା ଶବ୍ଦ କରୁଛନ୍ତି । ସାମନାରେ ଔଷଧ ଦୋକାନରୁ କେହି ମହିଳା ଜଣେ ଔଷଧ କିଣୁଛନ୍ତି । ପଛରୁ ଦେଖି ମୁଁ ମନେକଲି ବୋଧହୁଏ ସେ ଗଙ୍ଗୀ । ପରେ ଜାଣିଲି ସେ ଗଙ୍ଗୀ ନୁହେଁ । ଫେରେ ମୁଁ ଚିତ୍ ହୋଇ ଶୋଇ ଗୃହ ଉପରେ ହାତ ରଖିନେଲି । ଗଙ୍ଗୀର ରଙ୍ଗଢ଼ଙ୍ଗ ସବୁ ମୋର ମନେ ପଡ଼ିଲା । ରଙ୍ଗ ତ ପୁରାପୁରି କଳା । ତେବେ ବି ତାର ଶରୀରର ଗଠଣ, ଚାଲିବାର ଠାଣି, ଖୁସିବାସିଆ କଥା କହିବାର ଢ଼ଙ୍ଗ···ସବୁ ନେଇ ସେ ଅପୂର୍ବ ଅଟେ । ଦେଖିଲା-ବାଲାର ମନ ମୁଗ୍ଧକାରୀ ଛାଇଳା ଛବିଳ · ଛଟକ ସେ । ନହେଲେ ଦୋକାନ ଆଗରେ ମିଠା ଦରର ବୋର୍ଡ଼ ଲଗାଇ, ଭିତରେ ମଦ ବିକିବାର ସାହସ କୋଉଠୁଁ ଆସନ୍ତା । କାଲି ରାତିରେ ଅନ୍ଧାର ହେଲାପରେ ଗୁଡ଼ଲ ପୁଡ଼ା ଓ ଦୁଇଟି ଟଙ୍କା ମୁଁ ତା ହାତକୁ ଦେଇଦେଲି । ହସି ଦେଇ ସେ କହିଲା "ପଣ୍ଡିତ ମହାଶୟ, ତୁମେ କାହିଁକି ତୁମର ଖାଲବୁହା ରୋଜଗାର ମତେ ଦେଇ ଯାଉଛ ! ମୁଁ ତୁମକୁ ପ୍ରତିଦାନରେ କଣ ଦେଇ ପାରିବି ? ତୁମେ ତ ସେ କୌଣସି କାମ ପାଇଁ ପ୍ରସ୍ତୁତ ହୋଇପାରୁନାହିଁ । ଗିଲାସେ ପିଇବାକୁ କହିଲେ ତ ତୁମେ ଚନ୍ଦ୍ରାରେ ପଡ଼ିଯାଅ । ମୋ ହାତରନ୍ଧା ଖାଇବା କଥା ଶୁଣିଲେ ତ ତୁମେ ପଳେଇ ଯାଅ ।" ଏହି କଥା କହୁ କହୁ ସେ ଗୁଡ଼ଲ ପୁଡ଼ାଟି ଉଠାଇ କଣ ରଖି ନେଲା ଏବଂ ଦୁଇଟି ଟଙ୍କା ଲାନରେ ବାନ୍ଧିନେଲା । ସେଇଠୁ ସେ ଅଳସ ଭାଙ୍ଗିଲା । ଅଳସ ଭାଙ୍ଗିଲାବେଳେ ତାର ଲୁଗା ଖସିଗଲା । ମୋର ରକ୍ତ ଗରମ ହୋଇଗଲା । ପିଲାଦିନେ ମୁଁ ସ୍କୁଲ୍‌ରେ 'ମଳୁଚଣ୍ଡ' କାବ୍ୟ ପଢ଼ିଥିଲି । ସେଥିରେ ଉଚ୍ଛୃଙ୍ଖଳ ନାୟିକା ବହୁଧନର ବର୍ଣ୍ଣନାରେ ମୋର ଗୋଟିଏ ପଦ ମନେଅଛି "ସ୍ତ୍ରୀ ଇତ୍‌ଭୂଷଣ ବାହୁମୂଳରୁଚତୋ ··" ଗଙ୍ଗୀ ଯେତେବେଳେ ଅଳସ ଭାଙ୍ଗିଲା ସେତେବେଳେ ହଠାତ୍ ମୋର ସେଇ ପଦଟି ମନେ ପଡ଼ିଲା । ପୁଣି ଚୁପ୍‌ଚାପ୍ ମୁଁ ସେଠାରୁ ଚାଲିଗଲି ।

ଛାଡ଼, ସେ ସବୁ କଥା ବର୍ତ୍ତମାନ ମୋର କଣ ହେବ ? ଦିନ ତ ବହି ଚାଲିଛି । ମନେ ହେଉଛି ଆଜି ଭୋକରେ ରହିବାକୁ ପଡ଼ିବ । କେହି ଯଜମାନ୍ ମିଳିବାକୁ ନାହାନ୍ତି । ଏଥିପାଇଁ ବଡ଼ମାନେ କହନ୍ତି "କିଛି ସଞ୍ଚୟ କରି ରଖ ।" କିନ୍ତୁ ମୋର ରୋଜଗାର ଏପରି ନୁହେଁ ଯେ ସେଥିରୁ କିଛି ସଞ୍ଚୟ ହୋଇପାରିବ···ଏହି ସଂସାରରେ ଶନିଦାନ, ମୃତ୍ୟୁଦାନ ନେଇ, ଶବ ସତ୍କାର କରାଇ କେହି ଗୋଟିଏ ପଇସା ବି ସଞ୍ଚୟ କରି ନ ଥିବ ।

ମୁଁ ବାଜି ମାରି କରି କହିପାରେ । ଉଦାହରଣ ଦେବାକୁ ବି ଏପରି ଗୋଟିଏ ଲୋକ ମିଳିବ ନାହିଁ । ଅସଲରେ ଏ ପଇସା ବି ସେମିତି ପଇସା । ଆଖି ଆଗକୁ ଆସୁ ଆସୁ କୁଆଡ଼େ ଉଡ଼ିଯାଏ । ପୁଣି ମୋର ଧ୍ୟାନ ନିଜ ଦେହେରା ଉପରେ ପଡ଼ିଲା···ଦାଢ଼ୀ ତଳେ ହାତ ଦେଇ ମୁଁ ସାମନା ଆଡ଼େ ଅନାଇ ଶୋଇ ରହିଲି । ସାତ ଆଠ ବର୍ଷ ତଳର

ମୋର ଚେହେରା ମନେ ପକାଇବାକୁ ଚେଷ୍ଟା କଲି କେତେଥର । ସେତେବେଳେ ମୋର ରଙ୍ଗ ଶ୍ୟାମଳ ଥିଲା. ମୋର ଏପର୍ଯ୍ୟନ୍ତ ମନେ ଅଛି । ଆଖିରେ ତେଜ ଥିଲା, ମନରେ ଉଲ୍ଲାସ ଥିଲା । ଆଜିପରି ସେତେବେଳେ ଆଖି ତଳେ ଏ କଳା ଦାଗ ନଥିଲା । ଆଖିର ଚମକ ତ, ଗ୍ରୁଚ୍ଛ···ଏଇ ଦାନ ଗ୍ରହଣ କରିବାର ବର୍ଷକ ଭିତରେ ସବୁ ଗ୍ଭଲିଗଲା । ବର୍ତ୍ତମାନ ତ ମୋର ଶରୀରର ରଙ୍ଗ କଳା ବି ନୁହେଁ, ତାଠାରୁ ଆହୁରି କିଛି ଅଦ୍ଭୁତ । ବେଳେବେଳେ ମୁଁ ନିଜକୁ ଦେଖି ଚମକିପଡ଼େ । କଞ୍ଚା ଯାଗୁଆ କାଠ ଜଳାଇଲେ ଯେପରି ରଙ୍ଗ ହୁଏ, ସେଇପରି ମୋ ଶରୀରର ରଙ୍ଗ······

ଏ ପେରିଶାସ୍ତ୍ରୀର ସ୍ୱଭାବ ମୁଁ ବୁଝିପାରୁ ନାହିଁ । ଜଣାପଡ଼ୁଛି ସେ ମୋ ଉପରେ ବହୁତ ଚିଡ଼ି ଯାଇଛି । ଏପରି ଗ୍ରିକିରି ମତେ କେବେ ହେଲେ ଗାଳି ଦେଇ ନାହିଁ । ତେବେ ବି ମୁଁ ଯାହା କରିଥିଲି ଭୁଲ ଥିଲା···ବାସ୍ତବରେ ଗହ୍ମର ଦାନ ପେରିଶାସ୍ତ୍ରୀଙ୍କୁ ମିଳିଲା ବା ନରସିଂହମ୍‌କୁ ମିଳିଲା । ସେଥିରେ ମୋର କଣ ଯାଏଆସେ ? ମୋ ଉଣ୍ଡରେ ଶନି ମହାରାଜ ବିରାଜମାନ ଥିଲେ । ସେଇଥିପାଇଁ ମୋ ପାଟିରୁ ଏପରି କଥା ବାହାରିଲା । ମୁଁ କେବେହେଲେ କାହାରି କଥାରେ ଦଖଲ ଦିଏ ନାହିଁ । ସେଦିନ ଏପରି କାହିଁକି ହେଲା, ମୁଁ ବୁଝି ପାରୁନାହିଁ । ସ୍ୱା ଅଗରୁ କେଜାଣି କେତେ ଅଦ୍ଭୁତ୍ ଅଦ୍ଭୁତ କଥା ଦେଖିଛି, ଶୁଣିଛି । ମୁଁ କଣ ଜାଣିନାହିଁ ସେଦିନ ଅନ୍ଧକାରର ସୁଯୋଗ ନେଇ ରାମମୂର୍ତ୍ତି ପଗଡ଼ି ବାନ୍ଧି ତାଡ଼ି ଦୋକାନରେ ଯାଇ ଲୁଚି-ଲୁଚି ମଦ ପିଉଥିଲା । କଣ ସେଦିନ ବିଶ୍ୱନାଥମ୍‌କୁ ପଛପଟେ ଥିବା ସେ ଗଳିରେ ଗଙ୍ଗୀର ହାତ ଧରି ଟାହି-ଟାପରା କରୁଥିବାର ମୁଁ ଦେଖି ନ ଥିଲି !! ଏତିକି କାହିଁକି ? ମୁଁ ତ ଜାଣିଛି ପେରିଶାସ୍ତ୍ରୀ କେବେ କେବେ ସକାଳେ ଇଡ଼ଲି ମଗାଇ ଖାଏ । ସେ ଭେଙ୍କଟଶ୍ୟାମ୍‌କୁ ମୁଁ କେତେଥର ଦେଖିଛି ଲୁଚି ଲୁଚି ବିଡ଼ି ଟାଣିବାର ।······କିନ୍ତୁ ଏସବୁ କଥାରେ ମୋର କଣ ଅଛି ? ପ୍ରକୃତରେ ଶନି ମହାରାଜ ମତେ ଏତେ ବାଗୁଲ କରିଦେଲେ । ମୋର ଏପରି କଥା କହିବା ଉଚିତ ହେଇନାହିଁ ।

ନା—ଯାହା ହବାର ଥିଲା ହୋଇଗଲା । ବର୍ତ୍ତମାନ ଖାଇବା କଥା ଚିନ୍ତା କରିବାକୁ ପଡ଼ିବ । ପଲକହୀନ ଆଖିରେ ମୁଁ ସେମାନଙ୍କୁ ଅନାଇ ଶୋଇ ରହିଛି । ବଡ଼ ଚଢ଼େଇଟି କୁଆଡ଼େ ଉଡ଼ି ଯାଉଛି ଓ ମୁହଁରେ ଦାନା ଧରି ଫେରି ଆସୁଛି । ଛୋଟ ଚଢ଼େଇଗୁଡ଼ିକ ଅଣ୍ଟା ଖୋଲି ମା ମୁହଁରୁ ଆହାର ନେଉଛନ୍ତି । କାନ୍ଥରେ ଗୋଟିଏ ବଡ଼ ଝିଟିପିଟି ନିଶ୍ଚଳ ହୋଇ ପଡ଼ି ରହିଛି । ଯେମିତି ତା ପାଖରେ ପୋକଟିଏ ପହଞ୍ଚି ଯାଉଛି ଗ୍ରେଉଙ୍କ ପରି ଥିରି ଥିରି ତା ଉପରେ ଝାମ୍ପି ପଡ଼ି ହଡ଼ପ କରି ନେଉଛି ।

ଟାଣ ଖରା ମୋ ଗୋଡ଼ ଉପରେ ପଡ଼ୁଛି । ମୁଁ ଝଟ୍ କରି ଆଖି ବନ୍ଦ କରିନେଲି । ତଥାପି ମତେ ଭୀଷଣ ଗରମ ଲାଗୁଛି । ପାଖରେ କିଏ ଯାଉଥିବାର ଜାଣି ଆଖି ଖୋଲି ତାକୁ ସମୟ ପଗ୍ଭରିଲି । ଏଗାରଟା ବାଜି ସାରିଲାଣି । ଦୁର୍ବଳତା ଯୋଗୁ ମୋ ଆଖି ମାଡ଼ି ହୋଇ ପଡ଼ୁଛି । ନିଦ ମାଡ଼ୁଛି, ଅଚ୍ଛା, ଏ ମଧ୍ୟ ଭଲ ହେଲା । କାଲି ସକାଳଯାଏ

ଯଦି ଏହିପରି ଗଭୀର ନଦୀରେ ଶୋଇ ରହେ ତ କେଡ଼େ ଭଲ ହବ । କାଲି ଗୋଟିଏ ଅଫିସରଙ୍କ ଘରେ ପୂର୍ଣ୍ଣାହୁତି ଅଛି । ଅତି କମ୍‌ରେ ସେଠେ ଖଣ୍ଡେ ବହଳ ଦୁଇଟଙ୍କା ନଗଦ ଏବଂ ଭୋଜନ···ସେତେବେଳ ପର୍ଯ୍ୟନ୍ତ ବୋଧହୁଏ ଭୋକିଲା ପେଟରେ ରହିବାକୁ ପଡ଼ିବ । କିନ୍ତୁ ମୋ ପାଇଁ ଏ କୋଉ ନୂଆ କଥା ? ଏହା ଆଗରୁ କେତେ କେତେଥର ମତେ ଏହିପରି ଭୋକରେ ରହିବାକୁ ପଡ଼ିଛି ।

ନିଦ ଭାଙ୍ଗିଲାବେଳକୁ ସୂର୍ଯ୍ୟାସ୍ତ ହେଉଥିଲା । ମୁଁ ଉଠି ବସି ପଡ଼ିଲି । ଚୁଟୁକି ବଜାଇ ହାଇ ମାରି ଗାମୁଛା ଝାଡ଼ିଝୁଡ଼ି କାନ୍ଧ ଉପରେ ପକାଇଲି ଏବଂ ମନ୍ଦିରର ପାହାଚ ଦେଇ ତଳ ରାସ୍ତା ଉପରକୁ ଓହ୍ଲାଇଗଲି ।

ଶୀତଳ ପବନ ବହୁଛି । ସମୁଦ୍ର ଉପରେ ଦେଇ ଆସୁଥିବା ସେ ପବନ ବଡ଼ ଭଲ ଲାଗୁଥିଲା । ଭଗବାନ୍ ସୂର୍ଯ୍ୟ ଅସ୍ତ ହେଉଛନ୍ତି । ମୁଁ ସେଇ ଆଡ଼କୁ ଚାହିଁ କହିଲି "ଭଗବାନ୍, କାଲି ପୁଣି ଶୀଘ୍ର ଆସିଯିବ ।"

ତାପରେ ମୁଁ ଆସ୍ତେ ଆସ୍ତେ ନାଳ ଆଡ଼କୁ ଗଲି । ଦୁଇ ପାଦ ପାଣି ଭିତରକୁ ପଶି-ଯାଇ ଆକାଶ ଆଡ଼େ ଚାହିଁ ରହିଲି । ଅସ୍ତଗାମୀ ସୂର୍ଯ୍ୟର କିରଣରେ ପାଣିର ଉପର ଭାଗ ନାଲି କାଗଜ ପରି ଦିଶୁଛି । ନାଳ କୂଳରେ ଥିବା ଗଛରେ ପକ୍ଷୀମାନେ ଚିଇଁ ଚିଇଁ ରାବୁଛନ୍ତି । ମୋର ଗୋଡ଼ ପାଖର ପାଣିରେ ହଲଚଲ ବନ୍ଦ ହୋଇଯିବାରୁ ମୁଁ ମୋର ପ୍ରତିବିମ୍ବ ଦେଖିଲି । ଦାଢ଼ି ଖୁବ୍ ବଢ଼ି ଯାଇଛି । ବାସ୍, ତାଠାରୁ ଆଗକୁ ଆଉ ନିଜର ଚେହେରା ଦେଖିବାକୁ ମୋର ସାହସ ହେଲା ନାହିଁ । ପାଣିକୁ ତହଲାଇ ଆଉ ଟିକେ ଆଗକୁ ବଢ଼ିଗଲି । ଥଣ୍ଡା ପାଣି ଦେହରେ ବାଜିବାରୁ କିଛି ଆରାମ ଲାଗିଲା । ଅନ୍ଧାର ହେବାଯାଏ ମୁଁ ସେଇ ପାଣିରେ ଗାଧୋଇଲି ।

ତା ପରେ ଗାମୁଛାରେ ପୋଛିପାଛି ହୋଇ ନାଳ କୂଳେ ଅନେକ ସମୟ ପର୍ଯ୍ୟନ୍ତ ବସି ରହିଲି । ମୁଁ ଯେତେବେଳେ ସେଠୁ ଯିବାକୁ ଲାଗିଲି ସେତେବେଳକୁ ବେଶ୍ ରାତି ହୋଇ ଯାଇଥାଏ । ବାହାରେ କିଛି ସୋର ଶବ୍ଦ ନାହିଁ ।

ଧୀରେ ଧୀରେ ଯାଇ ମଦ ଦୋକାନ ଆଗରେ ମୁଁ ହଠାତ୍ ରୋକିଗଲି । ଯେପରିକି ମୋ ଗୋଡ଼କୁ କିଏ ଶିକୁଳି ଲଗାଇ ନେଇଛି । ଗଙ୍ଗୀ ଦ୍ୱାର ପାଖରେ ଛିଡ଼ା ହୋଇଛି, ରହି ରହି କରି ଭିଡ଼ ମୋଡ଼ି ହେଉଛି । ମୋ ଆଡ଼େ ଅନାଇ ସେ ମନ୍ଦ ଚାହାଣିରେ ପାଖକୁ ଡାକିଲା । "ପଣ୍ଡିତ ମହାଶୟ, ଏଆଡ଼େ ଟିକେ ଆସ !" ମୁଁ ଧୀରେ ଧୀରେ ତା ପାଖରେ ପହଞ୍ଚିଲି । ଲଣ୍ଠନର ଆଲୁଅରେ ମୁଁ ଗଙ୍ଗାକୁ ଦେଖିଲି । ସେ ଖଣ୍ଡିଏ ପତଳା ଧଳା ଶାଢ଼ୀ ଏବଂ ଧଳା ବ୍ଲାଉଜ ପିନ୍ଧିଛି, ବ୍ଲାଉଜ ଭିତରେ ପିନ୍ଧିଥିବା ବ୍ରେଷ୍ଟ-ଟାଇଟ୍ ମଧ୍ୟ ଫୁଟି କରି ଦିଶୁଛି । ସେ ହସିଲେ ତାର ଧଳା ଦାନ୍ତଗୁଡ଼ିକ ଝଟକୁଛି ।

ସେ ହସି ହସି ପଚାରିଲା "କଣ ବାବୁ, ଗାଧୋଇ କରି ଘରକୁ ଯାଉଛ ? ଚେହେରାରୁ ଜଣାପଡ଼ୁଛି ଆଜି ଖାଇନ । ମୋ ଘରେ ରନ୍ଧା ସରିଲାଣି····· ଖାଇବ ?"

ମୁଁ ଭିତରେ ଗୋଡ଼ ରଖୁ ରଖୁ କହିଲି "ନା ! ମୁଁ ଖାଇବି ନାହିଁ । ତୁ ଖାଇନେ···

ମୁଁ 'ମମ' (ମୋର) କହି ସଙ୍କଳ୍ପ କରାଇ ନେବ ।"

"ପଣ୍ଡିତ ମହାଶୟ, ମୁଁ ତୁମ କଥା କିଛି ବୁଝି ପାରୁନାହିଁ···ତେବେ ବି ବସ ମ, କିଛି ସମୟ···ଗରାଖମାନେ ବର୍ତ୍ତମାନ ଆସିବେ ନାହିଁ···ସେତେବେଳକୁ ବେଶ୍ ରାତି ହୋଇଯିବ" କହି ଗଙ୍ଗୀ ଶନା! ମାଟିର ଥାଳରେ ଖାଇବା ବାଢ଼ି ମୋ ଆଗରେ ବସି ଖାଇବାକୁ ଲାଗିଲା । ରହି ରହି କରି ମୁଁ ତା ଆଡ଼କୁ ଅନାଇ ଥାଏ ।

ହଠାତ୍ ଗଙ୍ଗୀ ହସି ପକାଇଲା । "ଏତେ ଥର ମତେ ଗୁଣ୍ଡୁଳ ଆଣି ଦେଲଣି, ମୋ ଠାରୁ କିଛି ନେଉନା । ଗିଲାସ ଛୁଇଁନା ଏ ପର୍ଯ୍ୟନ୍ତ । ଭୁଲରେ ଯଦି ମୋ ହାତ ତୁମ ଦେହରେ କେବେ ବାଜିଯାଏ ତ, ବିଛା ମାରିଲା ପରି ଖଣ୍ଡେ ଦୂରକୁ ଦୌଡ଼ି ଯାଅ··· ଆଜି ମୋ କଥା ଶୁଣ···ମୁଁ ଜାଣିଛି ତୁମକୁ ଭୋକ କରୁଛି···ଏଠି ଆଉ କେହି ନାହାନ୍ତି···ଗଣ୍ଡିଏ ଖାଇ ନିଅ···ମାଛ ତରକାରୀ ଯଦି ଖାଇବାକୁ ଚାହୁଁନା ତ ନ ଖା···ଖାଲି ରସୁଣ ଚଟଣି···ବଡ଼ ମଜା ଲାଗିବ ।"

ମୁଁ ଚମକି ପଡ଼ିଲି ଏବଂ ସେଠୁ ଚାଲି ଗଲି । ପଛରୁ ଗଙ୍ଗୀର ଠୋ ଠୋ ହସ ବହୁତ ଦୂର ଯାଏ ମତେ ଶୁଣା ଯାଉଥିଲା ।

ତା ପରଦିନ ମୁଁ ସେହି ଅଫିସର ଘରେ ପହଞ୍ଚିଲି । ସେ ବହୁତ ବଡ଼ କୋଠୀ । ବାରଣ୍ଡାରେ ଲୋକ ରୁଣ୍ଡ ହୋଇଛନ୍ତି । ଭିତରେ ହୋମ ହେଉଛି । ପେରିଶାସ୍ତ୍ରୀ ଜୋର୍ ଗଳାରେ ମନ୍ତ୍ର ପାଠ କରୁଛି । ଯଜମାନ ବଡ଼ ଘିଅ ଘଡ଼ିଟିରୁ ଘିଅ ପଣ ଦ୍ୱାରା 'ସ୍ୱାହା' ଉଚ୍ଚାରଣ କରିବା ସାଙ୍ଗେ ସାଙ୍ଗେ ହୋମ କୁଣ୍ଡରେ ଢାଳୁଛନ୍ତି ।

ସେଠି ମୋ ସାଙ୍ଗରେ କେହି କଥାବାର୍ତ୍ତା କଲେନାହିଁ । ବାରଣ୍ଡାରେ ଗୋଟିଏ ଖୁଣ୍ଟକୁ ଆଉଜି ମୁଁ ବସିଗଲି । ବିଶ୍ୱନାଥମ ପଇଡାରେ ପିଠି କୁଣ୍ଡେଇ ହୋଇ ସାମନାରେ ବସିଛି । ନରସିଂହମ କବାଟ ପାଖରେ ବସି ପେରିଶାସ୍ତ୍ରୀଙ୍କର ସ୍ୱରରେ ସ୍ୱର ମିଳେଇ ମନ୍ତ୍ର ପଢ଼ୁଛି । ରାମମୂର୍ତ୍ତି ଆଦି ସବୁ ଏକାଠି ହୋଇ କାନ୍ଥ ପାଖରେ ଆରାମରେ ବସିଛନ୍ତି ।

ତାଙ୍କ ପାଖରେ ବସିଥିବା ବ୍ୟକ୍ତି ଉପରେ ମୋର ଆଖି ପଡ଼ିଲା । ପଚାଶି ବର୍ଷ ବୟସ ହବ, ଶ୍ୟାମଳ ବର୍ଣ୍ଣ, ଦାଢ଼ି ବଢ଼ି ଯାଇଛି, ପୁରୁଣା ପୋଇହାଁ ଲୁଗା ଖଣ୍ଡେ ପିନ୍ଧି ବସିଛି । ଆଖି ବନ୍ଦ କରି ସେ କିଛି ଭାବୁଛି ।

ମୋର ଟିକିଏ ସନ୍ଦେହ ହେଲା, ତେବେ ବି ମୁଁ ତା' ବିଷୟରେ ବେଶୀ କିଛି ଭାବିଲି ନାହିଁ । ହାତ ଆଡ଼କୁ ଅନାଇ ବସି ରହିଲି ।

କେତେ ସମୟ ବିତିଗଲା । ପୂର୍ଣ୍ଣାହୁତି ସମାପ୍ତ ହେଲା । ଏବେ ପାଳି କରି ଦାନ ଆରମ୍ଭ ହେଲା । ବିଶ୍ୱନାଥମ୍, ନରସିଂହମ୍, ରାମମୂର୍ତ୍ତି ଆଉ ସବୁ ପାଳି ପାଳି କରି ଭିତରକୁ ଯାଉଛନ୍ତି ଏବଂ ଦାନ ଗ୍ରହଣ କରି ପୁଟୁଳି ବାନ୍ଧି ଆସି ବସି ଯାଉଛନ୍ତି ।

ମୋର ଅନୁମାନ ଠିକ୍ ହେଲା । "ରମେଶମ୍, ଜଲ୍‌ଦି ଆ !" ପେରିଶାସ୍ତ୍ରୀ ଡାକିଲା । ସେ ନୂଆ ଲୋକଟି ଶୀଘ୍ର ଉଠି ଭିତରକୁ ଚାଲିଗଲା । ମୁଁ ବି ଯାଇ କରି ଦେଖିଲି ସେ

ପିଣ୍ଡି ଉପରେ ଗୋଡ଼ ରଖି ବସିଛୁ । ପାଦ ଧୋଇବାର ବନ୍ଦୋବସ୍ତ ହେଉଛୁ ।

"ପେରଶାସ୍ତ୍ରୀ ମହାଶୟ, ଏ ଆପଣଙ୍କ ପକ୍ଷରେ ଉଚତ କଥା ହୁଉ ନାହିଁ । ପରହନ ତ ଆପଣ ମତେ କହୁଥିଲେ ।" ମୁଁ ପାଟି କରି କହିଲି ।

ପେରଶାସ୍ତ୍ରୀ ମୋ ଆଡ଼େ କଟମଟ କରି ଗୁହିଁ କହିଲ, "ଉଚତ ଅନୁଚତ କଣ ମୁଁ ତୋଠାରୁ ଶିଖିବ ?···କାଲିଠୁଁ ପୂଜା ଆରମ୍ଭ କରି ପାରିଲୁ······ବର୍ତ୍ତମାନ ବାହାରି ଯା ।"

ମୁଁ ସମ୍ଭାଳ ହୋଇ ଅଫିସରଙ୍କୁ କହିଲ, "ଦେଖନ୍ତୁ ବାବୁ, ମତେ ଏହି ଭଦ୍ରଲୋକ ପରହନଠାରୁ କହି ରଖିଛନ୍ତି, ଆଉ ବର୍ତ୍ତମାନ ନୂଆ ଲୋକଟିଏ ବସାଇ ଦାନ ଦିଆଉଛନ୍ତି । ଆପଣ ବିଗ୍ଗର କରନ୍ତୁ ।"

ସେ ବିରକ୍ତ ହୋଇ ପେରଶାସ୍ତ୍ରୀ ଆଡ଼େ ଗୁହିଁ ପଗ୍ଗରଲେ, "ଏ କଣ ଗୋଳମାଳ ।" ପେରଶାସ୍ତ୍ରୀ ଏ ପ୍ରଶ୍ନର କଛ ଉତ୍ତର ଦେଲେ ନାହିଁ । "ମା, ଜଲ୍ଦ କରନ୍ତୁ, ପାଦ ପ୍ରକ୍ଷାଳନ ଆରମ୍ଭ କରନ୍ତୁ, ଡେରି ହୋଇଯାଉଛୁ" କହି ସେ ତରତର କଲ । ଯଜମାନ କଛ କହି ପାରିଲେ ନାହିଁ । ସ୍ତ୍ରୀ ପାଣି ହାତକୁ ଦେଲେ । ସେ ସେଥିରେ ପାଦ ଧୋଇ ପଦୋଦକ ନଜ ମୁଣ୍ଡରେ ମାରଲେ । ବିଧି ମୁତାବକ ଦାନ ସମାପ୍ତ ହେଲ । ମୁଁ ହତାଶ ହୋଇ ଛୁଡ଼ା ଛୁଡ଼ା ସବୁ ଦେଖିଲ । ଗୁଉଳ, ଘିଅ···ନଗଦ ଟଙ୍କା ହୋଇଗଲ···ତାପରେ ମୃତ୍ୟୁଞ୍ଜୟ ଦାନ ମଧ ଡାକୁଇ ଦିଆଗଲ । ମୋର ପେଟ ଜଳ ଉଠିଲ । "ଏତେ ବଡ଼ ଅନ୍ୟାୟ; ମୁଁ କଣ ତୁମର କ୍ଷତ କରିଥିଲ ?" ମୁଁ ପାଟି କରି ଉଠିଲ । କନ୍ତୁ କଛ ଲଭ ହେଲ ନାହିଁ । ଗୁଉଳ, କପା, ଲୁହା, ନଗଦ ଟଙ୍କା, ମୃତ୍ୟୁଞ୍ଜୟ ଦାନ ମଧ ବିଧିମତେ ସମାପ୍ତ ହେଲ ।

ଯାହା ହବାର ହୋଇଗଲ । ବର୍ତ୍ତମାନ ଅନ୍ତ କମ୍‌ରେ ଆଜ ପାଇଁ ଖାଇବା ମିଳଗଲେ ବହୁତ ହେଲ···ଏହି ଭରସାରେ ଖୁଣ୍ଟକୁ ଆଉଜ ବସି ରହିଲ । ସ୍ୟାପରେ ମୋର ଦୃଷ୍ଟି ଗୁଉଳ ପୁଟୁଳି ବାନ୍ଧୁଥିବା ସେଇ ଲୋକଟି ଉପରେ ରହିଲ । ସେ ମଧ ମୋ ଆଖିରେ ଈର୍ଷା, ଦ୍ୱେଷ, ରାଗ ଦେଖି ପାରଥିବ । ସେଥିପାଇଁ ସେ ମୋ ଆଡ଼େ ଆଉ ଥରେ ବି ଅଖି ଉଠାଇ ଅନାଇଲ ନାହିଁ ।

ମୁଁ ମନେ ମନେ ଭାବୁଥିଲ, 'ଏ ଅପଦାର୍ଥ କୋଉଠୁ ଆସି ମଲ, ସ୍ୟାର କଣ ଯାଉଥିଲ, ଏଇ ଶ୍ରାଦ୍ଧ ଦାନ ଗ୍ରହଣ କରିବାକୁ ଆସିଲ । ଦେଖିଲେ ପାଠୁଆ ମନେ ହଉଛୁ ।' ଏତକବେଳେ ପେରଶାସ୍ତ୍ରୀ ବାରଣ୍ଡାକୁ ଆସି ପାଟିକଲ "ଆରେ, ତୁ ଏପର୍ଯ୍ୟନ୍ତ ସେଇଠି ବସିଛୁ ? ଗୁଲଯିବା ପାଇଁ ତ ମୁଁ ପରିଷ୍କାର କହି ଦେଇଥିଲ । କଣ ତୋ ମୁଣ୍ଡରେ ପଶିଲ ନାହିଁ । ଯା, ବାହାର ଏଠୁ ।"

ମୁଁ ବଡ଼ ଦୁର୍ବଳ ସ୍ୱରରେ "ଆଜକାର ଖାଇବା ଗଣ୍ଡାକ ଅନ୍ତତଃ" କହୁ କହୁ ସେ ରାଗି ନିଆଁ ବାଣ ହୋଇ କହିବାକୁ ଲଗିଲ, "ନାହିଁ, ନାହିଁ ଏ ସବୁ କଛ ଏଠି ଚଳବ ନାହିଁ । ଏଠୁ ବାହାର ଯା ।"

"ମୁଁ ଏପରି କଣ ଅପରାଧ କରିଛି ?'

"ଆଉ କିଛି କଥା କହନା ! ଫେରେ ମୋ ଆଗକୁ କେବେ ଆସିବୁ ନାହିଁ, ବୁଝିଲୁ ?"

ମୁଁ ଅଫିସରଙ୍କଆଡ଼କୁ ବଡ଼ କରୁଣଭରା ଦୃଷ୍ଟିରେ ଚାହିଁଲି । ପେରିଶାସ୍ତ୍ରୀ ସାଙ୍ଗେ ସାଙ୍ଗେ ବୁଝି ନେଲେ ଏବଂ କହିଲେ "ବାବୁ, ଆପଣ ମୋ କଥା ଶୁଣନ୍ତୁ । ଏସବୁ ବିଷୟରେ ଆପଣଙ୍କର କିଛି ଅନୁଭୂତି ନାହିଁ । ଏପରି ଲୋକଙ୍କୁ ଯଦି ଆପଣ ଟିକେ ଆଶ୍ୱାସନା ଦେବେ ତ ସେମାନେ ମାଛି ପରି ଆପଣଙ୍କୁ ହଇରାଣ କରିବେ । ଆପଣଙ୍କ ଜୀବନ ଖାଇଯିବେ ।" ଏ କଥା ଶୁଣି ଅଫିସର ସାହେବ ବ୍ୟତିବ୍ୟସ୍ତ ହୋଇ ଘର ଭିତରକୁ ଚାଲିଗଲେ ।

ଆଉ ମୁଁ ସମ୍ଭାଳିପାରିଲି ନାହିଁ । "ଠିକ୍ ଅଛି···ମୋର ଏ ନିରାଶା ଆଜି ବେକାର ଯିବ ନାହିଁ । ପେରିଶାସ୍ତ୍ରୀ, ତୁ ଭାବୁଛୁ ଗୋଟିଏ ଗରିବ ବ୍ରାହ୍ମଣର ତଣ୍ଟି ଚପି କରି ଆରାମରେ ରହିପାରିବୁ ? ନା, ଏ ପାପର ଫଳ ନିଶ୍ଚୟ ତୁ ପାଇବୁ । ତୋର ବି ପିଲାଛୁଆ ଅଛନ୍ତି । ଟିକେ ହୁସିଆର ହୋଇ ଚାଲିବୁ ।" ଏହିପରି କିଛି କ୍ରୋଧଭରା ଶବ୍ଦ କହି କହି ମୁଁ ପିଠି ଦେଇ ତଳକୁ ଯାଉଥିଲି, ପଛରୁ ମତେ ପେରିଶାସ୍ତ୍ରୀର କଥା ଶୁଣାଯାଉଥିଲା । "ତୁ ଭାରି କାହୁଆ ବ୍ରାହ୍ମଣ । ରାତି ହଉ ହଉ ତାଡ଼ି ଦୋକାନରେ ଯାଇ ପଶୁଛି । ନିଜକୁ ଭାରି ବଡ଼ ମନେ କରୁଛି । ଯା—ଯା ।"

ତାତଲା ତହ ତହ ସଡ଼କ ଉପରେ ମୁଁ ଯିବାକୁ ଲାଗିଲି । ମୁଣ୍ଡ ଉପରେ ସୂର୍ଯ୍ୟ ଅଗ୍ନି ବର୍ଷା କଲା ପରି ମନେ ହଉଛି । ପବନ ମୋଟେ ନାହିଁ । ପେଟରେ ବି ଜଠରାଗ୍ନି ହାହା ଜଳୁଛି । ମୋଡ଼ ଉପରେ ପାଦରେ କଣ୍ଟା ଫୁଟିଲା ପରି ମନେ ହେଲା । ଯନ୍ତ୍ରଣାରେ ଛଟପଟ ହୋଇ ଗୋଟିଏ ହାତରେ ଜାନୁରେ ଭରା ଦେଇ ଆର ହାତରେ ପାଦରେ ଫୁଟି ଯାଇଥିବା କଣ୍ଟକଟିକୁ କାଢ଼ିଲି—ପୁରୁଣା କଣ୍ଟା, ଖୁବ୍ ଜଙ୍କ ଲାଗିଛି । କଣ୍ଟା କାଢ଼ୁ କାଢ଼ୁ ତା ସାଙ୍ଗରେ ରକ୍ତ ବି ନେଣ୍ ବାହାରିଲା । କଣ୍ଟାଟି ହାତରେ ଧରି ଯେକୌଣସି ମତେ ଲେଙ୍ଗେଇ ଲେଙ୍ଗେଇ ଯାଇ ମନ୍ଦିରର ଚବୁତରା ଉପରେ ପହଞ୍ଚିଲି । ବସିପଡ଼ି କଣ୍ଟାଟିକୁ ଦେଖିବାକୁ ଲାଗିଲି । ଏତେ ଦିନ ଧରି ମୁଁ ଷଣ୍ଢ ଦାନଗୁଡ଼ିକରେ ଯେଉଁସବୁ ଲୁହା କଣ୍ଟା ଗ୍ରହଣ କରିଛି, ସେ ସବୁ ଆସି ଗୋଟିଏ କଣ୍ଟାର ଝାଲର ହୋଇ ମୋ ଆଖି ଆଗରେ ଘୂରିଗଲେ ।

ସନ୍ଧ୍ୟା ବେଳକୁ ନିଦ ଭାଙ୍ଗିଲାରୁ ଶରୀରରେ ବଡ଼ ବ୍ୟଥା ଅନୁଭବ କଲି । ଉଠିକରି ଶିଢ଼ି ନେଇ ତଳକୁ ଓହ୍ଲାଇ ଆସି ରାସ୍ତା ଉପରେ କିଛିକ୍ଷଣ ପାଇଁ ଛିଡ଼ାହୋଇ ରହିଲି । ମୋର ଭୟ ହଉଥିଲା ବୋଧହୁଏ ଜ୍ୱର ହୋଇଯିବ । ଏଥିଭିତରେ ମତେ କେବେ ଜ୍ୱର ହୋଇ ନ ଥିଲା । ଏମିତି ତ ଜ୍ୱର ନାଁ ଶୁଣିଲେ ମତେ ଡର ମାଡ଼େ ।

କେବେ ମୁଁ ରେଲ ଷ୍ଟେସନ ପାଖ ଫାଟକ ପାଖରେ ଟଙ୍ଗା ହୋଇଥିବା ଗୋଟିଏ ବୋର୍ଡ ଦେଖିଥିଲି । ସେଥିରେ କେତେଗୁଡ଼ିଏ ବେମାରି ଏବଂ ଔଷଧ ଲେଖା ଥିଲା ।

ଲମ୍ବା ଚୌଡ଼ା ତାଲିକା କାନ୍ଥରେ ଟଙ୍ଗା ହୋଇଥିଲା । ଗୋଟିଏ ବୁଢ଼ା ଲୋକ ସେଠି ନିଶ୍ଚଳ ହୋଇ ବସି ରହିଥାଏ ।

ମୁଁ ଧୀରେ ଧୀରେ ଯାଇ ସେଠି ପହଞ୍ଚିଗଲି । ରାସ୍ତାରେ ମୁଁ ବାରମ୍ବାର ଭଙ୍ଗମୋଡ଼ ହଉଥିଲି । ମତେ କିପରି ଅଖାଡ଼ୁଆ ଅଖାଡ଼ୁଆ ଲାଗୁଥିଲା ।

ଦୁଆର ମୁହଁରେ ଛିଡ଼ାହୋଇ ମୁଁ ଭିତରକୁ ଅନାଇଲି । ଟେବୁଲ୍ ସେ ପଟେ ଚୌକିରେ ସେ ବୁଢ଼ାଟି ଛବି ପରି ନିଶ୍ଚଳ ହୋଇ ବସିଛି । ମତେ ଦେଖି ମଧ୍ୟ ତାର କିଛି ପ୍ରତିକ୍ରିୟା ହେଲା ନାହିଁ । ମୁଁ ଭିତରକୁ ଗଲି । ସେଠି ଆଉ କେହି ନ ଥିଲେ । ମତେ ସାମନାରେ ଦେଖି ତାର ଆଖି ବଡ଼ ବଡ଼ ହୋଇଗଲା । ସେ ମୋଟା ଚଷମାଟିଏ ସୂତା ଦେଇ କାନରେ ଲଟକାଇ ରଖିଥାଏ ।

ମୁଁ ନମସ୍କାର କରି ମୋର କଥା ଶୁଣାଇଲି, "ଡାକ୍ତର ବାବୁ, ଏଇ ଗୋଡ଼ରେ କଣ୍ଟା ଫୁଟି ଯାଇଛି, ଯଙ୍କ ଲାଗିଥିବା କଣ୍ଟା ।"

ସେ ଟିକେ ହଲଚଲ ହୋଇ ଆଶ୍ଚର୍ଯ୍ୟ ହୋଇ ଧୀରେ ଧୀରେ କହିଲା, "ଆଚ୍ଛା ! କଣ୍ଟା ଫୁଟି ଯାଇଛି ? ଯଙ୍କ ଲାଗିଥିବା କଣ୍ଟା ?...ବଡ଼ ବିପଜ୍ଜନକ !" ସେ ବାରମ୍ବାର ଏହିପରି ଆଶ୍ଚର୍ଯ୍ୟ ପ୍ରକଟ କଲା । ତା ପରେ ଭିତର ଆଡ଼କୁ ମୁହଁ କରି ଡାକିଲା, "ଝିଅ ! ଟିକେ ଗରମ ପାଣି ଆଣିଲୁ ।" ତା ପରେ ମୋ ଆଡ଼େ ଅନାଇ ଔଷଧର ଗୋଟିଏ ପୁଡ଼ିଆ ଖୋଲୁ ଖୋଲୁ କହିଲା, "ବାପ୍‌ରେ ! ଯଙ୍କ ଲାଗିଥିବା କଣ୍ଟା ପାଦରେ ଫୁଟିଗଲା । ବଡ଼ ବିପଜ୍ଜନକ କଥା...ଆଗ ପାଦ ଫୁଲିଯିବ, ତା ପରେ ଜ୍ୱର ହବ, ତା ପରେ ସେପଟିକ୍ ହୋଇଯିବ ଏବଂ କେବେ କେବେ ପାଦଟା କାଟିବାକୁ ବି ଦରକାର ପଡ଼ିଯାଏ । ଡେରି କଲେ ଜୀବନ ବି...ହୁସ୍..."କହି ସେ ଶୁଆ ଉଡ଼ିଗଲା ପରି ଅଭିନୟ କଲା ।

ଭିତରୁ ଝିଅଟିଏ ଗରମ ପାଣି ନେଇ ଆସିଲା । ସେ ପାଣି ଗିଲାସଟି ହାତରେ ନେଇ, ପୁଡ଼ିଆରେ ଯେଉଁ ଔଷଧ ଥିଲା ତାକୁ ଖାଇ ଗରମ ପାଣି ଗିଲାସକ ପିଇ ନେଲା । ମୁଁ ଭାବିଥିଲି, ଏ ଔଷଧ ଏବଂ ଗରମ ପାଣି ମୋ ପାଇଁ ମଗାଇଛି । ମୁଁ ହାବା ହୋଇଗଲି । କିଛିକ୍ଷଣ ପାଇଁ ସେ ଆଖି ବନ୍ଦ କରିନେଲା । ଫେରେ ମୋ ଆଡ଼େ ଅନାଇ କହିଲା, "ଆରେ, ଆପଣ ଏପର୍ଯ୍ୟନ୍ତ ଏଇଠି ଅଛନ୍ତି । ପୁରୁଣା କଣ୍ଟା ପାଦରେ ଫୁଟିଲେ ବଡ଼ ବିପଜ୍ଜନକ ହୁଏ । ମୁଁ ତ କହିଥିଲି ଯେ ପାଦ ଯିବାର ବି ଭୟ ଅଛି । ପ୍ରଥମେ ଜୋରରେ ଜ୍ୱର ହବ, ତା ପରେ ଗୋଡ଼ ଫୁଲିଯିବ ।" ସେ ଆହୁରି କିଛି କହିବାକୁ ଯାଉଥିଲା, ମଝିରେ ସେ ଝିଅଟି ଭିତରୁ ଆସି ତାକୁ ଆକଟ କରି କହିଲା "ତୁମେ ଚୁପ୍ ରହ ବାବା ! ତମକୁ ଏଠି କିଏ ବସାଇଛି ? ... ବାବୁ ! ମୋ ବାପା ଗାଁରେ ନାହାନ୍ତି । ପରେ ଆସନ୍ତୁ । ଏଙ୍କୁ ତ କିଛି ଜଣା ନାହିଁ ।"

"ବଞ୍ଚେଇ ଦେଲୁ ଝିଅ ! ଆୟୁଷ୍ମତୀ ହୁଅ" କହି ମୁଁ ସେଠାରୁ ଖସିଗଲି ।

ବହୁତ ସମୟ ଯାଏ ମୁଁ ମନ୍ଦିରର ଚଉତରା ଉପରେ ବସି ରହିଲି । ସଡ଼କରେ

ବେଶ୍ ଭିଡ଼ । ସେ ଭିଡ଼ ଭିତରେ ବି ମୁଁ ସେ ବ୍ୟକ୍ତିଟିକୁ ଚିହ୍ନି ପାରିଲି । ଉଠିପଡ଼ି ଯାଇ ତା କାନ୍ଧରେ ହାତ ମାରିଲି । ସେ ଆଶ୍ଚର୍ଯ୍ୟ ହୋଇଗଲା ।

ମୁଁ ଆଖି ନ ପିଛୁଳାଇ ତା ଆଡ଼େ କିଛିକ୍ଷଣ ଅନାଇ ରହିଲି, ତା ପରେ ପଚାରିଲି, "ଆପଣଙ୍କ ନାମ କଣ ?"

"ରାମେଶମ୍"—ସେ ଜବାବ ଦେଲା ।

ମୁଁ ତାର ଆଖିକୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁ କହିଲି, "ଭାଇ, ତୁମେ ମୋ ଠାରୁ ବୟସରେ ସାନ । ଏ ସବୁ ବିଷୟ ତୁମକୁ ମୋଟେ ଜଣା ନାହିଁ । ପେଶଣାସ୍ତ୍ରୀ ତୁମକୁ ମିଛରେ ଏ ଗଣ୍ଡଗୋଳ ଭିତରକୁ ଟାଣି ଆଣିଛି । ସୁଖରେ ବଞ୍ଚି ରହିବାକୁ ଇଚ୍ଛା ଥିବା ବ୍ୟକ୍ତି କେହି ଜାଣିଶୁଣି ଏ ଦାନ ସ୍ୱୀକାର କରିବ ନାହିଁ । ତୁମେ ବୋଧହୁଏ ଏହାକୁ ମାମୁଲି ଜିନିଷ ବୋଲି ଭାବୁଛ । ମତେ ଚାହିଁ ଦେଖ । ମୋର କଣ ଦଶା ହୋଇଛି । ମୁଁ କହି ପାରିବି ନାହିଁ ଏ କେଡ଼େ ଖରାପ କାମ । ଏ ତ ଆମର ଜୀବନ ଶୋଷି ନେଉଛି । ଶନି ମହାରାଜ ଏବଂ ମୃତ୍ୟୁ ଦେବତା ଆମ ମୁଣ୍ଡ ଉପରେ ଲଦି ହୋଇ ଯାଉଛନ୍ତି । ମନରେ ସବୁ ରକମର ଗ୍ଳାନ ବିଚାର ଆରମ୍ଭ ହୋଇ ଯାଉଛି । ଜୁଆ-ଖୋର, ନିଶାପାନ, ଖରାପ ଅଭ୍ୟାସ, ···ସବୁ ପ୍ରକାରର ଖୋଇ ଆରମ୍ଭ ହୋଇଯାଏ । ···ଆଖିର ଜ୍ୟୋତି ? ··· ସେ ଟିକେ ବିବ୍ରତ ହୋଇ ଚାଲିବାକୁ ଲାଗିଲା । ମୁଁ ତାକୁ ଯିବାକୁ ଦେଲିନାହିଁ : ଆଖିର ତେଜ ଚାଲିଯାଏ । ଦୁଇଟିଯାକ ଆଖି କାଚଗୋଲି ପରି ହୋଇଯାଏ । ମଣିଷର ନିଜ ଉପରେ ଅଖ୍ତିଆର ରହେନାହିଁ । ଶନି ଯେଉଁଆଡ଼େ ତାଙ୍କୁ ଚଳାଏ ସେ ସେମିତି ଚାଲେ । ତାକୁ ନିଜେ ଜଣାପଡ଼େ ନାହିଁ ସେ କଣ କରେ ଏବଂ କଣ କହେ । ସବୁ ଆଡ଼ୁ ତାର ଖରାପ ଦଶା ହୁଏ । ତୁମକୁ ବୋଧହୁଏ ଜଣା ନାହିଁ ଏହି କ୍ଷୁଦ୍ର ଦାନ ଗୁଡ଼ିକର କେତେ ଖରାପ ଫଳ ।"

"ମୁଁ ତ ପ୍ରତ୍ୟେକ ଦିନ ଗାୟତ୍ରୀ ଜପ କରେ" ସେ ଆସ୍ତେ କରି କହିଲା ।

ମୁଁ ପୁଣି ଜୋର ଦେଇ କହିଲି, "ଶନି ଏବଂ ମୃତ୍ୟୁ ଦେବତାଙ୍କୁ କଣ ତୁମେ ସାଧାରଣ ଶକ୍ତି ମନେ କରୁଛ ? ତାଙ୍କ ଆଗରେ ଗାୟତ୍ରୀ ମୋଟେ କାମ୍ କରିବ ନାହିଁ । ତା ଛଡ଼ା ତୁମେ ଆଜ ମୋର ଭାଗ ଗଣ୍ଡାକ ଛଡ଼ାଇ ନେଇଛ । ସେ ପାପରେ ତୁମର ବି ଭାଗ ଅଛି । ମୁଁ ଦୁଇ ଦିନ ହବ ଉପାସ ଅଛି ।"

କିଛି ସମୟ ପରେ ମୁଁ ପୁଣି ପଚାରିଲି, "କଣ ତୁମର କେହି ଆତ୍ମୀୟ-ସ୍ୱଜନ ଅଛନ୍ତି ?"

"ମୋର ଶ୍ରେଷ୍ଠ ଭାଇ ଅଛି, ପଢ଼ୁଛି । ତା ପାଇଁ ସବୁମାସରେ ଟଙ୍କା ପଠାଇବାକୁ ପଡ଼େ ।"

"ଏହି ପଇସା ପଠାଇବ ? ବାପ୍, ତା ହେଲେ ତ ତାର ପଢ଼ା ହେଇଗଲା ଜାଣ ! ଭୁଲିବୁଲି ପାରି ସୁସ୍ଥ ରହିଲେ ହେଲା ।"

ତାର ଅଖି ଲାଲ୍ ହୋଇ ଉଠିଲା, ଓଠ କମ୍ପିଗଲା । ସେ କହିଲା, "ମୋ ଶ୍ରେଷ୍ଠ

ଖାଇ ବିଷୟରେ କିଛି କୁହ ନାହିଁ ।"

ମୁଁ ଆହୁରି ଜୋରରେ କହିଲି, "କହିବି···ଅନେକ କହିବି । ମୋ ମୁହଁରୁ ଆହାର ଛଡ଼ାଇ ନେଇଛୁ । ଏ ପାପ···ତତେ ଛାଡ଼ିବ ନାହିଁ । ଏହି ଦାନ ଗ୍ରହଣ କରି ତୁ ତୋ ଶ୍ରେଷ୍ଠ ଭାଇକୁ ପଢ଼ାଇବାକୁ ଚାହୁଁଛୁ । କେତେ ସରଳ ତୁ ପୁଅ ! ତୋ ଶ୍ରେଷ୍ଠ ଭାଇ ମଧ୍ୟ ତୋ ପରି, କାଠ ପରି ନିର୍ଜୀବ ହୋଇ ବଦ ଅଭ୍ୟାସର ଶିକାର ହୋଇ ଅକର୍ମଣ୍ୟ ହେବ । ଏ ସଂସାରରେ ମୋର କେହି ନାହାନ୍ତି । ଯେଉଁମାନେ ଏ ଦାନ ଗ୍ରହଣ କରନ୍ତି ତାଙ୍କର ଦୁନିଆଁରେ କେହି ଆପଣାର କହିଲାବାଲା ବଞ୍ଚି ରହେ ନାହିଁ । ସାବଧାନ !"

ସେ ରାଗ ଜଳଜଳ ଆଖିରେ ମୋ ଆଡ଼େ ଚାହିଁ ଦାନ୍ତ ଚିପିଲି ତା ପରେ ଅସହାୟ ହୋଇ ପାଦ ପକାଇ ଧୀରେ ଧୀରେ ଆଗକୁ ବଢ଼ିଲା । ମୁଁ ନିଜର ବିଜୟ ଉପରେ ଗର୍ବ କରୁ କରୁ କହିଲି, "ତୋ ସାଥି ବ୍ରାହ୍ମଣ ଗ୍ରହ ଯେଉଁ ଅନ୍ୟାୟ କରିଛୁ, ତାହା ଅଯଥା ଯିବ ନାହିଁ । ତାର ଫଳ ତୋତେ, ତୋ ଶ୍ରେଷ୍ଠ ଭାଇକୁ ଏବଂ ତୋତେ ଯିଏ ମୋର ପ୍ରତିଦ୍ୱନ୍ଦୀ କରି ଛିଡ଼ା କରିଛି, ସେହି ପେଟଶାସ୍ତ୍ରୀଙ୍କୁ ଭୋଗିବାକୁ ପଡ଼ିବ ।" ମୁଁ ଏହିପରି ପାଟି କରିବାକୁ ଲାଗିଲି ଏବଂ ସେ ବାଟମୂରାଂପଛ ପଟକୁ ଘୂରି ଚାହିଁ ଚାହିଁ ଚାଲିଗଲା ।

ମୁଁ ପୁଣି ଯାଇ ସେହି ମନ୍ଦିରର ଚଉତରା ଉପରେ ବସି ପଡ଼ିଲି । ପ୍ରଥମେ ମୋର ନିଜପାଇଁ ବହୁତ ଗର୍ବ ହେଲା ଯେ ମୁଁ ତାକୁ ଏପରି ଭାବରେ କଥା ଶୁଣାଇ ଦେଇ ପାରିଲି । କିଛି ସମୟ ପରେ ମୋର ମନେ ହେଲା ଯେ ଏପରି ନିର୍ଦ୍ଦୟ ଭାବରେ ତା ସହିତ କଥା ହବାଟା ବୋଧହୁଏ ଉଚିତ ହେଲା ନାହିଁ । ପରକ୍ଷଣରେ ସେ ଦିନ-ସାକ ଭୋକରେ ରହିବା କଥା ଭାବି ଆଉ ଅନୁତପ୍ତ ହେଲିନାହିଁ । ରାତି ହଉ ହଉ ସବୁ ଦିନ ପରି ମୁଁ ସେଇ ଜାଗାରେ ଗଡ଼ି ପଡ଼ିଲି । ଦେହରେ ବେଦନା ଆରମ୍ଭ ହୋଇଗଲା । ମାଂସପେଶୀଗୁଡ଼ିକ ଛେଚିକୁଟି ହେଲା ପରି ମନେ ହେଲା । ମୁଣ୍ଡବିଥା ମଧ୍ୟ ଅଛି · ପାଦରେ ଯେଉଁଠି କଣ୍ଟା ଫୁଟିଥିଲା, ସେଠି ବହୁତ ଜଳାପୋଡ଼ା ହେଉଛି । ସେମିତ କର୍ମ-କର୍ମ ମୁଁ ଆଖି ବନ୍ଦ କରିନେଲି । ହଠାତ୍ ଜୋରରେ ଥଣ୍ଡା ପଡ଼ିଗଲା । ହଜାରେ, ଲକ୍ଷେ ଲୁହା କଣ୍ଟା ମୋର ମୁଣ୍ଡର ଚାରିଆଡ଼େ ଚକପରି ବୁଲିଲା ପରି ଦିଶିଲା ।

ତିନିଦିନ ଧରି ଜ୍ୱର ବେଶ୍ ଜୋର୍‌ରେ ବଢ଼ିଲା । ମଝିରେ ମଝିରେ ହୋଶ୍ ଆସିଲେ ମନେହଉଥିଲା ଯେପରି କେହି ବ୍ୟକ୍ତି ମୋ ପାଖରେ ଛିଡ଼ାହୋଇଛି, କେତେବେଳେ ମୋ ଉପରେ ଚାଦର ଘୋଡ଼ାଇ ଦଉଛି ତ କେତେବେଳେ ମତେ ଔଷଧ ଖୁଆଇ ଦଉଛି ଏବଂ ଆଉ କିଏ ମୋ ବାହୁରେ ଛୁଞ୍ଚି ଫୋଡ଼ୁଛି । ଗତ ତିନିଦିନ ଧରି ସେ ଲୋକଙ୍କୁ ମୁଁ ଠିକ୍ ଭାବରେ ଚିହ୍ନି ପାରିଲି ନାହିଁ ।

ଜ୍ୱର ଛାଡ଼ିଗଲାରୁ ମୁଁ ଆଖି ମେଲି ଦେଖିଲି । ମନ୍ଦିରର ଗୋଟିଏ କୋଣରେ

ସ୍ଲେଟ କୁଡ଼ିଆଟିରେ ମୁଁ ଅଛି ଏବଂ ତାଳପତ୍ରର ଚଟେଇ ଉପରେ ଶୋଇଛି । ମୁଣ୍ଡତଳେ ତକିଆ···ପାଖରେ ଔଷଧର ଦୁଇଟି ବୋତଲ ··· ପାଦରେ ପଙ୍ଖି··· ବାହାରେ କବାଟ ବାହାର ପାଖରେ ଗ୍ଲାଇ··· ।

ମୁଁ ଧଇଁସଇଁ ହୋଇ ଉଠିବାକୁ ଚେଷ୍ଟାକରୁଥିଲି । ଏତିକିବେଳେ ବାହାରେ ବସିଥିବା ବ୍ୟକ୍ତିଟି ଆସି କହିଲା "କଣ ଦର୍କାର ଆପଣଙ୍କର ? ଆପଣ ଉଠନ୍ତୁ ନାହିଁ ।"

"ଗ୍ରେମେଣମ୍ ?" ମୁଁ ପୁଣି ଆଖି ବନ୍ଦକରି ଗଡ଼ିପଡ଼ିଲି । ସେ ମୋ କରରେ ବସି ମୋ କପାଳରେ ହାତ ରଖି କହିଲା, "ବହୁତ ଭଲ ! ଆପଣଙ୍କ ଦେହରୁ ଝାଳ ବୋହିବା ଦେଖି ମୁଁ ନିଶ୍ଚିନ୍ତ ହେଲି । ଏଥର ଜ୍ୱର କମିଲା ବୋଲି ଜାଣ । ଦିନଦିନ ହେଲା ଆପଣଙ୍କ ଅବସ୍ଥା ଦେଖି ମୁଁ ଧାବଡ଼େଇ ଯାଇଥିଲି···ଡାକ୍ତର ଇଞ୍ଜେକ୍ସନ ଦେଲାବେଳେ ବି ଆପଣ ଜାଣିପାରୁନଥିଲେ ।"

ମୋ ଆଖିରୁ ଲୁହ ଗଡ଼ିଗଲା । ବନ୍ଦଥିବା ପଲକ ଡିଙ୍ଗି ଉଛୁଳି ଉଛୁଳି ଉଣ୍ଠି କରି ପାଣି ବୋହି ଯାଉଥାଏ । "ବନ୍ଧୁ, ସେଦିନ ରାସ୍ତା ଉପରେ ଛିଡ଼ା କରାଇ ଯେଉଁ ଲୋକକୁ ମୁଁ ସ୍ୟାଡ଼ୁସ୍ତିସ୍ୟାଡ଼ୁ ଏତେ କଥା ଶୁଣାଇ ଦେଇଗଲି, କଣ ତୁମେ ସେହି ?"

ଆଖି ଖୋଲି ଦେଖିଲି । ଗିଲାସରେ ଔଷଧ ଢାଳୁଥିବା ସେ ଲୋକଟି । ମତେ କୌଣସି ସାଧୁସନ୍ଥ ପରି ମନେହେଲା । ଏ ଶେଷ ପାନ ଔଷଧ, ଏହାକୁ ପିଇ ଆପଣ ଶୋଇ ଯାଆନ୍ତୁ, ମୁଁ ଡାକ୍ତର ପାଖକୁ ଯାଇକରି ଆସୁଛି । ଦର୍କାର ପଡ଼ିଲେ ଆଉ ଔଷଧ ନେଇ ଆସିବି "କହି ସେ ମୋ ପାଟିରେ ଔଷଧ ଢାଳିଦେଲା । ତାପରେ କହିଲା ଆଜି ଗ୍ରେଟଷ୍ଟାଇର ଚିଠି ଆସିଛି । ଲେଖିଛି ପଢ଼ାପଢ଼ି ଠିକ୍ ରକମ ଚାଲିଛି । ତାର କୋର୍ସ ଆଉ ବର୍ଷେ ଲାଗିବ ···ତାପରେ ସେ ବଡ଼ ଅଫିସର ହୋଇଯିବ । ପ'ରଦିନ ହିଁ ମୁଁ ତାକୁ ଦଶଟଙ୍କା ପଠାଇଛି । ହେଇ ଦେଖନ୍ତୁ, ରସିଦ୍ "ଉପରେ ତାର ସ୍ୱାକ୍ଷର ଦେଖନ୍ତୁ ···ଇଂରାଜୀ ବି କେତେ ସୁନ୍ଦର ଲେଖିଛି···" ଏହିପରି କଥା କହି କହି ସେ ଚାଲିଗଲା ।

ସଂସାର ଉପରେ ଅଜ୍ଞାନ ପରି ଅନ୍ଧକାର ଘୋଟି ଯାଇଥିଲା । ମନ୍ଦିରର ଆଢୁଆଳରେ କେଉଁ ଚଢ଼େଇ କେଁ କଟର ହେଉଛନ୍ତି । ମୋ ହୃଦୟ, କେଜାଣି କାହିଁକି, ଶାନ୍ତସ୍ୱସ୍ତ ହୋଇ ଉଠିଲା । ଆସ୍ତେ କରି ଶକ୍ତି ସଂଗ୍ରହ କରି ଉଠି ଯାଇ ବାହାରେ ଚଉତରା ଉପରେ ବସିଲି । ଫେରେ ହୃଦୟରେ ସେହି ଆନ୍ଦୋଳନ··· । ଚଢ଼େଇଟାଏ କେଁକେଁ ହୋଇ ଉଡ଼ିଯାଉଛି ।

ବହୁତ ସମୟ ପରେ କିଛି ଲୋକ ଗହଳି ଦେଖାଦେଲା । ସେ ଲୋକମାନେ ଯେଉଁ ଖବର ଶୁଣାଇଲେ, ତାକୁ ଶୁଣି ମୁଁ ବଉଡ଼ାପନ୍ତ ପରି ଅଣ୍ଟିଗଲି ଏବଂ ସେଠୁ ଉଠି ଚାଲିଲି । ଛାତି ଥରିବାକୁ ଲାଗିଲା ।

"କେଉଁ ଜାଗାରେ ?"

"ମୁଖ୍ୟ ରାସ୍ତାରେ ।"

ଟଳି ଟଳି ମୁଁ ଦୌଡ଼ିଗଲି । ମୁଁ ପହଞ୍ଚିଲାବେଳକୁ ସବୁ ଶେଷ ହୋଇଯାଇଛି । ରମେଶମ୍ ରାସ୍ତା ମଝିରେ ଜଡ଼ୁବୁଡ଼ୁ ହୋଇ ପଡ଼ି ରହିଛି । ସେ ଲମ୍ବା ଚାଲିଥିଲିବାଲା ଗୋଟାଏ ରାକ୍ଷସ । ଅଟକିଲା ବି ନାହିଁ । ଲୋକ ରୁଣ୍ଡ ହୋଇଛନ୍ତି ।

ମୁଁ ମୁଣ୍ଡ ନୁଆଁଇ ଲୁହଭରା ଆଖିରେ ତାକୁ ଦେଖିଲି । ତାର ଦୃଷ୍ଟି ତାର ଡାହାଣ ହାତର ମୁଠା ଉପରେ ଥିଲା ପରି ମନେହେଉଛି । ସେଥିରେ ତାର ଷ୍ଟେଟ ଭାଇର ଚିଠି ଅଛି । ମୁଁ କାନ୍ଦ ବାହୁଡ଼ିଲା ହୋଇ ତା ହାତରୁ ସେ ଚିଠିଟି ନେଲି । ବିଜୁଳି ଆଲୁଅର ଝାପସା ଆଲୁଅରେ ଅକ୍ଷର ଦେଖାଗଲା—''ମୋର ପଢ଼ାପଢ଼ି ଠିକ୍ ରକମ ଚାଲିଛି, ମୁଁ ଆହୁରି ଭଲ୍‌କରି ପଢ଼ିବି । ଆଉ ଗୋଟିଏ ବର୍ଷ···ତାପରେ ମୁଁ ଫୁଲରେ ତୁମର ପୂଜା କରିବି; ପୂଜ୍ୟ ଭାଇ ମୋର !''

ମୁଁ ଆଖି ବନ୍ଦକରି ନେଲି, ''ନିଶ୍ଚୟ ଭାଇ, ଭଲ୍‌କରି ପଢ଼···ମୁଁ ତୋର ଅଛି ।'' ଆଖି ଖୋଲି କରି ଦେଖିଲି ପୁଲିସ କର୍ମଚାରୀମାନେ ଏକାଠି ହୋଇ ଦୁର୍ଘଟଣା ବିଷୟରେ ତଦନ୍ତ କରିବାକୁ ଆସୁଛନ୍ତି ।

# ଠାକୁରଙ୍କ ପାଲିଙ୍କି

କାମରୂପଧାରୀ ଦେବତା ଏବଂ ଅନ୍ୟମାନଙ୍କର ମନ ଭିତରକୁ ପ୍ରବେଶ କଲା ଭଳି କଳାରେ ନିପୁଣ ବ୍ୟକ୍ତିଙ୍କର କଳ୍ପନା ରଚିତ କାଶୀ ମଜଲିସ୍‌ର[1] କାହାଣୀକୁ ରୂପ ଦେଇ ଶାହ୍ନାଇର ମଧୁର୍ ଧ୍ୱନି ଶ୍ରୋତାମାନଙ୍କ ମନକୁ କାହିଁ କେତେ ଦୂରକୁ ନେଇଯାଉଛି । କାହାଣୀ ଶେଷରେ ଉପଯୁକ୍ତ ଉପସଂହାର ପରେ ଢୋଲରୁ ଶ୍ରୁତିମଧୁର ଶବ୍ଦ ବାହାରୁଛି । ଠାକୁରଙ୍କର ଶୋଭାଯାତ୍ରା ବାହାରୁଛି । ପ୍ରତି ଘର ଆଗରେ ରହି ଗୃହସ୍ଥମାନଙ୍କ ଚଢ଼ାଯାଉଥିବା ନଡ଼ିଆ, ଧୂପ, ଦୀପ ଇତ୍ୟାଦି ସ୍ୱୀକାର କରି ଠାକୁରେ ଧୀରେ ଧୀରେ ଆଗକୁ ଯାଉଛନ୍ତି । ଏହି କୋଳାହଳ ଶୁଣି ଜଗନ୍ନାଥମ୍ ବାହାର ଚଉତରାଯାଏ ଆସି ସେଠି ଠାକୁରଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲା ।

ସଡ଼କ ମଝିରେ ପାଲିଙ୍କି ଛିଡ଼ା ହୋଇଗଲା "ଆରେ ଜଗ୍ଗୁ ! ଆ, ଆସିଯା । ଏ ପାଲିଙ୍କି ତଳେ ଏପାଖରୁ ସେପାଖ, ସେପାଖରୁ ଏପାଖ ଦୌଡ଼ । ଶୁଣିଛି ଏହା କଲେ ପୁଣ୍ୟ ହୁଏ"—କହି ଗୋଟିଏ ବାଳକ ଦୌଡ଼ି ଦୌଡ଼ି ଯାଇ ଜଗନ୍ନାଥମ୍ ଘରୁ ତାର ନାତିକୁ ଜବରଦସ୍ତି ନେଇ ଆସିଲା । ସେ ଦୁହେଁ ଆଗକୁ ଆଗକୁ ଦୌଡ଼ିଲେ ।

ବାକି ପିଲାମାନଙ୍କ ସାଙ୍ଗରେ ଏ ଦୁହେଁ ବି ଏପାଖରୁ ସେପାଖ – ସେପାଖରୁ ଏପାଖ ଦୌଡ଼ା ଦୌଡ଼ି ଲଗାଇ ଦେଲେ । ଭକ୍ତି ମାନେ କଣ, ଏ ପିଲା ଜାଣନ୍ତି ନାହିଁ । କିନ୍ତୁ ପାଲିଙ୍କି ତଳେ ଦୌଡ଼ିବାକୁ ମଜା ଲାଗୁଛି ଏବଂ ଚାଲୁଥିବା ପାଲିଙ୍କି ତଳେ ଦୌଡ଼ିବାକୁ ଆହୁରି ଅଧିକ ମଜା ଲାଗୁଛି ।

ଘରେ ଘରେ ଏବଂ ମନେ ମନେ କ୍ଷଣେ କ୍ଷଣେ ଲୁଚକାଳି ଖେଳୁଥିବା କାହ୍ନୁ ଯଦି ଏ ଖେଳ ଜାଣିଥାନ୍ତେ ତେବେ ପାଲିଙ୍କିରୁ ଓହ୍ଲାଇ ଆସି ସେ ବି' ଅନ୍ୟ ପିଲାଙ୍କ ସାଙ୍ଗରେ ଜିଦ୍‌କରି ଏହି ଖେଳରେ ମିଶି ଯାଆନ୍ତେ । ପୂଜାରୀ ମାନେ ପିଲାଙ୍କୁ ଗାଳିଦେଲେ । ଜଗ୍ଗୁର ମା ଯେତେବେଳେ ତା ପିଠିରେ ଚଟକଣାଟାଏ ମାରିଲା ସେତେବେଳେ ତାକୁ ଜଣା ପଡ଼ିଲା ଏ ଆନନ୍ଦ କେଡ଼େ କ୍ଷଣିକ । ଜଗନ୍ନାଥମ ତାକୁ ପାଖରେ ବସାଇ ସାନ୍ତ୍ୱନା ଦେଲା ।

କହନ୍ତି, ଯଶୋଦା ଥରେ ଅଣ୍ଠାରେ କହିଥିଲେ—ଚୌଦ ଭୁବନକୁ ନିଜ ପେଟ ଭିତରେ ରଖି ବସିଛି···ଆଉ ଦେଖିଲା ବେଳକୁ ଛୋଟ ପିଲାଟିଏ ; ପ୍ରତ୍ୟେକ ଲୋକ କାହ୍ନୁଙ୍କର ପ୍ରଶଂସା କରୁଛନ୍ତି···କେଜାଣି କେମିତି ବୋହିଛି ଏତେ ଲୋକଙ୍କୁ !

---

[1] କାଶୀ-ମଜଲିସ୍‌ର କାହାଣୀ—ଆରବୀ ଉପନ୍ୟାସ ଭଳି ପ୍ରସିଦ୍ଧ । କାଶୀ ଯିବା ବାଟରେ ଯାତ୍ରୀମାନଙ୍କର ବିଶ୍ରାମ ସ୍ଥଳରେ ଜାଗାଏ ଜାଗାଏ ଏ କାହାଣୀ କୁହାଯାଏ ।

କେଡ଼େ ମହାନ ସେ...ଏତେ ବଡ଼ ମହାନ ବ୍ୟକ୍ତିଙ୍କୁ ମୁଁ ସହଜ ଭାବରେ କୋଳରେ ଧରି ଖେଳୁଛି...କିନ୍ତୁ ମୋର ପ୍ରଶଂସା କେହି କରୁନାହାଁନ୍ତି ।—ସବୁ ନିଜ ନିଜ ଭାଗ୍ୟ ?"

କିନ୍ତୁ "ଯଶୋଦାଙ୍କୁ ଯେଉଁ ସୌଭାଗ୍ୟ ପ୍ରାପ୍ତ ହୋଇଥିଲା, ତାହା ବର୍ତ୍ତମାନ ଏହି ପାଲିଙ୍କି ବାହକମାନଙ୍କୁ ମିଳୁଛି ।"

"ପ୍ରତିଦିନ ପରମାତ୍ମାଙ୍କୁ ଆରାଧନା କରୁଥିବା ବ୍ୟକ୍ତି ଯଦି ଭାଗ୍ୟଶାଳୀ ହୁଏ ତେବେ ଠାକୁରଙ୍କ ଭାଗ୍ୟବାନ ପାଲିଙ୍କି ବାହକମାନେ ଜଣାନାହିଁ କେଉଁ ସୁନାର ଫୁଲଦେଇ ଠାକୁରଙ୍କର ପୂଜା କରିଥିବେ..." ପୁଣି କେହି ଜଣେ କହୁଥିଲେ ।

"ଜଣାନାହିଁ ସେହି କୋଳ ଏବଂ ସେହି ହାତ ସବୁ କେଉଁ ବ୍ରତ କରିଥିଲେ ।"

ଏହି ଶେଷ ପଦକ ଶୁଣି ଜଗନ୍ନାଥମ୍ ପୁଲକି ଉଠିଲା । "ସେହି କୋଳ ଏବଂ ସେହି ହାତ, ଜଣାନାହିଁ, କେଉଁ ବ୍ରତ କରିଥିଲେ ।"

ଠାକୁରଙ୍କ ସାଙ୍ଗେ ସାଙ୍ଗେ ଚାଲୁଥିବା ଲୋକଟିଏ ହାତରେ ଥିବା ମଶାଲ ପରି ଆଜଠୁଁ ଠିକ୍ ପଚିଶବର୍ଷ ପୂର୍ବେ ଜଗନ୍ନାଥମ୍‌ର ଆତ୍ମା ଥରେ ଉଜ୍ଜ୍ୱଳ ହୋଇ ଉଠିଥିଲା ।

ଜଗନ୍ନାଥମ୍‌ର ଆଖି ବିଶାଳ । କିନ୍ତୁ, ତାର ଆଖି ଏକବାରେ, ତା'ର ମା ପରି । ଖାଲି ଆଖି କାହିଁକି, ସେ ଆଖିରୁ ଝରୁଥିବା କରୁଣ ରସ ମଧ୍ୟ ତା ମା'ଠୁଁ ସେ ପାଇଛି, ଏପରି କିଛି ଲୋକେ କୁହନ୍ତି । ପିଲାଦିନେ ତାର ପ୍ରତିପାଳନ ସ୍ତ୍ରୀ ଲୋକ ମାନଙ୍କ ଦ୍ୱାରା ହୋଇଛି । ସେ ତିନି ବର୍ଷର ହେବା ପୂର୍ବରୁ ତାର ବାପା ଶହେ ବର୍ଷ ପୂରାକରି ମରିଗଲେ । ମାକୁ ସାନ୍ତ୍ୱନା ଦେବାକୁ ଆଈ ଆସିଥିଲେ ତ ସେ ସେଇଠି ରହିଗଲେ । ଆଈଙ୍କ ସାଙ୍ଗରେ ତାଙ୍କର ଜ୍ୟେଷ୍ଠ ଭଉଣୀ ସାନ ଆଈ ମଧ୍ୟ ସେଇଠି ରହିଗଲା । କେତେବେଳେ କେତେବେଳେ ଜଗ୍‌ଗୁ ଆଈମା କୋଳରେ ବସି ସାରା ଦୁନିଆର ନାନା ପ୍ରକାର ଦୃଶ୍ୟ ଦେଖୁଥିଲା ।

ରାସ୍ତା ଉପରକୁ ଯିବା ପାଇଁ ତାକୁ ଅନୁମତି ମିଳି ନ ଥିଲା । ଥରେ ସ୍କୁଲରୁ ଫେରିବା ବେଳେ ସେ ସିଧା ଖେଳ ପଡ଼ିଆକୁ ଯାଇ ଆଣ୍ଠୁରେ ଆଘାତ ପାଇ ଘରେ ପହଞ୍ଚିଲା ତ ତାର ଆଈମା ତାକୁ ଫୁଟବଲ୍ ଖେଳର ଗୋଟିଏ ନୂଆ ପରିଭାଷା ଶୁଣାଇଲେ ।

କୋଡ଼ିଏ-ବାଇଶି ଜଣ ଅଳସୁଆ ଅକର୍ମୀ ଏକାଠି ହୋଇ ମଶାଣି ପରି ଖୋଲା ଜାଗାରେ, ବଡ଼ ନଡ଼ିଆ ଭଳି ଗୋଟିଏ ଜିନିଷ ମଝିରେ ରଖି ଗୋଡ଼ରେ ତାକୁ ଧକ୍କା ମାରୁଥାନ୍ତି । ଖାଲି ଏଇୟା ନୁହେଁ, ସେଠାରୁ ବି ଅଧିକ ଆଶ୍ଚର୍ଯ୍ୟ କଥା ଯେ ଏହି ଅଦ୍ଭୁତ କାର୍ଯ୍ୟ ଦେଖି ଏଥିରୁ ଆନନ୍ଦ ଉପଭୋଗ କରିବା ପାଇଁ ହଜାର ହଜାର ଲୋକ ଜମା ହୋଇ ଯାଆନ୍ତି । ସେମାନଙ୍କୁ ଲାଜ ବି ମାଡ଼େ ନାହିଁ ।

ଜଗ୍‌ଗୁକୁ ଘରୁ ବାହାରକୁ ଯିବାପାଇଁ ଅନୁମତି ନ ଦେବାରୁ ସେ ଦୁନିଆର କଥା କଣ ଜାଣିବ ? ଏଥିପାଇଁ ସେ ଦିନେ—ଯେତେବେଳେ ତାକୁ ପନ୍ଦର ବର୍ଷ ବୟସ ହେବ

ଏବଂ ନବମ ଶ୍ରେଣୀରେ ଦୁଇବର୍ଷ ହେଲା ପଢ଼ୁଥିଲା—ଜଗ୍‌ଗୁରୁ ମାଷ୍ଟର ତାକୁ ପଇସା ଦେଇ ଡାକଘରକୁ ପଠାଇଲେ ମନିଅର୍ଡ଼ର କରିଦବା ପାଇଁ—ସେ ବୁଝି ପାରିଲା ନାହିଁ ମନିଅର୍ଡ଼ର କିପରି କରିବା କଥା, ଡାକଘରେ ପଇସା କାହାକୁ ଦବା କଥା—ସେ ସ୍କୁଲ୍ ହତାରେ କନିଅର ଗଛ ମୂଳେ ଉଦାସ ହୋଇ ବସି ପଡ଼ିଲା ।

କ୍ଲାସ୍‌ରୁ ସାର୍ଟ ଭିତରେ ଖାତା ରଖି ଲୁଚି ପଳାଉଥିବା ସୁନ୍ଦରମ୍ ତାର ଦଶା ଦେଖି—"ଘରକୁ ଯାଇ ମୁଁ ମୋ ଗ୍ରେଟ ଭାଇକୁ ପଠାଉଛି" କହି ହସି ପକାଇଲା । ହସିଲେ କଣ ହେଲା ? ସେ ତା ଗ୍ରେଟ ଭାଇକୁ ପଠାଇଲା । ଗ୍ରେଟ ହେଲେ କଣ ହେବ, ଶେଷରେ ସେଇ ମନିଅର୍ଡ଼ର କରିଦେଇ ଆସିଲା ।

ଜଗନ୍ନାଥମ୍ ଯେ ଏଥିରେ ଜମା ଅପମାନ ବୋଧ କଲା ନାହିଁ ତାହା ନୁହେଁ । କିନ୍ତୁ "ସେ ଟେନଟେହିଁ" ଏ଼ ଅନୁଭବକୁ ପକ୍‌କା ହବାକୁ ଦେଲେ ନାହିଁ । "ସେମାନେ ତ ଗରିବ ପିଲା···କିଛି ଉପାୟ ନାହିଁ ତାଙ୍କର, ସେଥିପାଇଁ ସେ ସବୁ କାମ ବାଧ ହୋଇ ନିଜେ କରନ୍ତି । ତୁ ତ ରଜାର ପୁଅ, ବାହାରକୁ ଗୋଡ଼ ନ କାଢ଼ିଲେ ବି ତୋର କାମ ହୋଇଯିବ" ମା କହିଲା ।

"ଅବକା ତ ଗ୍ରୁଡ଼... ଅଲଗା କଥା । ଶେଷ ସମୟ ଆସି ପହଞ୍ଚି ଗଲାଣି ନା ? ସେଥିପାଇଁ ଦିନ ବଦଳି ଗଲାଣି । ପୁରୁଣା ଢଙ୍ଗଢାଙ୍ଗ ସବୁ ଶେଷ ହୋଇଗଲାଣି । ସେ ସମୟର କଥା ମନେ ପଡ଼ିଲେ ଏଇ ଯଥେଷ୍ଟ ଯେ ଆମେ ନିଜକୁ ମଣିଷ ମଣୁଛୁ । ମୋ ଶାଶୁ କହୁଥିଲେ ଯେ ତୋ ଅଜା 'ଫାଇନାଲ୍' ପରୀକ୍ଷା ଦବା ଯାଏ ତାଙ୍କୁ କାଖରେ ବୁଲାଇ ଖୁଆଇବା, ସ୍କୁଲ୍‌କୁ କାଖେଇକରି ନବା ଏବଂ ଘରକୁ ଆଣିବା ଲାଗି ଚାକର ଖଞ୍ଜା ହୋଇଥିଲେ" ଆଈମା କହିଲେ ।

"ଆହୁରି ଗୋଟିଏ କଥା ଅଛି ରାଜମ୍ମା । ତାଙ୍କର ପିଲା ଅଛନ୍ତି ନା···ସେମାନଙ୍କୁ ପେଟ ଭରି ଖାଇବାକୁ ନ ମିଳିବାରୁ ସେମାନେ ଧଡ଼ିଆ, ଦୁର୍ବଳ ହୋଇ ଯାଉଛନ୍ତି । ସେଥିଯୋଗୁ ଆମ ପୁଅର ବଳି ଦେଲାପରି ଦେହ, ଗୋଲ ଗାଲ ଓ ଅଣ୍ଟାପରି ଗ୍ଲଲି ଦେଖି ସେମାନେ ହିଂସାରେ ଜଳି ଯାଉଛନ୍ତି । ଚାଲ, ମୁଁ ଯାଉଛି ପୁଅ ଉପରୁ ଦୃଷ୍ଟି ଛଡ଼ାଇବି ।" ଆଈ ମା କହିଲା ।

"କୁଳ ଉଦ୍ଧାରକାରୀ ଗଛ ସେ !" କହି ଢନଜଣ ଯାକ ସେ ପୁଅକୁ ବଡ଼ ଆଦର-ଯତ୍ନରେ ଲାଳନ-ପାଳନ କଲେ । କିନ୍ତୁ ସେହି 'ଗଛ'କୁ ବଢ଼ାଇବା ପାଇଁ ସେ ଯେଉଁ କ୍ଷୀରା ଗୁଉଲ, ସର, ଲହୁଣୀ ଖୁଆଇଲେ, ସେଇସବୁ ପଦାର୍ଥ ତା ପାଇଁ କ୍ଷତିକାରକ ହେଲା । ଏଇଥିପାଇଁ ସେ 'ଚଛକୁ ଜବରଦସ୍ତି ଗୋଟିଏ ଜାଗାରେ ବାନ୍ଧି ରଖିଲେ ମଧ୍ୟ ସେ ଶୁଆ ପକ୍ଷୀପରି ଚାରିଆଡ଼ ଘୁରିବାକୁ ଲାଗିଲା । ପାଚିଲା ପିଜୁଳିର ସ୍ୱାଦ ଚାଖି କରି ବି ସେ ସନ୍ତୁଷ୍ଟ ହେଲା ନାହିଁ । ଡେଣାଥିବା ଶୁଆକୁ ଉଡ଼ିବାରେ ସାହାଯ୍ୟ କରିବା ଉଚିତ । ବସା ନାହିଁ ତ ବସା ତିଆରି କରିବା ଉଚିତ··· ଏହି ସବୁ ସମସ୍ୟାର ସମାଧାନ ଖୋଜି ଖୋଜି ତାର ବଡ଼ ବଡ଼ ଆଖି ଆହୁରି ବଡ଼ ହୋଇଗଲା ।

"ଆରେ, ବାପ୍ ରେ !··· ଏ ଯୋଗଣୀ ନାଗମ୍ମାର ତ ବେଶ୍ ଅକଲ ! ପିଲା କଣ ବୁଝିଛୁ ? ଯେତେ ଗୁଡ଼ଲ ଦେଲା ସବୁ ନିଜ ଅଳରେ ଭଶିନେଲା ··ଆଚ୍ଛା ରହ···, ପୁଲିସି ତାକ ତତେ ପାଠ ପଢ଼ାଇ ଦଉଛ ।" ଶେଷରେ ସେ ଭିଖାରୁଣୀ ଗ୍ଲଲି ଗଲା ଏବଂ ଆଇମା ବି ଅନ୍ୟ କାମରେ ଲଗିଗଲା; କନ୍ତୁ ସେହି ଦୃଶ୍ୟ ବାଲକ ଜଗନ୍ନାଥମର ଆଖିରେ ସବୁ ଦନ ପାଇଁ ରହିଗଲା ।

ବାପୁଷ,···ଭିଖାରୁଣୀ, ବୁଢ଼ୀ, ବେମାଉଆ ମଧ୍ୟ, ତାର କେହି ନାହାଁନ୍ତି.···ଗୋଡ଼, ଆଖିର ବି ସାହାଯ୍ୟ ନାହିଁ—ତାକୁ ଦୁଇ ମୁଠା ଗୁଡ଼ଲ ଦେଲେ କଣ ହେଲା ? କାଲି ପରଦନ ତ ବସ୍ତା ଏ ଗୁଡ଼ଲ କୁଟା ହୋଇ ରଖା ହେଇଛି ।

ଦନେ ସାନ ଆଈ-ମା କହିଲେ "ଦେଖ୍ ରାଜମ୍ମା ! ଏବେ ଆମେ ତୋ ପୁଅକୁ ସମ୍ଭାଳି ପାରୁ ନାହିଁ । ଆମେ ତ ବଡ଼ମାନଙ୍କ କଥା ଆଖି ବୁଜି ମାନି ନଉଥିଲୁ, ଶ୍ରଦ୍ଧା-ଭକ୍ତିରେ ଆମର ଜୀବନ କଟିଛି । ଘରେ କାମ କଲା ଗ୍ଲକର ମାନଙ୍କୁ ଘରେ ତଆର ହଉଥିବା ଜିନଷର ଖବର ନ ମିଳୁ, ଏଇ ଧାରଣାରେ ଆମେ ତାଙ୍କୁ କୌଣସି ଜିନଷ ଖାଇବାକୁ ଦଉନଥିଲୁ । ଏଥିପାଇଁ ନୁହେଁ ଯେ ଆମର ଦବାର ଶକ୍ତି ନ ଥିଲା । ଗ୍ଲକରଙ୍କର ନଜର ପଡ଼ିଲେ ଭଲ ନୁହେଁ । ନଜର ଲଗିଲେ ତ ସାଙ୍ଗେ ସାଙ୍ଗେ ବାନ୍ତି ଧରିବାକୁ ପଡ଼ିବ । ଏହିପରି ବହୁତ ଲୋକଙ୍କୁ ମୁଁ ଦେଖିଛି । ବର୍ତ୍ତମାନ ଦେଖ, ତୋର ଯୋଗ୍ୟ ପୁତ୍ରମଣି କ ବାହାଦୁରି କରଛନ୍ତି ।"

ସେ ବାହାଦୁରି କାମ କେବଳ ଏଇୟା ଥିଲା "ଆଇମା ହରଡ଼ ଚଟଣି ବାଣ୍ଟୁଥିଲେ । "ଆଇ ମା ; ଆଇ ମା ! ମତେ ଟିକେ ଦଅ" କହି ସେ ହାତ ବଢ଼ାଇଲା । ସେ ସେଇ ଦବ୍ୟଟା ଚଟଣିକୁ ଟିକେ ତା ହାତରେ ଦେଲେ । ସେ ତାକୁ ଗ୍ଲଟୁ ଗ୍ଲଟୁ ଆଉ ଘରେ ପହଞ୍ଚିଲା ବେଳେ ଘର ପରିଷ୍କାର କରୁଥିବା ଗ୍ଲକରାଣୀ ଚଲ୍ଲମ୍ମାର କାନି ଧରି ଗ୍ଲଲୁଥିବା ଗୌରି ଜଗ୍ଗୁକୁ ଦେଖି ହସି ପକାଇଲା । ତାର ହସ ଜଗ୍ଗୁକୁ ଭଲ ଲାଗିଲା । ସେ ଟିକଏ ଚଟଣି ଗୌରି ହାତରେ ଦେଇ କହିଲା "ଦେଖିଲୁ, ଚଟଣି କେମିତି ବଢ଼ିଆ ହେଇଛି; ଆଉ ଟିକେ ଆଣିବି ?" ଦୁଇ ଜଣଯାକ ସାଙ୍ଗହେଇ ଖାଇଲାରୁ ତାକୁ ବହୁତ ଭଲ ଲାଗିଲା ।

"ରହ ଶ୍ରେଷ୍ଟବାବୁ ! ମା' କୋଉଠୁ ଦେଖିନବ କାଳେ ।" ଚଲ୍ଲମ୍ମା କହିଲା । ସେତିକିବେଳେ ଯାହା ଭାବୁଥିଲା ସେୟା ହେଲା । ଆଈମାର ନଜର ପିଅଡ଼େ ପଡ଼ିଗଲା ।

"ଏ କଣ ? ଏଇଟା ଖରାପ କଥା ନା ?···ଖାଇବାବେଳେ ସେ ସେହି ମାନଙ୍କ ଥାଳରେ ବେଶି ବେଶି କଣ ଚଟଣି ପରଷିବା ଦେଖିଛୁ । ଟିକେ ଚଟଣି ସେ ଝିଅ ହାତରେ ଦବା କଣ ଭୁଲ ହେଲା ?"

ଏ ପ୍ରଶ୍ନ ତାର ଗ୍ଲହାଣି ଲା । ମୁହଁ ନୁହେଁ । ସେଥିପାଇଁ ସେ ପ୍ରଶ୍ନର କେଇ ଜବାବ ଦେଲେ ନାହିଁ ।

ଯେତେବେଳେ ସେ ସପ୍ତମ ଶ୍ରେଣୀରେ ଥିଲା, ସେତେବେଳର ଗୋଟିଏ ଘଟଣା ସେ ଭୁଲି ପାରେ ନାହିଁ ।

ତାକୁ ହଠାତ୍ ଜ୍ୱର ହୋଇଗଲା । ସେଥିନେଇ ସେ ଘରଲୋକମାନେ ଯାହା ବ୍ୟସ୍ତ ହୋଇଉଠିଲେ ତାର କେହି କଳନା କରି ପାରିବ ନାହିଁ । କୋଉ ଡାକ୍ତରର ଔଷଧ ଘଆର କରି ଦେଲେ, ମୁଣ୍ଡରେ ବିଭୂତି ଲଗାଇଲେ, ମନ୍ତ୍ର-ତନ୍ତ୍ର କରି ତାବିଜ ପିନ୍ଧା-ଇଲେ; କିନ୍ତୁ ସବୁଠୁଁ ବଳିକରି ଯିଏ ମନେ ଆନନ୍ଦ ଦେଇଥିଲା— ସେ ଥିଲା — ସାମନାରେ ରହୁଥିବା ସତ୍ୟମ୍, ଯିଏ କି ତା ସହିତ ସ୍କୁଲରେ ପଢ଼ୁଥିଲା । ସେ କିଛି କରେ ନାହିଁ, ଖାଲି କିଛି ସମୟ ତା ପାଖରେ ବସି ରହୁଥିଲା । ଦେହ କିପରି ଅଛି ? ଔଷଧ କିଏ ଦଉଛି, କଣ କଣ ଖାଉଛୁ, ଏପରି କୌଣସି ପ୍ରଶ୍ନ ସେ କରୁନଥିଲା । ଯେତେ-ବେଳ ପର୍ଯ୍ୟନ୍ତ ବସି ରହୁଥିଲା କେବଳ ଏଠା ସେଠାକାର ଖବର ଶୁଣାଉଥିଲା···ସ୍କୁଲରେ କିଏ ନୂଆ-ମାଷ୍ଟର ଆସିଅଛନ୍ତି । ସେଇଦିନ ଜଣେ ପିଲା ତା· ସାଇକେଲ ଚକରୁ ପବନ ବାହାର କରି ଦେଇଥିଲା···ସ୍କୁଲରୁ ଫେରିବାବେଳେ ସେ ଦୁଇପଇସି ଗୋଟିଏ ପାଇଥିଲା ··ତାର ବଡ଼ଭାଇର ତା କଥାରେ ବିଶ୍ୱାସ ହୋଇନଥିଲା ଏବଂ ସେ ଗୋଟିଏ ଚଟକଣା ମାରିଥିଲା...ପଡ଼ୋଶୀ ଘର ଗୁଧା ଯେଉଁ ନୂଆ ରେଡ଼ିଓ ଆଣିଥିଲା ସେ ଦିନକରେ ଖରାପ ହୋଇଗଲା···ତା ଘରେ କୁଆଡ଼ୁ ଗୋଟିଏ ଧୂସର ରଙ୍ଗର ବିରାଡ଼ି ଆସିଛି ଏବଂ ତାର ଚନୋଟି ଛୁଆ ହୋଇଛି ଏହିପରି ବିଭିନ୍ନ ଖବର ଶୁଣାଉଥାଏ । ସେଥିରୁ କେତେ ମିଛ କେତେ ସତ ଜଣା ପଡ଼ୁନ ଥିଲା···କିନ୍ତୁ ଯେତେବେଳ ପର୍ଯ୍ୟନ୍ତ ସେ ଖବର ଶୁଣୁଥାଏ ଜଗ୍‌ଗୁ ଯନ୍ତ୍ରଣା, ଜ୍ୱର ସବୁ ଭୁଲିଯାଏ । ଏଇ ଜ୍ୱର ଯୋଗୁ ଜଗ୍‌ଗୁ ଏବଂ ସତ୍ୟମ୍‌ଙ୍କର ବନ୍ଧୁତା ଦୃଢ଼ୀଭୂତ ହୋଇଗଲା । ଜଗ୍‌ଗୁ ଜାଣି ପାରିଲା ସ୍ନେହ କେତେ ମଧୁର । ଯେତେବେଳେ ସେ ଭଲ ହୋଇଗଲା ଏବଂ ଖିଆପିଆକରି ଗୁଲିବୁଲି ପାରିଲା ସେତେବେଳେ ଦୁହେଁ ସାଙ୍ଗ ହୋଇ ସ୍କୁଲ ଯାଆନ୍ତି ଏବଂ ସାଙ୍ଗ ହୋଇ ଘରକୁ ଫେରି ଆସନ୍ତି ।

ଥରେ ଚାରିଦିନ ଧରି ସତ୍ୟମ୍‌ର ଦେଖା ମିଳିଲା ନାହିଁ । ଯେତେବେଳେ ସେ ପଞ୍ଚମସ୍ଥ ଦିନ ବି ଆସିଲା ନାହିଁ ଜଗ୍‌ଗୁ ତା ଖବର ବୁଝିବା ପାଇଁ ତା ଘରକୁ ଯିବ ବୋଲି ବାହାରିଲା । ସେତେବେଳେ ତାର ଆଈମା ତାର ହାତ ·ଧରି ଘରକୁ ନେଇ ଆସି କବାଟ ବନ୍ଦ କରି ଦେଲା ।

"ଆରେ ପୁଅ, ଆମେ ସବୁ ଏତେ ଲୋକ ଘରେ ଅଛୁ କାହିଁକି ? ଆମକୁ ନ କହି ନିଜ ଇଚ୍ଛା ଅନୁସାରେ ଏପରି ବାହାରକୁ ଯିବା ଠିକ୍ ନୁହେଁ । ଶ୍ରେଷ୍ଠ ବଡ଼, ଭଲ-ମନ୍ଦ ସବୁ ବୁଝି ବିଚାରି ଚଳିବା ଉଚିତ । ତୋର ଯଦି କିଛି ହୋଇଯାଏ ତ ତୋ ଭରସାରେ ଆମେ ସବୁ ଯିଏ ବଞ୍ଚିଛୁ ଆମର କଣ ଦଶା ହେବ ? ନ ପଚାରି ମାଁ ଯୋଉ ଘରେ ବଜେ କରିଛନ୍ତି ସେ ଘରକୁ ଯାଉଛୁ ?" ଜଗ୍‌ଗୁ ମୋଟେ ବୁଝି ପାରିଲା ନାହିଁ କଣ କଥା । ସେ ଯାଇ ତା ମାଆକୁ ପଚାରିଲା ।

"ହଁ ରେ ପୁଅ, ସତ୍ୟନାରାୟଣଠେଇଁ ବଡ଼ ମା ବାହାରିଛନ୍ତି । ତାକୁଇ ବସନ୍ତ ରୋଗ ଲୁହନ୍ତି । ଏ ବେମାର ବଡ଼ ଶୀଘ୍ର ବ୍ୟାପିଯାଏ । ଯୋଉଠି ଏପରି ସଂକ୍ରାମକ ବେମାର ହୋଇଥାଏ, ସେ ଘରକୁ ଯାଆନ୍ତି ନାହିଁ ।"

ଜଗନ୍ନାଥର ହୃଦୟ ଥରି ଉଠିଲା, ତା ଆଖିରେ ଲୁହ ଆସିଗଲା । "ତାହେଲେ କଣ ମୁଁ ଯାଇ ତାକୁ ଦେଖି ଆସି ପାରିବି ନାହିଁ, ମା ?"

"ଦେଖି କାହିଁକି ପାରିବୁ ନାହିଁ ? ସେ ଗାଧୋଇ ସାରିଲେ ତାକୁ ନିଶ୍ଚୟ ଦେଖି ପାରିବୁ । ସେପର୍ଯ୍ୟନ୍ତ ସିଆଡ଼େ ଯିବୁ ନାହିଁ । ବୁଝିଲୁ ? ମୋ ଧନ ! ଶୁଣୁଛୁ ତାଠି ବହୁତ ଜୋରରେ ବାହାରିଛନ୍ତି ।"

ତାପରେ ଆଠ-ଦଶ ଦିନ ଯାଏ ଜଗନ୍ନାଥମ୍ ଠିକ୍ ମୁତାବକ ଖିଆ ପିଆ କଲାନାହିଁ । ଆଶ୍ରମରେ ଶୋଇ ବି ପାରିଲା ନାହିଁ । ସବୁବେଳେ ସେ ସତ୍ୟମ୍ କଥା ହିଁ ଭାବୁଥିଲା । ଥରେ ମାନ ଝରକା ପାଖକୁ ଯାଇ ଦୂରରେ ଛିଡ଼ା ହୋଇ ସେ ସତ୍ୟମ୍‌କୁ ଦେଖିବାକୁ ଇଚ୍ଛା କରୁଥିଲା । ତାକୁ ପଚାରିବାକୁ ଚାହୁଁଥିଲା, "କଣ ଭାଇ ସତ୍ୟମ୍, ମୁଁ ଜଗନ୍ନାଥମ୍, ମୋ ଆଡ଼େ ଚାହଁ, କେମିତି ତୋ ଦେହଅଛି ? ତୁ କେବେ ଗାଧୋଇବୁ ? ଆମେ ଦୁହେଁ ହାତ ଧରାଧରି ହୋଇସ୍କୁଲକୁ କେବେ ଯିବା ?"

ସେଥିପାଇଁ ମାଉ ନ୍ତ ଉପରେ ତାର ବିଶ୍ୱାସ ହେବାକୁ ସେ ତାର ବିଜ୍ଞାନ ଶିକ୍ଷକଙ୍କୁ ପଚାରିଲା । "ଏକଦମ ଠିକ୍ କଥା, ଜଗନ୍ନାଥମ୍ । ବସନ୍ତ ବଡ଼ ଭୟଙ୍କର ବେମାରି । ତୋ ମା'ର କଥା ତତେ ମାନିବାକୁଇ ହବ ସେଇଥିରେ ତୋର ମଙ୍ଗଳ ।"

ଆଉ ସେ ଆଶା ବି ରହିଲା ନାହିଁ । ଦାଣ୍ଡ ଦୁଆର ପାଖରେ ଛିଡ଼ା ହୋଇ ତାଙ୍କ ଘରୁ ବାହାରୁଥିବା ପ୍ରତ୍ୟେକ ବ୍ୟକ୍ତିକୁ ସେ ପଚାରୁଥାଏ "କଣ, ଆମ ସତ୍ୟମ୍‌ର ଅବସ୍ଥା କିପରି ? ମୁଁ କଣ ବର୍ତ୍ତମାନ ତାକୁ ଦେଖି ପାରିବି ?"

କିନ୍ତୁ ଜଗନ୍ନାଥମ୍‌କୁ ଆଉ ବେଶି ଦିନ ଏପରି ପଚାରିବାକୁ ପଡ଼ିଲା ନାହିଁ । "ଜନ୍ମ ହୋଇଥିବା ମଣିଷ ଦିନେ ନା ଦିନେ ନିଶ୍ଚୟ ମରେ" ଏହି ତଥ୍ୟକୁ ସତ୍ୟମ୍ ପିଲାଦିନୁ ହିଁ ପ୍ରତିପାଦନ କରି ନେଇ ଚାଲିଗଲା ।

ଜଗନ୍ନାଥମ୍ ଅନୁଭବ କରିବାକୁ ଲାଗିଲା ଯେ ସେ ମସ୍ତବଡ଼ ଭୁଲ କରିଛି । ଯେଉଁ ଭୁଲ ପାଇଁ ସେ କିଛି ପ୍ରାୟଶ୍ଚିତ୍ତ ମଧ କରି ପାରିବ ନାହିଁ । ଏହି ଭାବନାରେ ସେ ବହୁତ ଦିନ ଯାଏ ଝାଉଁଳି ପଡ଼ିଲା ଯେ ମା ହଉ, ମାଷ୍ଟର ହୁଅନ୍ତୁ କିମ୍ବା ସ୍ୱୟଂ ବିଧାତା ବି ହୁଅନ୍ତୁ ନା କାହିଁକି, କାହାରି ମନାରେ ସେ ଅଟକିବା ଉଚିତ ହୋଇନାହିଁ । ବେମାରି ଅବସ୍ଥାରେ ସତ୍ୟମ୍‌କୁ ନ ଦେଖିବାକୁ ଯିବା ତାର ବହୁତ ବଡ଼ ଅପରାଧ ହୋଇଛି । "ସତ୍ୟମ୍, ମତେ କ୍ଷମା କରି ପାରିବୁ ?" କହି ସେ କାନ୍ଦି କାନ୍ଦି ହୋଇ କାନ୍ଦୁଥିଠେ । ଦୁର୍ବଳ ମସ୍ତିଷ୍କ ବ୍ୟକ୍ତିଙ୍କୁ ଏପରି ବିଚାର ବଡ଼ ବିବ୍ରତ କରି ପକାଏ । ଜଗନ୍ନାଥମ୍‌ର ଆଗରୁ ଆଶ୍ଚର୍ଯ୍ୟଜନକ ବିସ୍ଫାରିତ ହୋଇଥିବା ଆଖି ବର୍ତ୍ତମାନ ଏଇ ଅସହାୟ ଭାବନା ନେଇ ସଙ୍କୁଚିତ ହେବାକୁ ଲାଗିଲା । ପିଲାଦିନୁ ସେ ନିଜର ଦର୍କାର ଜିନିଷ ମାଗି ଜାଣି

ନଥିଲା । କାହାର କଥା ଭାଙ୍ଗି ସିଧା ସିଧି ଜବାବ ଦେବା ମୋଟେ ଜାଣି ନଥିଲା । ଏଇ ସବୁ କଥା ତା ଭିତରେ ବର୍ତ୍ତମାନ ବିଦ୍ରୋହ ମୂର୍ତ୍ତି କଲା ଓ ତାର ମନ ବିଚଳିତ ହୋଇ ଉଠିଲା ।

ସ୍କୁଲ୍ ଫାଇନାଲ ପରୀକ୍ଷା ପର୍ଯ୍ୟନ୍ତ ପହଞ୍ଚୁ ପହଞ୍ଚୁ ଜଗନ୍ନାଥମ୍ ଏପରି ଖ୍ରେଟ ଖ୍ରେଟ କେତେକ କାମ କରିଥିଲା ଯାହା ତା ଘରେ କେହି ପସନ୍ଦ କରୁନଥିଲେ; କିନ୍ତୁ ଯାହା କରିବା ବିନା ସେ ନିଶ୍ଚିନ୍ତ ହୋଇ ପାରୁ ନ ଥିଲା । ସ୍କୁଲରେ ଦରମା ଦବାପାଇଁ ସେ ଯେଉଁ ଟଙ୍କା ନେଇ ଗଲା ତାକୁ ଗୋପାଳମ୍ ନାମରେ ଗରିବ ପିଲାଟିର ଦରମା ବାବଦକୁ ଜମା କରିଦେଲା । ବଜାର ସଉଦା କରିବା ପାଇଁ ଯେଉଁ ଅଲଗା ଗୃହକର ରଖା ହୋଇଥିଲା ତାକୁ ସେ ବାହାର କରିଦେଲା । ସନ୍ଧ୍ୟାବେଳେ ନିମ୍ନ ମିତ୍ରଭାବେ ଖେଳିବାକୁ ଗଲା । ମା, ଆଈମା, ସାନ ଆଈମା ଏ ସବୁ ଦେଖି ମୁଣ୍ଡ ବାଡ଼େଇହେଲେ । ଜଗନ୍ନାଥମ୍ କୁ ମୁହଁରେ କିଛି କହିବାର ସାହସ ସେମାନଙ୍କର ନଥିଲା । ସେ ନିରବତା ହିଁ ତା ପାଇଁ କବଚ ବନିଗଲା ।

ମିଛ ଅଭିମାନର ଅନାବଶ୍ୟକୀୟ ବନ୍ଧନକୁ ଭାଙ୍ଗିଦେଇ ବାହାରକୁ ବାହାରିବା ପରେ ସେ କେତେ ଆଶ୍ଚର୍ଯ୍ୟକର ଘଟଣା ଦେଖିବାକୁ ପାଇଲା । ସେ ଜାଣିବାକୁ ପାଇଲା ସଂସାର କେତେ ବିଶାଳ । ତାର ଆଖି ଆହୁରି ବିଶାଳ ହୋଇଗଲା । ତା ସ୍କୁଲରେ ସେତେବେଳେ ତାପାଇଁ ସବୁଠୁ ବଡ଼ ଆକର୍ଷଣ ଥିଲା ତାର ସହପାଠୀ କାମେଶମ୍ । ଗୋଟିଏ ବଡ଼ ବିଚିତ୍ର ଘଟଣା ନେଇ ଜଗନ୍ନାଥମ୍ କାମେଶମ୍ ପ୍ରତି ଆକୃଷ୍ଟ ହୋଇଥିଲା ।

ଥରେ କ୍ଲାସରେ କାମେଶମ୍ ତାର ସାଙ୍ଗମାନଙ୍କୁ ପାଟିକରି କେଉଁ ବିଷୟରେ ଭାଷଣ ଦେଉଥିଲା । ଏତିକବେଳେ ଜଗନ୍ନାଥମ୍ କୁ ଆସୁଥିବାର ଦେଖି ସେ ଚୁପ୍ ହୋଇଗଲା ।

"ଏ ଖବର ଅଠର ବର୍ଷରେ ଛୁଆକୁ ଛୁଣାଇବ ନାହିଁ, ଭୟରେ ତାର ବେମାର ହୋଇଯାଇ ପାରେ ।" କାମେଶମ୍ କହିବାରୁ ସମସ୍ତେ ଜଗନ୍ନାଥମ୍ ଆଡ଼କୁ ଅନାଇ ହସି ଉଠିଲେ । ଏହି ଅକାରଣ ଉପହାସରେ ତାକୁ ଦୁଃଖ ହେଲା । ପଚାରିବାର ସାହସ ହେଲନାହିଁ । ସେ ମନକଷ୍ଟ କରି ଚୁପ୍ ରହିଲା । ତାର ଦୁର୍ବଳତା ବୁଝିପାରି ତାକୁ ଜଣେ ସବୁ କଥା କହିଦେଲା ।

ତା ଆଗଦିନ ରାତିରେ କାମେଶମ୍ ର ସାମନା ବାଲା ଘରେ ଚୋରି ହୋଇଥିଲା । କାମେଶମ୍ ର ନିଦ ଭାଙ୍ଗିଯିବାରୁ ସେ ଚୋରକୁ ଗୋଡ଼ାଇ ଧରିଥିଲା । ଏ କଥା ଶୁଣି ତାର ମା ବହୁତ ବ୍ୟସ୍ତ ହୋଇ ମୁଣ୍ଡପିଟିବାକୁ ଲାଗିଲେ "ପୁଅ, ଆମଘର ନୁହଁ, ଆମ ଲୋକ ନୁହଁ···ତୁ ତ ଖ୍ରେଟପିଲାଟାଏ···ଚୋରମାନଙ୍କ ପାଖରେ ଛୁରୀ ଥାଏ, ତୁ କାହିଁକି ବାବା ଏପରି ବିପଦଜନକ କାମରେ ହାତ ଦଉଛୁ ।"

"ମୁଁ ମର୍ଦ୍ଦ, ସେଥିପାଇଁ", କାମେଶମ୍ କହିଥିଲା ।

"କଣ କହିଲୁ, ଫେର କହିଲୁ", ପଛରୁ ତାର ପିତା ଗର୍ଜିକରି କହିଲେ ।

"ଅରେ ନୁହେଁ, ଶହେ ଥର କହିବି, କାରଣ ମୁଁ ପୁରୁଷ ପିଲା ।"

ତା' ବାପା ତାଙ୍କୁ ଗୋଟାଏ ଚଟକଣା ମାରି କହିଲେ "ଫେରେ କହିବୁ", କିନ୍ତୁ କାମେଶମ୍ ସେକଥା ଗ୍ରହଣ କଲା ନାହିଁ । ଶେଷକୁ ମାରି ମାରି କରି ତା ବାପା ଥକିଗଲେ । ତାର ମା କହିଲେ, "କେଡ଼େ ଜିଦିଆ ତୁ । ଏତେ ମାଡ଼ ଖାଇଲୁ, କିନ୍ତୁ ଆଖିରୁ ଟୋପାଏ ବି ପାଣି ବାହାରିଲା ନାହିଁ ।"

"କାହିଁକି ନା ମୁଁ ପୁରୁଷ", କାମେଶମ୍ ଫେରେ କହିଲା ।

"ଏକଦମ୍ ଠିକ କଥା ।" ଜଗନ୍ନାଥମ୍ ମନେ ମନେ ଭାବିଲା । ବାପ-ଅଜାଙ୍କ ରୋଜଗାର ଉପରେ ମୌଜ କରୁଥିବା, ହାତ ଗୋଡ଼ ଜାକି ଘରେବସି, ଅନାୟାସରେ ମିଳିଥିବା ନିଜର ସୌଭାଗ୍ୟକୁ ଉପଭୋଗ କରି, ଅନ୍ୟର ମୁଖରେ ଛିକେ ବି ଚତଲାଇ ନହୋଇ ନିଜର ଜୀବନଟାକୁ ହିଁ ଜୀବନର ସର୍ବସ୍ୱ ମାନିନେଇ, ଆଜି ବଞ୍ଚି କାଲି ମରିବା-ବାଲା ଅଳ୍ପଜୀବୀ ଅନ୍ତଃପୁରବାସୀମାନେ କଣ ମଣିଷ ? ପ୍ରକୃତରେ ମର୍ଦ୍ଦ ପଣିଆ ଅଛି ବୋଲି କାମେଶମ୍ ପଡ଼ିଶା ଘରର ପିଲାମାନେ ଶୋକରେ ରହିଲେ ବ୍ୟସ୍ତହୋଇ ଉଠୁଥିଲା । ସାମନା ଘରେ ଚୋରି ହବାର ଦେଖି ଦୌଡ଼ି ଯାଇଥିଲା ।

କାମେଶମ୍‌ର ଶରୀରରେ ପ୍ରହାରର ଦାଗ ଦେଖି ସମସ୍ତେ ଚକିତ ହୋଇଗଲେ ।

"କଣ କାମେଶମ୍ ! ତୋର ବାପାଙ୍କର ଏତିକି ବୁଝିବା ଶକ୍ତି ନାହିଁ ? ପୁଅକୁ ଏପରି ମାରନ୍ତି ?"

କାମେଶମ୍ ବଡ଼ ଜୋରରେ ଏବଂ ଗର୍ବରେ ହସି ଉଠିଲା । "ଅରେ, ମାଡ଼ ଖାଇଲେ କଣ ହେଲା ? ଆଜି ଦାଗ ପଡ଼ି ଯାଇଛି···କାଲି ଲିଭି ଯିବ···ସବୁଦିନ କଥା ରହିଲା ଭଲଆ କାମ କରିବା ଉଚିତ, ଭାଇ ! ···ସାମନା ବାଲା ଉପରେ ଅନ୍ୟାୟ ହଉଛି ଦେଖି-କରି ବି ଯଦି ଆମେ ଚୁପ୍ ରହି ଯାଉ ତ ଆମ ଭିତରେ ଏବଂ ପଶୁମାନଙ୍କ ମଧ୍ୟରେ କିଛି ବିଶେଷ ପ୍ରଭେଦ ରହେନାହିଁ ··ଆମର ଏଭଳି କାମ କରିବା ଉଚିତ ଯାହାକି ଆମକୁ ମଣିଷ କରିବ... ।"

ଜଗନ୍ନାଥମ୍‌ର ଶରୀର ପୁଲକିତ ହୋଇ ଉଠିଲା ।

"କାମେଶମ୍, ମତେ ବି ତୋର ଦଳଭୁକ୍ତ କରି ନେ ନା ?" ଏହି କଥା ପଦକ କହିବା ପାଇଁ ସାହସ ବାନ୍ଧି ପାରିଥିବା ଯୋଗୁଁ ଜଗନ୍ନାଥମ୍‌ର ମନ ଅନିର୍ବାକ ଆନନ୍ଦରେ ଭରି ଉଠିଲା । ଏହି ଉତ୍ସାହକୁ ଦୃଢ଼ତାର କଷଟି ପଥରରେ କଷିନେବାର ସୁଯୋଗ ମଧ୍ୟ ଶୀଘ୍ର ଆସି ପହଞ୍ଚିଲା ।

ଗାଁରେ ସମସ୍ତଙ୍କ ଘରେ ପାଣି ବୋହି ଯୋଗାଉଥିବା ସୁବ୍ୟବସ୍ଥା ହଠାତ୍ ମରିଗଲା । ଯାହା ମିଳୁଥିଲା ସେଇଥିରେ ସନ୍ତୁଷ୍ଟ ହୋଇ, ରାତି, ଦିନ ଯେକୌଣସି ସମୟରେ, ଯେକୌଣସି ଜାଗାରେ, ଯେକୌଣସି ସାହାଯ୍ୟ ଦର୍କାର ପଡ଼ିବାବେଳେ ଯେଉଁ ସୁବ୍ୟବସ୍ଥା ସେଠି ସେହି ସାହାଯ୍ୟ କରିବା ପାଇଁ ପହଞ୍ଚୁଥିଲା, ଗୁରିଦିନ ମାଡ଼ ଜ୍ୱରରେ

ପଡ଼ି ଆଖି ବୁଜିଦେଲା । ଏ ଦୁନିଆରୁ ଚାଲିଗଲା ।

ପ୍ରତ୍ୟେକ ବ୍ରାହ୍ମଣ ପରିବାରରେ ତାର ନିକଟତ୍ୱ ଥିବାର କାରଣ ଥିଲା । ତାର ଜଣାଶୁଣା ପରିବାରମାନଙ୍କ ଭିତରେ ଯେ କେହି, କୋଉଠି ବେମାରି ହେଲେ ତ ସେ ଦିନ ରାତି ଆଠ ପ୍ରହର ସେ ରୋଗୀର ସେବା ଶୁଶ୍ରୂଷାରେ ଲାଗି ରହୁଥିଲା । ଯୋଉଠି ନିଜର ମା-ଭଉଣୀ ମଧ୍ୟ ପାଖରେ ବସିବାକୁ ଡରୁଥିଲେ, ସେପରି ସଂକ୍ରାମକ ରୋଗୀ ପାଖରେ ବି ସେ ନିର୍ଭୟ ହୋଇ ସେବାକରି ଯାଉଥିଲା । ପାଣିବାଲୀ ସୁବ୍ବମ୍ମା କ୍ରମେ ପରୋପକାରୀ ସୁବ୍ବମ୍ମା ରୂପରେ ଚିହ୍ନିତ ହେଲା । ଶେଷକୁ ତାର ପରୋପକାର ରହିଗଲା, ସେ ଚାଲିଗଲା ।

ସେହି ସୁବ୍ବମ୍ମା କାମେଶମ୍ ଘରେ ମଧ୍ୟ ପାଣି ଯୋଗାଉଥିଲା । ଦିନେ ସୁବ୍ବମ୍ମାର ମା ବେଙ୍କମ୍ମା ତାର ମା ପାଖକୁ କଥାବାର୍ତ୍ତା କରିବା ପାଇଁ ଆସୁଥିବାର ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲା । କାଲି ହି ପନ୍ଦରରେ ତ ସେ ତା ପୁଅକୁ ଭଗବାନଙ୍କ ହାତରେ ସମର୍ପି ଦେଇ ଆସିଛି । ଏପରି ସମୟରେ ତ ଲୋକେ ତା ଘରକୁ ଯାଇ ତାକୁ ସାନ୍ତ୍ୱନା ଦେବା କଥା । କିନ୍ତୁ ଏ କଣ ? ମାକୁ ଦେଖୁ ଦେଖୁ ବେଙ୍କମ୍ମା କାନ୍ଦି ଉଠିଲା । ମା ତାକୁ ସାନ୍ତ୍ୱନା ଦେଇ କହିଲା "ଧୈର୍ଯ୍ୟ ଧର ବେଙ୍କମ୍ମା, ବର୍ତ୍ତମାନ ତୁ ବା କଣ କରି ପାରିବୁ । ଏ ବୟସରେ ତୋ କପାଳରେ ଏ ଦୁଃଖ ଲେଖା ଥିଲା...ଆମ ହାତରେ କଣ ଅଛି ?"

"ଏ କଥା ନୁହେଁ, ଅନ୍ନପୂର୍ଣ୍ଣା ମା, ଗାଁରେ ଯେକୌଣସି ଲୋକର ଯେକୌଣସି ଜାଗାରେ ମୃତ୍ୟୁ ହେଉଥିଲା ତ ସେ ଆଗଭର ହୋଇ କ୍ରିୟା-କର୍ମର ସବୁ ଆୟୋଜନ କରି ଦେଉଥିଲା । ସନ୍ତାନ-ହରା ମାତାପିତାଙ୍କୁ ସାନ୍ତ୍ୱନା ଦେଇ ଛୋଟ ଛୋଟ ପିଲାଙ୍କ ଶବ କନାରେ ଗୁଡ଼ାଇ, ସେ ଶ୍ମଶାନକୁ ନେଇ ଯାଉଥିଲା । ସେ ଦୃଶ୍ୟ ଆଜି ବି ମୋ ଆଖି ଆଗରେ ନାଚୁଛି । କେଜାଣି କେତେ ଅନାଥଙ୍କର ସେ ଦାହ ସଂସ୍କାର କରିଛି । ମୋର ଦୁର୍ଭାଗ୍ୟ ଏପରି ଯେ ମୁଁ ବଞ୍ଚି ଥାଉ ଥାଉ ସେ ଚାଲିଗଲା । ତାର ସମସ୍ତଙ୍କ ପାଇଁ ମୁଣ୍ଡ ବଥାଉ ଥିଲା । ଆଜି ତାପାଇଁ କେହି ନାହିଁ । ତାର ଶବ ଉଠାଇ ନେଇ ଯିବାପାଇଁ କେହି ଆସିଲେ ନାହିଁ । ମୁଁ ବୁଢ଼ୀଲୋକ ଏକୁଟିଆ କଣ କରି ପାରିବି, ଭଉଣୀ ।" ବେଙ୍କମ୍ମା ଅଧୀର କହିଁ କହିଁ ହୋଇ କାନ୍ଦୁଥିଲା । ମା ତାକୁ ଦୁଇଟି ଟଙ୍କା ଦେଲେ । ବେଙ୍କମ୍ମା ଯାଉଥିବାବେଳେ କାମେଶମ୍ ତାକୁ ବାହାରେ ଭେଟିଲା ।

"ମୋ ବାପା କଲମ କିଣିବା ପାଇଁ ମତେ ଦୁଇଟଙ୍କା ଦେଇଛନ୍ତି । ମୋର କଲମ କିଛି ଦରକାର ନାହିଁ । କଲମ ନଥିଲେ ପେନ୍‌ସିଲରେ ଲେଖିବି···ମାଷ୍ଟ୍ରେ ମାରିବେ··· ମାରନ୍ତୁ···ଏଥିକରେ ମୁଁ ମରି ଯିବିନାହିଁ··· । ଏଇ ନିଅ ଆଇମା, ଏ ଦୁଇ ଟଙ୍କା ବି ରଖ କିଛି କାମରେ ଲାଗିଯିବ ।"

ବେଙ୍କମ୍ମାର ଆଖି ଲୋତକରେ ପୂର୍ଣ୍ଣ ହୋଇଗଲା । "ନାହିଁ ପୁଅ ! ମା ଦେଲେ, ସେଥିପାଇଁ ସେତକ ନେଇଦେଲି । ତମର ଏଥିରେ କଣ ଲୋଡ଼ା । କାଲି ଦୁଇଟା

ବେଲୁ ପ୍ରାଣ ବାହାରଗଲାଣି...ଏପର୍ଯ୍ୟନ୍ତ ତାଙ୍କୁ ନାଆଁ ଦେଲାବାଲା କେହି ମିଳୁନାହାନ୍ତି···ଏ ଗାଁରେ ପୂର୍ବ ଦୁଇ ଶହ ବ୍ରାହ୍ମଣ ପରିବାର ଅଛନ୍ତି ··ଦୂରରୁ ଲୁହ ବୁହାଇ ସମସ୍ତେ ଚାଲିଗଲେ, ବ୍ୟବସ୍ଥା କରିବା କଥା କେହି ଭାବିଲେ ବି ନାହିଁ । ମୁଁ ଏକାକୀ ସ୍ତ୍ରୀଲୋକ, ବୃଦ୍ଧୀ···ମୋ ଦ୍ୱାରା କଣ ହବ ?"

କାମେଶମ୍‌ର ମା କହିଥିବା କଥା ମନେ ପଡ଼ିଗଲା—

"ଆମ ହାତରେ କଣ ଅଛି ?"

କାମେଶମ୍ ତାର ଦୁଇ ହାତ ମେଲାଇ ଦେଖିଲା । କୁରୁତାର ହାତ ଉପରକୁ ଟେକି ତା ମାଂସପେଶୀକୁ ଦେଖିଲା । ତାର ରକ୍ତ ତାତିଉଠିଲା । "ଯଦି ଆମର ଇଚ୍ଛା ଆଏ ତେବେ ଆମ ହାତରେ ସବୁ କିଛି ଅଛି"—ତାର ଆଖି ଚମକି ଉଠିଲା ।

"ଆଇ ମା ! ମୁନୀଶ୍ୱରର ଶବକୁ ନେଲାପରି ଆପଣଙ୍କ ପୁଅର ଶବକୁ ମ୍ୟୁନିସିପାଲିଟି ଗାଡ଼ି ବୋହିନେଇଯିବ । ଏପରି ଦୁର୍ନାମ ଏ ଗାଁକୁ ମିଳିବା ଉଚିତ ନୁହେଁ । ଚାଲ, ମୁଁ ସାଙ୍ଗରେ ଯାଉଛି ।"

ସେ ସମୟରେ କାମେଶମ୍‌ର ମୁଖଭଙ୍ଗୀ ଏବଂ ଚାଲିର ଠାଣି ଦେଖି ସେହାଇକୁ ନାନା ରୂପରେ ଦେଖିଥିବା, ବିଭିନ୍ନ ପ୍ରକାରର ଅନୁଭୂତିସମ୍ପନ୍ନ ବ୍ୟକ୍ତି ମଧ୍ୟ ଚମତ୍କୃତ ନ ହୋଇ ରହିପାରିବ ନାହିଁ । ଆଗେ ଆଗେ ବେଙ୍କମ୍ମା ଏବଂ ପଛେ ପଛେ କାମେଶମ୍‌କୁ ଦେଖି କାମେଶମର ସାଥୀମାନେ ତା ପଛରେ ଚାଲିଲେ । ଥଣ୍ଡା ପବନରୁ ରକ୍ଷା ପାଇବା ପାଇଁ କାନ ମୁଣ୍ଡରେ 'ମଫଲର୍' ଗୁଡ଼ାଇ ହୋଇ ଝରକାବାଟେ ଅନାଇ ଦେଖୁଥିଲା ଜଗନ୍ନାଥମ୍ । କାମେଶ୍ୱରକୁ ଦେଖିବାମାତ୍ରେ 'ମଫଲର' କାଢ଼ି ପକାଇ ଦେଲା, କେବଳ ମଫଲର ନୁହେଁ ବରଂ ନିଜର ଅକର୍ମଣ୍ୟତା ଏବଂ ଭୀରୁତାକୁ ଫୋପାଡ଼ି ଦେଲା । ସେତେବେଳେ ସେ ମଣିଷଟି କେବଳ ମଣିଷ ନୁହେଁ, ମନୀଷୀ ହୋଇଗଲା । ହଁ, ଠିକ୍ ସେହି ସମୟରେ ଘନୀଭୂତ ଜଡ଼ତାର ଘୋର ଅନ୍ଧକାରରେ ଶୋଇପଡ଼ିଥିବା ପତଙ୍ଗ ନିଜ ଆବରଣକୁ ଫଟାଇ ରଙ୍ଗ-ବେରଙ୍ଗୀ ପ୍ରଜାପତି ହୋଇ ବାହାରକୁ ବାହାରି ଆସିଲା । ସେହି ସମୟ —ହଁ, ସେହି ସମୟରେ···ଅମାବାସ୍ୟାର ଘୋର ଅନ୍ଧକାରରେ ଦୀପାବଳୀ ଉଦ୍‌ଭାସିତ ହୋଇଥିଲା । କାଲେ ସେ ପଛେଇଯିବ ଏହି ଭୟରେ ଜଗନ୍ନାଥମ୍ ନିଜକୁ ଆଶ୍ଚର୍ଯ୍ୟ କରିଦେଲା ପରି ଉତ୍ସାହ ନେଇ ଦୌଡ଼ିଲା, ଆଉ ସେହି ଦଳରେ ସେ ଖାଲି ମିଶିଗଲା ନାହିଁ; ବରଂ ସିଧା ଯାଇ କାମେଶମ୍‌ର ହାତ ଧରି ଛିଡ଼ାହୋଇଗଲା ।

ସେତେବେଳେ ପିଲାମାନେ ଏ କଥାର ଖିଆଲ ବି କରି ନ ଥିଲେ; ବଡ଼ମାନେ କଣ କହିବେ । ଏହାଠାରୁ ଅଧିକ ଆଶ୍ଚର୍ଯ୍ୟ କଥା ଯେ ପିଲାମାନଙ୍କୁ ଗାଳିଦେବା କଥା ବଡ଼ମାନଙ୍କର ଖିଆଲରେ ବି ଆସିଲା ନାହିଁ । ଅସଲ କଥା ହେଲା··

"ଆମର ବାପ-ମା ବଞ୍ଚିଛନ୍ତି···ଆମେ ମଶାଣିକୁ ଯିବା ଉଚିତ ନୁହେଁ ।"

"କାଲି ପରିଦିନ ମୋ ଜର ଛାଡ଼ିଛି···ମତେ ତ ଡର ମାଡ଼ୁଛି ।"

"ଆମ ଘରେ ଅଶୌଚ ହୋଇଛି; ନ ହେଲେ ମୁଁ ନିଶ୍ଚୟ ଯାଇଥାନ୍ତି ।"

"ମୋ ସ୍ତ୍ରୀ ଅନ୍ତଃସତ୍ତ୍ୱା; ଲୋକେ କୁହନ୍ତି, ମୋର ଏ ସମୟରେ ଶ୍ମଶାନକୁ ଯିବା କଥା ନୁହେଁ ।"

ଏହିଭଳି କିଛି ବାହାନା କରି ଯେଉଁ ମହାଶୟମାନେ ଟାଳିଦେଇଥିଲେ, ସେହି ଲୋକମାନେ ଆଗକୁ ବଢ଼ି "ମୁଁ ଉଠାଇବି," "ମୁଁ ଉଠାଇବି" କହିବାକୁ ଲାଗିଲେ ।

ସୁବ୍ବୟ୍ୟାର ଶବ-ଶୋଭାଯାତ୍ରା ଠାକୁରଙ୍କର ଶୋଭାଯାତ୍ରା ଭଳି ଧୁମ୍‌ଧାମ୍ ଆଡ଼ମ୍ବରରେ ବାହାରିଲା ।

ଶବକୁ କାନ୍ଧେଇ କାମେଶମ୍ ଯେଉଁ କଥା କହିଥିଲା ତାହା ଜଗନ୍ନାଥମ୍ ତାର ଜୀବନ ମନେ ରଖିବ ।

"ଭଲ ଭଲ କାମ କରିବାକୁ ଡେଙ୍ଗୁରା ପିଟି ବୁଲୁ · ଯେତେବେଳେ ଦରକାର ପଡ଼େ ତ କୋଣେ ବାଟ ଧରିଯାଉ...ଏପରି ଜୀବନ ଜୀବନ ନୁହେଁ, ମୃତ୍ୟୁ ଅଟେ । ଆମର ଶୁଭ ସଂକଳ୍ପର ଶୁଭାରମ୍ଭ, ଆମ ନିଜ ସଂସ୍କାରର ଶୁଭାରମ୍ଭ ଏଇଠୁ ହେଉ···ଆମେ ସବୁ ଭାଇମାନେ ମିଶି ଏହି ଶବକୁ ଆଗେ କାନ୍ଧରେ ରଖି ନବା"—ଏହା କହି ସେ ସମସ୍ତଙ୍କ କାନ୍ଧରେ ଶବ ରଖାଇଲା । ଯେଉଁ ପିଲା ଉଇଡାରେ ଶ୍ରେଷ୍ଠ ଥିଲେ, ସେ ଶବ ତଳ-ଦେଇ ଏପାଖ ସେପାଖ ଦୌଡ଼ିବାକୁ ଲାଗିଲେ ।

ଜଗନ୍ନାଥମ୍ ତ ଗୁରୁକୁ ଆହୁରି ପାଖକୁ ଟାଣିନେଲା । ହାତ ଯୋଡ଼ି ନମସ୍କାର କଲା ।

'ଠାକୁରଙ୍କ ପାଲିଙ୍କି ଚାଲିଗଲା, ଜେଜେ !' ନାତି ଆଶ୍ଚର୍ଯ୍ୟ ହୋଇ କହିଲା ।

"ନା ନା" ଜେଜେ ଗୁଣୁଗୁଣୁ ହେବାକୁ ଲାଗିଲେ । ସାରା ଜୀବନଯାକୁ ଅନ୍ଧ ଥିଲା ସେ ଆଖି । ଆଜି ସେ ଆଖିରେ ଭରିଯାଇଥିଲା ଅପୂର୍ବ ଜ୍ୟୋତି । ଜଗତକୁ ଦେଖୁଥିଲା; କିଛି ବୁଝି ପାରୁ ନଥିଲା ।

ସେ ତା ଜେଜେଙ୍କ ଗଳାକୁ ଜୋରରେ ଭିଡ଼ିଧରିଲା ।

# ଯନ୍ତ୍ରଜୀବୀ

ସାଧାରଣ ଡାକ୍ତରଖାନାର ମର୍ଚ୍ଚୁଆରୀ ରୁମ୍‌ରେ ଏଟାପ୍‌ସି ଚାଲିଛି । ପାଥୋଲୋଜିର ପ୍ରଫେସର ଶ୍ରୀଧର ଟେବୁଲରେ ଶବକୁ ଡିସେକ୍ଟ କରୁ କରୁ ଯେଉଁ କଥା ତାଙ୍କ ଦୃଷ୍ଟିରେ ଆସୁଛି, ସେଠାରେ ଏକତ୍ର ହୋଇଥିବା ଛାତ୍ରମାନଙ୍କୁ ବଡ଼ ଉତ୍ସାହ ସହିତ ବୁଝାଉଛନ୍ତି । ସେହି ଦିନ ଆସିଷ୍ଟାଣ୍ଟ ଭୂମିକା ଗ୍ରହଣ କରି ଗୋଟିଏ ଛାତ୍ର ଶୀଘ୍ର ଶୀଘ୍ର ନୋଟ୍ ନେଇନେଉଛି ।

"ଦେଖନ୍ତୁ, ଏପରି ବହୁତ କମ ଘଟଣା ହୁଏ ଯେଉଁଠାରେ ଏଣ୍ଟିବାୟୋଟିକ୍ ଯୁଗରେ ସିଫିଲିସ୍ ଏତେ ଷ୍ଟାଣ୍ଡ୍ ଡେର ଜମେଇ ଦେଇପାରେ । ଏହାପୂର୍ବରୁ ଏପରି କୌଣସି ଘଟଣା ମଧ୍ୟ ଦେଖିବାକୁ ମିଳିନଥିଲା । ଏଠାରେ କାଡ଼୍‌ନଠାରେ ଦେଖନ୍ତୁ, କିପରି ପ୍ୟାସେଜ ତିଆରି ହୋଇଛି । ଆପଣମାନଙ୍କର 'ଫିଲ୍' କରିବା ଉଚିତ ଯେ ଏଠାରେ କନସିଷ୍ଟେନ୍‌ସି କେତେ 'ଫର୍ମ' ଅଛି···ଆଇ ସେ ଇଟ୍ ଇଜ୍ ରୁଡ୍ ହାର୍ଡ'···ଏହି ଦେଖନ୍ତୁ ଲିଭର୍ · ବ୍ରେନ୍···ଇସୁଫିକସ୍···ଇସୁ ଫିଲ୍ ଦି ଲିଙ୍କ୍ ଗ୍ଲାଣ୍ଡସ୍ ହ୍ୟୁମର···କ୍ଲିପିକାଲ୍ ସର୍ଟ ଏପିୟରେନ୍‌ସ ··ବଟ୍ ଏ ୱାଣ୍ଡରଫୁଲ୍ . ଟେରିଫିୟରିଙ୍ଗ ଷ୍ଟେଜ ଇଟ୍ ଇଜ······ ।"

ଏବଂ ଗୋଟିଏ ଘଣ୍ଟାରେ ଅଟୋପିସ୍ ଶେଷ ହୋଇଗଲା । ଶରୀରର ଯେଉଁ ଅଂଶ ବଡ଼ ସାବଧାନତା ସହିତ ବାହାର କରାଯାଇଛି, ତାକୁ ବାକ୍‌ସରେ ସୁରକ୍ଷିତଭାବେ ମ୍ୟୁଜିୟମ୍‌ରେ ରଖିବା ବ୍ୟବସ୍ଥା କରିବା ପାଇଁ ଆସିଷ୍ଟାଣ୍ଟଙ୍କୁ ଜଣାଇଦେଲେ ଏବଂ ୱାସ୍ ବେସିନ୍‌ରେ ହାତ ଧୋଇ ଶ୍ରୀଧର ବାହାରକୁ ଚାଲିଗଲେ ।

ମର୍ଚ୍ଚୁଆରୀ ବାହାରେ ବୋଧହୁଏ ସେହି ମୃତ ମହିଳାର ଆତ୍ମୀୟମାନେ—ପାଞ୍ଚ ଛ ଜଣ ଲୋକ ଗଛତଳେ ବସିଥିବାର ଦେଖାଗଲା । ଶ୍ରୀଧର ଭାବିଲେ ବୋଧହୁଏ ମୃତ ଶରୀର ପାଇଁ ବସିଛନ୍ତି । ବର୍ତ୍ତମାନ ଏହି ଖଣ୍ଡବିଖଣ୍ଡିତ ଶରୀରକୁ ନେଇଯାଇ ମାଟିତଳେ ପୋତି ଦେବା ପରେ ଏହି ସାଦାସିଧା ଲୋକମାନଙ୍କୁ ଏବଂ ମୃତ ନାରୀର ଆତ୍ମାକୁ ସତେ କି ଶାନ୍ତି ମିଳିବ । କିପରି ଆଶ୍ଚର୍ଯ୍ୟ ଲୋକ । କିନ୍ତୁ ଏହି ଶରୀରର ସାର ଯେ ତ ବାହାର କରି ନେଇଛନ୍ତି । ତାର ମୁଖ୍ୟ ଅଙ୍ଗ ଏଠାରେ ମ୍ୟୁଜିୟମ୍‌ରେ ସୁରକ୍ଷିତ ହେବ । ବେକାର ସାରହୀନ କଳେବରକୁ ହିଁ ଏମାନେ କ୍ରିୟାକର୍ମ ପାଇଁ ନେଇଯିବେ ।

ଶ୍ରୀଧରଙ୍କର ଈଶ୍ୱରଙ୍କ ଉପରେ ବିଶ୍ୱାସ ନାହିଁ । ଅନ୍ଧବିଶ୍ୱାସକୁ ପାଖରେ ପୁରାଇ ଦିଅନ୍ତି ନାହିଁ । ସ୍ତ୍ରୀର ରକ୍ଷଣଶୀଳତା ଏବଂ ଅର୍ଦ୍ଧଜ୍ଞାନ ପରିପାଟୀ ଟିକେ ହେଲେ ତାଙ୍କ ଉପରେ ପ୍ରଭାବ ପକାଏ ନାହିଁ । ଯାହାକୁ ଆମେ "ଏଟାଚ୍‌ମେଣ୍ଟ" କହୁଛୁ, ସେସବୁଠାରୁ

ସେ ଦୂରରେ ।

ନିଜ କୋଠରୀକୁ ଯାଇ ହାତମୁହଁ ଧୋଇ ସେ ଖାଇବା ପାଇଁ ଟିଫିନ୍ କ୍ୟାରିୟର ଖୋଲିବାକୁ ଯାଉଥିଲେ ଠିକ୍ ସେହି ସମୟରେ ଟେବୁଲ ଉପରେ ଥିବା ଫୋନ୍ ବାଜିଉଠିଲା; ଯାଇ ରିସିଭର ଉଠାଇଲେ ।

ଡକ୍ଟର ରମାର ସ୍ୱର ଭାସିଆସିଲା—"ଡକ୍ଟର, କଂଗ୍ରାଚ୍ୟୁଲେସନସ୍" ସେପଟରୁ ଶୁଣାଗଲା ।

"କଥା କ'ଣ ?"

"ମୁଁ. ଶ୍ରୀଦେବୀକୁ ଏକଜାମିନ୍ କରିଛି । ସି ଇଜ୍ ପ୍ରେଗ୍‌ନାଣ୍ଟ । ପ୍ରାଇମ୍ ଅଟେ ନା ? ସେ ବହୁତ ଵିକ୍ । ଭଲ ଖାଇବା ଦେଇ ତା ପ୍ରତି ଦୃଷ୍ଟି ଦେବାକୁ ହେବ । ଆପଣ ବୋଧେ ଜାଣନ୍ତି ନାହିଁ ଶ୍ରୀଦେବୀ ମୋ ପାଖକୁ ଆସିଛନ୍ତି । ତାଙ୍କର ସନ୍ଦେହ ହେବାରୁ ମୋ ପାଖକୁ ଏକଜାମିନ୍ କରିବା ପାଇଁ ଆସିଲେ···ତିନିମାସ ହୋଇଛି ।"

ତାଙ୍କର କାନପାଖ ଯନ୍ତ୍ର ଶୁଣିବା କାମ ବନ୍ଦ କରିଦେଲା । କ୍ଷଣକ ମଧ୍ୟରେ ହଜାର କଥା ତାଙ୍କୁ ଭୟଭୀତ କରି ପକାଇଲା । ରିସିଭର୍ ହାତରେ ଅଛି ଏବଂ ହାତ ଥରୁଛି, 'ମାଇଁ ଗଡ୍' ଭିତରେ ଭିତରେ ନିଷ୍ପ୍ରଭ ହୋଇ ସେ କହିଲେ ।

ପୋର୍ଟିକରେ ଗାଡ଼ି ରଖି, ସମ୍ମୁଖରେ ସ୍ୱାଗତ କରିବା ପାଇଁ ଠିଆ ହୋଇଥିବା ଶ୍ରୀଦେବୀ ଆଡ଼କୁ ନ ଦେଖି ସେ ସିଧା ଘର ଭିତରକୁ ଯାଇ ସୋଫା ଉପରେ ବସିଗଲେ ।

ବୋଧେ ଶ୍ରୀଦେବୀର ଅନୁମାନ ଥିଲା ଯେ ସେ ଏହି ପ୍ରକାର କରିବେ । ଗୋଟିଏ ମିନିଟ୍ ସେ ଚୁପ୍ ରହିଲା । ପୁଣି ଧୀରେ ଧୀରେ ଯାଇ ସୋଫା ପଛପଟେ ଠିଆ ହେଲା ।

"ଏ ଖବର ଆପଣଙ୍କୁ ବିବ୍ରତ କରିଥିବ ?"

ସେ ମୁହଁ ଫେରାଇ ନିରର୍ଥକ ଦୃଷ୍ଟିରେ ଶ୍ରୀଦେବୀଙ୍କୁ ଚାହିଁଲେ । କେବେ କେବେ ତାଙ୍କର ଦୃଷ୍ଟି ଏହିପରି ଥାଏ ।

"ବସ କହୁଛି"— ପ୍ରଥମେ ସ୍ତ୍ରୀକୁ ପ୍ରସନ୍ନ କରିବା ପାଇଁ କହିଲେ ।

"ଠିକ୍ ଅଛି । କୁହ" ସେମିତି ଠିଆହୋଇ ଶ୍ରୀଦେବୀ କହିଲା ।

"ଏପରି ନୁହେଁ, ବସିଯାଅ ।"

ଶ୍ରୀଦେବୀ ସମ୍ମୁଖ ସୋଫାରେ ବସି ତାଙ୍କଆଡ଼କୁ ପ୍ରଶ୍ନବାଚୀ ଦୃଷ୍ଟିରେ ଚାହିଁଲେ ।

"ଦେଖ, ଶ୍ରୀଦେବୀ !" ବୁଝାଇବା ସ୍ୱରରେ ଆରମ୍ଭ କଲେ ତାଙ୍କ ସ୍ୱାମୀ ମେଡ଼ିକାଲ କଲେଜର ଅଧ୍ୟାପକ ଶ୍ରୀଧର । "ମୋ କଥା ଶୁଣି ମନ ଦୁଃଖ କରିବ ନାହିଁ । ପାଞ୍ଚବର୍ଷ ହେଲାଣି ଆମର ବିବାହ । ଏଥିରୁ ଦୁଇବର୍ଷ ମୁଁ ବିଲାତରେ ରହିଲି । ଆମ୍ଭମାନଙ୍କ ଜୀବନ ମଧ୍ୟ ଏହିପରି ଯାହା ବ୍ୟବସାୟ ଦୃଷ୍ଟିରେ ଶୀଘ୍ର ଏବଂ ଦାମ୍ପତ୍ୟ ଦୃଷ୍ଟିରେ ଡେରିରେ ଶୋଭା ପାଇପାରିବ ଏବଂ ଦୁଇବର୍ଷ ମଧ୍ୟରେ ମୋତେ ପୁଣି ଷ୍ଟେଟସ୍ ଯିବାକୁ

ହେବ । ଏଥର ତୁମକୁ ମୁଁ ସାଙ୍ଗରେ ନେଇଯିବା ପାଇଁ ଚାହୁଁଥିଲି । ଏପର୍ଯ୍ୟନ୍ତ ମୋ ମନରେ ସନ୍ତାନ କାମନା ସୃଷ୍ଟି ହୋଇନାହିଁ । ମୁଁ ଭୁଲରେ ମଧ୍ୟ ଭାବୁନାହିଁ ଯେ ଆମ ଜୀବନକୁ ଆନନ୍ଦମୟ କରିବାକୁ ଅଥବା ଜୀବନକୁ ସାର୍ଥକ କରିବା ପାଇଁ ପିଲାପିଲିର ଏତେଟା ଆବଶ୍ୟକତା ଅଛି । ଏସବୁ ଝିଞ୍ଜଟ ମୋତେ ଭଲଲାଗେ ନାହିଁ । ଏହା ଯାହା ଖାଲି ଆମ ରାସ୍ତାରେ ପ୍ରତିବନ୍ଧକ ସୃଷ୍ଟି କରିବ । ଆମେ ତ ବର୍ତ୍ତମାନ ବୁଢ଼ା ହୋଇଯାଇନାହୁଁ । ମୁଁ ଗୋଟିଏ ପ୍ରଶ୍ନ ପଚାରୁଛି । ତୁମେ କ'ଣ ଚାହୁଁଛ କି 'ହାପିନେସ୍' ଶେଷ ହୋଇଯାଉ ?"

ଶ୍ରୀଦେବୀ ବଡ଼ କଷ୍ଟରେ ବାହାରୁଥିବା ନିଶ୍ୱାସକୁ ଚାପିଦେଲେ । ତାଙ୍କ କଥା ଶୁଣିବା ପରେ ଶ୍ରୀଦେବୀଙ୍କ ମନରେ ଦୁଇଟି କଥା ଉଠିଲା । ପ୍ରଥମ କଥା—'ହାପିନେସ୍ କାହାକୁ କହନ୍ତି ?'

ଦ୍ୱିତୀୟ; ବର୍ତ୍ତମାନ ଏହି ସମସ୍ତ କଥା କାହିଁକି କହୁଛନ୍ତି ? ଅବସ୍ଥା ତ ବର୍ତ୍ତମାନ ନିଜ ଆୟତ୍ତରୁ ବାହାରିଯାଇଛି ।

"ସବୁ ଶୁଣିନେଲ ନା ? ଏହି ପଶ୍ନକୁ ସୁଚେଇଦେବା ଦୃଷ୍ଟିରେ ଚାହିଁ ପ୍ରଫେସର ଶେଷରେ କହିଲେ ବର୍ତ୍ତମାନ ତୁମେ କ'ଣ ଚାହୁଁଛ ?"

କୌଣସି ପ୍ରକାର ହସି ସେ କହିଲେ, "ତୁମେ ବଡ଼ ଆଶ୍ଚର୍ଯ୍ୟ ଢଙ୍ଗର ଜଣାପଡୁଛ, ଏଥିରେ କହିବା ପାଇଁ କ'ଣ ଅଛି ?"

"କହିବା ପାଇଁ କିଛି ନାହିଁ ?" ସେ ନିରାଶ ହୋଇ କହିଲେ ।

"ନାହିଁ ।"

"ମୁଁ ମଧ୍ୟ ଭାବିନଥିଲି ଯେ, ଏତେ ଶୀଘ୍ର ଏତେ ବଡ଼ ବିପଦ ଆସିବ ।" ହାତ ମଳାମଳି ସେ ନିଜେ ନିଜେ ଗୁଣୁଗୁଣୁ ହେବାକୁ ଲାଗିଲେ । ଏପରି ଅଦ୍ଭୁତ ପରିସ୍ଥିତିରେ ମଧ୍ୟ ନିଜ ହସକୁ ଚାପିନେଇ ସେ ଆସ୍ତେ ଉଠି ଶ୍ରୀଧରଙ୍କ ପାଖରେ ଯାଇ ବସିଲେ । ଟିକେ ବିନୟ ଦେଖାଇବା ପାଇଁ ସେ ତାଙ୍କ କାନ୍ଧ ଉପରେ ହାତ ରଖି କହିବାକୁ ଲାଗିଲେ, "ଦେଖନ୍ତୁ ଆଜ୍ଞା !"

ଶ୍ରୀଧର ନିଜ ସ୍ତ୍ରୀଆଡ଼କୁ ମୁହଁ ବୁଲାଇ ଚାହିଁଲେ । ପୁଣି ସେହି ଭାବଶୂନ୍ୟ ଚାହାଣି ଏବଂ ନିଷ୍କ୍ରିୟ କଣ୍ଠସ୍ୱର—"ଶ୍ରୀଦେବୀ ! ଏହି ମମତା, ମୋହ, ପରିଶ୍ରମ, ଚେଷ୍ଟା ଏସବୁ ମୋ ପ୍ରକୃତିର ଅନୁକୂଳ ନୁହେଁ । ମୋତେ ନିଜ ପ୍ରକୃତିର ଅନୁକୂଳ ଜୀବନ ଦରକାର । ମୁଁ ଯାହା କିଛି ଚାହୁଁଛି; ଯେପରି ରହିବାକୁ ଚାହୁଁଛି ମତେ ସେଥିଲେ ସେହି ଜିନିଷ ମିଳିବା ଉଚିତ । ଆକସ୍ମିକ ଘଟଣାଗୁଡ଼ିକ ଏବଂ ଅବାଞ୍ଛନୀୟ ବନ୍ଧନ ମୋତେ ପସନ୍ଦ ନୁହେଁ । ତୁମେ ମୋତେ ଜାଣିଛ । ବିରହ-ମିଳନ, ଗୋଟିଏ ଅନ୍ୟ ପରେ ମରି ମିଶିଯିବା ପ୍ରଣୟର ଆକସ୍ମିକ ବିସ୍ଫୋଟ, ଅଶ୍ରୁରେ ଅଶ୍ରୁ, ରକ୍ତରେ ରକ୍ତ ଏବଂ ମାଂସ ଆଦି ଭାବନା ସହିତ ଦୁର୍ବଳତାର ଚେର ଜନ୍ମେଇ ବଢ଼ିଯିବା ଏବଂ ଜୀବନର ବିକାଶରେ

ପ୍ରତିବନ୍ଧକ ସୃଷ୍ଟି କରିବା—ଏସବୁ କଥା ମୋର ପସନ୍ଦ ହୁଏ ନାହିଁ । ଏହି ପୃଥିବୀରେ ଏହା ସବୁଠାରୁ ବଡ଼ ଦୁର୍ବଳତା । ଏହା ଯନ୍ତ୍ରଯୁଗ । ଜୀବନ କାନ୍ତକାରୀ ରୂପ ଧାରଣ କରୁଛି । ମାନବର ବୁଦ୍ଧି ଉପର ପଣ ନରମ ହେବା ଉଚିତ । ଦଉଡ଼ି ପଣ ଛିଣ୍ଡି ଯିବା ଉଚିତ ନୁହେଁ, ଶ୍ରୀଦେବୀ !"

ବହୁତ ସଂଯମ ହୋଇ ମଧ୍ୟ ସେ ନିଜ ଲୁହ ଲୁଚାଇ ପାରିଲା ନାହିଁ । ଯୁଗ-ଯୁଗ ପର୍ଯ୍ୟନ୍ତ ଅକ୍ଷରରେ ଲେଖାଯିବା ଯୋଗ୍ୟ ଅଶ୍ରୁକଣା କଅଁଳିଆ ଗଣ୍ଡଦେଶରେ ବହି ତାର ନିର୍ମଳଙ୍କ ଗଣ୍ଡଦେଶକୁ କଳଙ୍କିତ କରୁଛି ।

"କାନ୍ଦିବା ଲୋକ ଦେଖିଲେ ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗେ ।"

"ତୁମେ ନିଷ୍ଠୁର ।" ବାଷ୍ପରୁଦ୍ଧ କଣ୍ଠରେ ସେ ବିରକ୍ତ ହୋଇ କହିଲା । "ବୋଧହୁଏ ଠିକ୍ କହୁଛ ।" କହି ସେ ଉଠି ଠିଆ ହୋଇଗଲେ । ଘରକୁ ଆସିବା ପରେ ସେ ଲୁଗା ମଧ୍ୟ ବଦଳାଇ ନାହାନ୍ତି । ଅଭ୍ୟାସାନୁଯାରେ କଫି ମଧ୍ୟ ପିଇଲେ ନାହିଁ । ଆସ୍ତେ 'ଲେବରେଟୋରି'କୁ ଯାଇ ବାହାରଅଡ଼ିକୁ ମୁହଁ ସିଗାରେଟ୍ ଲଗାଇଲେ ।

"ବୋଧେ ଏହି କଠୋରତା ମୋର ମଙ୍ଗଳ କରିଛି । ଏତେ ଶ୍ରେଷ୍ଠ ବୟସରେ ପ୍ରଫେସର ହେବାରେ ହୁଏତ ଏହା ସାହାଯ୍ୟ କରିଛି । ପ୍ରେମର ଉନ୍ମାଦନାକୁ ଯଦି ମୁଁ ନିଷ୍ଠୁରତା ସହିତ ସମ୍ପୂର୍ଣ୍ଣ ହୀନ ହୋଇ ନ ଥାଆନ୍ତି ତେବେ ବୋଧେ ସାଧାରଣ ଗ୍ରାଜୁଏଟ୍ଟିଏ ହୋଇ ରହିଯାଇଥାଆନ୍ତି । ସତ କଥା ତୁମେ ଜାଣିଛ ।"

ସେ କୌଣସି ଜବାବ୍ ଦେଲା ନାହିଁ । ସେହି ନୀରବ ବାତାବରଣରେ ତାର କ୍ରନ୍ଦନ ମୃଦୁ ଲହଡ଼ି ପରି ଶୁଣାଗଲା ।

ଶୀତଦିନ ଥିଲା । ଦକ୍ଷିଣରୁ ରହି ରହି ଥଣ୍ଡା ପବନ ବହୁଥିଲା । ପୃଥିବୀ ଏବଂ ଆକାଶ ବହୁତ ପୂର୍ବରୁ ଥଣ୍ଡା ହୋଇଯାଇଥିଲେ । ଧୀରେ ଧୀରେ ଅନ୍ଧକାରର ଛାୟା ପୃଥିବୀ ଉପରେ ଘୋଟିଆସୁଥିଲା । ପ୍ରଫେସର ସାହାବ୍‌ଙ୍କ କୋଠା ସାମନା ବଗିଚାରେ ଗୋଲାପ, ଲିଲି, ମାଲତୀ, କୁସୁମ ଏବଂ ମାଧବୀ ଲତାକୁଞ୍ଜ ନେଇ ସୁବାସିତ ପବନ ଚାରିଆଡ଼େ ପ୍ରବାହିତ ହେଉଥିଲା । ଯେଉଁଠାରେ ସେ ଠିଆହୋଇଛନ୍ତି ସେଠାରୁ ଟିକେ ଦୂରରେ ୟୁକାଲିପଟସ୍ ଏବଂ କର୍ପୂର ଗଛ ମୃଦୁଳ ସୁଗନ୍ଧ ବିକୀରଣ କରୁଛନ୍ତି । ହାଇଦ୍ରାବାଦରେ ମୋରେଡ଼୍ପଲ୍ଲୀ ଅଞ୍ଚଳରେ ଗୋଟିଏ ଏକାନ୍ତ ଜାଗାରେ ସେ ନିଜ ରୁଚି ଅନୁସାରେ ଏହି ପ୍ରାସାଦ ତିଆରି କରିଥିଲେ । ଅତ୍ୟନ୍ତ ମନୋହର ବଗିଚା ଏବଂ ଏହି ବଗିଚାରେ ପ୍ରସ୍ଫୁଟିତ ରଙ୍ଗ-ବେରଙ୍ଗ ଫୁଲ—ସେସବୁ ଭାବୁକତାର ଆରାଧିକା ଶ୍ରୀଦେବୀର ନିରନ୍ତର ଚେଷ୍ଟାର ଫଳ । ପ୍ରଫେସର ଶ୍ରୀଧର ଶବର ମାଂସଖଣ୍ଡ ସହିତ ଏବଂ ମାଇକ୍ରୋସ୍କୋପ୍ ସହିତ ଯେପରି ଆତ୍ମୀୟତା ସହିତ କଥାବାର୍ତ୍ତା କରିପାରନ୍ତି—ସେତେ ଫୁଲ କମ୍ବା ଗଛ ସହିତ କରନ୍ତି ନାହିଁ । ତାହାର ସୁଷମା ଏବଂ ସୁଗନ୍ଧ ତାଙ୍କ ଆଖିଗୁଡ଼ିକୁ ଏବଂ ଘ୍ରାଣେନ୍ଦ୍ରିୟଗୁଡ଼ିକୁ ମୋଟେ ଆକୃଷ୍ଟ କରିପାରେ ନାହିଁ । ଇଟା ଏବଂ ସିମେଣ୍ଟରେ

ଡିଆରି ହୋଇଥିବା ଏବଂ ମୋଜାଇକ୍ ଚଟାଣରେ ଝଲସି ଉଠୁଥିବା ପ୍ରାସାଦକୁ ସଫା-ସୁତୁରା ରଖିବାରେ ସେ ବହୁତ କୁଶଳୀ ଅଟନ୍ତି ।

କିଛି ସମୟ ପରେ ସିଗାରେଟ୍ ପକାଇ ଦେଇ ପଛପଟକୁ ବୁଲି ନ ଚାହିଁ ସେ କହିଲେ, "ସାଧନା ମୋ ଜୀବନର ଚରମ ଲକ୍ଷ୍ୟ । ସେହି ଶିଖର ପର୍ଯ୍ୟନ୍ତ ପହଞ୍ଚିବାକୁ ଶ୍ରେଷ୍ଠ ଶ୍ରେଷ୍ଠ ପ୍ରତିବନ୍ଧକ ଅଛି । ଯଦି ତମେ ମୋର ପରାମର୍ଶ ମାନିବ ତେବେ ଏହି ପ୍ରତିବନ୍ଧକରୁ ସହଜରେ ଉଦ୍ଧାର ପାଇବ । ବର୍ତ୍ତମାନ କେଉଁ ଡେରି ହୋଇଗଲାଣି— ମାସେ ଦୁଇମାସର ଘଟଣା । ବାସ୍ ଏତିକି ହିଁ ହୋଇଛି ନାଁ ? ତୁମର ସ୍ୱାସ୍ଥ୍ୟ ଏମିତିରେ ତ ଭଲ ରହୁନାହିଁ । ମୋତେ ସନ୍ଦେହ ହେଉଛି ଯେ ପିଲାଟିକୁ ଜନ୍ମ କରିପାରିବ କି ନାହିଁ । ଗୋଟିଏ ଶ୍ରେଷ୍ଠ ଜୀବନ ପାଇଁ ନିଜ ଜୀବନକୁ ବିପଦରେ ପକାଇବା ନିର୍ବୋଧତା ··ମୋ କଥା ମାନିନିଅ । ଏହି ଅବସ୍ଥାରେ ମୋତେ ଏହା ପସନ୍ଦ ନୁହେଁ । ବର୍ତ୍ତମାନ ମଧ୍ୟ ସମୟ ଅଛି · ମୁଁ ନିଜେ ଡାକ୍ତର । ଏହାକୁ ନଷ୍ଟ କରିଦେବା ମୋ ପକ୍ଷେ ଅସମ୍ଭବ କଥା ନୁହେଁ ।"

ଗୋଟିଏ ମିନଟ୍···ନା ··କ୍ଷଣକ ପାଇଁ ନିସ୍ତବ୍ଧତା ଭୂମିକମ୍ପ ପୂର୍ବରୁ, ନଚେତ୍ ସମୁଦ୍ର ସ୍ଥଳଭାଗକୁ ମାଡ଼ି ଆସିବା ପୂର୍ବରୁ, ଆଗ୍ନେୟଗିରିରେ ବିସ୍ଫୋରଣ ପୂର୍ବରୁ କ୍ଷଣକ ପାଇଁ ଯେପରି ସେ ସଂକୁଚିତ ହୋଇଯାଏ ସେହିପରି ଅଗ୍ନି ବରଷିବା ପରି ନୀରବତା ଏବଂ ତାପରେ ଭୀଷଣ କୋଳାହଳ ।

ସେ ଚମକିପଡ଼ିଲେ । ପଛକୁ ବୁଲି ଦେଖିଲେ ଶ୍ରୀଦେବୀ ଚଟାଣ ଉପରେ ବେହୋସ୍ ହୋଇ ପଡ଼ିଛି ।

ସନ୍ଧ୍ୟାର ଆଲୋକ ସାରା କୋଠରିରେ ଆଲୋକ ବିସ୍ତାର କରିଛି । କାନ୍ଥରେ ଟଙ୍ଗା ହୋଇଥିବା ଘଣ୍ଟାରୁ ଟିକ୍ ଟିକ୍ ଆବାଜ ଶୁଣାଯାଉଛି । ବାରଟା ବାଜିଯାଇଛି ।

ଶ୍ରୀଦେବୀକୁ ନିଦ ଆସୁନାହିଁ । ଗଳା ପର୍ଯ୍ୟନ୍ତ ଚଦର ଟାଣି ଶୋଇ ଶୋଇ ଆଖି ବନ୍ଦ କରି ସେ ଭାବୁଛି । ଯେତେବେଳେ ସନ୍ଧ୍ୟାବେଳେ ଏହି ଘଟଣା ହୋଇଥିଲା, ସେହି ସମୟଠାରୁ ନିଜ ସ୍ୱାମୀଙ୍କୁ ମନେ ପକାଇ ତାର ହୃଦୟ ଥରୁଥିଲା । ତା ହୃଦୟର ପ୍ରତି ଅନ୍ଧକାରରେ ସେ ସ୍ୱାମୀ ରୂପରେ ନୁହେଁ, କିନ୍ତୁ ଜଣେ ପ୍ରଫେସର୍ ରୂପରେ, ଯନ୍ତ୍ରଜୀବୀ ରୂପରେ ପ୍ରତ୍ୟକ୍ଷ ହେଉଛନ୍ତି । ଆଜି ରାତିରେ ସେ ଶୋଇବ ନାହିଁ ।

ଲୁହରେ ସେ ନିଜ ତକିଆକୁ ଭିଜେଇ ଦେଇଛି । ଆଜି ରାତିରେ ସେ ଶୁଖିଯିବ ନାହିଁ ।

ଅଧାଖୋଲା ଆଖିରେ ସେ ନିଜ ସ୍ୱାମୀଙ୍କ ପଲଙ୍କ ଆଡ଼କୁ ଚାହିଁଲା । ସବୁଦିନ ପରି ସେ ସେଠାରେ କଡ଼ ଲେଉଟାଇ ଶୋଇଛନ୍ତି; ବୋଧେ ଗାଢ଼ନିଦରେ ।

ସବୁବେଳେ ଏହିପରି ହୁଏ । ଏହା ତାଙ୍କର ବ୍ୟକ୍ତିତ୍ୱ । କେବେ କେବେ ଶ୍ରୀଦେବୀ ସେହି ବ୍ୟକ୍ତିତ୍ୱ ସ୍ତରକୁ ଉଠିବା ପାଇଁ ବିଚାର କରେ; କିନ୍ତୁ ଇଚ୍ଛା ହୁଏ ନାହିଁ । ତାକୁ ଲାଗେ, ତଳକୁ ଖସିଯିବା ହିଁ ଶ୍ରେୟସ୍କର ।

ବର୍ତ୍ତମାନ ତାଙ୍କର ବୟସ ପଇଁତିରିଶ, ଛତିଶ ବେଶ୍ ଅଧିକ ହେବେନି । ତାଙ୍କର ଚକ୍ଷୁରେ ସର୍ବଦା ଶାନ୍ତ ବିରାଜମାନ ହୁଏ । ତାଙ୍କର ନିର୍ମଳ ମୁଖମଣ୍ଡଳରେ କୌଣସି-ହେଲେ ଦୁର୍ବଳତାର ଲକ୍ଷଣ ମଧ୍ୟ ଦେଖାଯାଏ ନାହିଁ । ତାଙ୍କର କେଶରାଶୀ ଚିକ୍କଣ, ଗୋଟିଏ ମଧ୍ୟ ଝଡ଼ିନାହିଁ । ଗୋଟେ ହେଲେ ପାଚି ଧଳା ହୋଇନାହିଁ । ଏହି ବୟସରେ ତାଙ୍କର ପ୍ରଫେସର ହେବା କୌଣସି ସହଜ କାମ ନୁହେଁ ।

ଦୃଷ୍ଟି ଫେରାଇ ଆଣି ଶ୍ରୀଦେବୀ ଜୋରରେ ଆଖି ବନ୍ଦ କରିଦେଲା । ତାର ମା ଶାରଦମ୍ମା ବିବାହ ପୂର୍ବରୁ କହିଥିଲେ : "ନିଜ ମନପସନ୍ଦ ଜିନିଷକୁ ସମ୍ଭାଳି କରି ରଖିବା ତାକୁ ଜଣାନାହିଁ । ତାହାର ମୂଲ୍ୟ ମଧ୍ୟ ସେ ଜାଣିପାରେ ନାହିଁ । ମୋତେ ଡର ଲାଗୁଛି ସେ କାଲେ ଏକୁଟିଆ ହୋଇଯିବ । ମୋ ମା'ଟା ପରି, ତାକୁ ଯେମିତି ଏପରି ହେବାକୁ ନ ଦେଉ । ଦେଖ ଝିଅ, ତାର ପଥର ହୃଦୟ ପ୍ରତି ତୋର ଘୃଣା ତ ନାହିଁ ?"

ସେ ବୁଢ଼ୀମା'କୁ ଅଭୟ ଦେଲା ଏବଂ ତାଙ୍କର କଥା ମାନିନେଲା ।

ପାପ ଏବଂ ପୁଣ୍ୟ ବିଷୟରେ ଯେତେବେଳେ ଚର୍ଚ୍ଚା ହେଉଥିଲା ସେତେବେଳେ ଶ୍ରୀଧର କହୁଥିଲେ : ପାପ ଏବଂ ପୁଣ୍ୟ - ଏହାକୁ ମୁଁ ସେପରି ମହତ୍ତ୍ୱ ଦିଏ ନାହିଁ । ଜନ୍ମ ଏବଂ ମୃତ୍ୟୁ ଜୀବନର ଉପକ୍ରମ ଏବଂ ଉପସଂହାର ନୁହେଁ । ମୋତେ ତ ଜୀବନ ଦରକାର । ଏହି ଜୀବନ କଂସାବାଦ୍ୟ ପରି । ଇଏ, କଣା କି ଫଟା ନହେବା ଉଚିତ । ଯେବେଠାରୁ ମୁଁ କିଛି ଜାଣିବାର ଶକ୍ତି ଅର୍ଜ୍ଜନ କଲି ସେବେଠାରୁ ମୁଁ ବସ୍ତୁବାଦୀ । କିନ୍ତୁ ଏହାର ଅର୍ଥ ନୁହେଁ ଯେ ମୋର ବ୍ୟକ୍ତିତ୍ୱ ଶୂନ୍ୟ ଅଥବା ଦାରୁଣ । ମୋର ମଧ୍ୟ କିଛି ରୁଚି, ଅରୁଚି, ଇଚ୍ଛା, ଅନିଚ୍ଛା ଅଛି । କିନ୍ତୁ ଏସବୁ ଅନ୍ଧବିଶ୍ୱାସ ନୁହିଁନ୍ତି । ଏମାନେ ମୋର ମାନସିକ ବିକାଶରେ ସହାୟକ ଅଟନ୍ତି ।

"ସେସବୁ ପୁଣି କ'ଣ ?" ଅଡ଼ି କରି ଶ୍ରୀଦେବୀ କହିଲା ।

"ଶୁଣ, କ'ଣ—ତୁମକୁ ମୁଁ ଭଲପାଏ । ଏହି ସତ୍ୟକୁ ମୁଁ ଅସ୍ୱୀକାର କରୁନାହିଁ । ଖାଇବାକୁ ମୋତେ ଭଲ ଲାଗେ – ବାସ୍ ଏମିତି ।"

ସେ କିଛିଟା ବୁଝିପାରିଲା ଓ କିଛିଟା ବୁଝିପାରିଲା ନାହିଁ । ତାଙ୍କୁ ସେ ଯେତିକିଟା ବୁଝିପାରିଛି ତାହା ତା ମନରେ ତାଙ୍କ ପ୍ରତି କିଛି ସହାନୁଭୂତି ସୃଷ୍ଟି କଲା ନାହିଁ । ଯେଉଁଠାରେ ସେ ବୁଝିପାରିଲା ନାହିଁ, ସେହି କଥାପ୍ରତି ତା ମନରେ ରାଗ ମଧ୍ୟ ହେଲା ନାହିଁ । ତା ଜୀବନରେ କୌଣସି ଜିନିଷ ପ୍ରତି ଅତ୍ୟଧିକ ପ୍ରେମ ନାହିଁ । ସେ ପ୍ରେମ ସ୍ନେହର ଗୁଣ ଗାନ କରେ ନାହିଁ । କଳ୍ପନା-ରାଜ୍ୟରେ ବୁଡ଼ିଯାଏ ନାହିଁ । ସେ ଯାହା-କିଛି ପାଇବାକୁ ଚାହେଁ ତାପାଇଁ ଜୀବନ ଦେଇ ପରିଶ୍ରମ କରେ । ଆଳସ୍ୟର ଭାବନା ତା ମନରେ ନାହିଁ । ତାର ଅଣ୍ଡିଷ୍ଟ ବସ୍ତୁଗୁଡ଼ିକୁ ସେ ଆଦରରେ ଦେଖେ । କିନ୍ତୁ ସେ 'ଅତି' ମାନବ ନୁହେଁ; କେବଳ ମଣିଷ । ସେ କେବେ ହତାଶ ହୁଏ ନାହିଁ । ମଣିଷକୁ ଉଭଟ କରିବାବାଲା ତେଉରେ କେବେହେଲେ ସେ ବୁଡ଼ିଯାଇ ନାହିଁ । କିନ୍ତୁ,

କଷ୍ଟ, ଜୁଆର ପର ଲଙ୍ଘନ କରୁଥିବା ଖାବୁକତା—ଏସବୁ ତାଙ୍କୁ ଉପହାସ ପର ଲାଗେ । ସେ ଜୀବନକୁ ଛିନ୍ନଭିନ୍ନ କରିପାରେ । ତାଙ୍କୁ ଚିର ତା ମଧ୍ୟରେ ପ୍ରବେଶ କରିପାରେ । ନିଜର ଲକ୍ଷ୍ୟକୁ ଅଲଗା ଉପାୟରେ ପାଇପାରେ । ମାଧୁର୍ଯ୍ୟର ରସାସ୍ୱାଦନ କରିପାରେ । କିନ୍ତୁ ସେ ଏହାକୁ ଅଶାନ୍ତର ଚେଲିଞ୍ଜ ମାନେ ନାହିଁ ।

ଶ୍ରୀଦେବୀ କେବେହେଲେ ମଧ୍ୟ ତାଙ୍କ ଆଗରେ ନିଜର ଇଚ୍ଛା ପ୍ରକାଶ କରି ନଥିଲା । ଗମ୍ଭୀରତାଦ୍ୱାରା କାମ ଚଳାଇବା ତାଙ୍କୁ ଜଣାଥିଲା । କିନ୍ତୁ ଆଜି ସିଏ ସେ ବହୁତ ଦୁଃଖିତ ହେଉଛି; ନିଜର ବ୍ୟଥାକୁ ବାହାରେ ପ୍ରକାଶିତ କରୁଛି । ଏହା ପୁଣି ଦୁଇଜଣଙ୍କର ବ୍ୟକ୍ତିଗତ ସମସ୍ୟା ଅଟେ । ଏଥିରେ ପ୍ରଦର୍ଶନ ଅଥବା ପ୍ରତିଷ୍ଠାର କୌଣସି ପ୍ରଶ୍ନ ନାହିଁ ।

କିନ୍ତୁ ଶ୍ରୀଦେବୀର ଅନୁମାନ ଥିଲା ଯେପରି ଶ୍ରୀଧର ଶୋଇନାହାନ୍ତି, ସେ ମଧ୍ୟ ଚିନ୍ତା କରୁଛନ୍ତି । ବହୁତ ଡେରି ପର୍ଯ୍ୟନ୍ତ ଚିନ୍ତା କରି ଶେଷରେ ସେ ସ୍ଥିର କଲା :

"ଠିକ୍ ଅଛି, ତାଙ୍କର ଯେପରି ଇଚ୍ଛା ।"

"ଆଇ ଆମ୍ ସରି ଡକ୍ଟର । ଦିସ୍ ଇଜ୍ ଏ କେସ୍ ଅଫ୍ ହାଇଡ୍ରୋସେଫାଲ୍ସ—" ମିଡ୍‌ୱାଇଫରୀ ପ୍ରଫେସର ରମାଦେବୀ ସାତ ମାସ ପରେ ସମସ୍ତ ପରୀକ୍ଷା କରିବା ପରେ କହିଲେ ।

ଶ୍ରୀଧର ସାମାନ୍ୟ ବିବ୍ରତ ହୋଇଗଲେ ।

"ଫାଇଣ୍ଡିଙ୍ଗସ୍ ତ ଫେବରେବଲ୍ ଅଛି । ଫିଟସ୍ ବର୍ତ୍ତମାନ ପର୍ଯ୍ୟନ୍ତ ହେଲଦି ଅଛି । ସାଧାରଣ କେସ୍ ଧରିନିଅନ୍ତୁ । ଟ୍ରାୟଲ୍ ଲେବର୍ ଦେଇ ଯଦି ଲାଭ ନ ହେଲା ତେବେ ହେକ୍ସାଟମୀ କରିଦେବା । ଆପଣଙ୍କର ବିଚାର କ'ଣ ?"

ଶ୍ରୀଧର ମୁଣ୍ଡ ହଲାଇଲେ । କିଛିକ୍ଷଣ ଭାବି ପୁଣି କହିଲେ, "ଟ୍ରାୟଲ୍ ଲେବର୍‌ର ରିସ୍କ କାହିଁକି ନେବା ଡାକ୍ତର । ସିଧା ହେକ୍ସାଟମୀ କରିଦିଅ ତ . ...।"

"ଜଣାନାହିଁ ମତେ କାହିଁକି ଡେଲିଭରି ସମ୍ଭବ ଜଣାଯାଉଛି । ଶ୍ରୀଦେବୀର କିଛି ଅନିଷ୍ଟ ହେବ ନାହିଁ । ଆପଣ ନିଶ୍ଚିନ୍ତ ରୁହନ୍ତୁ ।" ରମାଦେବୀ ବିଶ୍ୱାସର ସହିତ କହିଲେ ।

ହେକ୍ସାଟମୀ କରି କୌଣସିମତେ ଫିଟସ୍‌କୁ ଡେଷ୍ଟ୍ରୟ କରିବା ପାଇଁ ସେ କହିବାକୁ ଚାହୁଁଥିଲେ; କିନ୍ତୁ ସେ ମାନିବ ନାହିଁ । ଏଥିପାଇଁ "ଗୁଡ୍ ବାଇ" କହି ବାହାରକୁ ଚାଲିଗଲେ ।

ସିଗାରେଟ୍ ଗୋଟାଏ ପରେ ଗୋଟାଏ ଜଳିଚାଲିଛି । ପ୍ରତ୍ୟେକ କ୍ଷଣ ବଡ଼ କଷ୍ଟର ସହିତ ଚାଲିଯାଉଛି ।

ବହୁତ କଷ୍ଟର ସହିତ ସମୟକୁ କାଟିବା ତାଙ୍କ ଜୀବନରେ ସେ ପ୍ରଥମ ଥର ଅନୁଭବ କରୁଛନ୍ତି । ବର୍ତ୍ତମାନ ତାଙ୍କୁ ଜଣାଯାଉଛି ଶ୍ରୀଦେବୀର ମୂଲ୍ୟ କେତେ ଏବଂ ମନୁଷ୍ୟ ମେସିନ୍ କାହିଁକି ନୁହେଁ ।

ହାୟ, ହାୟ । ଆନନ୍ଦରେ ଦୁଃଖ ଭୋଗିବା ଯେ ଜାଣେ ନାହିଁ ସେ ବାସ୍ତବରେ ଦୁଃଖୀ ଅଟେ ।

ଫୋନ୍ ବାଜିଉଠିଲା । ତତ୍‌କ୍ଷଣାତ୍ ସେ ରିସିଭର ଉଠାଇଲେ ।

"ନର୍ମାଲ୍ ଡେଲିଭରି, ମେଲ୍ ଚାଇଲଡ୍, ଦୁହିଜଣଙ୍କ ଅବସ୍ଥା ଭଲ ଅଛି ।" ରମା ଦେବୀ ସ୍ଥିରଚିତ୍ତରେ କହିଲେ । ଯେ ଶ୍ରୀଧରଙ୍କୁ ନଧାଇ ଦେଲେ ନାହିଁ । ତାଙ୍କ ସ୍ୱରରେ ଆନନ୍ଦର ଭାବ ନାହିଁ । କାରଣ ତାଙ୍କୁ ଜଣା ।

"ଧନ୍ୟବାଦ୍ ଡାକ୍ତର ।" କହି ଆସ୍ତେ ସେ ଫୋନ୍ ରଖିଦେଲେ ।

ପିଲାଟି ଲାଲ୍ ରଙ୍ଗର ହୋଇଛି । ହାତଗୋଡ଼ ବହୁତ ଦୁର୍ବଳ ଅଟେ; କାଠି ଯେପରି । ବିନା ପବନଭରା ବ୍ୟାଗପରି ଶରୀର ତାର ଖୁବ୍ ହାଲୁକା । ତାର ମୁଣ୍ଡ ଭାଲ ପରି ବଡ଼ ଅଟେ, ଯେପରି ମୁଣ୍ଡ ସେହିପରି ବଡ଼ ବଡ଼ ଆଖି । ଚେପଟା ନାକ ଏବଂ ମୁର୍ଦ୍ଧ ।

ଯେତେବେଳେ ଶ୍ରୀଧର ସେହି ପିଲାଟିକୁ ଦେଖନ୍ତି ସେ ଭାବନ୍ତି ଯେ ତାଙ୍କ ପାଥୋଲୋଜି ଡିପାର୍ଟମେଣ୍ଟରେ ଏହିପରି ସ୍ପେସିମେନ ନାହିଁ ।

ସେହି ପିଲାଟି ବଡ଼ ହେବା ଶ୍ରୀଧର ପାଇଁ ଆଶ୍ଚର୍ଯ୍ୟର ବିଷୟ । ପ୍ରଥମତଃ ଏପରି ପିଲା ମା ପେଟରୁ ହିଁ ମରିଯାଇଥାନ୍ତି । ଫୋରସେପ୍‌ସ୍ ବାହାରକୁ କାଢ଼ିବା ପାଇଁ ତାର ମୁଣ୍ଡକୁ ଖଣ୍ଡବିଖଣ୍ଡ କରିବାକୁ ପଡ଼େ । ଜନ୍ମ ହେବା ସମୟରେ ଏହି ପିଲାର ମୁଣ୍ଡ ଏତେ ବଡ଼ନ୍ଥିଲା । ଏଥିପାଇଁ ଏହାର ପ୍ରସବ ସମ୍ଭବ ହୋଇପାରିଲା । ସେ ଜନ୍ମ ହେଲା । ବଢ଼ୁଛି ଏବଂ ହସୁଛି ।

ଶ୍ରୀଧରଙ୍କୁ ଜଣାଅଛି ଯେ ଏପରି ପିଲା ଯଦି ବଞ୍ଚିରହେ ତେବେ ବଡ଼ ଆଶ୍ଚର୍ଯ୍ୟଜନକ ହୋଇଯିବ ।

ସେ ସେହି ପିଲାଟିକୁ ଦୁଇ, ତିନି ଥର ଏପରିଭାବେ ଦେଖିଲେ ଯେପରି ସେ ଲାବରେଟୋରୀରେ କୌଣସି ଜନ୍ତୁକୁ ଧ୍ୟାନପୂର୍ବକ ଦେଖୁଛନ୍ତି । ସେ କେବେହେଲେ ପିଲାଟିକୁ କୋଳକୁ ନେଇ ଗେଲ କରନାହାନ୍ତି । କେବେହେଲେ ତା ସହିତ କଥା କହି ନାହାନ୍ତି । ଶ୍ରୀଦେବୀ ସହିତ ସେ କେବେହେଲେ ଏହା ପିଲାଟିର ବାସ୍ତବିକ ସ୍ଥିତି କିମ୍ବା ସମ୍ଭାବନା ବିଷୟରେ ଚର୍ଚ୍ଚା କରନାହାନ୍ତି ।

ଶ୍ରୀଦେବୀ ତାର ନାମ ରଖିଲା—କୃଷ୍ଣ ।

ସେହି ପିଲାଟି ବିଷୟରେ ସେ ଅଳ୍ପ ବହୁତ କିଛି ଜାଣିଛି । ଡାକ୍ତର ରମା ଦେବୀ ତାକୁ କହିଥିଲେ ସେ ଏହା ଏକପ୍ରକାର କନ୍‌ଜେନିଟାଲ୍ ଆନୋମେଲି ଅଟେ । ବ୍ରେନରେ ପାଣି ଜମାହେବାଦ୍ୱାରା ଏହି ଅବସ୍ଥା ସୃଷ୍ଟି ହୁଏ ।

ଶ୍ରୀ ଦେବୀର ଭଗବାନଙ୍କ ଉପରେ ବିଶ୍ୱାସ ଅଛି । ପାପ, ପୁଣ୍ୟ ଏବଂ ପ୍ରାରବ୍ଧକୁ ସେ ମାନୁଥିଲା । ସେଥିପାଇଁ "ନିଜ ପାପର ଫଳ" ବୁଝି ନିଜ ଦୁଃଖର ଯନ୍ତ୍ରଣାକୁ ନିଜର ହୃଦୟରେ ଲୁଚାଇ ରଖିଲା ।

କ୍ଷଣକ ପାଇଁ ମଧ୍ୟ ସେ ତାଙ୍କୁ କୋଳରୁ ଛାଡ଼େ ନାହିଁ । ବହୁତ ସ୍ନେହ କରେ । ସ୍ନେହପୂର୍ଣ୍ଣ କଥା କହି ଶୁଣାଏ । ତାହାର ଓଠରେ ଓଠ ଲଗାଇ ଦେଉଥିବା ଚୁମ୍ବନରେ କେତେ ଯେ ଅଶ୍ରୁକଣା ଝରିପଡ଼ୁଛି ତାଙ୍କୁ ଅନ୍ୟ ଲୋକ କେମିତି ବୁଝିବ !

ସେ ନିଜ ସ୍ୱାମୀ ନିହାତି କ୍ରେଡ଼ିବ୍ କହୁଲେ ସନ୍ତାନ ବିଷୟରେ କଥାବାର୍ତ୍ତା ହୁଏ ନାହିଁ । ପିଲାକୁ କୋଳରେ ନେବା ପାଇଁ କେବେ କହୁଲେ ବୁଝେ ନାହିଁ । ତାଙ୍କ ସାମନାରେ କେବେହେଲେ ପୁଅକୁ ସ୍ନେହ କରେ ନାହିଁ । ସେ କେବେହେଲେ ଗୃହରେ ନ ଥିଲା ଯେ ନିଜ ପୁଅ ସହିତ ଖେଳୁଥିବା ଅବସ୍ଥାରେ ତା ସ୍ୱାମୀ ସମ୍ମୁଖରେ ଧରା-ପଡ଼ିଯାଉ । ସ୍ୱାମୀ ସହିତ ନିଜର ସମ୍ବନ୍ଧ ଧୂଷପଣ ରଖିବା ନାହିଁ ତ ନିଷ୍ଠୁର କମ୍ ମଧ୍ୟ କୁହାଯାଇ ପାରିବ ନାହିଁ ।

ସେ କରୁଣ ପାଇଁ ଅନେକ ଖେଳଣା କିଣିଲା । ସେ ନିଜେ ଶ୍ରେଷ୍ଠ ପିଲା ହୋଇ ଖେଳନାରେ ଖେଳୁଥିଲା ।

ଘରକୁ ବନ୍ଧୁବାନ୍ଧବ ଆସନ୍ତି ତ ସେମାନଙ୍କ ଆଗକୁ ପିଲାକୁ ଆଣେ ନାହିଁ । ତାଙ୍କୁ ଦେଖିବାକ୍ଷଣି ପିଲାଟିକୁ ନେଇ ଭିତରକୁ ଚାଲିଯାଏ । ଲୁଚାଇ ରଖୁଥିଲା । ଅଭିମାନର ଭାବନାରେ ନୁହେଁ ; କିନ୍ତୁ ଯଦି କେହି ସାନ୍ତ୍ୱନା ଦିଏ କିମ୍ବା କିଛି ବ୍ୟଙ୍ଗପୂର୍ଣ୍ଣ ଟିପ୍ପଣୀ କରେ ତେବେ ସେ ଯେପରି ରାଗି ନଯାଏ ।

ଥରେ କରୁଣକୁ ଜ୍ୱର ହେଲା । ଧୀରେ ଧୀରେ ଜର ବଢ଼ିବାକୁ ଲାଗିଲା । ଶ୍ରୀଦେବୀ ବ୍ୟସ୍ତ ହୋଇ ପଡ଼ିଲା ଏବଂ ଶୀଘ୍ର ନିଜର ସ୍ୱାମୀଙ୍କ ପାଖରେ ପହଞ୍ଚିଲା ।

"ପୁଅକୁ ଜ୍ୱର ହୋଇଛି ! ଥରେ ତାଙ୍କୁ ଦେଖିବ ?" ଡରି ଡରି ସେ କହିଲା ।

"ଚାଲ" କହି ସେ ବାହାରି ପଡ଼ିଲେ । ବିଛଣା ଉପରେ ବସି ତାଙ୍କୁ ପରୀକ୍ଷା କରିବାପରେ ସେ କହିଲେ, "ଶ୍ରୀଦେବୀ, ବ୍ୟସ୍ତ ହେବାର କୌଣସି କଥା ନାହିଁ । ମାଇଲଡ୍ ବ୍ରୋଙ୍କାଇଟିସ୍ ହୋଇଛି । ବର୍ତ୍ତମାନ ଔଷଧ ମଗାଇ ଦେଉଛି ।"

ସେଦିନ ସେ ନିଜ ପୁଅକୁ ଏପରି ଭାବରେ ଦେଖୁଥିଲେ ଯେପରି କୌଣସି ଡାକ୍ତର ସାଧାରଣ ରୋଗୀକୁ ଦେଖେ ।

ରାତିରେ କିଛି ଶବ୍ଦ ହେଲା ତ ସେ ବୁଲିପଡ଼ି ଚାହିଁଲେ । ଅସ୍ପଷ୍ଟ ଆଲୋକରେ ଶ୍ରୀଦେବୀ ନିଜ ପୁଅକୁ ବୋତଲରେ ଦୁଧ ପିଆଉଛି । ଶ୍ରୀଧର ଘଡ଼ିକୁ ଚାହିଁ ଦେଖିଲେ—ଦୁଇଟା ବାଜିସାରିଛି ।

"ଶ୍ରୀଦେବୀ ! ତୁ ଭୁଲ୍ କାମ କରୁଛୁ । ରାତି ଦଶଟାପରେ ପୁଣି ସକାଳ ଛଟା ପର୍ଯ୍ୟନ୍ତ 'ଫିଡ଼୍' ଦେବା ଉଚିତ୍ ନୁହେଁ । ଛାଡ଼ି ଦେ ।"

ଶ୍ରୀଦେବୀ ଶୀଘ୍ର ଦୁଧ ପିଆଇବା ବନ୍ଦ କରି ପିଲାକୁ ପାଖରେ ଶୁଆଇଦେଲା ଏବଂ ଶୁଆଇବା ପାଇଁ ଚେଷ୍ଟା କଲା । କିନ୍ତୁ ପିଲା କାନ୍ଦୁଛି; ରହୁଥାଇ କାନ୍ଦୁଛି । ଯେତେବେଳେ ସେ ପିଲାକୁ ସମ୍ଭାଳିପାରିଲା ନାହିଁ, ସେତେବେଳେ ବଡ଼ ବିନମ୍ର ହୋଇ କହିଲା, "ସେ ଚୁପ୍ ହେବ ନାହିଁ । ଦୁଧ ପିଆଇଦେବି ।"

"ପ୍ରତ୍ୟେକ ଦିନ ଏପରି ହେଉଛି ?"

"ଯେତେବେଳେ କାନ୍ଦୁଛି ସେତେବେଳେ ଦୁଧ ପିଆଉଛି ।"

"ଶିକ୍ଷିତ ହୋଇ ତୁମେ ବହୁତ ବୋକା ହୋଇ ଯାଉଛ ଶ୍ରୀଦେବୀ ।" ସେ କୌଣସି ଉତ୍ତର ଦେଲା ନାହିଁ । ପିଲାଟି ଏପର୍ଯ୍ୟନ୍ତ କାନ୍ଦ ବନ୍ଦ କଲା ନାହିଁ ତ ସେ ତାକୁ କଣ୍ଡେଇରକୁ ନେଇଗଲା ଏବଂ ଏପଟ ସେପଟ କରି ବୁଲାଇଲା । ଯେପରି ସ୍ୱାମୀଙ୍କର କାମରେ ବ୍ୟାଘାତ ନ ହୁଏ ।

ଦୁଇ ତିନିଦିନ ପରେ ପିଲାଟିର ଜ୍ୱର କମିଲା ।

ଦିନେ ଯେତେବେଳେ ସେ ଭିତର ଘରୁ ଆସୁଥିଲା ଶ୍ରୀଧର ବଡ଼ ଧ୍ୟାନର ସହିତ ପିଲାଟି ଆଡ଼କୁ ଚାହିଁ ଦେଖୁଥିଲେ । ସେ ବୁଝିପାରୁ ନଥିଲେ ଯେ ସେ ଏତେ ଧ୍ୟାନରେ କ'ଣ ଦେଖୁଛନ୍ତି । ବୋଧହୁଏ ନିଜ ବିଷୟ ସହିତ ସମ୍ବନ୍ଧିତ କୌଣସି ସ୍ପେସିମେନ୍‌ର 'କ୍ରସ୍ ଆପିଅରାନ୍ସ' ଦେଖୁଛନ୍ତି । ତା ଶରୀରରେ ଶଙ୍ଖ ଶଙ୍ଖ ହାତ ବୁଲାଇବାକୁ ଲାଗିଲେ । ପଛପଟୁ ଧୀରେ ଧୀରେ ଆସି 'ବହୁତ ଥଣ୍ଡା ଲାଗୁଛି' କହି ପିଲାଟିର ପ୍ରାୟ ମୁଣ୍ଡ ପର୍ଯ୍ୟନ୍ତ ଚାଦର ଘୋଡ଼ାଇ ଦେଲେ ।

ପ୍ରଫେସର ସାହାବ୍‌ଙ୍କ ସହିତ ଦେଖା କରିବା ପାଇଁ କେବେ କେବେ ସାଙ୍ଗମାନେ ଆସନ୍ତି । ସବୁଲୋକ ପଚାରୁଥିଲେ, "ହ୍ୱାଟ୍ ଇଜ୍ ଦିସ୍. ଶ୍ରୀଧର ! ତୁ ତୋର ପୁଅକୁ ଆମକୁ ଦେଖାଉ ନାହୁଁ କାହିଁକି ?"

"ସେ ସୁସ୍ଥ ପିଲା ନୁହେ । ହାଇଡ୍ରୋସିଫାଲସ୍ ନାମକ ଗୋଟିଏ କେଜ୍ ଅଛି । ଆମେରିକାରେ ପ୍ରତ୍ୟେକ ଧାଞ୍ଚଶହ ପିଲାଙ୍କ ମଧ୍ୟରେ ଏହିପରି ଗୋଟିଏ ପିଲା ଜନ୍ମହୁଏ । ଆପଣ କେବେ କେବେ ମିୟୁଜିୟମରେ ଦେଖିଥିବେ । କଡ଼ମୁଣ୍ଡ, ବଡ଼ ବଡ଼ ଆଖି, ସରୁ ସରୁ ହାତଗୋଡ଼ · ।" ଏହିପରି ଲେକଚର ଦେଉଥିଲେ ।

"ଆସନ୍ତୁ, ଦେଖି ନେବେ" କହି ଥରେ ଭିତରକୁ ନେଇଯିବାକୁ ବାହାରିଛନ୍ତି ।

"ରୁହନ୍ତୁ, କ'ଣ ଦେଖିବାର ଅଛି ।" କହି ସେହି ସାଙ୍ଗ କିଛି ଅସୁବିଧାରେ ପଡ଼ିଗଲେ ।

"ନୋ,·—ନୋ, କିଛି କଥା ନାହିଁ, ଆସନ୍ତୁ" କହି ଶ୍ରୀଧର ତାଙ୍କୁ ଭିତରକୁ ନେଇଗଲେ ।

ଶ୍ରୀଦେବୀ ଏହା ଶୁଣୁଥିଲା । ସେ ବଡ଼ ଅସୁବିଧାରେ ପଡ଼ିଗଲା । ତାକୁ ଜଣାଗଲା ତା ଛାତିକୁ କିଏ କୋଦାଳରେ ମାରୁଛି । ସଭ୍ୟତା କ'ଣ ଅଟେ ? କ'ଣ ନୁହେଁ ? ପିଲାକୁ ନେଇ ସେ ଶୀଘ୍ର ଶୀଘ୍ର ଘର ଭିତରକୁ ଚାଲିଗଲା ଏବଂ କବାଟ ଭିତରୁ ବନ୍ଦ କରିଦେଲା ।

"ଶ୍ରୀଦେବୀ ! କବାଟ ଖୋଲ ! ମୋର ସାଙ୍ଗ ଆସିଛି—ପୁଅକୁ ଦେଖିବା ପାଇଁ ।" କବାଟ ଖଟ୍‌ଖଟ୍ କରୁ କରୁ ଶ୍ରୀଧର କହିଲେ ।

ଭିତରୁ ଜବାବ ମିଳିଲା ନାହିଁ ।

"ଆଉ ଆଉ କେବେ ଦେଖିନେବ ।" କହି ସାଙ୍ଗ ସଂକୋଚ ପ୍ରକାଶ କଲେ । କୋଠଗରେ ପୁଅକୁ ଗୁଦଲରେ ଘୋଡ଼ାଇ ଦୁଃଖରେ ବସିଥିବା ସମୟରେ ଶ୍ରୀଦେବୀଙ୍କ କାନରେ ଏହିକଥା ଶୁଣାଗଲା । "ସି ଇଜ୍ ଆନ୍ ଏଜୁକେଟେଡ୍ ଲେଡ଼ି, ବଟ୍ ଏ ସେଣ୍ଟ ମେଣ୍ଟାଲ୍ ଫୁଲ୍ ।"

ପୁଅଟି କଚ୍ଛ ବଡ଼ ହୋଇଗଲା । ପେଟେଇଲା । ବଡ଼ ମୁଣ୍ଡରେ ସେ ଯେତେବେଳେ ପେଟଉଥିଲା ତ ସେତେବେଳେ ଶ୍ରୀଧର କୌଣସି ଏଜୁକେସନାଲ୍ ଫିଲ୍ମ ର ଦୃଶ୍ୟ ଦେଖିଲା ଭଳି ପାଖରେ ଠିଆ ହୋଇ ଦେଖୁଥିଲେ ।

ଥରେ ପୁଅ ଖଟ ଉପରେ ପେଟଉ ପେଟଉ ଖସି ତଳେ ପଡ଼ିଗଲା । ମୁଣ୍ଡରେ ଆଘାତ ଲାଗିଲା ଏବଂ ରକ୍ତ ବାହାରିଲା; ଦିନ ସାରା ସେ ବ୍ୟସ୍ତ ରହିଲା । ଏସବୁ ଦେଖି ଶ୍ରୀଧର ଶ୍ରୀଦେବୀଙ୍କୁ ସତର୍କ କରି କହିଲେ "ଶ୍ରୀଦେବୀ ! ମୋତେ ବାରମ୍ବାର ତୁମକୁ କହିବାକୁ ହେଉଛି । ଏଥିପାଇଁ ମୁଁ ବଡ଼ ଦୁଃଖିତ । ମମତାର ବନ୍ଧନକୁ ଏପରି ବଢ଼ାଇ ନେବା ତୁମ ପାଇଁ କ୍ଷତି କାରକ ହୋଇପାରେ ।"

ମା, ପୁଅ ମଧ୍ୟରେ ସମ୍ପର୍କକୁ ସ୍ୱାମୀ ନିଜର ତତ୍ତ୍ୱକୁରେ ମାପିକରି ଦେଖିବା ଶ୍ରୀଦେବୀ ଜାଣେ ନାହିଁ । ସେ କଥା ବଢ଼ାଇଲା ନାହିଁ । ସେ ନୀରବ ରହିଗଲା ।

ଦିନେ ବିଛଣା ଉପରେ ପଡ଼ି ଖେଳୁଥିବା ପୁଅକୁ ସଂକେତ କରି ସେ ଶ୍ରୀଦେବୀଙ୍କୁ ପାଖକୁ ଡାକି କହିଲେ, "ଦେଖ, ଶ୍ରୀଦେବୀ, ତାର ମୁଣ୍ଡ ଦିନକୁ ଦିନ ବଢ଼ି ଚାଲିଛି ନାଁ ?"

ଶ୍ରୀଦେବୀ ମୁଣ୍ଡ ଉଠାଇ ତା ଆଖିକୁ ଚାହିଁଲା । ସେଥିରେ ଲାଲ୍ ଲାଲ୍ ଶିରା ଦେଖାଗଲା । "ଦେଖ, ମୁଁ ତୁମକୁ ଗୋଟେ କଥା ପଚାରିବାକୁ ଚାହୁଁଥିଲି—ବହୁତ ଦିନଠାରୁ ।"

ଶ୍ରୀଦେବୀର ଆବାଜ୍‌ରେ ଏତେ କର୍କଶତା ସେ କେବେ ହେଲେ ଶୁଣି ନ ଥିଲା । କିଂକର୍ତ୍ତବ୍ୟବିମୂଢ଼ ହୋଇ ସେ ଦେଖିବାକୁ ଲାଗିଲା ! "ଆପଣ କେବେ ବୁଝିବେ ଯେ ଆପଣ ଏହି ସନ୍ତାନର ବାପ ଅଟନ୍ତି ?"

ସେ ଉତ୍ତରକୁ ଅପେକ୍ଷା ମଧ୍ୟ କଲାନାହିଁ । ଉତ୍ତର ଆବଶ୍ୟକ ମଧ୍ୟ ନଥିଲା । ପିଲାକୁ ନେଇ ସେ ଭିତରକୁ ଚାଲିଗଲା ।

ଅନୁଭୂତ-ଅନଭିଜ୍ଞ ଶ୍ରୀଧର ଚେତାଶୂନ୍ୟ ହୋଇ ସେଠାରେ ଠିଆ ହୋଇଗଲେ ।

ଶେଷରେ ଯାହା ହେବାର ଥିଲା ତାହା ହୋଇଗଲା । ଭାଗ୍ୟ ଶ୍ରୀଦେବୀଙ୍କୁ ପୁଣି ଉପହାସ କଲା । ପିଲାଟି ଆସ୍ତେ ଆସ୍ତେ ଦୁର୍ବଳ ହେବାକୁ ଲାଗିଲା । ଦୃଷ୍ଟି ଶକ୍ତି କମିଗଲା । ଦରେଇଟି ହସ ବନ୍ଦ ହୋଇଗଲା । ପେଟରେ, ଗଳାରେ ଏବଂ ମୁଣ୍ଡରେ ଜଣାନାହିଁ କେତେ କମ୍ପ୍ଲିକେସନ୍‌ସ ଆରମ୍ଭ ହୋଇଗଲା···କୌଣସି ଅଶୁଭ କ୍ଷଣରେ ମୁଣ୍ଡ ବଢ଼ିବାକୁ ଲାଗିଲା । ତନାଦନ ପର୍ଯ୍ୟନ୍ତ ଏହା ଚାଲିଲା । ଶେଷରେ କୌଣସି ଖରାପ ସମୟରେ ଏହି ବିକୃତ ରୂପକୁ ଜଳାଞ୍ଜଳି ଦେଇ ସେ କୌଣସି ଅନ୍ୟ ଆକୃତିକୁ ଖୋଜିବାକୁ ଚାଲିଗଲା ।

ତାର ମୃତ ଶରୀରକୁ କୋଳରେ ରଖି ଶ୍ରୀଦେବୀ ଲୁହ ଗଡ଼ାଇ ବସିଛି । ସେ ମୁହଁ ଖୋଲି ଗୋଟିଏ ହେଲେ ଶବ୍ଦ କହୁନି ନାହିଁ । କାହାର କଥା ମଧ୍ୟ ଶୁଣୁ ନାହିଁ ।

ଅନେକ ସମୟ ପରେ ଶ୍ରୀଧର ତା ପାଖରେ ବସି କହିଲେ; "କେତେ ସମୟ ପର୍ଯ୍ୟନ୍ତ ଏପରି କାନ୍ଦୁଥିବ ଶ୍ରୀଦେବୀ । ମୁଁ ବର୍ତ୍ତମାନ ଏହାକୁ ନେଇଯିବି ଏବଂ ଏହାର ଅନ୍ତ୍ୟେଷ୍ଟି କ୍ରିୟା କରିଦେବି ।" ଶ୍ରୀଦେବୀ ଥରେ ମୁଣ୍ଡ ଉଠାଇ ତାର ଦେହକୁ ଦେଖିଲା ଏବଂ ପୁଣି ପୁଅର ଶବକୁ ତାଙ୍କ ହାତରେ ଅର୍ପଣ କରି କହିଲା "ନେଇ ଯାଅ ।"

ପୁଅର ଶବକୁ ଦୁଇ ହାତରେ ଧରିନେଲେ । କାରର ପଛପଟ ସିଟ୍‌ରେ ଶବକୁ ରଖି ସେ ଷ୍ଟିୟରିଙ୍ଗର ସମ୍ମୁଖରେ ବସିଗଲେ । କାର୍ ବାହାରିଗଲା, ସେହି କୋଠାକୁ ଛାଡ଼ି ଦୂରକୁ ଚାଲିଗଲା ।

ଦିନକୁଦିନ ହେଲା ଶ୍ରୀଦେବୀର ଏହି ଦୁନିଆରେ ମନ ନାହିଁ । ଖାଇବା ପିଇବା ଛାଡ଼ିଦେଲା । ଶୋଇବା ଭୁଲିଗଲା । ସେ କାହା ସହିତ କଥାବାର୍ତ୍ତା ମଧ୍ୟ କରୁ ନଥିଲା । ତା ହୃଦୟରେ କେତେ ଅକଥନୀୟ ବେଦନା ହେଉଥିଲା କେବଳ ସେ ଜାଣେ । ଯେପରି କୌଣସି ନିରୀହ ପ୍ରାଣୀ ପ୍ରତି ଘୋର ଅନ୍ୟାୟ ହୋଇଛି । ସେ ଦୁର୍ବଳ ହୋଇ ଯାଉଥିଲା ।

ନିଜ ପ୍ରକୃତିଗତ ନ ହେଲେ ମଧ୍ୟ ଶ୍ରୀଧର ତା ପାଖରେ ଘଣ୍ଟା ଘଣ୍ଟା ଧରି ବସି ତାକୁ ସାନ୍ତ୍ୱନା ଦେଉଥିଲେ । ତା ମନକୁ ପ୍ରସନ୍ନ କରିବା ପାଇଁ ସେ ବହୁତ ଚେଷ୍ଟା କଲେ । ଶେଷରେ ସେ କହିଲେ, "ଦୁଃଖ ଆମର ପରମ ଶତ୍ରୁ । ଏହି ସତ୍ୟକୁ ତୁମେ ଜାଣିନାଅ ।"

ଘରେ ସେ ଯେଉଁ କୋଣକୁ ଯାଉଛି ତାକୁ ସେହି ପୁଅର ଚେହେରା ଦେଖାଯାଉଛି । ବଡ଼ ମୁଣ୍ଡ, ଛୋଟ ଛୋଟ ହାତଗୋଡ଼, ସ୍ପଷ୍ଟ ଭାବେ କହି ନ ପାରୁଥିବା ମୁହଁ ।

ସେହି ମୁହଁରେ 'ମା, ମା'ର ଧୀର ସ୍ୱର ମଧ୍ୟ ତାକୁ ଶୁଣାଯାଉଛି ।

"ମୋ ଭାଗ୍ୟରେ ନାହିଁ, ମୋ ଭାଗ୍ୟରେ ନାହିଁ ।" କହି ସେ ବିଳାପ କରୁଛି । ସେହି କଅଁଳିଆ ମୁହଁ କହୁଛି "ମାଁ, ଏଥିରେ ମୋର କ'ଣ ଦୋଷ ଅଛି ? ପୁଣି ମୋତେ ଏହି ଦଣ୍ଡ କାହିଁକି ?"

"ବତ୍ସ, ଏହି ଦଣ୍ଡ ତୋତେ ନୁହେଁ, ମୋତେ ମିଳୁଛି । ବାସ୍ତବରେ ଏହା ଦଣ୍ଡ ନୁହେଁ । ମୋର କର୍ମଫଳ, ମୋର ଭାଗ୍ୟ ।"

ସେ କହୁଛି, "ଛାଡ଼ ମା । ମୋର ମରିବା ହିଁ ଉଚିତ ଥିଲା । ଯଦି ବଞ୍ଚିଥାଆନ୍ତି ତେବେ ସମସ୍ତଙ୍କର ବକ୍ର ଦୃଷ୍ଟି ମୋ ଉପରେ ପଡ଼ି ମୋତେ ଯନ୍ତ୍ରଣା ଦିଅନ୍ତା ।"

"ତୋ... ଜାଳିଦେବ, ଅଭିଶାପ ଦେବ ।"

ସେ କହୁଛି "ନାହିଁ ମା, ମୋ ପାଇଁ ତୁ ନିଜ ଜୀବନକୁ କାହିଁକି ନଷ୍ଟ କରୁଛୁ ।"

'ବାପରେ ! ମୁଁ କେତେ ଚଣ୍ଡାଳଣୀ । ଯଦି ମୁଁ ନିଜେ ଏହିପରି ଜନ୍ମହୋଇ

ଥାଆନ୍ତି ତେବେ ମୋ ଅବସ୍ଥା କ'ଣ ହୋଇଥାଆନ୍ତା ?"

ଏହି ପ୍ରକାର ଚିନ୍ତାର ସଂଘର୍ଷଦ୍ୱାରା ଦାରୁଣ କଷ୍ଟର ଜ୍ୱାଳାରେ ଜଳିଜଳି ସେ ଝୁଣ୍ଟି ପଡ଼ିଉଛନ୍ତି ।

"ମାଇଁଗଡ଼୍ ! ଗୁ ଟୁଙ୍କେ ନ ଲୋକେ ନରକ କଥା କାହିଁକି କୁହନ୍ତି, ଏବେ ବୁଝୁଛି । ଇଏ ନର୍କ ଅଟେ ।" ସିଗାରେଟ୍ ଜଳାଉ ଜଳାଉ ଶ୍ରୀଧର ଚିନ୍ତା କରୁଥିଲେ ।

ପାଥୋଲୋଜି ମ୍ୟୁଜିୟମ୍‌ରେ ବାକି ସବୁ ସ୍ପେସିମେନ୍‌କୁ ମିଶାଇ ପ୍ରଭାବ ଏବଂ ଆକର୍ଷଣ ଏତେ ନଥିଲା ଯେତେ ଶ୍ରୀଧରଙ୍କ ଦ୍ୱାରା ଆବିଷ୍କୃତ ନୂଆ ସ୍ପେସିମେନ୍ ହାଇଡ୍ରୋସେଫାଲସ୍‌ରେ ମିଳୁଛି ।

"କଂଜେନିଟଲ୍ ହାଇଡ୍ରୋସେଫାଲସ୍--ସଂଯୋଗ ପରେ ଇଣ୍ଟ୍ରା ୟୁଟେରାଇନ୍ ଲାଇଫ୍ ସହିତ ହିଁ ଫିଟସ ମରିଯାଏ । ହିଅ ଲଜ୍ ଏ ରେୟାର୍ କଂଡ଼ିସନ୍—ପାଞ୍ଚ ମାସ ପର୍ଯ୍ୟନ୍ତ ଏହା ବଞ୍ଚିରହିଲା ।" କହି ପ୍ରଫେସର୍ ଶ୍ରୀଧର ଛାତ୍ରମାନଙ୍କୁ ସେହି ନମୁନା ଦେଖାଉଥିଲେ ।

ସେ ଭାବପ୍ରବଣତା ବା ଅନ୍ଧବିଶ୍ୱାସକୁ ମାନନ୍ତି ନାହିଁ । ଅନ୍ଧବିଶ୍ୱାସଠାରୁ ବହୁତ ଦୂରରେ ରହନ୍ତି । ତଥାପି ସେହି ସ୍ପେସିମେନ୍ ପ୍ରତି ତାଙ୍କ ମନରେ ବିଶେଷ ଆକର୍ଷଣ ସୃଷ୍ଟି ହେଲା । ସେ ପ୍ରତିଦିନ ଗୋଟିଏ ଘଣ୍ଟା ମ୍ୟୁଜିୟମ୍‌ରେ କଟାଉଥିଲେ ।

ବୁଲିବୁଲି ସେହି ସ୍ପେସିମେନ ପର୍ଯ୍ୟନ୍ତ ଆସି ସେଠାରେ ନିଜେ ନିଜେ ଅଟକି ଯାଉଥିଲେ ଏବଂ ପାଞ୍ଚ ମିନିଟ୍ ପର୍ଯ୍ୟନ୍ତ ସେଠାରେ ଠିଆହୋଇ ଦେଖୁଥିଲେ । ସେ ଅପଲକ ନେତ୍ରରେ ତାକୁ ଦେଖନ୍ତି । ଫାର୍ମାଲିନ୍‌ରେ ବୁଡ଼ିଥିବା ସେହି ବଡ଼ ମୁଣ୍ଡବାଲା ଛୋଟ ଶରୀର ଦିନକୁ ଦିନ ତାଙ୍କ ମନରେ ସ୍ଥାୟୀଭାବେ ରହିଗଲା ।

ତା ପାଖରେ ଠିଆହେବାକ୍ଷଣି ତାଙ୍କ ହୃଦୟରେ ସ୍ପନ୍ଦନ ସୃଷ୍ଟି ହେଉଥିଲା । ଶରୀର ଝାଳେଇ ଯାଉଥିଲା । ସେଠାରେ ପ୍ରଦର୍ଶନ ପାଇଁ ରଖାଯାଇଥିବା ଜିନିଷ, ବାଙ୍କନଳୀ ପ୍ରମାଣିତ କରାଇବାବାଲା ସେହି ଉପଯୋଗୀ ପଦାର୍ଥ, ମୋର ହାଡ଼-ମାଂସର ଖଣ୍ଡ, ତାଙ୍କ ରକ୍ତର ଏକ କଣିକା, ତାଙ୍କ ଶରୀରର ଏକ ଅଂଶ ଅଟେ ।

ପ୍ରଥମେ ପ୍ରଥମେ ତାଙ୍କୁ ଜଣାଗଲା ନାହିଁ ଯେ ଏହିପରି କୋମଳ ବିଗ୍ରହ ତାଙ୍କ ହୃଦୟରେ ପ୍ରବେଶ କରୁଛି । ସେ ଭାବିଲେ, ସବୁ ଯନ୍ତ୍ରପରି ଚାଲୁଛି । କିନ୍ତୁ ତାଙ୍କ ହୃଦୟରେ ହେଉଥିବା ସ୍ପନ୍ଦନ, ତାଙ୍କୁ ପ୍ରତ୍ୟେକ କ୍ଷଣ ପ୍ରେରିତ କରୁଥିବା ଆବେଗ— ଏହା ସବୁ ଦେଖି ସେ ବୁଝିପାରିଲେ ଯେ ବର୍ତ୍ତମାନ ସେ କୌଣସି ଅଜ୍ଞାତ ଶକ୍ତିର ଅଧୀନରେ ଆସିଛନ୍ତି ଏବଂ ସେ ତାଙ୍କ ଉପରେ ବିଜୟ ହାସଲ କରିବାକୁ ଯାଉଛି । ସେ ଲଜ୍ଜିତ ହେଲେ । ଭାବିଲେ ଯେ ତାଙ୍କର ସେଠି ବେଶୀ ସମୟ ଅଟକିବା ଉଚିତ ନୁହେଁ । ସେ ସେଠାରୁ ଶୀଘ୍ର ଶୀଘ୍ର ଆଗକୁ ଯିବାପାଇଁ ଚେଷ୍ଟା କଲେ; କିନ୍ତୁ ତାଙ୍କ ଗୋଡ଼ ତାଙ୍କ କଥା ଅନୁସାରେ ଚାଲୁ ନ ଥିଲା । ସେଠାରେ ପହଞ୍ଚିବାକ୍ଷଣି ତାଙ୍କ ପାଦ ହଠାତ୍ ଅଟକିଯାଉଥିଲା । ଶୀଘ୍ର ଆଖି ସେହି ଆଡ଼କୁ ବୁଲିଯାଇ ଅପଲକ ଦୃଷ୍ଟିରେ

ତାକୁ ଦେଖିବାକୁ ଲାଗନ୍ତି । ଅଥବା ପୁଣି କେତେବେଳେ ଯତ୍ନପୂର୍ବକ ଆଗକୁ ବଢ଼ି ଚାଲୁଥିଲେ ତ କୌଣସି ନା କୌଣସି ବାହାନାରେ ସେହି ଗୋଡ଼ ତାଙ୍କୁ ସେହି ଜାଗାକୁ ଫେରାଇନିଏ । ଏହି ଅବସ୍ଥାରୁ ନିଜକୁ ମୁକ୍ତ କରିବା ପାଇଁ ସେ ଥରେ ଠିକ୍ କରିନେଲେ ଯେ ବର୍ତ୍ତମାନ ଆଉ ମ୍ୟୁଜିୟମ୍‌ରେ ପାଦ ଦେବେ ନାହିଁ । ଏଥିପାଇଁ ସେ ଚେଷ୍ଟା ମଧ୍ୟ କଲେ । କିନ୍ତୁ ଅତି କମ୍‌ରେ ଦିନେ···ଗୋଟିଏ ଦିନ ହେଲେ ମଧ୍ୟ ସେ ନିଜ ଚେଷ୍ଟାରେ ସଫଳ ହୋଇପାରିଲେ ନାହିଁ । ସେ ନିଜର ଧ୍ୟାନକୁ ସେଠାରୁ ଦୂରେଇବାକୁ ଯେତେ ଚେଷ୍ଟା କରୁଥିଲେ, ମନ ତାଙ୍କୁ ସେତିକି ଜବରଦସ୍ତି ସେଠାକୁ ନେଇ ଯାଉଥିଲା । ତାଙ୍କୁ ଲାଗୁଥିଲା ଯେ ସେହି ମ୍ୟୁଜିୟମ୍ ହଲ୍ ତାଙ୍କ ହୃଦୟକୁ ଲଗାମ ଧରି ଟାଣୁଛି । ଏହି ସଂଯମ, ଏବଂ ସେହି ଆକର୍ଷଣର ସଂଘର୍ଷରେ ଶେଷରେ ସେ ଦୁର୍ବଳ ହୋଇପଡ଼ିଲେ । ଦୁର୍ବଳତା ଯୋଗୁ ସେ ଆଖିବୁଜି 'ବାପ୍‌ରେ' କୁହନ୍ତି । ତାଙ୍କୁ ସୂଚନା ନ ଦେଇ ତାଙ୍କର ଆଖି ଏବଂ ପାଦ ନିଜ କାମ ନିଜେ କରିଦିଅନ୍ତି ।

ସେ ନିଜ ଜୀବନରେ ପ୍ରଥମରୁ ଏଭଳି ଅନୁଭବ କରିନଥିଲେ । ତାଙ୍କ ଭିତରେ ଗୋଟିଏ ଘମାଘୋଟ୍ ଯୁଦ୍ଧ ଆରମ୍ଭ ହୋଇଯାଇଥିଲା—ଅନ୍ତର୍ଯୁଦ୍ଧ । ସେ ନିଜ ସହ ଲଢ଼ୁଛନ୍ତି । ନିଜ ଉପରେ ବିରକ୍ତ ହୋଇ ଦାନ୍ତ କଡ଼ମଡ଼ କରୁଛନ୍ତି, ନିଜକୁ ଅସ୍ତ୍ର ଦେଖାଉଛନ୍ତି ।

ବ୍ରହ୍ମଚର୍ଯ୍ୟ-ଜୀବନରେ ଆରମ୍ଭ କରିବା ପରେ ସଂଘର୍ଷ, ତାପରେ ମାନମର୍ଯ୍ୟାଦା ପ୍ରତିଷ୍ଠା, ପୁଣି ଆକର୍ଷଣ, ତା ପରେ ମମତା, ମୋହ ପୁଣି ଶେଷରେ ସମର୍ପଣ—ଏହିପରି ନାନା ପ୍ରକାର ଭାବ ତାଙ୍କ ମନ ଉପରେ ଗୋଟି ଗୋଟି କରି ଆକ୍ରମଣ କରୁଛନ୍ତି ଏବଂ ତାଙ୍କୁ ଦୁର୍ବଳ କରୁଛନ୍ତି; ବୁଢ଼େଇ ଦେଉଛନ୍ତି ଏବଂ କନ୍ଦାଉଛନ୍ତି । ସେହି ଆଲୁଅ କେବେ-କେବେ ଶୋଇବା ସମୟରେ ଦୃଷ୍ଟିରେ ଆସିବାକୁ ଲାଗିଲା । ସ୍ୱପ୍ନରେ ଅସ୍ପଷ୍ଟ ସ୍ୱରରେ କିଛି କହିବାକୁ ଲାଗିଲା ।

ଶ୍ରୀଦେବୀଙ୍କୁ ନିଜ ବାତାବରଣରୁ ବାହାରି ତାଙ୍କଠାରେ ନୂଆ ନୂଆ ପରିବର୍ତ୍ତନର ଲକ୍ଷଣକୁ ବୁଝିବା ପାଇଁ କିଛିଦିନ ବା କେତେକ ସପ୍ତାହ ଲାଗିଗଲା ।

ଦିନେ ସେ ଖଟଣାରେ ଶୋଇ ଶୋଇ ଉପରକୁ ଚାହିଁ ଦେଖୁଥିଲେ । ପାଖରେ କିଛି ଶୁଣାଗଲା; କିନ୍ତୁ ସେ ଜାଣିପାରିଲେ ନାହିଁ । ଯେପର୍ଯ୍ୟନ୍ତ ଶ୍ରୀଦେବୀ ତାଙ୍କ ପାଖରେ ବସି ତାଙ୍କ ହାତକୁ ଆଉଁଷିଲେ ନାହିଁ ସେ ପର୍ଯ୍ୟନ୍ତ ତାଙ୍କୁ କିଛି ଜଣାଗଲା ନାହିଁ ।

ସେ ଚମକିପଡ଼ି ଶ୍ରୀଦେବୀ ଆଡ଼କୁ ଚାହିଁଲେ ତ ଶ୍ରୀଦେବୀ କହିଲେ, "କୁହ ।"

"କ'ଣ କହିବି ?"

"ତୁମଠାରେ କିଛି ପରିବର୍ତ୍ତନ ଲକ୍ଷ୍ୟ କରୁଛି । ତମେ କେଉଁ କାରଣରୁ ବ୍ୟସ୍ତ ହେଉଛ; ଦୁର୍ବଳ ହୋଇଯାଉଛ । ଚେହେରାରେ ତୁମର ପୂର୍ବର ଚିକ୍‌କଣତା ଚାଲି ଯାଇଛି । ସବୁବେଳେ ଅନ୍ୟମନସ୍କ ରହୁଛ । ସ୍ୱପ୍ନରେ କିଛି ବଳିବଳଉଛ । ସେ ସବୁ

କାହିଁକି ହେଉଛ ?" ଶ୍ରୀଦେବୀ ନିଜ ହାତ ତାଙ୍କ ମୁଣ୍ଡ ଉପରେ ରଖି ବଡ଼ ଆଦରରେ କହିଲେ ।

ସେ ଆଶ୍ଚର୍ଯ୍ୟ ହୋଇଗଲେ, "ସତରେ ? ସତରେ ମୋ ଭିତରେ ଏତେ ପରିବର୍ତ୍ତନ ଆସିଯାଇଛି ?"

"ବିଶ୍ୱର ଇତିହାସରେ ଏହା ଏକ ବିରଳ ବିଷୟ । ତୁମଠାରେ ବହୁତ ପରିବର୍ତ୍ତନ ହୋଇଛି, ମୋତେ ନିଜ ଆଖିକୁ ବିଶ୍ୱାସ ଆସୁନାହିଁ ।"

"କାରଣ ତ ମୋତେ ଠିକ୍‌ଭାବେ କିଛି ଜଣାଯାଉନାହିଁ । ଶ୍ରୀଦେବୀ !"

"ପ୍ରଭୁ, ମୋତେ କାରଣ କହିବାର କୌଣସି ଆବଶ୍ୟକତା ନାହିଁ । କିନ୍ତୁ ତୁମେ ସାଧାରଣ ବ୍ୟକ୍ତି ହୋଇ ରୁହ । ମୋ ବିଶ୍ୱାସକୁ ବିଚଳିତ କରୁଥିବା ଦୁର୍ବଳତାକୁ ଆଗେଇବାକୁ ଦିଅ ନାହିଁ ।"

ସେ ବହୁତ ସମୟ ପର୍ଯ୍ୟନ୍ତ ତାଙ୍କ ଆଖି ଆଡ଼କୁ ଦେଖୁଥିଲେ । ତାପରେ ପଚାରିଲେ "ଶ୍ରୀଦେବୀ, ମୁଁ ତୁମକୁ ଗୋଟିଏ କଥା ପଚାରିବାକୁ ଚାହେଁ ।"

"କୁହ ।"

"କ'ଣ ମୋର ପରିବର୍ତ୍ତନ ହେଲାପରି ଜଣାଯାଉଛି ?"

ସେ ବିବ୍ରତ ହୋଇ ତାଙ୍କ ଆଡ଼କୁ ଚାହିଁଲା । ତାଙ୍କ ମୁଣ୍ଡକୁ ନିଜର କୋମଳ ସ୍ପର୍ଶ ଦ୍ୱାରା ଆଉଁଷୁଥିବା ତା ହାତ ହଠାତ୍ ରହିଗଲା ।

"କ'ଣ ଏମିତି କୌଣସି ବେଳ କେବେ ଆସିଥିଲା ଯେଉଁବେଳେ ତୁମ ମନରେ ମୋ ପ୍ରତି କ୍ରୋଧ କି ଘୃଣା ସୃଷ୍ଟି ହୋଇଛି ?"

ସେ ହଠାତ୍ ଉଠି ଠିଆହୋଇଗଲା । "ସ୍ୱାମୀ ! ଏହା ପ୍ରଶ୍ନ ନୁହେଁ । ଧନୁରୁ ବାହାରି ଥିବା ଶର ।"

କିନ୍ତୁ ସେ ନିଜକୁ ସମ୍ଭାଳି ବିନମ୍ର ସ୍ୱରରେ କହିଲା "ମୁଁ ଭାବିଲି, ତୁମେ ଏପରି ପ୍ରଶ୍ନ ମୋତେ କେବେହେଲେ ପଚାରିବ ନାହିଁ । ମୁଁ ଭାବିଲି, ଏପରି ସୁଯୋଗ ଆସିବ ନାହିଁ । ତୁମର ଆଚରଣ, ଅନୁଶାସନ ଏବଂ ସବୁକିଛି ମୁଁ ସହିପାରେ; କିନ୍ତୁ ଏହି ପ୍ରଶ୍ନ ମୁଁ ସହିପାରିବି ନାହିଁ । ବର୍ତ୍ତମାନ ନୁହେଁ, ମୋ ମରିବା ପୂର୍ବରୁ ତୁମେ କେବେହେଲେ ମୋତେ ଏହି ପ୍ରଶ୍ନ ପଚାରିବ ନାହିଁ, କ୍ଷମା କରିବ । ଯଦି ମନକଷ୍ଟ ହେଲା ।"

କହି ସେ ସେଠାରୁ ଉଠି ଚାଲିଗଲା ।

ସେ ଦୀର୍ଘଶ୍ୱାସ ଛାଡ଼ିଲେ । ଶ୍ରୀଦେବୀକୁ ଜଣାନାହିଁ ସେ କ'ଣ କରିଥିଲା । ଯଦି ଜଣା-ପଡ଼ିଲା ତ କ'ଣ ହେବ ? ଆଗ୍ନେୟଗିରି ଫାଟି ପଡ଼ିବ ।

ଗୋଟିଏ ମହାପ୍ରଳୟ ଘଟିବାର ଅଛି । ପୃଥିବୀ ସତେକି ଫାଟିଯାଉଛି । ଆଗ୍ନେୟଗିରି ଅଗ୍ନିଶିଖା ଉଦ୍‌ଗୀରଣ କରୁଛି । ଭଙ୍ଗା ଖଣ୍ଡମାନ ତରଳି ଉଠୁଛି । ସମୁଦ୍ର ସୀମାକୁ ଲଙ୍ଘନ କରି ପୃଥିବୀକୁ ବୁଡ଼ାଇ ଦେଉଛି । ଝଡ଼ ଉଠିଛି ଜ୍ୱାଳାମୁଖୀ ମାଳା, ତାଣ୍ଡବ, ଝଡ଼ିକୁ ବଢ଼ାଉଥିବା ମୂଷଳଧାର ବର୍ଷା । ପୃଥିବୀ ପାତାଳକୁ ଗମନ କଲା ଭଳି

ଭୂ-କମ୍ପନ—

"ହାଃ, ହାଃ" ସେ ଏକବାର ଚିତ୍କାର କରି ଉଠିଲା ।

ଝରକାଠାରୁ ଆକାଶର ଦୃଶ୍ୟକୁ ଦେଖୁଥିବା ଶ୍ରୀଦେବୀ ଦୌଡ଼ିଆସିଲା ।

"କ'ଣ ? କ'ଣ ହେଲା ?" ବଡ଼ ଆତୁରତା ସହିତ ପଚାରିଲା ।

ତାଙ୍କର ସାରା ଶରୀର ଝାଳରେ ବୁଡ଼ିଯାଇଥିଲା । ସେ ଗୋଙ୍ଗାପଣ ଥାନ୍ତୁଥିଲେ । ଶ୍ରୀଦେବୀର ଆବାଜ ତାଙ୍କୁ ଅନ୍ୟ ଦୁନିଆରୁ ଶୁଣାଯାଉଥିଲା । ବହୁତ ଚେଷ୍ଟା କରି ସେ ଆଖି ଖୋଲି ଚାହିଁଲେ ।

"କ'ଣ ବର୍ତ୍ତମାନ କିପରି ଲାଗୁଛି ?" ତାଙ୍କ ମୁହଁ ଉପରେ ମୁହଁ ରଖି ଶ୍ରୀଦେବୀ ପଚାରୁଥିଲା ।

"ସ୍ୱପ୍ନରେ ମୁଁ ଦେଖିଲି ସର୍ବନାଶ ହୋଇ ଯାଇଛି ।" କ୍ଷୀଣ ସ୍ୱରରେ ସେ କହିଲେ ।

ତାଙ୍କ ମୁଖମଣ୍ଡଳ ଶ୍ୟାମ ରଙ୍ଗର ବାଦଲରେ ଢାଙ୍କି ହୋଇଥିଲା ।

"ତୁମେ ଗୁଡ଼ାଏ କଣ ଭାବୁଛ । ବୋଧହୁଏ ସେଥିପାଇଁ··· ।"

କିଛି ସମୟ ନୀରବତାରେ କଟିଗଲା ।

"ମୋ ଖିଆଲରେ ସପ୍ତାହେ ହେବ ମୁଁ ବେମାର ପଡ଼ୁଛି ।"

ସେ ମୁଣ୍ଡ ହଲାଇଲା ।

"ବାପ୍‌ରେ ! ଏତେଦିନ ହେବ ମୁଁ କେବେହେଲେ ବେମାର ପଡ଼ିନଥିଲି । ବୋଧହୁଏ ଏଥିପାଇଁ· · ·"

"ପ୍ରାୟ ଏଥିପାଇଁ ଏସବୁ ବିଚାର · · · ।"

"ତମେ ଏହିପରି ହତୋତ୍ସାହ ହେବା ଉଚିତ ନୁହଁ । ଆଉ ଦୁଇଦିନ ଧରି ତୁମେ ବିଶ୍ରାମ କର । ତାପରେ ସବୁ ପୁଣି ଠିକ୍ ହୋଇଯିବ ।"

"ସବୁ ଠିକ୍ ହୋଇଯିବ ?" ତାଙ୍କ ମୁଖମଣ୍ଡଳରେ ହସ ଖେଳିଗଲା ।

"ତୁମେ କାହିଁକି ହସୁଛ ?"

"ସନ୍ଦେହ ହେଲା, ସେଥିପାଇଁ ।"

"କାହିଁକି ସନ୍ଦେହ ହେଲା ?"

ସେ କିଛି ଉତ୍ତର ଦେଇପାରିଲେ ନାହିଁ । କହିଲେ, "ସବୁ ଠିକ୍ ହୋଇଯିବ ଏହି କଥାରେ ସନ୍ଦେହ ହେଲା ।"

ଶ୍ରୀଦେବୀ ଅନୁଭବ କଲା ଯେପରି ତା ପାଦତଳୁ ମାଟି ଖସିଯାଉଛି ।

"ଏପରି କଥା କୁହ ନାହିଁ ।" ବାଷ୍ପରୁଦ୍ଧ କଣ୍ଠରେ ସେ କହିଲା ।

"ଶ୍ରୀଦେବୀ !" ସେ ଡାକିଲେ ।

"କଣ ?"

"ଏଠାରେ ବାହାରକୁ ଦେଖ ।"

·ସେ ବୁଝିପାରିଲା ନାହିଁ ବାହାରେ ଦେଖିବାର କ'ଣ ଅଛି । କହିଲା, "ସେଠାରେ କ'ଣ ଅଛି ?"

"ବହୁତ କିଛି ଅଛି—ଅସ୍ତଗାମୀ ସୂର୍ଯ୍ୟକିରଣକୁ ଘୋଡ଼ାଇ ଦେଉଥିବା ବାଦଲ, ମୋତେ ଦେଖି ହସିଉଠୁଥିବା ପବନ ଏବଂ ମୋତେ ଉପହାସ କରୁଥିବା ଗଛ-ଗୁଡ଼ିକ ।"

ଶ୍ରୀଦେବୀ ଛାତରେ ଯେପରି ପଥର ଲଦିହୋଇଗଲା । ତାର ହୃଦୟର ଦୁଃଖ ସ୍ରୋତପରି ଉଛୁଳି ବାହାରି ପଡ଼ୁଥିଲା ।

"ଆରେ । ଏପରି କଥା କୁହ ନାହିଁ । ତମ ଗୋଡ଼ ଧରୁଛି ।" ତାର କଣ୍ଠ ବାଷ୍ପରୁଦ୍ଧ ହୋଇଗଲା ।

ପୁଣି ନିସ୍ତବ୍ଧତା ଘୋଟିଗଲା, ମୁଣ୍ଡ ତଳକୁ କରି ସଙ୍କୋଚ ସହିତ ଶ୍ରୀଦେବୀ କହିଲା ।

"ଆଜି ଶନିବାର ନାଁ ? ସନ୍ଧ୍ୟାବେଳେ ମୁଁ କିଛି ସମୟ ପାଇଁ ମନ୍ଦିରକୁ ଯାଇ ଫେରିଆସିବି କି ?"

"ଯାଇ ଆସ, ସଙ୍କୋଚ କାହିଁକି ?"

"ତୁମେ ଘରେ ଏକା ରହିବ ନାଁ ?"

"କିଛି ନାହିଁ, ଶ୍ରୀଦେବୀ ! ବର୍ତ୍ତମାନ ମୋ ଅବସ୍ଥା ଭଲ ଅଛି ।"

"ଭଲ କଥା···କିନ୍ତୁ ବର୍ତ୍ତମାନ ମଧ୍ୟ ତୁମେ ଦୁର୍ବଳ । ପଲଙ୍କ ଉପରୁ ଉଠିବ ନାହିଁ । ମୁଁ ବର୍ତ୍ତମାନ ଆସୁଛି ।" ବାରମ୍ବାର କହି ଶ୍ରୀଦେବୀ ଚାଲିଗଲା ।

ମିନିଟ୍ ପରେ ମିନିଟ୍ ବିତିଯାଉଛି । ବର୍ତ୍ତମାନ ଶ୍ରୀଧର ପଲଙ୍କ ଉପରେ ଶୋଇବାକୁ ଚାହୁଁ ନାହିଁ ।

ଧୀରେ ଉଠି ବସିଲେ । ତାଙ୍କୁ ଜଣାପଡ଼ିଲା ସେ ସୁସ୍ଥ । ଠିଆହୋଇ ପଡ଼ିଲେ । ତେବେ ମଧ୍ୟ ସେ ନିଜକୁ ସୁସ୍ଥ ବୋଲି ଭାବିଲେ । ଧୀରେ ଧୀରେ ଯାଇ କରିଡ଼ର ପାଖ କାନ୍ଥ ପାଖରେ ଠିଆ ହୋଇଗଲେ ।

ଆକାଶରେ ଗାଢ଼ ବାଦଲ ଛାଇ ହୋଇଯାଇଥିଲା । ପଶ୍ଚିମ ପଟେ ପାହାଡ଼ପାଖରୁ ସୂର୍ଯ୍ୟକିରଣ ଝାପ୍ସା ହୋଇ ପଡ଼ୁଛି । ବର୍ଷା ହେବାର ସମ୍ଭାବନା ଅଛି ।

ଶ୍ରୀଦେବୀ ଚାଲିକରି ଯାଉଛି । ଫେରିବା ସମୟରେ ଯେପରି ଓଦାହୋଇ ନଯାଏ । ତାଙ୍କର ହୃଦୟ ଛଟପଟ ହେଲା ।

ସେହିଠାରେ, ଦିନର ସେହି ସମୟ, ସେହି ବାତାବରଣ ଭିତରେ ସେ ଶ୍ରୀଦେବୀକୁ କହିଥିଲେ 'ମୁଁ ସନ୍ତାନକୁ ଜନ୍ମ ହେବାପାଇଁ ଦେବି ନାହିଁ ।'

ସେ ଜନ୍ମ ହେଲା, କିଛି ବଡ଼ ମଧ୍ୟ ହେଲା, ଏବଂ ନଷ୍ଟ ହୋଇଗଲା ।

"ନାଁ ସେ ମରିନାହିଁ···", କାହାର କଠୋର ଧ୍ୱନି ଶୁଣାଗଲା । ସେ ଚମକିପଡ଼ିଲେ । ହଁ ତା'ର ଶରୀର ନଷ୍ଟ ହୋଇନାହିଁ । ନିଜର ବ୍ୟାବସାୟିକ ପ୍ରୟୋଜନ ପାଇଁ

ସେ ତାକୁ ନିଜ ଆଖି ଆଗରେ ରଖିନେଇଛି; କିନ୍ତୁ ଏ ବ୍ୟବସାୟର ପରୀକ୍ଷା ଭିନ୍ନ । ଏହା ସରଳ ହୃଦୟର ବ୍ୟବସାୟ ନୁହେଁ ।

"ମୁଁ ମରିନାହିଁ, ବାପା ! ମୁଁ ମରିନାହିଁ । ମୋତେ ବାନ୍ଧି ଦିଆଯାଇଛି । ଟେଲିଶନରେ ମୋତେ ବୁଡ଼ାଇ ଦିଆଯାଇଛି । ବୋତଲରୁ ମୋତେ ସବୁଲୋକ ଦେଖୁଛନ୍ତି । ମୋର ବଡ଼ ମୁଣ୍ଡ ସେହି ଲୋକମାନଙ୍କ ଦୃଷ୍ଟିରେ ଉପସ୍ଥିତ ହୋଇଛି ।"

'ଗୋଟିଏ ସପ୍ତାହ···ସାତଦିନ । ବାପ୍‌ରେ । ଏତେ ଦିନରୁ ଏହି ଜୀବନ ନିଜ ଶରୀରକୁ ବାନ୍ଧିରଖିଛି । ଏତେ ଦିନ···ସେ କିପରି ଏହାକୁ ସହ୍ୟକରି ରହିଛି । କିପରି ବଞ୍ଚିଛି ?'

'ଆଶ୍ଚର୍ଯ୍ୟ ନୁହେଁ ତ···' ତା ଆଖିରୁ ରକ୍ତଟୋପା ପରି ପାଣିଟୋପା ଗଡ଼ିପଡ଼ିଲା ।

"ତୁ ପଥର ଚଟାଣ ।"

ମନ ଗୁଲିବାକୁ ଆଦେଶ ଦେଉଛି ।

"ଶକ୍ତି ନାହିଁ, ଶକ୍ତି ନାହିଁ ।"

"ଏଥିପାଇଁ କହିଲି, ତୁ ଚଟାଣ, ତୁ ପଥର ।"

"ଜୀର ଅଛି, ଶକ୍ତି ନାହିଁ ।"

"ମରିବୁ ନାହିଁ, ପଥର ମରେନାହିଁ ।"

"ହଁ ପଥର ମରେ ନାହିଁ ।"

ପାଦ ଆଖି ସହିତ ସହଯୋଗ କଲା ଏବଂ ମସ୍ତିଷ୍କ କାମ କରିବା ଛାଡ଼ିଦେଲା । ଏତେ ଥଣ୍ଡାରେ ମଧ୍ୟ ଝାଳ ବାହାରୁଥିଲା ।

"ଯିବ, ନିଶ୍ଚୟ ଯିବ ।"

···ଘରର ଧୋଟିକିରୁ ଆତ୍ମାସାଡ଼ାର କାଉ ବାହାରି ଗୁଲିଲା ।

ମ୍ୟୁଜିୟମରେ ପାଦ ରଖି ସେ କାନ୍ଥରେ ଲାଗିଥିବା ସ୍ୱିଚ୍ ଦାବିଦେଲେ । ହଲ୍‌ରେ ବିଜୁଳି ଆଲୁଅ ଘରଆଡ଼େ ବିଛେଇ ହୋଇଗଲା ।

"ହେଇ ନିଅ···ସେ ତମ ନିଜର ।" ଦୁଇ ପାଦ ଆଗେଇଗଲା । ବିଜୁଳି କଟିଗଲା । ସବୁ ଅନ୍ଧକାର, ଘନ ଅନ୍ଧକାର, କିଛି ଦେଖାଯାଉ ନାହିଁ ।

"ବାଛୁ । କୋଉଠି ଅଛୁ ?" ମନେ ମନେ କହିଲା ।

"ଏଠାରେ ଅଛି, ବାପା ! ଏଠାରେ । ମୋତେ ଏଠାରେ ବାନ୍ଧି ରଖିଛନ୍ତି । ନିଶ୍ୱାସ ନେଇ ପାରୁନାହିଁ ।"

"ଗୋଟିଏ ମିନିଟ୍ । ମୁଁ ଆସୁଛି, ବାଛୁ !" ଭାବପ୍ରବଣତାରେ ବୁଡ଼ିଥିବା ପ୍ରଫେସର ଶ୍ରୀଧର ଛଟପଟ ହୋଇ ଆଗେଇଗଲେ ।

ସେହି ଘନ ଅନ୍ଧକାରରେ ଘରଆଡ଼େ ଅନେକ ରୋଗୀଙ୍କର ଭୟଙ୍କର ସ୍ମୃତିଚିହ୍ନ—ସ୍ତ୍ରୀଙ୍କର, ପିଲାମାନଙ୍କର, ବୃଦ୍ଧମାନଙ୍କର—ହୃଦ୍‌ଯନ୍ତ୍ର ରୋଗୀଙ୍କର, କର୍କଟ ରୋଗର,

ଗ୍ରାଜକାଗର, ସିଫିଲିସର, ପ୍ରାଇମେସ୍ପାସ୍‌ର ସହସ୍ର ସହସ୍ର ସ୍ମୃତିଚିହ୍ନ...ତାର ସଂଗ୍ରହ ...ମାନସିକ ସମ୍ପତ୍ତି—

"ବାପା, ବାପା ! ଏପଟେ ବାପା !"

ଗୃହଆଡୁ ଶବ୍ଦ ଶୁଣାଯାଉଛି । ସବୁଆଡୁ ଶବ୍ଦ ଆସୁଛି । ରାସ୍ତା ଦେଖାଯାଉ ନାହିଁ । କେତେବେଳେ ପଛକୁ ଯାଉଛି କେତେବେଳେ ଆଗକୁ ।

ଟକ୍—ଟଟକ୍—ଟକ୍ ପାଦର ଶବ୍ଦ—

"କିଏ ସେଠାରେ ?" ରହିଯାଇ ସେ ଡାକିଲେ । କାଳର ହିଁ ପାଦର ଶବ୍ଦ । ପ୍ରାୟ ତାଙ୍କୁ ଡରାଉଛନ୍ତି । ସାରା ବାତାବରଣରେ ନିସ୍ତବ୍ଧତା ଖେଳିଗଲା । ପୁଣି ଚାଲିବାକୁ ଲାଗିଲେ ।

"ବାପା ! ବାପା !"

ସେହି ଡାକରେ କରୁଣତା ଥିଲା, ଦୀନତା ଥିଲା ।

ରକ୍ତ ବାହାରିବାର ଶକ୍ତି ମଧ୍ୟ ଅଛି । କିଏ ହସୁଛି ।

"କିଏ ?" ପୁଣି ଆବାଜ୍ ଆସିଲା ।

"ଏପଟେ ବାପା ! ଏପଟେ ବାପା !"

ପହଞ୍ଚିଗଲା । ହାତ ବଢ଼ାଇ ସେଠାରେ ରଖାଯାଇଥିବା ବୋତଲକୁ ଅଣ୍ଡାଳିଲା । ତାଙ୍କର ବିଶ୍ୱାସ ହେଲା ଯେ ଏହା ସେହି ଜନକ ।

"ତୁ ବଞ୍ଚୁ ?"

"ହିଁ, ବାପା !"

ତାର ଅଜାଣତରେ ତାର ହାତ ଉପରକୁ ଉଠିଗଲା । ସେ ବହୁତ ଭାର ଲାଗୁଛି । ତାକୁ ପାଖକୁ ନେଇ ତାକୁ ହୃଦୟରେ ଜାକିବା ପାଇଁ ସେ ଛଟପଟ ହେଉଛନ୍ତି । ହାତ ଥରୁଥିଲା ।

ସେ ଆହୁରି ଅଧିକ ଭାରି ହୋଇଯାଉଥିଲା । ହାତ ଦୁର୍ବଳ ହୋଇଯାଉଛି ।

ସେ ତାକୁ ନିଜ ଛାତିରେ ଲଗାଉଛନ୍ତି··ହାତ ଉତ୍ତର ଦେଲା । ତାଙ୍କୁ ଶୋଷ ହେବାକୁ ଲାଗିଲା ।

ଦୁମ୍‌···କିଛି ଶବ୍ଦ ହେଲା ଏବଂ ବଞ୍ଚୁ କହି ସେ ପାଗଳ ପରି ଚିତ୍କାର କଲେ ।

ଆଲୁଅ ଆସିଗଲା । ଛିଡ଼ା ହୋଇ ଥରୁଥିବା ଶ୍ରୀଧରଙ୍କ ସାମନାରେ ଥିଲା—ଖଣ୍ଡ ବିଖଣ୍ଡ ହୋଇ ତଳେ ପଡ଼ିଥିବା କାଚର ବୋତଲ । ଚାରିଆଡ଼େ ପଡ଼ିଗଲା ଫାର୍ମାଲିନ୍ । ସେଥିରେ ବର୍ତ୍ତମାନ ମରି ପଡ଼ିଥିବା ମାଂସପିଣ୍ଡ ।

ଶ୍ରୀଧର ନଇଁପଡ଼ି ନିଜ ପୁଅକୁ କୋଳରେ ନେଇଗଲେ; ଗୋଟେକ୍ଷଣ ଅପଲକ ଦୃଷ୍ଟିରେ ତାକୁ ଚାହିଁଲେ । "ମୁଁ ତୋ ପ୍ରତି ନ୍ୟାୟ ବିଚାର କରିବ ।" ସେ କୋହରେ ଭାଙ୍ଗିଲ ଉଠିଲେ । ସେହିପରି ପିଲାକୁ କାନ୍ଧରେ ପକାଇ ସେ ବାହାରକୁ ଚାଲିଗଲେ ।

ମ୍ୟୁଜିୟମର ଗୋଟିଏ ସ୍ପେସିମେନ୍‌କୁ ପାଗଳ ପରି କାନ୍ଧରେ ରଖିଥିବା ପ୍ରଫେସରଙ୍କୁ

ବିବ୍ରତ ହୋଇ ଗୁହିଁ ରହିଥିଲେ ଆଟେଣ୍ଡାଣ୍ଟ ଆଉ ଓ୍ୱାଚ୍‌ମ୍ୟାନ । କାର ଶ୍ମଶାନ ଆଡ଼କୁ ଧାଇଁଲା ।

ହୃଦୟସ୍ଥ ଭିତରେ ନିଜର ସମସ୍ତ ଦୁଃଖର ବୋଝକୁ ଓହ୍ଲାଇ ଦେଇ ଦେଇ ଶ୍ରୀଧର ନିଜ ସ୍ତ୍ରୀର କୋଳରେ ମୁଣ୍ଡ ରଖି ନୀରବ କାନ୍ଦି ସବୁକଥା କହୁଛନ୍ତି । ସେ କାନ୍ଦିବାରେ କେତେ ଆନନ୍ଦ ! କେତେ ଶାନ୍ତି ! ଶ୍ରୀଦେବୀ ତାଙ୍କ ବାଳକୁ ସାଉଁଳି ସାଉଁଳି ନୀରବ ରହି ଆଖିରୁ ଲୁହଧାର ଗଡ଼ାଉଛନ୍ତି ।

କିଛି ନ ଲୁଚେଇ, ନ ଛପେଇ ସେ ଶ୍ରୀଦେବୀଙ୍କୁ ସବୁକଥା କହିଦେଲେ ।

"ଶ୍ରୀଦେବୀ ! ମୁଁ ଯୋଗ୍ୟ ପିତା ହେବାକୁ ଚାହୁଁଛି । ମୁଁ ଯୋଗ୍ୟ ପିତା ହେବା ଉଚିତ ।"

ଯଦି ଆଜିର ଏହି ଘଟଣା-କ୍ରମ ଏହି ପ୍ରକାର ନ ହୋଇଥାଆନ୍ତା ଏବଂ ତାର କାର୍ଯ୍ୟ କଳ୍ପ ନ ହୋଇଥାଆନ୍ତା ତେବେ ବୋଧେ ତାର ଇଚ୍ଛା ସେ ଏମିତି ପ୍ରକାଶ କରିଥାନ୍ତା ।

"ମୋର ଗର୍ଭ ନଷ୍ଟ କରାଇଦିଅନ୍ତୁ ।"

କିନ୍ତୁ ବର୍ତ୍ତମାନ ଅବସ୍ଥା ଅନ୍ୟ ପ୍ରକାର । ନୂଆ କଳି ବାହାରି ଆସୁଛି ।

"ତମ ଇଚ୍ଛା···ଆଉ ସାତମାସ ପରେ···" ଏହି କଥା ତାଙ୍କ କାନରେ ମଧୁର ମଞ୍ଜୁଳ ଶବ୍ଦରେ ବାଜିଉଠିଲା ।

## କାଉ

ସ୍କୁଲମାଷ୍ଟର ଚାକିରି କରି ମଧ୍ୟ ଶ୍ରେଷ୍ଠ ଗାଁରେ ରହିବା ଯୋଗୁ କୌଣସିପ୍ରକାର ଦିନ କଟାଉଥିବା ରାମନାଥ ହଠାତ୍ ମରିଗଲେ । ପରିଣାମ ଏହା ହେଲା ଯେ ତାଙ୍କ ପରିବାର ଅସହାୟ ହୋଇ ପଦାକୁ ବାହାରିଲେ ।

ରାମନାଥର ଦୁଇଟି ପୁଅ ଓ ଦୁଇଟି ଝିଅ । ବଡ଼ପୁଅକୁ ଛାଡ଼ି ବାକି ତିନିଜଣ ବୟସରେ ତାଠାରୁ ଶ୍ରେଷ୍ଠ ହେଲେ ମଧ୍ୟ ବୁଦ୍ଧିରେ ତାଠାରୁ ବଡ଼ ଭଲ ଜଣାପଡ଼ନ୍ତି । ଅବସ୍ଥାନୁସାରେ ତାଙ୍କଠାରେ ବୁଦ୍ଧି ଅଛି; କିନ୍ତୁ ବଡ଼ପୁଅଠାରେ ବୁଦ୍ଧିର ଅଭାବ । ଦିନ କଟି ଯାଉ ଯାଉ ତାର ଶରୀର ମଧ୍ୟ କ୍ରମଶଃ ବିକଶିତ ହେଉଛି; କିନ୍ତୁ ତାର ବୌଦ୍ଧିକ ବିକାଶ ସଙ୍କୁଚିତ ହୋଇଗଲା । ସେ ଏକବାରେ ଅବୋଧ ଏବଂ ମୂର୍ଖ ।

ବିଚରା ରାମନାଥକୁ ଜୀବନସାରା ଏହି ଗୋଟିଏ ସମସ୍ୟା ବହୁତ କଷ୍ଟ ଦେଉଥିଲା । ବଡ଼ପୁଅ ଶୀଘ୍ର ସାହାଯ୍ୟ କରିବ ଏବଂ ତାକୁ ବିଶ୍ରାମ ଦେବ ଏପରି କୌଣସି ବିଶ୍ୱାସ ତାର ନ ଥିଲା । ଏହି ବିଶ୍ୱାସକୁ ଜବରଦସ୍ତ ଛାଡ଼ିଦେଇ ସେ ଭବିଷ୍ୟତ ବିଷୟରେ ଚିନ୍ତା କରୁଥିଲା ତ ଦାରିଦ୍ର୍ୟର ପିଶାଚ ରୂପ ତା ଆଗରେ ନାଚି ଉଠୁଥିଲା । ତାର ନିଜର କହିଲା ଭଳି ଚାରିହାତ ଜମି ପର୍ଯ୍ୟନ୍ତ ନଥିଲା । ତାପାଖରେ ଯେଉଁ ସମ୍ପତ୍ତି ମଧ୍ୟ ଥିଲା, ସେ ଥିଲା ସ୍ତ୍ରୀ, ସନ୍ତାନ ଏବଂ ଚଢ଼େଇର ପକ୍ଷ ଭଳି ହଲୁଥିବା ଦୁଇହାତ । ଏହାକୁ ସେ ନିଜ ସମ୍ପତ୍ତି ବୋଲି ମାନି ନେଇଥିଲା ।

ଯଦି କେବେ ସେ ଚିନ୍ତା କରୁଥିଲା ଯେ ମୋ ପରେ ଏହି ପରିବାର ଅବସ୍ଥା କ'ଣ ହେବ, ତେବେ ଏହି ଚିନ୍ତାରେ ସେ ବହୁତ ଚିନ୍ତିତ ହୋଇପଡ଼ୁଥିଲା । କିନ୍ତୁ ଭିତରେ ଚିନ୍ତାଗ୍ରସ୍ତ ହୋଇ ମଧ୍ୟ ବାହାରୁ ବଡ଼ ଗମ୍ଭୀର ଦେଖାଯାଉଥିଲା । କାହାରି ସମ୍ମୁଖରେ ସେ ନିଜର ଦୁଃଖ କହି କାନ୍ଦୁନଥିଲା । ସେ କହୁଥିଲା, ମୋର କ'ଣ ଅଭାବ ଅଛି ? ମୋର ପିଲା ଅଛନ୍ତି, ସେହି ମୋର ସମ୍ପତ୍ତି । ଏହି ପିଲାଙ୍କ ସାଙ୍ଗରେ ଏହି ପରିବାର ବର୍ତ୍ତମାନ ପର୍ଯ୍ୟନ୍ତ ମାନମର୍ଯ୍ୟାଦା ସହିତ ଚାଲି ଆସୁଥିଲା ।

ହଠାତ୍ ମଙ୍ଗଳବାର ଦିନ ସେ ନିଜ ସ୍ତ୍ରୀକୁ କହିଲେ, "କିପରି ଜ୍ୱର ଭଳି ଜଣାଯାଉଛି ।" ଘରୋଇ ଔଷଧ ଦ୍ୱାରା ଚିକିତ୍ସା କରାଗଲା । ପାରିବାରିକ ଜୀବନର ବିଗତ ପଚିଶବର୍ଷରୁ ସେ ଘରେ ତିଆରି ହୋଇଥିବା ଅଥବା ବଜାରରୁ କିଣିକରି ଆଣିଥିବା ଔଷଧକୁ ହିଁ ବ୍ୟବହାର କରୁଥିଲା । ଡାକ୍ତର ଡକାଇ ଆଣିବା ଏବଂ ତାଙ୍କ ଦ୍ୱାରା ଘରକୁ ଲୁଟ୍ କରାଇବା ତାଙ୍କର ପସନ୍ଦ ନଥିଲା ।

ସାଧାରଣ ଜ୍ୱର ଭଳି ଶୀଘ୍ର ଓହ୍ଲାଇଯିବ, ଏହା ବିଶ୍ୱାସ ଥିଲା । କିନ୍ତୁ କଥା

ଅନ୍ୟ ଆଡ଼କୁ ଗଲା ।

"କେଭଳି ଅନର୍ଥ ହୋଇଗଲା ।" ମମତ୍ତ୍ରେ ଦୁଃଖପ୍ରକାଶ କଲେ । ମଧ୍ୟାହ୍ନର ଏଗାରଟାବେଳକୁ ପଡ଼ିଥିବା ଶବକୁ ବହୁ ରାତିପର୍ଯ୍ୟନ୍ତ ଦାହ ସଂସ୍କାର ପାଇଁ ନେଇଯିବା ସମ୍ଭବ ହେଲା ନାହିଁ । ମହାଲକ୍ଷ୍ମୀର ବିପଦ ଏଥିଯୋଗୁ ପଡ଼ିଥିଲା । ସେ ବଡ଼ କରୁଣା-ଜନକ ମୁଦ୍ରାରେ ନିବେଦନ କଲା, "ବନ୍ଧୁ ବାନ୍ଧବ କୁଟୁମ୍ବଙ୍କୁ ତାର ପଠାଯାଇଛି, ବର୍ତ୍ତମାନ ସେମାନେ ଆସୁଥିବେ । ରାତିର ଶେଷପର୍ଯ୍ୟନ୍ତ ମଧ୍ୟ କେହି ଆସିଲେ ନାହିଁ । ଆସନ୍ତା ଦିନ ସକାଳ ପର୍ଯ୍ୟନ୍ତ ଅପେକ୍ଷା କରିବା ପାଇଁ ସେ ବହୁତ ଆଗ୍ରହୀ ଥିଲା; କିନ୍ତୁ ଗାଁର ବଡ଼ ବଡ଼ ମୁରବୀମାନେ ଆପତ୍ତି କଲେ ।"

ଏହିପ୍ରକାର ଘଟଣାରେ ଗାଁର ଜନତା ମଧ୍ୟ ପରମ୍ପରା ଏବଂ ମାନ୍ୟତାଗୁଡ଼ିକୁ ବଡ଼ କଠୋର ଭାବରେ ପାଳନ କରନ୍ତି । ଯଦି କୌଣସି କୋଠାରେ ଗୋଟିଏ ପରିବାରରେ ଏପରି ଦୁର୍ଘଟଣା ଘଟିଗଲା ତେବେ ସେହି କୋଠାର ଅନ୍ୟଭାଗରେ ରହୁଥିବା ନଗରବାସୀ ଚୁପ୍‌ଚାପ୍ କବାଟ ବନ୍ଦକରି ଖାଇବା ଖାଇ ନିଅନ୍ତି; କିନ୍ତୁ ଗାଁରେ ଏକଥା ଚଳେ ନାହିଁ । ଯେ ପର୍ଯ୍ୟନ୍ତ ଶବ ଶ୍ମଶାନକୁ ନ ଯାଇଛି ସେପର୍ଯ୍ୟନ୍ତ ସେହି ପଡ଼ାରେ କୌଣସି ରନ୍ଧାବଢ଼ା କାମ ପର୍ଯ୍ୟନ୍ତ ହୁଏ ନାହିଁ, କାହାରି ଚୁଲି ମଧ୍ୟ ଜଳେ ନାହିଁ ।

ସେହି ରାତିକୁ ଶବ-ଦାହ ସଂସ୍କାର ଶେଷ ହୋଇଗଲା । ଶୀତ ମଣିଷକୁ ଥଲ୍ଲ ଥରି କରି ପକାଉଥିଲା । ଉତ୍ତର ପବନ ଜୋରରେ ବହୁଥିଲା । ସେହି ରାତିରେ ବହୁ ସମୟ ପର୍ଯ୍ୟନ୍ତ ଲୋକେ ନିଜ ଘରର ଦୁଆରେ ବସି ରାମନାଥର ଗୁଣ ଚର୍ଚ୍ଚା କରୁଥିଲେ ।

ବାହାର ଘରେ କାନ୍ଥକୁ ଆଉଜି ମହାଲକ୍ଷ୍ମୀ ମନେ ମନେ କୋହ ଉଠାଇ କାନ୍ଦୁଥିଲା । ଅଧ ରାତିକୁ ଗୋଟାଏ ବେଳ ପର୍ଯ୍ୟନ୍ତ ବାହାର ଲୋକମାନଙ୍କର ନୈରାଶ୍ୟ ନିଶ୍ୱାସ ଏବଂ ରମାନାଥର ଗୁଣର ଆଲୋଚନା ସ୍ପଷ୍ଟ ଭାବରେ ଏବଂ କିଛି ଅସ୍ପଷ୍ଟ ସ୍ୱରରେ ଲକ୍ଷ୍ମୀର କାନରେ ପଡ଼ୁଥିଲା । ପୁଣି ଅଧଘଣ୍ଟା ମଧ୍ୟରେ ଗାଁଟା ସାରା ଶୋଇଗଲେ ଏବଂ ଚାରିଆଡ଼େ ନିସ୍ତବ୍ଧତା ଘୋଟିଯାଇଥିଲା ।

ଉପର ଥାକରେ ରଖାହୋଇଥିବା ଦୀପ ଦୁଲୁଦୁଲୁ ହୋଇ ଜଳୁଥିଲା । ପିଲାମାନେ କାନ୍ଦି କାନ୍ଦି ଶୋଇ ଯାଇଥିଲେ ।

ସେ ନିଜ ସ୍ୱାମୀ ବିଷୟରେ ବହୁତ କଥା ମନେପକାଇ ଦୁଃଖରେ କୋହକୁ ବହୁ ଚେଷ୍ଟାକରି ଚାପି ଦେଉଥିଲା । "ହାୟରେ ଭଗବାନ ! ତାଙ୍କୁ ଜୀବିତ ରଖି ମୋତେ ନେଇଯାଇଥିଲେ ଠିକ୍ ହୋଇ ଥାଆନ୍ତା ।" —କହି ସେ ନିଜ ଭାଗ୍ୟକୁ ନିନ୍ଦୁଥିଲେ— ଯେପରି କି ଏହି ଅବସ୍ଥାରେ ଲୋକମାନେ କହିଥାଆନ୍ତି ।

ମଝିରେ ମଝିରେ ଝାପସା ନିଦ ଆଖିକୁ ବନ୍ଦକରି ଦେଉଥିଲା । କେତେ ପ୍ରକାର ସ୍ୱପ୍ନ ଆଗରେ ଆସି ନିଦକୁ ଭାଙ୍ଗି ଦେଉ ଥିଲା । କେତେକେ ଚିନ୍ତା ତାଙ୍କ ମନକୁ ଯନ୍ତ୍ରଣା

ଦେଉଥିଲା । ବର୍ତ୍ତମାନ ତାଙ୍କ ସାରା ଜୀବନ ଗୋଟାଏ ଗଡ଼ଖାଇ ଭଳି ଜଣାପଡୁଥିଲା । କାଲି ପର୍ଯ୍ୟନ୍ତ ଯେଉଁ ଭବିଷ୍ୟତର କଳ୍ପନାର ସମ୍ଭାବନାକୁ ସେ ଡରୁଥିଲେ ବର୍ତ୍ତମାନ ସେ ସତ୍ୟରୂପରେ ସିଂହ ପରି ଆଗରେ ଆସି ଉପସ୍ଥିତ । ବର୍ତ୍ତମାନ ସମସ୍ତ ବିଷୟ ସମସ୍ୟାରେ ପରିଣତ ହୋଇଛି ।

ହଠାତ୍ ପବନ ଦକ୍ଷିଣ ଦିଗରୁ ବହିବାକୁ ଲାଗିଲା । ଗ୍ରେଟ ଗ୍ରେଟ ପିଲାଙ୍କ ଆଡ଼କୁ ସେ ବଡ କରୁଣ ଦୃଷ୍ଟିରେ ଚାହିଁଲା । —ଅଣ୍ଡା ଯୋଗୁ ସେମାନେ କାକଥୁକ୍ତ ହୋଇ ଶୋଇ ଯାଇଛନ୍ତି । ବାପର ମରିବାରେ ସମସ୍ତେ କାନ୍ଦୁଥିଲେ ତ ସେମାନେ ମଧ୍ୟ କାନ୍ଦୁଥିଲେ । ଏହା ବ୍ୟତୀତ ଆଉ କିଛି ସେମାନେ ଜାଣି ନ ଥିଲେ । ଏକ ପ୍ରକାର ଏହା ଭଲ ହେଲା, ଯେତେବେଳେ କଥାବାର୍ତ୍ତା ଛଳରେ ବାପାଙ୍କ କଥା ଆଲୋଚନା ପାଇଁ ଆସୁଥିଲା ସେମାନଙ୍କୁ ବୁଝେଇବା ଶୁଝେଇବା ଦ୍ୱାରା ସେମାନେ ସବୁକଥା ଭୁଲିଯାଉଥିଲେ । କିନ୍ତୁ ସେମାନଙ୍କୁ ତ ଆଜୀବନ ଏହି ଦୁଃଖ ଯନ୍ତ୍ରଣାରେ ଛଟପଟ ହେବାକୁ ପଡ଼ିବ ।

ବହୁ ସମୟ ପର୍ଯ୍ୟନ୍ତ ସ୍ୱାମୀକଥା ମନେପକାଇ ମନେ ମନେ କୋହ ଉଠାଇ କାନ୍ଦିବାକୁ ଲାଗିଲା । ରାତ୍ରିର ଶେଷ ପ୍ରହରରେ ନିଜ ଭବିଷ୍ୟତ ବିଷୟରେ ଚିନ୍ତା କରି କାନ୍ଦି ଉଠିଲା । ଉଚ୍ଚ କପାଳ, ଧୋତି, କୁରୁତା, ଉପରେ ଚାଦର, କପାଳରେ ଚନ୍ଦନ ଟିକା, ଗହିରା ଗହିରା ଆଖି, ପତଳା ଜୋତା, ଆଖିରେ ଚଷମା, ହାତରେ ଛତା, ଏହି ସମସ୍ତ ଚିତ୍ର ତାଙ୍କ ସ୍ମୃତିପଟରେ ରହିରହି ନାଚି ଉଠିଲା । ଭବିଷ୍ୟତକୁ ଚାହିଁଲେ ଗଭୀର ସମୁଦ୍ରଭଳି ଜଣାଯାଉଥିଲା । ସତେ କି ତା କୂଳରେ ସେ ନିଜେ ଏକୁଟିଆ ଠିଆ ହୋଇଛି । ଆଖି ଆଗରେ କିଛି ଦେଖାଯାଉ ନଥିଲା ଏବଂ ମୁଣ୍ଡଉପରେ ଛାତ ମଧ୍ୟ ଦେଖାଯାଉ ନଥିଲା । ଚାରୋଟି ପିଲା ଓ ସେ—ପାଞ୍ଚ ଜଣଙ୍କ ପେଟ ପୋଷିବା— କିପରି ହେବ ? ମାନ ମର୍ଯ୍ୟାଦାରେ ଦିନ କଟିଯାଇଥିଲା । କୌଣସି ଜିନିଷ ପାଇଁ ଅନ୍ୟ ପାଖରେ ହାତ ପତେଇବା ଅବସ୍ଥା ଆସିନଥିଲା । ବର୍ତ୍ତମାନ କ'ଣ କରାଯିବ ?

କ'ଣ କରାଯିବ, ସେ ଅନେକ ଥର ଅନେକ କଥା ଚିନ୍ତା କରିଛି । ସମ୍ମାନର ସହିତ କୌଣସି କାର୍ଯ୍ୟପନ୍ଥା ଖୋଜାଯାଏ ତ ସେଥିପାଇଁ ପଇସା ଦରକାର । ସେ ଭଲଭାବେ ଜାଣେ ଯେ ପଇସା ବ୍ୟତୀତ କୌଣସି କାମ ସମ୍ଭବ ନୁହେଁ । ତଥାପି ମଧ୍ୟ ସେ ଭାବୁଛି ସମ୍ମାନ ସହିତ ବାଞ୍ଚିବାର ସମ୍ଭାବନା ଅଛି । ତାକୁ ଏକଥା କିପରି ବିଡମ୍ବନା ଭଳି ଜଣାଗଲା ।

ଭଦ୍ରମ୍ମାର କଥା ଦେଖ । ପଚିଶ ବର୍ଷ ବୟସରେ ତାର ସ୍ୱାମୀ ମରିଗଲେ । ତିନୋଟି ପିଲା ଥିଲେ । ସେ କ'ଣ କଲା ? କ'ଣ…କଲା ? ମହାଲକ୍ଷ୍ମୀ ତା ଦୁଃଖକୁ ସମ୍ଭାଳି ପାରିଲା ନାହିଁ । କ'ଣ ସେହିଭଳି ଅବସ୍ଥା ତାର ମଧ୍ୟ ହେବ କି ? ଆଜି ପର୍ଯ୍ୟନ୍ତ ମାନ-ମର୍ଯ୍ୟାଦାରେ ଦିନ କଟାଇ ଯଦି ବର୍ତ୍ତମାନ ସେ ଅସହାୟ ହୋଇ ଲୋକଙ୍କ ଦୟା-ଉପରେ ବଞ୍ଚିରହିବ ତେବେ କେହି ତାର ଖିଆଲ ମଧ୍ୟ କରିବେ ନାହିଁ । କାହା ସହିତ

ତାର କୌଣସି ସଂପର୍କ ନାହିଁ । ଭଦ୍ରମ୍ମା ଭଳି ଯଦି ସେ ଘର ଘର ବୁଲି ବୁଲିକି, ତାଲି ଇତ୍ୟାଦି ସଫା କରିବ ନାହିଁ ତେବେ ତାର ବଞ୍ଚିରହିବା ସମ୍ଭବ ହେବ ନାହିଁ ? ସମୟ ଥିଲା ଯେତେବେଳେ ଭଦ୍ରମ୍ମା ସମସ୍ତଙ୍କ ସହିତ ସବୁଠାରୁ ଅଧିକ ସମ୍ମାନ ସହିତ ରହୁଥିଲା; କିନ୍ତୁ ବର୍ତ୍ତମାନ ? ଲୋକେ ତା ବିଷୟରେ ବହୁତ ଅଳ୍ପ ଆଲୋଚନା କରନ୍ତି । ଯଦି କେବେ ପ୍ରସଙ୍ଗରେ ଆଲୋଚନା କରିଯାଏ ତେବେ ସେ ଭଳି ନୁହେଁ, ଯେପରି ପ୍ରଥମେ କରୁଥିଲେ ।

ଏହା ମଧ୍ୟରେ ତାର ଚିନ୍ତାଧାରା ବହୁତ ଦୁର୍ବଳ ହୋଇଯାଇଛି । କୌଣସି କାମ ମଧ୍ୟ ଭଲଭାବରେ ସଫାସୁତୁରା କରି କରିପାରୁନାହିଁ । ଦଶ-ବାର ଥର କହିଲି ପରେ ସେ କୌଣସି କଥା ବୁଝିପାରୁଛି । କିନ୍ତୁ ବିଗୁଣି ଧନେ ବଡ଼ ଘରର ଥିଲା । ଏଥିପାଇଁ ଆମ୍ଭମାନଙ୍କୁ ତାର ପିଲାଙ୍କର ଖିଆଲରଖି ତା ପ୍ରତି ଦୟା ଦେଖାଇବା ଉଚିତ— ଅନେକେ ଏହିପରି ତା ବିଷୟରେ କୁହାକୁହି ହୁଅନ୍ତି । ପ୍ରଥମର ଅବସ୍ଥା ଏବଂ ସମ୍ମାନ ବର୍ତ୍ତମାନ ସେ ହରାଇ ଦେଇଛି ।—କିନ୍ତୁ ସେଥିପାଇଁ ସେ ଦାୟୀ ନୁହେଁ । ଦୁଇଟି ସୁଦୃଢ଼ ହାତ ସେହି ପରିବାରକୁ ନିଜ ହାତମୁଠାରେ ନେଇ ସମ୍ଭାଳି ନେଇଥିଲା । ସେହି ହାତ ବର୍ତ୍ତମାନ ନାହିଁ । ପାହାଡ଼ ଉପରେ ବିଛେଇ ପଡ଼ିଥିବା ବରଫ ତଳିଗଲା । ହାତମୁଠା ଖୋଲିଗଲା ।

ମହାଲକ୍ଷ୍ମୀ ଚିନ୍ତାକଲା ଯେ ଲୋକେ ମୋ ବିଷୟରେ ମଧ୍ୟ ଏହିପରି ଭାବିବେ । ମହାଲକ୍ଷ୍ମୀ ମନରେ ଯେପରି ଏହି ଚିନ୍ତାହେଲା ଯେ, ସେ ଭଡ଼ାଘରେ ରହୁଛି ଏବଂ ଏତେବଡ଼ ଘରକୁ ଶୀଘ୍ର ଛାଡ଼ି ଖାଲି କରିଦେବାକୁ ହେବ, ତା ମନରେ ଓ ଆଖିଆଗରେ ଗଛତଳର ଗରମ, ବର୍ଷା ସହି ଦୁବଘାସ ଭଳି ରହୁଥିବା ସେହି ନିଃସହାୟ ଶୀର୍ଣ୍ଣ ଦରିଦ୍ରଙ୍କର ବିଭତ୍ସ ଦୃଶ୍ୟ ଦେଖାଗଲା । ଯାହାଙ୍କ ପେଟ ପିଠିରେ ଲାଗିଯାଇଛି । ଆଖିଗୁଡ଼ିକ ଭିତରକୁ ପଶିଯାଇଛି ଏବଂ ବାଳ ଫରଫର ଉଡ଼ୁଛି ।

କାନ୍ଥକୁ ଭରାଦେଇ ସେ ନିଜ ଦୁଃଖକୁ ଚାପିରଖି ଆଖି ବୁଜିଦେଲା ।

ତାର ଆଖିପତା ଲୁହରେ ଓଦାହୋଇ ପୋଖରୀରେ ପରିଣତ ହେଲା । ମନ ସମୁଦ୍ର ପରି ଗରଜି ଉଠୁଥିଲା । ଆଖି ଖୋଲିବାକ୍ଷଣି ତାର ଦୃଷ୍ଟି ବଡ଼ପୁଅ ଉପରେ ପଡ଼ିଲା । ସେ ମଧ୍ୟ ଶ୍ରେଷ୍ଠ ପିଲାଙ୍କ ପରି ପାଦମଝିରେ ହାତରଖି ଶୋଇଯାଇଥିଲା । ଶୋଇବା ସମୟରେ ତା ମୁହଁରୁ ଲାଳ ବୋହି ପଡ଼ିବାର ସେ କେତେଥର ଦେଖିଛି । ଛିଃ, ଶ୍ରେଷ୍ଠ ପିଲାଙ୍କ ପରି ··· ! ତା ଆଡ଼କୁ ଦେଖୁଦେଖୁ ତାର ହୃଦୟ ବହୁତ ଉଦ୍‌ବିଗ୍ନ ହୋଇ ଉଠିଲା । ବୟସ ତ ତାର ବରାବର ବଢ଼ି ଚାଲିଥିଲା; କିନ୍ତୁ ପରିବାରକୁ ତା ଦ୍ୱାରା କୌଣସି ସାହାଯ୍ୟ ହେଉନଥିଲା । ତାର ସ୍ୱାମୀ ଯେତେଦିନ ପର୍ଯ୍ୟନ୍ତ ବଞ୍ଚି ରହିଥିଲେ, ଏହି କାରଣ ପାଇଁ ସେ ବହୁତ ଚିନ୍ତିତ ହେଉଥିଲେ । ବର୍ତ୍ତମାନ ମହାଲକ୍ଷ୍ମୀକୁ ଯେଉଁ ଦୁଃଖକଷ୍ଟର ସମ୍ମୁଖୀନ ହେବାକୁ ପଡ଼ିବ, ତାର କାରଣ ମଧ୍ୟ ଏହି ପୁଅ ।

ନିଜର ସମସ୍ତ ଦୁଃଖ ଏବଂ ଯନ୍ତ୍ରଣାର ଦାୟିତ୍ୱ ସେ ପୁଅ ଉପରେ ପକାଇ ଦେଇ ତାକୁ ଘୃଣା କରୁଥିବା ମହାଲକ୍ଷ୍ମୀ ମନରେ ଅଧଘଣ୍ଟା ପରେ ତା ପ୍ରତି ବଡ଼ ଦୟା ଆସିଲା । "ତାକୁ ମୁଁ ଅଯଥା ଦୋଷ ଦେଉଛି । ଭଗବାନ ଯଦି ତାକୁ ବୁଦ୍ଧି ଦେଇ-ନାହାନ୍ତି ତେବେ ସେ କ'ଣ କରିପାରିବ ? ତାକୁ ଘୃଣା କରିବାରେ ନିଜର ହିଁ କ୍ଷତି ହେଉଛି । ଏଥିରେ ତାର କୌଣସି ଦୋଷ ନାହିଁ । ସେହି ତିନୋଟି ଶ୍ରେଷ୍ଠ ପିଲାଙ୍କ ପରି ସେ ମଧ୍ୟ ଶ୍ରେଷ୍ଠ ।" ସେ ନିଜ ମନକୁ ସାନ୍ତ୍ୱନା ଦେବାକୁ ଲାଗିଲା ।

ତାକୁ ପଛେ ପେଟଭରି ଖାଇବାକୁ ମିଳୁ ବା ନ ମିଳୁ ପିଲାଙ୍କ ପଢ଼ା ତ ବନ୍ଦ କରିହେବ ନାହିଁ । ଏଥିପାଇଁ ଯାହାପଛେ କାମକରିବାକୁ ପଡ଼ୁ ପାଠ ନିଶ୍ଚୟ ପଢାଇବାକୁ ହେବ ।

ତାର ମନରେ ଗୋଟିଏ ବିଚାର ଆସିଲା । ସିଲେଇ ମେସିନ୍ କିଣି ସିଲାଇ କରିବା ଦ୍ୱାରା ନିଜର ବଞ୍ଚି ରହିବା ସମ୍ଭବ ହୋଇ ପାରେ । ମେସିନରେ ସିଲାଇ କରିବାର ଅଭ୍ୟାସ ତାର ଅଛି । ଏହି ବିଚାର ତାକୁ ବହୁତ ଭଲ ଲାଗିଲା ; କିନ୍ତୁ ଏଥିପାଇଁ ବହୁତ ପଇସା ଆବଶ୍ୟକ । ଅତି କମ୍‌ରେ ଦୁଇଶହ, ତିନଶହ ଟଙ୍କା ଦରକାର । ଏତେ ଗୁଡ଼ାଏ ଟଙ୍କା କେଉଁଠାରୁ ମିଳିବ ? ତା ଦେହରେ ମଣାଏ ହେଲେ ସୁନାଗହଣା ନାହିଁ । କେତେ ଲୋକଙ୍କର କରଜ ମଧ୍ୟ ଅଛି ।

ଏତେବର୍ଷ ଧରି ଏହି ଗାଁରେ ରହିବା ଦ୍ୱାରା କେହି ସାହାଯ୍ୟ କରିପାରନ୍ତି ।

ସକାଳ ହୋଇ ଆସୁଥିଲା । ଆଖି ଖୋଲିଗଲା । ପଡିଲା ସୂର୍ଯ୍ୟକିରଣ ରେଖା ତା ଗୋଡ଼ଉପରେ ପଡ଼ିଲା । ପିଲାମାନେ ମଧ୍ୟ ବର୍ତ୍ତମାନ ନିଦରୁ ଶୋଇକରି ଉଠିଛନ୍ତି ।

ସକାଳେ ବହୁ ସମୟ ପର୍ଯ୍ୟନ୍ତ ଅପେକ୍ଷା କରିବା ପରେ ମଧ୍ୟ ଶେଷ ବସ୍‌ରେ ଯୁଦ୍ଧା ଯେତେବେଳେ କେହି ଆସିଲେ ନାହିଁ, ଅସ୍ଥି ସଞ୍ଚୟନ ପୂରା କରିବାକୁ କହି, ମହାଲକ୍ଷ୍ମୀ ଏହି କାମ ପାଇଁ ଆସିଥିବା ଲୋକମାନଙ୍କୁ ଆବଶ୍ୟକ ପଇସା ଦେଇଦେଲେ ।

ସଂସ୍କାର କାମ ଶେଷ ହେବାରେ ବହୁତ ଡେରି ହେଲା ।

ମହାଲକ୍ଷ୍ମୀ ପଣତକାନି ବିଛାଇ କୋଠରିର ତଳେ ଶୋଇଗଲା, ଏବଂ ଚିନ୍ତାକଲା । "ଯେତେବେଳେ ପରିବାରର ସୁଖ ସମ୍ପଦରେ ଶସ୍ୟଶ୍ୟାମଳମା ଥିଲା ସେତେବେଳେ ଲୋକଙ୍କର ଯିବା ଆସିବା କମ୍ ନଥିଲା; କିନ୍ତୁ ବର୍ତ୍ତମାନ କେହି ଆସିଲେ ନାହିଁ । କାହିଁକି ? ଏହି ଲୋକମାନଙ୍କଠାରେ ଏତେ ପରିବର୍ତ୍ତନ କାହିଁକି ହେଲା ? ପ୍ରତ୍ୟେକେ ଭାବିଥିବେ ଯଦି ଏହି ଅନାଥ ହତଭାଗ୍ୟଙ୍କ ବୋଝ ମୋ ଉପରେ ପଡ଼େ । " ଏହାତ ହେବ, କ୍ରୋଧାନ୍ୱିତ ହୋଇ ସେ ଚିନ୍ତାକଲା । ଏମାନଙ୍କର ହୃଦୟ ବରଫ ଭଳି ଜମିଯାଇଛି । ଠିକ ହୋଇଛି, ଏପରି ସ୍ୱାର୍ଥପର ଲୋକ ଆସିନାହାନ୍ତି ।"

"ମା" ଚଠି ଆସିଛି," କହି ବଡ଼ପୁଅ ଘର ଭିତରେ ପ୍ରବେଶକଲା । ମହାଲକ୍ଷ୍ମୀ ଚିନ୍ତାକୂପରୁ ସମୁଦ୍ରରୁ ବାହାରି ଚିଠି ପଢ଼ିଲା ।

ସବୁ ଚଠିର ବିଷୟବସ୍ତୁ ପ୍ରାୟ ଏକାଭଳି । ଏହା ଶୁଣି ବଡ଼ ଦୁଃଖ ହେଲା ଯେ ରାମନାଥ ବେମାର ପଡ଼ିଛନ୍ତି । ଭଗବାନ ମଙ୍ଗଳ କରନ୍ତୁ ଏବଂ ଆମ୍ଭମାନଙ୍କର ବିଶ୍ୱାସ ଯେ ସେ ଶୀଘ୍ର ଆରୋଗ୍ୟ ଲାଭ କରିବେ । ନିଜେ ଯାଇ ତାଙ୍କୁ ଦେଖି-ଆସିବାକୁ ବହୁ ଚେଷ୍ଟାକରି ମଧ୍ୟ କୌଣସି ଅନିବାର୍ଯ୍ୟ ପରିସ୍ଥିତି ଯୋଗୁ ଏହା ସମ୍ଭବ ହୋଇପାରୁନାହିଁ । ଏଥିପାଇଁ ଆମ୍ଭେମାନେ ବହୁତ ଦୁଃଖିତ । ମହାଲକ୍ଷ୍ମୀ କ୍ରୋଧରେ ସମସ୍ତ ଚିଠି ଚିରି ଫୋପାଡ଼ି ଦେଲା । ଏହି ଦୁନିଆରେ ଏହିପରି ଅନେକ ଲୋକ ଅଛନ୍ତି । ସେହିପରି ଏମାନେ ମଧ୍ୟ । ମଧୁର କଥା—ବର୍ତ୍ତମାନ ସେମାନଙ୍କ ବିଷୟରେ ଚିନ୍ତା କରିବାକୁ ସେ ଚାହୁଁ ନଥିଲା । ରାତିରେ ଯେଉଁ କଥା ଭାବୁଥିଲା ସେହି କଥା ପୁଣି ମନେପଡ଼ିଲା । କିନ୍ତୁ ସେହି କଥା ନେଇ ବିଚାର ଓ ପରାମର୍ଶ କାହା ସହିତ କରାଯାଇପାରେ, ଏହା ସେ ଚିନ୍ତା କରୁଥିଲା । ବେଙ୍କଟସ୍ୱାମୀ ବାବୁଙ୍କ ସହିତ ପରାମର୍ଶ କଲେ କିଛି ମୂଲ୍ୟ ନାହିଁ । ଝଙ୍କା ତାଙ୍କର ଜୀବନ । ଯଦି ସେ ମନାକରିଦିଅନ୍ତି ତେବେ ସେ ବଡ଼ ଲଜ୍ଜିତ ହେବ । ଅଥବା ପୁଣି ରାଜସ୍ୱାମୀ ବାବୁଙ୍କ ସହିତ କଥାବାର୍ତ୍ତା କଲେ ଭଲହେବ କି ? ଏହି ବିଚାର କିଛି ମନକୁ ପାଇଲା ।

ବଡ଼ପୁଅକୁ ତାଙ୍କୁ ଡାକ ଦେବା ପାଇଁ ରାଜସ୍ୱାମୀଙ୍କ ଘରକୁ ପଠାଇଲା । ସେ ଘରେ ଅଛନ୍ତି କି ନାହିଁ ବୁଝିବା ପାଇଁ ।

କିଛି ସମୟ ପରେ ସେ ଫେରିଆସି ଏହି ଖବର ଶୁଣାଇଲା, ଯେ ସେ ସହରକୁ ଚାଲିଗଲେଣି ।

"କେବେ ଫେରିବେ ?" ମହାଲକ୍ଷ୍ମୀ ଧୀର ସ୍ୱରରେ ପଚାରିଲା ।

ଜବାବ ମିଳିଲା "ପନ୍ଦରଦିନ ପର୍ଯ୍ୟନ୍ତ ସେ ଆସିବେ ନାହିଁ ।"

କିଛି ସମୟ ଭାବି ମହାଲକ୍ଷ୍ମୀ କହିଲା ।

"ଯା, ରାମାସ୍ୱାମୀବାବୁଙ୍କୁ ମୋ ସହିତ ଥରେ ଦେଖା କରିବାକୁ କହିବୁ । କହିବୁ ଜରୁରୀ କାମ ଅଛି । ମା ବହୁତ ଅନୁରୋଧ କରିଛି ।"

ବଡ଼ପୁଅ ବାହାରକୁ ଚାଲିଗଲା । ଖରା ପଡ଼ିଗଲା ଏବଂ ଅନ୍ଧାପବନ ବହିବାକୁ ଲାଗିଲା । ବାହାରେ କାହାରି ପାଟିତୁଣ୍ଡ ଶୁଣାଯାଉନଥିଲା ।

ପିଲାମାନେ ସବୁ କୁଆଡ଼େ ଗଲେ ? "ବିଛୁ, ବିଛି", କିଛି ଉତ୍ତର ମିଳିଲା ନାହିଁ । ଦୂରରୁ ସ୍କୁଲର ଘଣ୍ଟା ଶୁଣାଗଲା । ରାସ୍ତାରେ ଯିବାଆସିବା କରୁଥିବା ଲୋକଙ୍କ ଗହଳି କମିଗଲା । ଗୋଦାବରୀ ନଦୀରେ ନାଆ ଯିବାର ଶବ୍ଦ ଶୁଣାଯାଉଥିଲା । ପଛ ବାଡ଼ରେ କାଉଗୁଡ଼ିକ ରାହି ରାହି ରାବୁଥିଲେ । ମହାଲକ୍ଷ୍ମୀର ମନ ବଡ଼ ବ୍ୟସ୍ତ ଥିଲା ଭାବୁଥିଲା, "ରାମାସ୍ୱାମୀଙ୍କୁ ସେ ଏହି କଥା କିପରି କହିବ ? ଜଣାନାହିଁ ସେ କ'ଣ କହିବେ ।"

"ମା, ରାମାସ୍ୱାମୀବାବୁ ଆସିଗଲେ ।" ବଡ଼ପୁଅ ଖସିଯାଉଥିବା ପ୍ୟାଣ୍ଟକୁ ଉପରକୁ ଟାଣି ଟାଣି କହିଲା ।

ମହାଲକ୍ଷ୍ମୀ ଚକ୍ତ ସୋଫାରେ ଭସି ଉଠେ ଏବଂ ଦୁଃଖ ଯୋଗୁ ମଳିନ ମୁଖ ମଣ୍ଡଳକୁ

ପୋଛି ପକାଇ ଫାଟକ ନିକଟରେ ଠିଆ ହୋଇଗଲେ । ମନର କଥା କହିବାରେ ସଂକୋଚ କରୁ କରୁ ଶେଷରେ ସେ କହିଲେ, "ଆପଣଙ୍କ ସହିତ ଗୋଟିଏ ଜରୁରି ବିଷୟରେ ପରାମର୍ଶ କରିବାର ଥିଲା । ସେଥିପାଇଁ ଆପଣଙ୍କୁ କଷ୍ଟ ଦେଲି । ଆମ ଅବସ୍ଥା ଆପଣ ତ ଜାଣିଛନ୍ତି । ବର୍ତ୍ତମାନ ଏହି ପରିବାରର ସମସ୍ତ ଦାୟିତ୍ୱ ମୋ ଉପରେ ଏକା ପଡ଼ିଛି । ଏହି ଦାୟିତ୍ୱକୁ ମୁଁ କିଭଳି ଏକା ସମ୍ଭାଳିବି; ଏହି କଥା ମୁଁ ନିଜେ ମଧ୍ୟ ବୁଝି ପାରୁନାହିଁ ।" ଏହା କହୁ କହୁ ସେ କାନ୍ଦି ପକାଇଲେ । ରାଜସ୍ୱୀ କରୁଣ ସ୍ୱରରେ କହିଲେ, "ଏହା ତ ମୁଁ ଚିନ୍ତା କରୁଥିଲି ଭଉଣି ! ମୋର ମଧ୍ୟ ପିଲାଛୁଆ ନେଇ ପରିବାରରେ ବଡ଼ ଜଞ୍ଜାଳ । ଯେତେଦିନ ପର୍ଯ୍ୟନ୍ତ ହାତ ଗୋଡ଼ ଚାଲୁଥିବ ସେତେଦିନ ପର୍ଯ୍ୟନ୍ତ ପେଟ ଅପୋଷା ରହିବ ନାହିଁ । ପୁଣି ମଧ୍ୟ ମୋ ଦ୍ୱାରା ଯାହା କିଛି ହୋଇପାରିବ, ମୁଁ ନିଶ୍ଚୟ କରିବି । ସେଥିରେ ମୁଁ ପଶ୍ଚାତ୍‌ପଦ ହେବି ନାହିଁ ।"

"ଆପଣଙ୍କ ସ୍ୱଭାବ ମୁଁ ଜାଣେ, ଏଥିପାଇଁ ମୁ ଆପଣଙ୍କୁ ଏଠାକୁ ଡକାଇ ପଠାଇ ଏତେ କଷ୍ଟ ଦେଲି । ଆପଣଙ୍କ ପରି ବଡ଼ଲୋକମାନଙ୍କ ଘରକୁ ଡକାଇ କଥା କହିବାର ଅଧିକାର ଏବଂ ସାହସ ଆମର ନାହିଁ । ତା ସହିତ ଆପଣଙ୍କ ସ୍ନେହ ସୌହାର୍ଦ୍ଦ୍ୟ ଅଛି ଜାଣି ଆପଣଙ୍କୁ କଷ୍ଟ ଦେଲି । ଆପଣ ଭୁଲ୍ ବୁଝିବେ ନାହିଁ ।" ମହାଲକ୍ଷ୍ମୀର କଣ୍ଠ ରୁଦ୍ଧ ହୋଇଗଲା ।

ରାମାୟୀ ଅନୁନୟ ସ୍ୱରରେ କହିଲେ, "କିଛି କଥା ନାହିଁ ଭଉଣି, ଆପଣ ନିଜ ମନର କଥା ନିଃସଙ୍କୋଚରେ ମୋତେ କୁହନ୍ତୁ ।"

କନା ସିଲାଇ କରି ପରିବାରର ଭରଣ ପୋଷଣ କାର୍ଯ୍ୟ କରିବା ସ୍ଥିର କରିଛି । ସିଲାଇମେସିନ କିଣିବା କଥା ଚିନ୍ତା କରୁଛି । ଅତି କମ୍‌ରେ ଦୁଇ ତିନି ଶହ ଟଙ୍କା ଲାଗିବ । କେଉଁଠାରୁ ଏତେକ ଟଙ୍କା କରଜ ସ୍ୱରୂପ ମିଳିଯାଏ ତ··· ।"

ରାମାୟୀ ମଝିରେ କହିଲେ, "ଏହା ତ ମୁଁ କହିବି ବୋଲି ରହିଥିଲି । ଏତିକିରେ ଆପଣଙ୍କ ମୁଖରୁ ସେହି କଥା ବାହାରିଲା ।"

"ଆପଣଙ୍କ ଉଦାରତା ଓ ଆନ୍ତରିକତା ପାଇଁ ମୁଁ କୃତଜ୍ଞ ।"

"ରାମନାଥମ୍ ଏହି ଗାଁରେ ପଚିଶ ବର୍ଷ ହେଲା ଚାକିରି କରିଥିଲେ । ଗାଁରେ ସମସ୍ତଙ୍କୁ ଜଣାଅଛି ଯେ ତାଙ୍କର ଆଉ ଅନ୍ୟ କୌଣସି ପନ୍ଥା ନଥିଲା । ବର୍ତ୍ତମାନ ଏହି ବିପଦ ସମୟରେ ଆପଣମାନଙ୍କର ଆବଶ୍ୟକତା ଉପରେ ଧ୍ୟାନ ଦେଇ କିଛି ସାହାଯ୍ୟ କରିବା ଆମ୍ଭମାନଙ୍କର ଦାୟିତ୍ୱ ଅଟେ । ମୁଁ ଭାବୁଥିଲି ଯେ ଏହି କଥା ସମସ୍ତଙ୍କୁ ବୁଝାଇ କରି ଆପଣଙ୍କ ପାଇଁ କିଛି ପଇସା ଏକାଠି କରିବାର ବ୍ୟବସ୍ଥା କରାଯାଉ । ମୋର ବିଶ୍ୱାସ ଯେ ଭଗବାନଙ୍କ କୃପାରୁ ମୋର ଚେଷ୍ଟା ସଫଳ ହେବ; କିନ୍ତୁ ଆପଣଙ୍କ ପରାମର୍ଶ ନ ନେଇ ଏ କଥାରେ ଆଗେଇବା ଠିକ୍ ହେବ ନାହିଁ । ଏଥିପାଇଁ ମୁଁ ଲଜ୍ଜା କରୁଥିଲି ।" ଏହି କଥା କହି ରାମାୟୀ ମହାଲକ୍ଷ୍ମୀ ଆଡ଼କୁ ଚାହିଁଲେ । ମହାଲକ୍ଷ୍ମୀ

ଫାଟିପଡ଼ୁଥିବା ଦୁଃଖକୁ ଚାପିନେଇ ମାନ, ଅଭିମାନ ଭୁଲି କହିଲା "ଯେପରି ଆପଣଙ୍କ ଇଚ୍ଛା ।"

"ତେବେ ମୁଁ ଯାଉଛି" କହି ସ୍ୱାମୀଜୀ ଚାଲିଗଲେ ।

ମହାଲକ୍ଷ୍ମୀର ମନକୁ କିଛି ଶାନ୍ତି ଆସିଲା । ସେ ମନେ ମନେ ଚିନ୍ତାକଲା ଯେ ଏହି ଧର୍ମାତ୍ମାଙ୍କୁ ସହସ୍ରବାର ପ୍ରଣାମ କରୁଛି । ସେହି ରାତିରେ ସେ ଶାନ୍ତିରେ ଶୋଇଗଲା । ସକାଳେ ଉଠେ ତ ସୂର୍ଯ୍ୟ ଉଦୟ ହୋଇ ଗଲେଣି । ସେ ପଛପଟକୁ ଗଲା । ପିଲାମାନେ ଶୋଇଥିଲେ । ଝାଡୁଦେଇ ଚୁଲି ଲଗାଇଲା ଏବଂ ପୁଣି ବାହାର କୋଠରିକୁ ଆସି ଦେଖିଲା ଯେ ଘରେଟି ଯାକ ପିଲା ବାହାର ଚଉପାଢ଼ୀରେ ବସି ଦାନ୍ତ ଘଷୁଛନ୍ତି ।

କିଛି ସମୟପରେ ବଡ଼ଝିଅ ଆସି ମା ପାଖରେ ନମ୍ର ସ୍ୱରରେ ପଚାରିଲା "ମା ଆମେ କ'ଣ ଆଉ ସ୍କୁଲ୍‌କୁ ଯିବୁ ନାହିଁ ?"

"ଠିକ୍ ଅଛି, ଦୁଇ ଦିନପରେ ପୁଣି ଯାଇପାରି ।" ମହାଲକ୍ଷ୍ମୀ ବୁଝାଇ କହିଲା ।

ପିଲାମାନେ ରାସ୍ତାରେ ଖେଳିବାକୁ ଲାଗିଲେ ।

ଦଶାହ ଦିନ ଅନ୍ତ୍ୟେଷ୍ଟି କ୍ରିୟା ଆରମ୍ଭ ହେଲା । ଜଣାଶୁଣା ସମସ୍ତେ ଆସି ପହଞ୍ଚିଲେ । ମହାଲକ୍ଷ୍ମୀ ପଛପଟ କବାଟ ପାଖରେ ବସି ରହିଲା । କର୍ମକାଣ୍ଡର ଦୃଶ୍ୟ କିଛି କିଛି ଦେଖାଯାଉଛି । ହୋମ କୁଣ୍ଡରୁ ଉଠୁଥିବା ଧୂଆଁ କୁଣ୍ଡଳୀ ଆକାରରେ ଉପରକୁ ଉଠି ଆକାଶରେ ମିଶି ଯାଉଛି । ମହାଲକ୍ଷ୍ମୀର ଭାବନା କେଉଁ ଅଜଣା ରାଇଜରେ ଭ୍ରମଣ କରୁଛି । ରହି'ରହି ସେହି ଲୋକମାନଙ୍କର କଥା ଏବଂ ବୈଦିକ ମନ୍ତ୍ର ମିଶ୍ରିତ ଧ୍ୱନି ଅସ୍ପଷ୍ଟ ସ୍ୱରରେ ଶୁଣାଯାଉଛି ଯେପରି ଅନେକ ଦୂରରେ କିଛି ହେଉଛି ।

ଠିକ୍ ମଧ୍ୟାହ୍ନ ସମୟ । ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିଗଲେଣି । ଶୀତ ଦିନର ଖରା ଟାଇଁ ଟାଇଁ ହୋଇ ପିଠିରେ ଗଳିଯାଉଛି । ସାପଧାନକୁ ମାଟି ପିଣ୍ଡ ଉପରେ ରଖି ସମସ୍ତେ ସେଠାରେ ପାଖ ପାଖ ହୋଇ ଠିଆ ହୋଇଛନ୍ତି ।

ଦୁଇଟି କାଉ ସେଠାରେ ପହଞ୍ଚି ଯାଉଛନ୍ତି ଏବଂ ପୁଣି ଉଡ଼ି ଯାଉଛନ୍ତି । ବହୁ ସମୟ-ଧରି ଏହି କାଉ ଆସୁଛନ୍ତି ଓ ଯାଉଛନ୍ତି । ବହୁତ ସମୟ ପର୍ଯ୍ୟନ୍ତ ଏହି କାମ ଚାଲୁ ରହିଲା । ମୁଣ୍ଡ ଉପରେ ଟାଇଁ ଟାଇଁ ଖରାପଡ଼ି ସମସ୍ତଙ୍କୁ ବ୍ୟସ୍ତ କରାଉଛି ।

କୌଣସି ଭଦ୍ରବ୍ୟକ୍ତି କିଛି ଦୂରରେ ଠିଆହୋଇ ଏହା କହୁଥିଲେ "ପ୍ରେତାତ୍ମା କୌଣସି କଥାରେ ଅସନ୍ତୁଷ୍ଟ ହେଲା ଭଳି ଜଣାଯାଉଛି । ତାଙ୍କ ଇଚ୍ଛା ଏବଂ ଆକାଂକ୍ଷାର କିଛି ତ୍ରୁଟି ହୋଇ ଯାଇଛି । ଅଥବା ତାଙ୍କର କୌଣସି ବାସନା ପୂର୍ଣ୍ଣ ହୋଇ ନଥିବ ।"

"ହଁ ଠିକ୍ କଥା ।" କୌଣସି ଅନ୍ୟ ଭଦ୍ରବ୍ୟକ୍ତି ପ୍ରଥମ ବ୍ୟକ୍ତିର କଥାକୁ ସମର୍ଥନ କଲେ । ଧୀରେ ଧୀରେ କାନକୁହା ପରାମର୍ଶ ସମସ୍ୟାରେ ପରିଣତ ହେଲା ।

ପୁଅକୁ କୁହାଗଲା ଯେ ମନରେ କୌଣସି ସଂକଳ୍ପ କରି ପ୍ରଣାମ କରିବାକୁ ।

ବଡ଼ପୁଅ ହାତଯୋଡ଼ି କହିଲା "ମୁଁ ଶ୍ରଦ୍ଧାରେ ପଡ଼ିବି ।"

"ନା କୌଣସି ପ୍ରୟୋଜନ ନାହିଁ ।" ସମସ୍ତେ କହିଲେ ।

ଶେଷରେ ସେହି କଥା ମହାଲକ୍ଷ୍ମୀର କାନପର୍ଯ୍ୟନ୍ତ ପହଞ୍ଚିଲା । ଲୁହରେ ଓଦା ହୋଇଯାଇଥିବା ଆଖିରେ ସେ କହିଲେ, "ଆମ ତରଫରୁ କୌଣସି ଅପରାଧ ଏପରି ହୋଇନାହିଁ ।"

"ନା, କିଛି ଅପରାଧ ଅବଶ୍ୟ ହୋଇଛି", ଜଣେ ଦୃଢ଼ ସ୍ୱରରେ କହିଲା ।

ମହାଲକ୍ଷ୍ମୀର ରାମାୟା ସହିତ ପରାମର୍ଶ କଥା ମନେ ପଡ଼ିଲା । କିନ୍ତୁ ସମସ୍ତଙ୍କ ସମ୍ମୁଖରେ ସେହିକଥା କହି ଦେବାରେ ସେ ସଙ୍କୋଚ କଲା । 'କ'ଣ ଲୋକଙ୍କ ଦୟା-ଉପରେ ଜୀବନ କଟାଇବା ତା ସ୍ୱାମୀଙ୍କୁ ପସନ୍ଦ ନୁହେଁ ? ଏହିପରି ଦାରିଦ୍ର୍ୟ ଭୋକ-ଉପାସରେ ଆମକୁ ମାରିବା କ'ଣ ତାଙ୍କର ଅଭିଳାଷ ? ଏହିକଥା ସିଦ୍ଧ କରିବା ପାଇଁ ଏହି ଲୋକମାନେ ଚେଷ୍ଟା କରୁ ନାହାନ୍ତି ତ ?'

"ଶୁଣିଛି, ରାମାୟା କିଛି ଲୋକଙ୍କ ସହିତ ପରାମର୍ଶ କରି ଆପଣଙ୍କ ପାଇଁ କିଛି ପଇସାର ବ୍ୟବସ୍ଥା କରିବାପାଇଁ ଚେଷ୍ଟା କରୁଛନ୍ତି ? କ'ଣ କଥା ସତ ?" କେହି ଜଣେ କହିଲେ ।

"ସତ ଅଟେ ।" ମହାଲକ୍ଷ୍ମୀ ଭଦ୍ର ଏବଂ ନମ୍ର ସ୍ୱରରେ କହିଲେ ।

"ବାପ୍, ସେହିକଥା ପ୍ରଥମରୁ କାହିଁକି କହିଲ ନାହିଁ ?" ରାମନାଥମ୍ କେତେ ଭଦ୍ର-ଲୋକ ! କୌଣସି ଦିନ କାହା ଆଗରେ ହାତ ପତେଇବାକୁ ଅବସର ହେଉ ନଥିଲା । ଏହିପରି ଗୃହା ଆହାସ୍ତ କରିବା ତାଙ୍କ ପାଇଁ କେତେ ଅପମାନର କଥା ହେବ । ଏହି ପ୍ରସ୍ତାବକୁ ଶୀଘ୍ର ଫେରନ୍ତ ନେଇ ଯାଅ । ତେବେ ବୋଧେ ପ୍ରେତାତ୍ମା ସନ୍ତୁଷ୍ଟ ହୋଇ ପାରିବ...... ।"

ମହାଲକ୍ଷ୍ମୀର ହୃଦୟ ଏକବାରେ ବିଷାଦରେ ଭରିଗଲା—"ଯଦି ସେ ଏହି ସଂକଳ୍ପକୁ ଫେରନ୍ତ ନେବା କଥା କହିଦିଏ ଏବଂ ସଂଯୋଗବଶତଃ କାଉ ଆସି ପିଣ୍ଡକୁ ଛୁଇଁ ଦିଏ ତେବେ ଏହି ଏକମାତ୍ର ଆଶ୍ରାକୁ ମଧ୍ୟ ସେ ହାତରୁ ଗ୍ରାହ୍ୟ ବସିଯିବ; କିନ୍ତୁ ତାକୁ ଏହି କଥା କାହିଁକି ପସନ୍ଦ ହେଲାନାହିଁ । ଏହି ପିଲାମାନଙ୍କ ଭବିଷ୍ୟତ ବିଷୟରେ ସେ କେତେ ଚିନ୍ତିତ ରହୁଥିଲେ ! ତେବେ ମୋ କହିବା ମାତ୍ରେ ସେହି କାଉ ଶୀଘ୍ର ଆସି ପିଣ୍ଡ ଉପରେ ଝାମ୍ପି ପଡ଼ିବେ—ଏହି କଥାର ଆଶଙ୍କା ମୋତେ ହେବ କାହିଁକି ? ମୋର ଏପରି କୌଣସି ବିଶ୍ୱାସ ନାହିଁ ?" ତଥାପି ମଧ୍ୟ ତାର ହୃଦୟ ଥରି ଉଠୁଥିଲା ଯଦି ସେହି କାଉ ଶୀଘ୍ର ଆସିଯିବେ ତେବେ ·· ? କ'ଣ ହେବ ?

ଶେଷରେ ଭିଡ଼ ମଧ୍ୟରେ ମଧ୍ୟରେ ଫୁସୁର ଫାସର ଟିକା ଟିପପଣୀ ଏବଂ ବ୍ୟଙ୍ଗାତ୍ମକ କଥା ଆରମ୍ଭ ହୋଇଗଲା । ସେହି ଲୋକଙ୍କ କଥାରେ ପଡ଼ି ସେ ଶେଷରେ କହିଲା, "ବର୍ତ୍ତମାନ ମୁଁ ଏହି ସଂକଳ୍ପ ତ୍ୟାଗ କରୁଛି ।" ତାର ହୃଦୟ ବଡ଼ ଜୋରରେ ଥରିବାକୁ ଲାଗିଲା ।

ପାଞ୍ଚମିନଟ କଟିଗଲା । ସମସ୍ତେ ସେଠାରୁ ଘୁଞ୍ଚିଯାଇ ଦୂରରେ ବାରଣ୍ଡା ଉପରେ ଠିଆହେଲେ । ଯେତେବେଳେ ସବୁଲୋକ ଦୂରକୁ ଚାଲିଗଲେ, ସେତେବେଳ ପର୍ଯ୍ୟନ୍ତ ଡର ଯୋଗୁ ସେଠାରେ ପହଞ୍ଚିବାକୁ ସଂକୋଚ କରୁଥିବା କାଉ ଶୀଘ୍ର ଶୀଘ୍ର ଆସି ଗୋଟିଏ ମିନଟରେ ସମସ୍ତ ଅନ୍ନକୁ ଖାଇ ଉଡ଼ିଗଲା ।

ସମସ୍ତେ ନିଜ ନିଜ ଢଙ୍ଗରେ ଏହାକୁ ବ୍ୟାଖ୍ୟା କଲେ ।

"ମୁଁ କହିଥିଲି ନାଁ ? ରାମନାଥନ୍ କେଡ଼େ ସମ୍ମାନିତ ଲୋକ ଥିଲେ ।···ଏପରି କଥା ତାଙ୍କୁ କିପରି ମଞ୍ଜୁର ହୋଇଥାଆନ୍ତା ?

କିଏ ଜଣେ କହିଲା ।

ପରକ୍ଷଣରେ ଏହିକଥା ଗାଁସାରା ପ୍ରଚାର ହୋଇଗଲା ।

ରାମାଚ୍ଛା ନିରାଶ ହୋଇ କବାଟ ପାଖରେ ବସିଗଲେ । ସେ ଭାବିଲେ 'ଏ ବଡ଼ ଅଭାଗିନୀ ଅଟେ ।' ସେ ତାଙ୍କର ଚେଷ୍ଟା ସେହି ସମୟ ଠାରୁ ଛାଡ଼ିଦେଲେ ।

ପଛପଟ କବାଟ ପାଖରେ ଠିଆହୋଇ କେତେବେଳୁ ମହାଲକ୍ଷ୍ମୀ ବେହୋସ ହୋଇ ପଡ଼ିଯାଇଥିଲା । ତାର ଚେତା ବୁଡ଼ି ଯାଇଥିଲା ।

ସମସ୍ତେ ନିଜ ନିଜ ଘରକୁ ଚାଲିଗଲେ । ଗୁରୁବେଟି ଯାକ ପିଲା ପରସ୍ପର ମୁହଁକୁ ଚାହିଁ ବିସ୍ମିତ ହୋଇଗଲେ ଏବଂ ବେହୋସ୍ ହୋଇ ପଡ଼ିଥିବା ମା' ଚାରିପାଖରେ ବସିଗଲେ ।

# ଉପହାର

ସୂର୍ଯ୍ୟାସ୍ତ ପରେ ପରେ ବରଗଛ ଓହଳ ସାହାଯ୍ୟରେ ଅନ୍ଧକାର ଧୀରେ ଧୀରେ ତଳକୁ ଓହ୍ଲାଇ ଆସି ବନ-ବାଡ଼, ପୋଖରୀ, ନାଳ, ନଈ-ସମୁଦ୍ର ଏବଂ ଶେଷରେ ସାରା ପୃଥିବୀ ଉପରେ ଘୋଟିଗଲା । ଆକାଶ ମଧ୍ୟ ମାଟି ଉପରକୁ ଓହ୍ଲାଇ ଆସିଲା ପରି ମନେ ହେଲା । ଦେଖୁ ଦେଖୁ ରାଧାଙ୍କ ଆଖିର କଜ୍ଜ୍ୱଳ ଗାର ପରି, କୃଷ୍ଣଙ୍କର ଶ୍ୟାମଳ ରଙ୍ଗ ପରି ଏବଂ ନନ୍ଦଲାଲଙ୍କ ଘରର ବସା ଦହି ପରି ଅନ୍ଧକାର ଘନୀଭୂତ ହୋଇ ଉଠିଲା ।

ସେଇ ଅନ୍ଧାରରେ ଗଛ ତଳେ ଜଳୁଥିବା କାଠର ଶିଖା 'କାହ୍ନୁ'ଙ୍କର ନାଲି ରେଶମୀ ଉତ୍ତରୀୟ ପରି ଉଡ଼ୁଛି, ଅନ୍ଧକାର ସଘନ ସୌନ୍ଦର୍ଯ୍ୟର ମୁକ୍ତ କଣ୍ଠରେ ଗୁଣ-ଗାନ କରୁଛି ଏବଂ ସେଇ ନିଆଁ ଧାସରେ ବାଉଁଶକୁ ଗରମ କରୁଥିବା ଗୋପନ୍ନାର ଚେହେରା ଉପରେ, ତାର ଆଖପାଖରେ ବିଛୁଡ଼ି ହୋଇ ପଡ଼ିଥିବା ବଇଁଶୀ ଗୁଡ଼ିକ ଉପରେ ଏବଂ ଟିକେ ଦୂରରେ ଏକତ୍ରିତ ହୋଇ ପଡ଼ିଥିବା ବାଉଁଶ ବିଡ଼ା ଉପରେ ସେ ଶିଖା ଛାୟା ଏବଂ ଆଲୋକର ଭାଷା ଦେଇ କାବ୍ୟ ପ୍ରଣୟନ କରୁଥିଲେ ।

ତୃତୀୟ ପ୍ରହର ପରେ ସପ୍ତମୀ ଶେଷ ହେବ, କୃଷ୍ଣଙ୍କର ଜନ୍ମତିଥି ସେଦିନ ଆସୁଛି । ପଚାଶି ବର୍ଷ ହେଲା ଗୋପନ୍ନା ଯେଉଁ ବଇଁଶୀ ତିଆରି କରିବାରେ ଲାଗିଛି, ସେ ଏପର୍ଯ୍ୟନ୍ତ ତିଆରି ହୋଇ ପାରିଲା ନାହିଁ । ଅନ୍ତତଃ କାଲି ଭିତରେ ତାକୁ ପୂରା କରି ସମର୍ପଣ କରିବା ଦରକାର । ଯଦି କାଲି ଭିତରେ ତିଆରି ନ ହୋଇ ପାରିଲା ତେବେ ଏ ଜୀବନରେ ଆଉ ହୋଇ ପାରିବ ନାହିଁ......ସମୟ ହୋଇ ଗଲାଣି ।

"ବାବା ! ଖାଇ ନିଅନା ।" । ଶ୍ରେଷ୍ଠ ଗୋପନ୍ନାର ଡାକ ତା କାନରେ ବାଜିଲା ନାହିଁ ।

ତାର ଧ୍ୟାନ ବୃନ୍ଦାବନରେ ଥିଲା । କାହ୍ନୁ ସେଠି ପହଞ୍ଚି ଯିବେ, ପହଞ୍ଚିବା ସମୟ ହୋଇ ଗଲାଣି । ଗୋପୀ ମାନଙ୍କର ନୂପୁରର ଝଙ୍କାର ଶୁଣା ଯାଉଛି । ଚୁଡ଼ିର ଝୁଣ୍ଟି ଝୁଣ୍ଟି ଏବଂ ହସ-ତାମସାର କୋଳାହଳ ଧ୍ୱନି ଗୁଞ୍ଜରି ଉଠୁଛି । ଏହି ସବୁ ଶବ୍ଦ ସହିତ କିଛି କ୍ଷଣ ମଧ୍ୟରେ ମୋହନଙ୍କର ମୁରଲୀ ବାଜି ଉଠିବ ।

ଜଣା ନାହିଁ କେତେ ଯୁଗ ଧରି ଗୋପନ୍ନା ଏହି ତୋଟା ପଛରେ ବସି ଆସିଛି । ଗୋପନ୍ନାକୁ ନିଜେ ମଧ୍ୟ ଜଣା ନାହିଁ । ପତ୍ରରେ ପତ୍ର ହୋଇ, ଫୁଲରେ ଫୁଲ ହୋଇ ଫୁଟି, ସୈକତ ତଟର ସିକ୍ତ କଣା ହୋଇ, ଯମୁନାରେ ଜଳରାଶି ହୋଇ ସ୍ତବ୍ଧ ମୂକ ମୁଦ୍ରାରେ ସେଇଠି ବସି ନିଜର କୃଷ୍ଣଙ୍କର ମୁରଲୀ ଧ୍ୱନିରେ ଆପଣା ହୃଦୟକୁ ପ୍ଲାବିତ କରି ଦେଇଛି । ବିଭିନ୍ନ ସ୍ୱର ଲହରୀ ମଧ୍ୟରୁ କୌଣସି ବିଶିଷ୍ଟ ସ୍ୱର ମନରେ ଧାରଣ କରି ସ୍ପଷ୍ଟ ରୂପରେ ସାକ୍ଷାତ କରିବା ପାଇଁ ତପସ୍ୟା କଲା । ସେହି ରୂପକୁ ନିଜ ମନରେ

ସୁରକ୍ଷିତ କରି ସେ ସଙ୍ଗେ ସଙ୍ଗେ ନିଜ କୁଟୀର ଭିତରକୁ ଆସିଗଲା । ନୂଆ ବାଉଁଶକୁ କାଟି ସେଥିରେ ବଇଁଶୀ କରି ସ୍ୱରର କଣା ତିଆରି କରି ନିଜ ମନରେ ଧାରଣ କରିଥିବା ସେହି ସ୍ୱର ମାଧୁର୍ଯ୍ୟକୁ ସେଥିରେ ମୁଖରିତ କରିବା ପାଇଁ ଚେଷ୍ଟା କଲା । ଯଦି ସେହି ସ୍ୱର ଏଥିରୁ ମୁଖରିତ ହୁଏ ତେବେ ସେ ସେଇ ବଇଁଶିଟି କାହ୍ନୁଙ୍କୁ ଭେଟି ଦେବାକୁ ଭାବୁଥିଲା; କିନ୍ତୁ ସେ ସ୍ୱର ବାହାରିଲା ନାହିଁ । ସେହି ସ୍ୱରକୁ ମୁଖରିତ କରିବା ପାଇଁ ସେ କେତେ ହଜାର ବଇଁଶି ତିଆରି କରିଛି । ସେ ତାର ନିଶ୍ୱାସର ପ୍ରତ୍ୟେକ କ୍ଷଣକୁ ସେହି ବଇଁଶୀର ସ୍ୱର କଳ୍ପନାରେ ଲଗାଇଲା । ଜୀବନର ପରିଧି କମ୍ ଅଟେ । ଗୋଟିଏ ଜୀବନରେ କୋଟି କୋଟି ନିଶ୍ୱାସ ଏବଂ ପ୍ରଶ୍ୱାସ । ସେଗୁଡ଼ିକୁ ନିରର୍ଥକ କରିବାର କଣ ପ୍ରୟୋଜନ ? ଯମୁନା କୂଳରେ ଛୋଟ ପିଲାରେ ଯେବେ ବି ସେ କୃଷ୍ଣଙ୍କର ବେଣୁଗାନ ଶୁଣୁଥିଲା ସେ ନିଶ୍ୱାସ ରୋକି କରି ବସି ଯାଉଥିଲା । ଏପରି କରିବା ଦ୍ୱାରା ଯେଉଁ ନିଶ୍ୱାସର ସଂଚୟ ହେଉଥିଲା ସେ ତାକୁ ତାର ବଇଁଶୀରେ ଭରିବାରେ ଲାଗିଯାଏ । ନିଶ୍ୱାସ ଭରିବା ମାତ୍ରେ ବଇଁଶୀ ବେସୁରା ହୋଇ ଯାଉଥିଲା, କୋଉଠି କିଛି ଫାଟିଯାଉ ଯାଉଥିଲା । ବଇଁଶୀ ଭିତରେ କାଳେ କିଛି ମଇଳା ଜମି ଯାଇଥିବ ଭାବି ସେ ତାର ଭିତର ମଧ୍ୟ ପରିଷ୍କାର କରୁଥିଲା । ଯେମିତି ସେ ବଇଁଶୀଟି ଠିକ୍ କରି ଛିଡ଼ା ହୁଏ ସେମିତି ବଇଁଶୀର ସ୍ୱର ବିଗିଡ଼ି ଯାଏ ।

ଗୋପନ୍ନା ଆଗରୁ ଅନେକ ବଇଁଶୀ ତିଆରି କରିଛି, ତାକୁ ବଜାଇ ସନ୍ତୁଷ୍ଟ ମଧ୍ୟ ହୋଇଛି । କିନ୍ତୁ ଗୋଟିଏ ଅବସ୍ଥାରେ ପହଞ୍ଚିବା ପରେ ତାର ମନରେ ଗୋଟିଏ ଭାବନା ଜାଗିଲା । ସେ ବଇଁଶୀ ତଳେ ଥୋଇ ସଙ୍ଗୀତର କଳ୍ପନା କରିବାକୁ ଲାଗିଲା । କଳ୍ପିତ ସଙ୍ଗୀତକୁ ଭାବନାରେ ନେଇ ସେଇ ଭାବନାର ଅନୁଭୂତି ସହିତ ତାର ସାକ୍ଷାତକାର କରିବାର ପ୍ରୟାସ କରିବାକୁ ଲାଗିଲା । ସହସା ତା ଆଗରେ ଗୋଟିଏ ସତ୍ୟ ପ୍ରକଟ ହେଲା । ସଙ୍ଗୀତର ଅନୁଭୂତି ପ୍ରାପ୍ତ କରିବା ପାଇଁ ବାଦ୍ୟ-ସ୍ୱରର ଆଶ୍ରୟ ନେବା ମୂର୍ଖତା । ଜଳ-ପ୍ରପାତକୁ ବାଉଁଶର ଏଇ ନଳୀରେ ବାନ୍ଧିବାକୁ ଚେଷ୍ଟା କରିବା ବୃଥା । ସାଗରକୁ ମାଠିଆ ଭିତରେ ସମାବିଷ୍ଟ କରିବା ମୂର୍ଖତା । ଗାଇବାରେ ଯେଉଁ ସଙ୍ଗୀତର ଅନୁଭୂତି ସମ୍ଭବ ପରି, ତାହା କଳ୍ପନା ସଙ୍ଗୀତର ଶତକଡ଼ା ଏକ ଭାଗ ମଧ୍ୟ ନୁହେଁ ।

କଳ୍ପନା ସଙ୍ଗେ ସଙ୍ଗେ ସ୍ୱର ଲହରୀ ମଧ୍ୟ ଦିଗନ୍ତର ରେଖା ପର୍ଯ୍ୟନ୍ତ ବିସ୍ତାରିବାକୁ ଲାଗିଲେ । ଆକାଶ ପର୍ଯ୍ୟନ୍ତ ପହଞ୍ଚିଗଲେ । ସମସ୍ତ ଅନ୍ତରୀକ୍ଷକୁ ଗୁଞ୍ଜରିତ କରିବାକୁ ଲାଗିଲା । ଧୀରେ ଧୀରେ ପ୍ରଣବାକ୍ଷରରେ ପ୍ରସ୍ଫୁଟ ସ୍ୱର ସାଗର ଫେନରେ ପ୍ରଣବର ରୂପ ଧାରଣ କରି ସାରା ସଂସାରକୁ ମୁଗ୍ଧ କଲାବାଲା ଭୟଙ୍କର କିନ୍ତୁ ଅଦ୍ଭୁତ ଆକୃତିରେ ପ୍ରତ୍ୟକ୍ଷ ହେବାକୁ ଲାଗିଲା । ଶ୍ରାବ୍ୟ ସଙ୍ଗୀତ ପରି ଏଥିରେ ଅପସ୍ୱର ନାହିଁ । ଅମେଳ ଧ୍ୱନି ନାହିଁ । ଯେପରି ସବୁ ଦର୍ଶନ ଏବଂ ସବୁ ସତ୍ୟ ଅପୂର୍ଣ୍ଣ ସତ୍ୟ ହୋଇ ଅଦ୍ୱୈତ ସତ୍ୟର ଅନ୍ତର୍ଗତ ତାହାର ହିଁ ଅଂଶ ହୋଇ ସମାବିଷ୍ଟ ହୋଇଥାଏ । ସେହିପରି ଏହି ସଙ୍ଗୀତରେ

ଉପସ୍ୱର ଏବଂ ଅପୂର୍ଣ୍ଣ ସ୍ୱର ମଧ୍ୟ ପୂର୍ଣ୍ଣ ସ୍ୱରମାନଙ୍କର ସଙ୍ଘର୍ଷରେ ତାହାର ସୌନ୍ଦର୍ଯ୍ୟକୁ ଆସ୍ୱାଦନ କରି ରମଣୀୟ ରୂପ ଧାରଣ କରିବାକୁ ଲାଗିଲେ । ପ୍ରତ୍ୟେକ ଧୂଳିକଣାରେ ଭଗବାନ୍ ଅଛନ୍ତି । ସ୍ୱର ସ୍ୱରରେ ସଙ୍ଗୀତ ଅଛି । ଏହି ସିଦ୍ଧ ବାକ୍ୟର ଅନ୍ତଃପ୍ରାୟ ବର୍ତ୍ତମାନ ସେ ବୁଝିପାରିଲା । ଗୋପନ୍ନାର ଲଘୁ ଶରୀରରେ ଏହି ଭାବନା ମିଶିପାରିଲା ନାହିଁ । ଯେଉଁ ସଙ୍ଗୀତର କଳ୍ପନା ସେ କରିଥିଲା ତାକୁ ହୃଦୟଙ୍ଗମ କରିବାର କ୍ଷମତା ପଟେଇ ନଥିଲା ।···ସମସ୍ତ ଅଙ୍ଗ ଶକ୍ତିହୀନ ହୋଇ ପଡ଼ୁଥିଲା । ହୃଦୟ ଫାଟିଗଲା ପରି ମନେ ହେଉଥିଲା । ସେ କେବେ କଳ୍ପନା ମଧ୍ୟ କରି ନଥିଲା ଯେ ସୌନ୍ଦର୍ଯ୍ୟ ଏବଂ ଆନନ୍ଦ ପାଖକୁ ଆସିବା ପରେ କେତେ ଅସହ୍ୟ ହୋଇପାରେ । ଏବେ ବୁଝି ତ ପାରୁଛି···କିନ୍ତୁ ସେଥିରୁ ବଞ୍ଚିବାର କୌଣସି ଉପାୟ ନାହିଁ ।

ତାକୁ ସେହି ଦଶାରୁ ସାଂସାରିକ ଧରାତଳକୁ ଆଣି ବଞ୍ଚାଇ ଦେଇଥିଲା··· କୃଷ୍ଣଙ୍କର ମୁରଲୀ । ମୁରଲୀର ସ୍ୱର ଶୁଣୁ ଶୁଣୁ ସେ ମୁଗ୍ଧ ହୋଇଗଲା··· ଜାଣିଉଠି ସେ ସେହି ଅବସ୍ଥାରେ ମଗ୍ନ ହୋଇଗଲା । ନିଜର କଳ୍ପନାର କସ୍ତୁଠାରୁ ବି ମହାନ୍ ଏବଂ ନିଜର ଅନୁଭୂତ ଯେଉଁଠି ପହଞ୍ଚିଥିଲା । ସେହି ଧ୍ୱନି ତାକୁ ସେଦିନ ଶୁଣାଗଲା । ତା ପରେ ସେ ପ୍ରତିଦିନ କୃଷ୍ଣଙ୍କ ସାଙ୍ଗେ ସାଙ୍ଗେ ଯାଇ ତାଙ୍କର ବେଣୁଗାନ ଶୁଣିବାକୁ ଲାଗିଲା । ଆଗେ ଆଗେ କେତେ ଦିନ ଗୋପବାଳାମାନେ ଟିକେ ସଙ୍କୁଚିତ ହୋଇ ଯାଉଥିଲେ । କିନ୍ତୁ ପରେ ସେମାନେ ତାକୁ ଗାଈ କିମ୍ବା ଗଛ ବୋଲି ଭାବିନେଲେ ।

ଗୋପନ୍ନା ଭାବିବାକୁ ଲାଗିଲା—ଏତେ ମନୋହର ସଙ୍ଗୀତକୁ କୃଷ୍ଣ କିପରି ନିଜର ସେହି ଶ୍ରେଷ୍ଠ ବଇଁଶୀଟିରେ ଭରି ନେଇ ପାରିଛନ୍ତି । ଥରେ ସେ ତାଙ୍କ ଘରକୁ ଯାଇ ତାଙ୍କର ବଇଁଶୀଟି ଚୋରିକରି ଆଣିଲା । ଯମୁନା କୂଳରେ ପହଞ୍ଚି ସେ ଅଣ୍ଟି ଭିତରେ ଲୁଚାଇଥିବା ମୁରଲୀଟିକୁ ବଜାଇବା ଉଦ୍ଦେଶ୍ୟରେ ଯେମିତି ବାହାର କରିବାକୁ ହେଉଛି, ଦେଖେ ତ ସେଠି ସେ ନାହିଁ ।

'ମାୟାବୀ କୃଷ୍ଣ···ଚୋରଙ୍କର ସମ୍ରାଟ । ମୋ ଘରେ ଏ ଚୋର କେଉଁଥି ପାଇଁ ? ଗୋପନ୍ନା ବୁଝିପାରିଲା ।

କିନ୍ତୁ ଚୋରଙ୍କର ଏହି ସମ୍ରାଟ ସନ୍ଧ୍ୟାବେଳେ ଗୋପନ୍ନା ଘରକୁ ଆସି କହିଲେ "ଗୋପନ୍ନା, ତୁ ମୋର ମୁରଲୀ ନେଇଆସିଛୁ ନା ? ··ଛାଡ଼, କିଛି କଥା ନାହିଁ । ମତେ ଆଉ ଗୋଟିଏ ତିଆରି କରି ଦେଇ ଦେ ।"

କୃଷ୍ଣଙ୍କ ମୁହଁରେ ହସ ଦେଖି ଗୋପନ୍ନାର ଜୀବନ ଜୁଡ଼ିଗଲା ପରି ଲାଗିଲା ।

ତା ପରଦିନଠାରୁ ଗୋପନ୍ନା ବଇଁଶୀ ତିଆରି କରିବା ଆରମ୍ଭ କରିଦେଲା । ଯେବେଠାରୁ ଏହି କାମ ଆରମ୍ଭ ହେଲା, ତାଠେଇଁ ଗୋଟାଏ ନୂଆ ଉତ୍ସାହ ଏବଂ ନୂଆ ଚେତନା ଜାଗି ଉଠିଲା । ତା ହାତ ତିଆରି ବଇଁଶୀ କାଳ-ପଦ୍ମରଦନ ଭିତରେ କୃଷ୍ଣଙ୍କର କର-କମଳକୁ ଅଳଂକୃତ କରିବ ଏବଂ କୃଷ୍ଣ ସେଥିରେ ସ୍ୱର ଫୁଙ୍କି କରି ତାକୁ ସଜୀବ

କରିଦେବେ ଏହି ଆଶା ଓ ଆନନ୍ଦ ନେଇ ସେ ମୁରଲୀଙ୍କୁ ରୂପ ଦେବାକୁ ଲାଗିଲା । କୃଷ୍ଣଙ୍କର ଅଧର ବଇଁଶୀର ଯେଉଁ ଅଂଶକୁ ଚୁମ୍ବନ କରିବ ଏବଂ ତାଙ୍କର ଆଙ୍ଗୁଳି ଯେଉଁଠି ସ୍ପର୍ଶ କରିବ ସେହି ଅଂଶଗୁଡ଼ିକୁ ଗୋପନ୍ନା ବିଶେଷ ଧ୍ୟାନ ଦେଇ ଖୋଦିତ କରିବାକୁ ଲାଗଲା ।

ବଇଁଶୀ ତିଆରି ହେଉ ହେଉ ବଜାଇ କରି ଦେଖିଲା ହୃଦୟ ଅଧୀର ହୋଇ ଉଠିଲା । ତା'ର ସ୍ୱର ଠିକ୍ ବାହାରିଲା ନାହିଁ । କୋଉଠି ଧ୍ୱନି ଛିଦ୍ର ହୋଇଛି । ଏପରି ଲାଗିଲା ଯେପରି ଦୁଇ-ତିନୋଟି ବଇଁଶୀ ଏକାଠି ବଜାହେଉଛି । କଣ କୃଷ୍ଣଙ୍କର ହାତରେ ବାଜିବା କଳ୍ପନାରେ ସେହି ବଇଁଶୀର ଦେହ ଶିହରି ଉଠିଥିଲା ?…

ଗୋପନ୍ନା ସେଇଟି ପକାଇ ଦେଇ ଆଉ ଗୋଟିଏ କଲା । ସେ ବି ସେହିପରି ହେଲା ।

ପ'ରଦିନ ବହୁତଗୁଡ଼ିଏ ବାଉଁଶ ମଗାଇଲା । ଦଶ ବାରଟି ବଇଁଶୀ ତିଆରି କରି ପକାଇଲା । ଗୋଟି ଗୋଟି କରି ବଜାଇ ଦେଖିଲା ଏବଂ ଫୋପାଡ଼ି ଦେଲା…

"ଯେବେ ପର୍ଯ୍ୟନ୍ତ ତୋର ବଇଁଶୀ ନ ତିଆରି ହୋଇଛି ସେତେବେଳ ପର୍ଯ୍ୟନ୍ତ ମୁଁ ତୋ ଆଡ଼େ ଚାହିଁବି ନାହିଁ, କାହ୍ନୁ ।" ମନେ ମନେ ଗୋପନ୍ନା ନିଷ୍ପତ୍ତି କରି ନେଇଥିଲା । ସେବେଠୁଁ ଏହା ତାର ନିତିଦିନର କାର୍ଯ୍ୟକ୍ରମ ହୋଇଗଲା—ସନ୍ଧ୍ୟାବେଳେ ବୃନ୍ଦାବନ ଯାଇ ବେଣୁଗାନ ଶୁଣିବା ଏବଂ ସକାଳୁ ସନ୍ଧ୍ୟାଯାଏ ବଇଁଶୀ ତିଆରି କରିବା ।

ଗାଁର ସବୁ ଲୋକ ଏହାର ଚର୍ଚ୍ଚା କରି ଆଶ୍ଚର୍ଯ୍ୟ ପ୍ରକାଶ କରିବାକୁ ଲାଗିଲେ । ପ୍ରଥମେ ପ୍ରଥମେ ତାର ପ୍ରଶଂସା ହେଉଥିଲା । ପରେ ଏହା ହସ-ଥଟ୍ଟାର କଥା ହୋଇପଡ଼ିଲା ଯେ ଗୋପନ୍ନାର ସଙ୍ଗୀତର ପୁରୁଣା ଲକ୍ଷ୍ୟ ଛାଡ଼ି ଗଲା ତ ଏବେ ସେ ବଇଁଶୀ ତିଆରି କରିବାର ନୂଆ ସୁର ଧରି ନେଇଛି ।

ଗୋପନ୍ନା ଯେଉଁ ବଇଁଶୀ ଗୁଡ଼ିକୁ ବେକାର ଭାବି ବାହାରେ ଫିଙ୍ଗି ଦେଉଥିଲା, ତାକୁ ଗୋପ ବାଳକମାନେ ଉଠାଇ ନେଇଯାଉଥିଲେ । କିନ୍ତୁ ଗୋପନ୍ନାର ଭୟ ହେବାକୁ ଲାଗିଲା ଯେ କାଳେ ସେଥିରୁ କୋଉ ବଇଁଶୀଟି କାହ୍ନୁଙ୍କ ହାତରେ ପଡ଼ିଯିବ । ସେଥିପାଇଁ ସେ ଯେତେ ବଇଁଶୀ ତିଆରି କରୁଥିଲା ସବୁ କୁଡ଼ିଆରେ ଉପର ଠଣାରେ ରଖି ଦେଉଥିଲା ।

ଯମୁନା କୂଳରେ ଗୋପନ୍ନାର କୁଡ଼ିଆ । କୁଡ଼ିଆ ପାଖରେ ବାଉଁଶ ଗଦା ଏବଂ ଗଛ ତଳେ ଚୁଲି ଦେଖି ଲୋକେ ପରିହାସ କରି କହୁଥିଲେ, "କାଠର ଗୋଟିଏ ଗ୍ରେଟିଆ ଦୋକାନ ଖୋଲି ଦେ, ବେପାର ମଧ୍ୟ କରି ପାରିବୁ ।"

ଗୋପନ୍ନା ପାଖରେ ହସ-ପରିହାସ ପାଇଁ ନା ତ ସମୟ ଥିଲା, ନା ଇଚ୍ଛା ଥିଲା, ନା ଧୈର୍ଯ୍ୟ ଥିଲା ।

ପଚିଶି ବର୍ଷ ବିତିଗଲା, କାହ୍ନୁ ବଡ଼ ହୋଇ ଯାଇଛି । ଏବେ ସେ ବୃନ୍ଦାବନ ଯିବା ଛାଡ଼ି ଦେଇଛି । ସେ ନଗରବାସୀ ହୋଇଯାଇଛି । ସେ ରାଜକାର୍ଯ୍ୟରେ ସମସ୍ତ

ଦେଉଥିଲା । ତେବେ ମଧ୍ଯ ପ୍ରତ୍ୟେକ ଜନ୍ମାଷ୍ଟମୀ ପର ନବମୀ ଦିନ ଗୋପାନ୍ନା ନୂଆ ଉତ୍ସାହ ନେଇ ନୂଆ ବଇଁଶୀ ତିଆରି କରିବା ଆରମ୍ଭ କରୁ କରୁ ଭାବେ, 'ଆସନ୍ତା ଜନ୍ମଦିନ ପୁଣ୍ଡା ଏହା ତିଆରି ହୋଇଯିବା ଉଚିତ ।' ଜନ୍ମଦିନ ଆସେ, ପୁଣି ଚାଲି ଯାଏ । କିନ୍ତୁ ମୁରଲୀ ତିଆରି ହୋଇପାରେ ନାହିଁ । ଜଣାନାହିଁ କେମିତି ସେଥିରେ ଫାଟ ଦେଖାଦିଏ । ଯେପରି କେହି ଉପହାସ କରୁଛି ବା କିଛି ଅଭିଶାପ ଲାଗି ରହିଛି···

"ବାବା, ଉଠ, ଖାଇନିଅ" ଶ୍ରେଷ୍ଠ ଗୋପନ୍ନା ଡାକିଲା । ବାପା ତାଆଡ଼କୁ ଚାହିଁଲା, ଦୟା ଆସିଲା । ମା ତ ନାହିଁ, ନାଏ ଆଉ ମଧ୍ଯ ନଥିଲା ପରି । ଏହି ବୟସରେ ସେ ପ୍ରତିଦିନ ରାନ୍ଧିବାଢ଼ି ତାରି ବାପାକୁ ଖୁଆଏ । ନିଜର ଆବଶ୍ୟକତା ଗୁଡ଼ିକୁ ସେ ନିଜେ ପୂରଣ କରୁଛି ଏବଂ ନିଜ ମନକୁ ସେ ନିଜେ ଭୁଲାଉଛି । ଗୋଟିଏ ଦୃଷ୍ଟିରୁ ଏହା ମଧ୍ଯ ଭଲ ।

କାଲି ଅଷ୍ଟମୀ ପରେ ନବମୀରେ ବାପର ବିୟୋଗ ତାକୁ ଅଧିକ ବାଧିବ ନାହିଁ । ନିଜ ନିଜ ପଥ ଓ ନିଜ ନିଜ ଭାଗ୍ୟ ।

"ଖାଇବା ତ ମୁଁ ଖାଇନେବି, କାଲି କାହ୍ନୁର ଜନ୍ମତିଥି···ରୁ ନନ୍ଦଗୋଜାଙ୍କର ନଅରକୁ ଯାଇ ଏକାନ୍ତରେ କାହ୍ନୁକୁ ଏହି ବଇଁଶୀ ଦେଇଦବୁ ଆଉ କହିବୁ ମୋ ବାବା ଦେଇଛି" ଗୋପନ୍ନା କହିଲା ।

"ଅଛୁ, ଖାଇବା ତ ଖାଇନିଅ ନା" ପୁଅ ପୁଣି ଅନୁରୋଧ କଲା ।

ସେ ପୁଅକୁ ଦେଖି ଦେଖି ଜଣାନାହିଁ କାହିଁକି ଗୋପନ୍ନାର ମନରେ ବାଳକୃଷ୍ଣଙ୍କର ସ୍ମୃତି ଜାଗି ଉଠିଲା । ସ୍ନେହରେ ସିଆଡ଼େ ଅନାଇ ତାକୁ ପାଖକୁ ଟାଣି ଆଣି ଜାକି ଧରିଲା ଏବଂ ତାର ଚିବୁକରେ ଚୁମ୍ବନ ଦେଲା ।

ପିଲାଟିକୁ ଏହା କିଛି ଆଶ୍ଚର୍ଯ୍ୟ ଲାଗିଲା···ପ୍ରଥମ ଥର ପାଇଁ ସେ ଚୁମ୍ବନର ସ୍ପର୍ଶ ଅନୁଭବ କଲା ଏବଂ ଗାଲକୁ ପୋଛିନେଲା । ପୁଣି କହିଲା, "ଖାଇନିଅ ।"

"ମୁରଲୀ ନେଇ ଯିବୁ ତ ?"

"ତୁମେ ତ ଯେମିତି କହୁଛ । ଫେରେ ସକାଳେ କହିବ, ଏଇଟା ଠିକ୍ ହୋଇ-ନାହିଁ, ଥାଉ ।"

"ନାହିଁ, କହିବ ନାହିଁ । ଏଥରକ ମୁଁ ଯାହା କରିବି, ଠିକ୍ କରି କରିବା । ତେବେ ମୁଁ ତ ଦେଖି ପାରିବି ନାହିଁ ।" ନିରସ ଶୁଷ୍କ ହସ ହସି ଗୋପନ୍ନା କହିଲା ।

"ତାହେଲେ ଖାଇବା ଖାଇନିଅ" ଶ୍ରେଷ୍ଠ ଗୋପନ୍ନା କହିଲା ।

ତା ପରଦିନ ସକାଳୁ ଉଠି ଗୋପନ୍ନା ତା ପୁଅକୁ ତେଲ ହଳଦି ଦେଇ ଗାଧୋଇ ଦେଲା । ଝୁଣା ଧୁଆଁ ଦେଇ ତା ବାଳ ଶୁଖାଇଲା, କୁଣ୍ଡାଇ ଦେଲା ଏବଂ ଶ୍ରେଷ୍ଠ ଚୁଟିଟିଏ ବାନ୍ଧି ତାକୁ ଫୁଲରେ ସଜାଇଲା । ପୀତାମ୍ବର ପିନ୍ଧାଇଲା । ଆଉ ଗୋଟିଏ ଗୁନ୍ଦର ତା ଅଣ୍ଟାରେ ବାନ୍ଧିଦେଲା । ଲଲାଟରେ କସ୍ତୁରୀ ତିଲକ ଲଗାଇଲା । ଅଖିରେ କଜ୍ଜଳ ଧାର

ଏବଂ ଗାଲରେ ତିଳ ଚିହ୍ନ ଆଙ୍କି ଦେଲା । ମୟୂର ପକ୍ଷୀ ପଙ୍ଖାରୁ ଗୋଟିଏ ପୁଚ୍ଛ ଆଣି ତାର ଚୁଳ ସଜାଇ ଦେଲା ।

ଶ୍ରେଷ୍ଠ ଗୋପନ୍ନାକୁ ଏହା ସବୁ କିଛି ଭଲ ଲାଗୁ ନଥିଲା । ତାର ବାପା ଏପରି କିଛି କାମ କରିଛନ୍ତି, ଯାହା ସେ ଆଗରୁ କେବେ କରି ନଥିଲେ । ସେଥିପାଇଁ ତାକୁ ବଡ଼ ଅଖାଡ଼ୁଆ ଲାଗୁଥିଲା । ତା ଆଖିରେ ଲୁହ ଭରି ଆସିଲା । ସେ ତା ବାପାଙ୍କ ଆଡ଼କୁ କରୁଣ ଦୃଷ୍ଟିରେ ଚାହିଁଲା । ନିଜ ପୁଅକୁ ସଜାଇ ସାରି ଗୋପନ୍ନା ଥରେ ତାକୁ ମନ ପୂରାଇ ଦେଖିଲା ।

ସେ ଚମକି ଉଠିଲା···ଏ କ'ଣ ? ଏ ତ ବାଳକୃଷ୍ଣ···ଗୋପାଳ କୃଷ୍ଣ···ଏଠି କିପରି ପହଞ୍ଚିଗଲା ? ବହୁ ଦିନ ପୂର୍ବେ ସେ ଯେଉଁ ବଇଁଶୀ ଚୋରିକରି ଆଣିଥିଲା ତାକୁ ଇ ଫେରେ ନେଇଯିବା ପାଇଁ ନା କଣ ?

ଗୋପନ୍ନା ପୁଣି ନିରେଖି କରି ଦେଖିଲା । ନିଃସନ୍ଦେହ···ସେହି କୃଷ୍ଣ । ଅନାୟସରେ ସେ ହାତ ଯୋଡ଼ି ପ୍ରଣାମ କଲା । ଆଖିରୁ ଅଶ୍ରୁ ବୋହିବାକୁ ଲାଗିଲା···ତାହା ଦୁଃଖରେ ନା ଆନନ୍ଦରେ, କିଛି ବୁଝି ହେଉ ନଥିଲା ।

"କଣ ହେଲା ବାବା ?" କହି ବଡ଼ ବ୍ୟସ୍ତ ହୋଇ ବାପାକୁ ସେ ତାର କୁଣ୍ଢାଇ ପକାଇଲା । ବାପାକୁ ତା ଆଗରେ ପ୍ରଣାମ କରିବା ଦେଖି ସେ ବିଚଳିତ ହୋଇ-ପଡ଼ିଥିଲା ।

ଗୋପନ୍ନା ଚମକି ଉଠିଲା ଏବଂ ଲୁହ ପୋଛୁ ପୋଛୁ କହିଲା "ଭଗବାନ୍‌ଙ୍କୁ ମୁଁ ପ୍ରଣାମ କରୁଛି ପୁଅ ।"

"କାହିଁରେ ପୁଅ, ମୋ ବଇଁଶୀ କାହିଁ ?" କହି ସେ ଏଆଡ଼େ ସେଆଡ଼େ ଖୋଜିଲା । କିନ୍ତୁ ବଇଁଶୀ ମିଳିଲା ନାହିଁ ।

"ଉପରେ ମଞ୍ଚାରେ ରଖା ହୋଇଛି । ଘରେ ମୂଷାମାନଙ୍କ ଦାନ୍ତରୁ ବଞ୍ଚାଇବା ପାଇଁ "ତରି ତରି ଶ୍ରେଷ୍ଠ ଗୋପାନ୍ନା କହିଲା ।

"ଏଁ ! ଅନର୍ଥ ହୋଇଗଲା । ତୁ ସବୁ ବଗାଡ଼ି ଦେଲୁ ପୁଅ !" ଗୋପନ୍ନା କହିଲା । ସେ ଗାଲ ଦବାକୁ ଚାହୁଁଥିଲା ଯେ ସେ ମଞ୍ଚାରେ ମୂଷା ଭର୍ତ୍ତି ହୋଇଛନ୍ତି ଜାଣି କାହିଁକି ସେଠି ବଇଁଶୀ ରଖିଥିଲା । କିନ୍ତୁ ସେ ଏପରି କରି ପାରିଲା ନାହିଁ ।

ମଞ୍ଚା ଉପରେ ଚଢ଼ିକରି ଦେଖିଲା । ସେଠାରେ ବେକାର ମନେକରି ଫୋପଡ଼ା ହୋଇଥିବା ବଇଁଶୀ ଜମା ହୋଇ ରହିଛି । ଏଥିରୁ କୋଉଟି ନୂଆ ଏବଂ କେଉଁଗୁଡ଼ିକ ପୁରୁଣା ?

ଗୋପନ୍ନା ସେ ବଇଁଶୀ ଗୁଡ଼ିକୁ ତଳକୁ ଓହ୍ଲାଇ ଆଣିଲା । ଗୋଟି ଗୋଟି କରି ବଜାଇ ଦେଖିଲା ।

"ଏଇଟା ନୁହେଁ"

"ଏଇଟା ବି ନୁହେଁ"

"ଏଇଟା ମଧ୍ଯ ନୁହେଁ"

ଗୋଟିଏ ପାଖର ଗଦା କମି କମି ଗଲା ଏବଂ ଅନ୍ୟ ପାଖର ବଢ଼ିବଢ଼ି ଗଲା । ସମୟ ବଢ ଯାଉଥିଲା ।

ମଧ୍ୟାହ୍ନ ଭୋଜନର ସମୟ ହୋଇଗଲାଣି କିନ୍ତୁ ଗୋପନ୍ନା 'ଏଇଟା ନୁହେଁ' 'ଏଇଟା ନୁହେଁ' କହି କହି ବଇଁଶୀଗୁଡ଼ିକ ପରୀକ୍ଷା କରିବାରେ ଲାଗିଥାଏ ।

ଶ୍ରେଷ୍ଠୀ ଗୋପନ୍ନାର ଏଥିରେ ହସ୍ତକ୍ଷେପ କରି କଥା କହିବାର ସାହସ ହେଲାନାହିଁ । ସେ ବି ସେଇଠି ବସି ରହିଲା । ଥାଳରେ କସ୍ତୁରୀର ତିଳକ ବୋହିଗଲା । କଜ୍ଜଳ ଗାର ନେସି ହୋଇଗଲା, ଫୁଲ ମଉଳି ଗଲା, ତାରି ଆନନ୍ଦ ଏବଂ ଉଚ୍ଛ୍ୱାସ ଶେଷ ହେବାକୁ ଲାଗିଲା । ଉପାସରେ ତା ମୁହଁ ଶୁଖିଗଲା ।

କିନ୍ତୁ ଗୋପନ୍ନାର ଧ୍ୟାନ ସେଆଡ଼େ ମୋଟେ ଯାଉନଥିଲା ।

"ଏଇଟା ନୁହେଁ ।'

"ଏଇଟା ମଧ୍ୟ ନୁହେଁ"...

ଏତେଗୁଡ଼ାଏ ବଇଁଶୀ ଭିତରେ ସତରେ ନୂଆ ବଇଁଶୀଟି କେଉଁଠି ଲୁଚିଯାଇଛି । କଣ ଏହା ପ୍ରକୃତ କଥା ?

ଜଣା ନାହିଁ......ଗୋପନ୍ନା ତ ଜାଣିନାହିଁ, ସେ ନିରୀକ୍ଷଣ କରି ଦେଖି ବି ନାହିଁ—ସତ ହୋଇଥିବ, ହବା କଥା ..... ।

"ଦିନ ଗଡ଼ିଗଲା, ଅନ୍ଧାର ହୋଇ ଆସୁଛି, ଜନ୍ମତିଥି ଶେଷ ହୋଇଯିବ" ସଙ୍କୁଚିତ ହୋଇ ଶ୍ରେଷ୍ଠୀ ଗୋପନ୍ନା କହିଲା । ଗୋପନ୍ନା ମୁଣ୍ଡ ହଲାଇଲା । ଅବିକା କେବଳ ଦୁଇଟି ବଇଁଶୀ ରହିଯାଇଛି, କେବଳ ଦୁଇଟି । ସେଥିରୁ ଗୋଟିଏ ବଜାଇ ଦେଖିଲା । "ଏଇଟା ବି ନୁହେଁ ।"

ଏବେ ଗୋଟିଏ ରହିଗଲା । କଣ ଏଇ ଗୋଟାକ ହବ...କେଜାଣି ..ସକାଳୁ ସେ ଯେଉଁ ବଇଁଶୀଟି ଖୋଜୁଛି ସେ ବୋଧହୁଏ ଠିକ୍ ତିଆରି ହୋଇନାହିଁ । ସେଥିପାଇଁ ଏହି ଗଦା ଭିତରେ ମିଶିଯାଇଛି,...ବର୍ତ୍ତମାନ ଯେଉଁଟି ରହି ଯାଇଛି...ବୋଧ-ହୁଏ ସେଇ ହବ ଯଉଟା ସେ ଆଗରୁ ଖରାପ ଭାବି ଫୋପାଡ଼ି ଦେଇଥିଲା ।

ଶେଷ ବଇଁଶୀଟି ବଜାଇ ପରୀକ୍ଷା କରିବାର ସାହସ ଗୋପନ୍ନା ବାନ୍ଧିପାରିଲା ନାହିଁ । ସତ୍ୟତା ଜାଣିପାରି ମରିଯିବାର ଶକ୍ତି ତା' ଠାରେ ନାହିଁ । ପୁଣି ଆଉଥରେ ଚେଷ୍ଟା କରିବାର ଧୈର୍ଯ୍ୟ ମଧ୍ୟ ତାଠେଇଁ ନାହିଁ । ତା ପାଇଁ ସମୟ ମଧ୍ୟ ନାହିଁ ।

"ଏହି ଗୋଟିକ" ବିଶ୍ୱାସ ସହିତ ସେ କହିଲା ।

"ମାଧବ !" ପୁଅ କହିଲା ।

"ନାହିଁ ରେ ପୁଅ...ଦୌଡ଼ିକରି ଚାଲି ଯା...କାହ୍ନୁ ହାତରେ ଦେଇଦବୁ... ...ସେହି ଦେଖିକରି ବତାଇ ଦେବେ—ଗୋପନ୍ନା କହିଲା ।

ପୁଅ ଆଉ ଡେରି କଲାନାହିଁ । ପୁଣି ବାପାଙ୍କର ମନ ବଦଳି ଯିବା ପୂର୍ବରୁ ସେ

ପଳାଇ ଯିବାକୁ ଚାହୁଁଥିଲା । ଅନ୍ଧକାର ଭିତରେ ସେ ଦୌଡ଼ିଗଲା ।

ପଚିଶି ବର୍ଷର ଝଡ଼ ଶାନ୍ତ ହୋଇଗଲା ।

ଗୋପନ୍ନାର ଶରୀର ଦୁର୍ବଳ ଲାଗୁଥିଲା । ଏ ସେହିପରି ଦୁର୍ବଳତା ଯାହା ସେ କାଳଜନକ ସଙ୍ଗୀତର ସହାରେରେ ଉର୍ଦ୍ଧ୍ୱେ ମାରିବା ପରେ ପରେ ଅନୁଭବ କରୁଥିଲା । ଆଜି ସେହି ଅନୁଭୂତି ତାର ଫେରିଆସିଛି...... ।

କିଣ ସେ ତାର ସମ୍ପୂର୍ଣ୍ଣ କରି ପାରିଛି ? ...ଭଗବାନଙ୍କୁ ତାଙ୍କର ବିଶୁଦ୍ଧ ସ୍ୱର-ଯୁକ୍ତ ବଇଁଶୀ ଫେରାଇ ଦେଇଛି ?......

ଏତେ ବର୍ଷ ଧରି ସାଧନା କରି ବହୁତ ଥର ପରୀକ୍ଷା କରି ଶେଷରେ ଯେଉଁ ବଇଁଶୀଟି ସେ ଭଗବାନଙ୍କ ପାଖକୁ ପଠାଇଲା ସେଇଟି ନିରୀକ୍ଷଣ ମଧ୍ୟ କଲାନାହିଁ । ତାର ଭଲ ମନ୍ଦ ବିଚାର କାହ୍ନୁଙ୍କ ଉପରେ ହିଁ ଛାଡ଼ି ଦିଆଗଲା । ଯଦି ତାର ଧ୍ୱନି ଠିକ୍ ରୂପେ ନ ବାହାରିଲା ସେ ତାକୁ ନିଜେ ଠିକ୍ କରିନେବେ ।

ବାସ୍ତବରେ ଦେଖିବାକୁ ଗଲେ ତାର ସ୍ୱର ଠିକ ଅଛି କି ନାହିଁ ଏହା ପରୀକ୍ଷା କରିବାର କ୍ଷମତା ତା ଠାରେ କାହିଁ ? ସେ ଏହା କାହିଁକି ଭାବିଥିଲା ଯେ ତାକୁ ଠିକ୍ କରିବାର ଶକ୍ତି କାହ୍ନୁ ଠାରେ ନଥିଲା ?

ଗୋପନ୍ନାକୁ ହସମାଡ଼ିଲା ।

କେତେ ବଡ଼ ଭୁଲ୍ ହୋଇଛି...ପଚିଶି ବର୍ଷର ଭୁଲ୍...ଗୋଟିଏ ସାରା ଜୀବନର ଭୁଲ୍ ! କିଣ ସେ ଅଭିମାନ କରିବ ? ନା ହସି ଦେବ । "ଗୋପନ୍ନା କେତେ ପାଗଳାଟାଏ" ଏଇଆ ଭାବି ସେ ତା ନିଜ ଅଧରରେ ଲଗାଇ ନେବ । ସମସ୍ତ ସ୍ୱରକୁ ନିଜ ଭିତରେ ସମାବିଷ୍ଟ କରି ତାର ପେଟ ଭିତରୁ, ପ୍ରଣବର ମୂଳ ମନ୍ତ୍ର ତାର ନାଭିରୁ ବାହାରି ତାରି ମଙ୍ଗଳମୟ ମଧୁର ଓଷ୍ଠାଧରରୁ .....

ସେହି ଓଷ୍ଠାଧର ଯାହା ଦୁଧ-ଲହୁଣୀର ସ୍ୱାଦ ପାଇ ମଧୁର ହୋଇଛି ଏବଂ ଯାହା ରାଧାର ଅଧରକୁ ପବିତ୍ର କରି ଦେଇଛି...ଅମୃତଧାରା ବାହାରି ସେହି ବଇଁଶୀରେ ପ୍ରବେଶ କରିବ ।

ଗୋପନ୍ନା ପାଖରେ ଯେଉଁ ବଇଁଶୀ ପଡ଼ିଥିଲା ତାରି କଣା ଭିତରୁ ଧୀରେ ଧୀରେ ମଧୁର ସ୍ୱରଲହରୀ ମୁଖରିତ ହୋଇଉଠିଲା । ଗୋପନ୍ନା ତାର କପାଳ ଉପରେ କୋମଳ ସ୍ପର୍ଶ ଅନୁଭବ କଲା ।

ଏ କିଣ ? ଏହି ବଇଁଶୀକୁ ସେ ଅକାମୀ ଭାବି ପକାଇ ଦେଇଥିଲା ।

ପରକ୍ଷଣରେ ତାର ପାଖରେ ଥିବା ବଇଁଶୀର ମଧୁର ତାନର ଶବ୍ଦରେ ତାର ପାଖ ବଇଁଶୀଟି ବାଜି ଉଠିଲା । କିଛିକ୍ଷଣ ମଧ୍ୟରେ ସେ କୁଡ଼ିଆରେ ପଡ଼ିଥିବା ହଜାର ହଜାର ବଇଁଶୀରୁ ମନମୁଗ୍ଧକର ସଙ୍ଗୀତ ପ୍ରକଟ ହେଲା । ଗୋପନ୍ନା ଉଠିକରି ବସିଲା । କିନ୍ତୁ ଭ୍ରମରକୁ ଦେଖିଲାପରି ସେ ଚାରିଆଡ଼କୁ ଚାହିଁ ଦେଖିଲା । ସବୁ ବଇଁଶୀ-ଗୁଡ଼ିକ ବାଜୁଥିଲା । ସବୁମଧ୍ୟରୁ ବୃନ୍ଦାବନରେ ଶ୍ୟାମଙ୍କର ସେହି ବେଦନାଭ

ଭୁବନମୋହନ ସଙ୍ଗୀତ ଶୁଣାଯାଉଥିଲା । ସବୁ ଧ୍ୱନି ଗୁଡ଼ିକ ବିଶୁଦ୍ଧ । ଭୁଲ ସ୍ୱର ସେଥିରୁ କେଉଁଟିରୁ ବି ବାହାରୁ ନଥିଲା । ସେଥିଭୁ କୌଣସି ବଇଁଶୀ ଏପରି ନଥିଲା ଯାହା ଭଗବାନଙ୍କର କାମରେ ନ ଆସିପାରିବ······

ଗୋପନ୍ନା ଆଶ୍ଚର୍ଯ୍ୟ ହୋଇଗଲା । ଆନନ୍ଦରେ ପୁଲକିତ ତାର ଶରୀର ଶିଥିଳ ହୋଇ ଆସିଲା । ବଇଁଶୀର ସ୍ୱର ସାଗରରେ···ଭଗବାନ ବିଷ୍ଣୁ ସ୍ୱୟଂ ଆତ୍ମବିଭୋର ହୋଇ ବିରାଜମାନ କରୁଛନ୍ତି ।

ମୁରଲୀର ତାନ ଶେଷ ହେବା ପରେ କିଛିକ୍ଷଣରେ ମଧୁର ପଦଧ୍ୱନି ଶୁଣାଗଲା । ନିଶ୍ଚେ ଗୋପନ୍ନା ଫେରିଆସିଥିବ । ସେ କହିପାରିବ ଗୋପନ୍ନା ଯେଉଁ ବଇଁଶୀ ପଠାଇଥିଲା ତାହା ଠିକ୍ ହେଲା କି ନାହିଁ । ବର୍ତ୍ତମାନ ଏହି ସତ୍ୟତାର କିଛି ମହତ୍ତ୍ୱ ରହିଲା ନାହିଁ । ତାଠାରୁ ଅଧିକ ମହାନ୍ ସତ୍ୟର ସାକ୍ଷାତ ଗୋପନ୍ନା ପାଇଛି ।

ଗୋପନ୍ନା ଧୀରେ ଧୀରେ ଆଖି ମେଲି ଚାହିଁଲା—ଆଗରେ ଦ୍ୱାର ପାଖରେ ବାଲକୃଷ୍ଣ ପୀତାମ୍ବର, ଓଷ୍ଠରେ ପଞ୍ଚି, ଲଲାଟରେ କସ୍ତୁରୀର ଟୀକା, ଗାଲ ଉପରେ କଳା ତିଲଚିହ୍ନ, ଜଟାରେ ମୟୂର ପୁଚ୍ଛ ·····

"ଆସିଗଲ ତୁମେ ସ୍ୱୟଂ କାହ୍ନୁ" କହି ଗୋପନ୍ନା ଉଠି ହାତ ଯୋଡ଼ିନେଲା ।

"ବାବା, ବାବା, କାହ୍ନୁ ତୁମର ବଇଁଶୀ ବଜାଇଲେ । ମତେ ଖାଇବାକୁ ଦେଲେ । ଏଇଠି ମତେ ଚୁମ୍ବନ କଲେ···ଆଉ ବାବା···କାହ୍ନୁ ତୁମର ବଇଁଶୀ ବଜାଇବାକୁ ଯାଉଥିଲେ···କିନ୍ତୁ···କିନ୍ତୁ ବହୁତ ଚେଷ୍ଟା କଲେ · ସେ ଶୁଣା ଗଲା ନାହିଁ··· ବାସ୍ତବରେ ସ୍ୱର ବାହାରିଲା ନାହିଁ···କିନ୍ତୁ କାହ୍ନୁତ ବହୁତ ଭଲ···ମତେ ଏଠି ଗଲେ···"

ଗୋପନ୍ନା କୋଠରି ଭିତରେ ବିଗୁଡ଼ିହୋଇ ପଡ଼ିଥିବା ବଇଁଶୀଗୁଡ଼ିକୁ କଣେଇ ଚାହିଁଲା ।

ଏତେବେଳପର୍ଯ୍ୟନ୍ତ ଗାଇ ଗାଇ ଥକିପଡ଼ିଥିବା ବଇଁଶୀଗୁଡ଼ିକ ଆଡ଼କୁ ଗୋପାନ୍ନା ଅତି ଅନ୍ତରଙ୍ଗ ଭାବରେ ଚାହିଁଲା ଏବଂ ସେଥିରୁ ଗୋଟିଏ ବଇଁଶୀ ଉଠାଇ ନେଇ ତାକୁ ଚୁମ୍ବନ କଲା ।

# ମଳୟ ପବନ

ଗୋଟିଏ ପାଖରେ ଶାହାନାଇର ସଙ୍ଗୀତ ସହ ବନିତା-ସୁତଙ୍କ ବାହନରେ ଚଢ଼ି କାଷ୍ଠର ବରଦାସ୍ତକ ବିଭୁ ବାହାରୁ ଥିଲେ ତ ଆରପାଖରେ ଘୋଡ଼ାଜିନ୍ ଉପରେ ଗୋଡ଼ ରଖି ଲଗାମ୍ କଷି ଅଟକାଉ ଅଟକାଉ ଶେଷାଦ୍ରି କୁଦି କରି ଚଢ଼ି ବସିଲା। ଏପରି ଅନୁଭୂତି ତାର ଆଗରୁ ନ ଥିଲା। ସେଥିପାଇଁ ଶେଷାଦ୍ରି କିଛି ଘାବରେଇ ଯାଇଥିଲା। କିନ୍ତୁ ସେ ଜାଣିଥିଲା ଯେ ଏହା ତାର ବ୍ୟସ୍ତତା ଦେଖାଇବାର ଅବସର ନୁହେଁ। ହଜାର ହଜାର ଆଖି ତାଆଡ଼େ ଚାହିଁ ଦେଖୁଥିଲେ। ତାର ଶରୀରର ପ୍ରତ୍ୟେକ ଗତିକୁ ଅଭୂତପୂର୍ବ ମହତ୍ତ୍ୱ ପ୍ରାପ୍ତ ହଉଥିଲା। ଏପରି ଅବସ୍ଥାରେ ଯେତେ ସାବଧାନ ସହ ସେ ରହେ ସେତେ ଭଲ।

ଶେଷାଦ୍ରି ହୁସିଆର ହୋଇ ବସିଗଲା। ଯେତେବେଳେ ତାର ବିଶ୍ୱାସ ହୋଇଗଲା ଯେ ସେ ଠିକ୍‌ଠାକ୍ ହୋଇ ଆଡ଼ମ୍ବର ସହକାରେ ବସିଛି ସେତେବେଳେ ସେ ଚାରିଆଡ଼େ ଚାହିଁ ଦେଖିଲା। ଆଗରେ ବାଜା ବାଜୁଛି। ସେଥିରେ ପ୍ରଧାନ ଥିଲା ଢୋଲ। ସେ ଢୋଲ ବି କଣ ଥିଲା! ସେ ଢୋଲ ନୁହେଁ—ସେ ତ ଶିବଙ୍କର ତାଣ୍ଡବ ନୃତ୍ୟକୁ ଦେଖି ଆତ୍ମବିଭୋର ହୋଇଥିବା ନନ୍ଦୀଶ୍ୱରଙ୍କର ଗଳକମ୍ବଳ ଥିଲା। ଗଳାରେ ସୁନାର ହାର ଚମକୁଥିଲା ତ ମୁଣ୍ଡର ବାଳ କେତେବେଳେ ଉପରକୁ ଉଠି ଯାଉଥିଲା। କେତେବେଳେ ଏପାଖ ସେପାଖ ହୋଇ ବାଣ୍ଟି ହୋଇ ଯାଉଥିଲା ଆଉ କେବେ ଭ୍ରମର ଭଳି ନାନାପ୍ରକାରର ଘୂର୍ଣ୍ଣନ ପରେ ପୂର୍ଣ୍ଣିମା ଦିନ ସମୁଦ୍ରରେ ଉଠୁଥିବା ଜୁଆର ପରି କଲ୍ଲୋଳିତ ହୋଇ ଉଠୁଛି। ଏଇ ମସ୍ତରେ ଢୋଲ ବଜାଇବାବାଲା କଳାକାର ଅତ୍ୟନ୍ତ ହାର୍ଦ୍ଦିକତା ସହ ନାଚି କୁଦି କପାଳକୁ ଚୁମ୍ବନ କରି, ଓଠ ହଲାଇ, ଭ୍ରୁକୁ ନଚାଇ ରକମ ରକମର ଚେହେରା କରି, ମୁହଁ ମୋଡ଼ି ଶେଷରେ ହାର ମାନି 'ଦାସୋହମ' କହିଲା ପରି ମୁଣ୍ଡ ଝୁଙ୍କାଇ ନିଜ ଢୋଲ ମାଧ୍ୟମରେ ଦାମ୍ପତ୍ୟ ଜୀବନରେ ପ୍ରକାଶ ହେଉଥିବା ପତି-ପତ୍ନୀଙ୍କର ସହସ୍ର ଭାବଭଙ୍ଗୀକୁ ବ୍ୟକ୍ତ କରୁଥିଲା। ବର ମହାଶୟଙ୍କ ଆଡ଼େ ଆକୃଷ୍ଟ ହେଉଥିବା ଦୃଷ୍ଟିକୁ ନିଜଆଡ଼େ ବଳ୍‌ବଳ ଟାଣୁଥିବା ଢୋଲକିଆ ଉପରେ ଅସନ୍ତୁଷ୍ଟ ହୋଇ ଶାହାନାଇବାଲା ଶାହାନାଇର ମୁନ ବର ଆଡ଼କୁ କରି ଜାଣି ଏଇଆ ସଙ୍କେତ କରିବାକୁ ଚାହୁଁଥିଲା ଯେ ଏହି ଶେଷାଦ୍ରି ଯାହାକୁ ଆଜି ବର କରାଯାଇଛି ସିଏ ହିଁ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିବା ଉଚିତ। ବାଜାବାଲାଙ୍କ ପାଖାପାଖି ଛିଡ଼ାହୋଇ ଆଗ୍ରହରେ ସଙ୍ଗୀତର ଆସ୍ୱାଦନ କରୁଥିବା କଳାମର୍ମଜ୍ଞମାନେ ଚୁଟୁକି ମାରି ମୁଣ୍ଡ ହଲାଇ ନିଜ ପାଖରେ ନଥିବା ଢୋଲ ଏବଂ ଶାହାନାଇର ଅଭାବ

ପୂରଣ କରୁଥିଲେ । ବର ପଛରେ ପାଟଶାଢ଼ି ପିନ୍ଧି ସୁହାଗିନୀ ରମଣୀମାନେ ଏବଂ ଘାଗରା ଓ ଓଢ଼ଣୀ ପକାଇ କୁମାରୀ କନ୍ୟାମାନେ ଶୋଭାଯାତ୍ରାର ଶୋଭା ବଢ଼ାଇ ବୋଧହୁଏ ଏହା ଭାବୁଛନ୍ତି ଯେ ଏ ଶୋଭାଯାତ୍ରା ସାରା ଧରଣୀର ଇତିହାସ ପର୍ଯ୍ୟନ୍ତ ଆମର ସାହାଯ୍ୟରେ ଆଗକୁ ବଢ଼ି ଚାଲିଛି । ଏହି ଉଲ୍ଲାସମୟ ଭାବନା ସହ ସେ ତରୁଣୀ-ମାନେ ମଦମତ୍ତ ହାତୀ ସହିତ ପ୍ରତିଯୋଗିତା କରି ମନ୍ଦଗତିରେ ଚାଲୁଥିବା ହଂସକୁ ଆଶ୍ଚର୍ଯ୍ୟ କରିଦେଇ ଆଗକୁ ପାଦ ପକାଇ ଚାଲିଛନ୍ତି ।

ଲୁଚେଇ ଚୋରେଇ ଶେଷାଦ୍ରି ଆଇଥରେ ନିଜକୁ ଦେଖିନେଲା । ସେ ଆଶ୍ଚର୍ଯ୍ୟ ହୋଇଗଲା ଯେ ସେ ବର ବେଶରେ କିଛି କମ୍ ସୁନ୍ଦର ଦିଶୁନାହିଁ । ଜମି ଉପରେ ଲୋଟୁଥିବା ଧୋତି, ଚମକୁଥିବା ପାଟ କୁରୁତା, ବା କାନ୍ଧରୁ ଡାହାଣଅଡ଼େ ଝୁଲି ଗଣ୍ଠି ପଡ଼ିଥିବା ପାଟ ଚାଦର ଅଉ ବେକରେ ଫୁଲର ମାଳ । ଫେରେ ତାର ଅଭାବ କେଉଁଥିରେ ? ଥାଟ୍‌ରେ ବସିଛି । ଯଦି ସେହି ଢଙ୍ଗରେ ତାର ଫଟ ନିଆଯାଏ ତ ସେ ସହରର ବଜାରରେ ଶୋଭାଯାତ୍ରାରେ ଚାଲୁଥିବା ଶ୍ରେଷ୍ଠ ବର ପରି ଦିଶିବ ।

ଶେଷାଦ୍ରି ପୁଣି ମୁଣ୍ଡ ଉପରକୁ ଟେକିଦେଲା । ଧାଡ଼ି ହୋଇ ଛିଡ଼ା ହୋଇଥିବା ମାଟିର ମହଲମାନଙ୍କ ମଝିରେ 'ପେଟ୍ରୋମାକସ୍' ଆଲୁଅର ତରଳ ପ୍ରକାଶରେ ସାରା ଶୋଭାଯାତ୍ରା ଫୁଲର ନୌକା ପରି ଆଗକୁ ବଢ଼ି ଚାଲିଛି । ଶେଷାଦ୍ରିର ଓଠ ଉପରେ ମନ୍ଦହାସର ଗୋଟିଏ ରେଖା ବିଜୁଳି ଭଳି ଚମକାଇଦେଇ ପରକ୍ଷଣରେ ଅଦୃଶ୍ୟ ହୋଇଗଲା । ଏସବୁ ଆକସ୍ମିକ ବୈଭବ ପରି ଲାଗୁଥିଲା ।

ତାକୁ ଦିନକଥା ରାଜଗାଦି ମଧ୍ୟ କୁହାଯାଇପାରେ । ଗଣ୍ଠି ଯେ ପର୍ଯ୍ୟନ୍ତ ନ ବନ୍ଧା ଯାଇଛି ସେପର୍ଯ୍ୟନ୍ତ ରାଜା ଉପଚାର ଏହିପରି ଚାଲିଥିବ । ଧୂପ, ଦୀପ ଆଦି ଷୋଡ଼ଶ ଉପଚାର ଥିବ । ସେ ଯଦି ଚାହିଁବ ତ ପାହାଡ଼ ଉପରେ ବସିଥିବା ମାଙ୍କଡ଼ ଦୌଡ଼ିକରି ତଳକୁ ଆସିଯିବ । "ଭାଇ ଶେଷାଦ୍ରି !" "ପୁଅ ଶେଷୁ !" "ଆରେ ଶେଷ ଭାଇ !" ଆଜି କେତେ ପ୍ରକାରର ସମ୍ବୋଧନ ଦ୍ୱାରା, ନିଜ ନିଜର ସମ୍ପର୍କୀୟ ଆତ୍ମୀୟତା ଅନୁସାରେ, ଲୋକେ ତାକୁ ବିବାହ ବେଦି ଉପରେ ବସେଇ ଏବଂ ଗାର୍ହସ୍ଥ୍ୟ ସାମ୍ରାଜ୍ୟର ଅଧିକାରୀ କରି ସମସ୍ତେ ନିଜ ନିଜର ବାଟରେ ଚାଲିଯିବେ ।

ଏପର୍ଯ୍ୟନ୍ତ ଠିକ୍ ଅଛି, କିନ୍ତୁ ତା ପରେ ?

ଯଦି ସହଚରୀ ସାଧ୍ୱୀ ଏବଂ ତାର ରୁଚି ଅନୁକୂଳ ହୋଇଯାଏ ତେବେ ଦାମ୍ପତ୍ୟ ଜୀବନ ସ୍ୱର୍ଗ ସମାନ ସୁଖମୟ ହୋଇଯିବ । କିନ୍ତୁ ଏହାର ବିପରୀତ ମଧ୍ୟ ଘଟିପାରେ ।

ଏଥିପାଇଁ କେହି ଅନୁଭବୀ ବିବାହକୁ 'ଲଟେରି' କହିଥିଲେ । ଶେଷାଦ୍ରି କ୍ଷେତ୍ରରେ ଏ କଥା ଏକେବାରେ ସତ । ସେ ତାର ଭାବି ସହଚରୀକୁ ବିବାହ ପୂର୍ବରୁ ଥରଟିଏ ଦେଖିବାର ସୁଯୋଗ ମଧ୍ୟ ପାଇନଥିଲା । ସେ ଭାବୁଥିଲା ଫୁଟୋଚିତ୍ର ବାହାର ରୂପରଙ୍ଗରୁ ଭିତରର ଜିନିଷ ଅନୁମାନ କରିବା ନିରାଟ ମୂର୍ଖତା । ତେଣୁ ଏହି ବିଷୟରେ ଅଭିଜ୍ଞ ତାର ମା ଏହି ପ୍ରସ୍ତାବକୁ ସ୍ୱୀକାର କରି ନେଇଥିବାରୁ ସେ ନିଷ୍ଚିନ୍ତ ହୋଇ ଧନ୍ୟବାଦ କରି-

ଦେଇଥିଲା ଯେ ସେ କନ୍ୟାକୁ ଦେଖିବାର ଆବଶ୍ୟକତା ନାହିଁ ଏବଂ ଏହି ପ୍ରସ୍ତାବକୁ ସେ ମଧ୍ୟ ଗ୍ରହଣ କରୁଛି ।

"କେତେ ଶୁଭଲକ୍ଷ ହୋଇଗଲୁଣି, ପୁଅ ! ଯଦି ମୋର ବସ୍ତିର ଉପରେ ସମସ୍ତ ନକ୍ଷତ୍ର ସ୍ଥ ହୋଇଯାଏ ତେବେ ଆଗକୁ ଶାସ୍ତ୍ରବୋଦ୍ଧାଙ୍କ ଭିତରେ କଳକୋଳ ହବାର ସମ୍ଭାବନା ରହିବ ନାହିଁ, ଏହି ତୋର ଯୋଜନା ଥିଲା ନା ?" ପାର୍ବତମ୍ମା ଚକିତ ହୋଇ କହିଲା ।

"ଯେତେ ହେଲେ ମୁଁ କେମିତ ମାର ପୁଅ ମା !" ଶେଷାଦ୍ରି ହସିଦେଇ କହିଲା ।

ଶାହ୍ନାଇର ସ୍ୱରରେ ନିଜର ସ୍ୱପ୍ନକୁ ରୂପ ନେବା ଦେଖି ପ୍ରଫୁଲ୍ଲ ମନରେ ସଫଳ ମନୋରଥ ହୋଇ ବଡ଼ ସାବଧାନରେ ଶେଷାଦ୍ରି ଘୋଡ଼ାରୁ ଓହ୍ଲାଇ ବୁଇଷ୍ଟ୍ରରପାଦ ଆଗେଇଛି କି ନାହିଁ ହଠାତ୍ ଗଛରୁ କିଏ "ଡାହାଣ ପାଦ, ଡାହାଣ ପାଦ" ପାଟିକରି ଉଠିଲା । ଶେଷାଦ୍ରି ସେଇଠ ଅଟକିଗଲା ।

ଶେଷାଦ୍ରି ଠିଆ ହୋଇଯାଇ ନିଜର ଡାହାଣ ଗୋଡ଼ ଏପଟ ସେପଟ କରି ପରୀକ୍ଷା କରିନେଲା ଯେ ସେ ଠିକ୍ ଅଛି କି ନାହିଁ ।

"ନାହିଁ ଶେଷାଦ୍ରି, କଥା ଏଇଆ ଯେ ଡାହାଣ ପାଦ ଆଗ ପକାଇବା କଥା" କହି କହି ବୁଢ଼ାଲୋକ ଜଣେ ଆଗେଇ ଆସିଲେ । "ଆଚ୍ଛା, ଏଇ କଥା । କିନ୍ତୁ ତମ ପାଟି ତ ମୋ ଉପରେ ବଜ୍ରପାତ କରିଦେଲା, ଦାଦା", ଶେଷାଦ୍ରି କହିଲା ।

"ବିବାହର ଶୁଭ ଅବସର ବେଳେ ଏପରି ଅମଙ୍ଗଳ କଥା କହନ୍ତୁ ନାହିଁ ପୁଅ । ଅମଙ୍ଗଳରୁ ବଞ୍ଚାଇ ଦେଇଛି ଦାଦା—ଏହିପରି କହନ୍ତୁ" ଶେଷାଦ୍ରିକୁ ତାର ଦାଦା ବୁଝାଇ କହିଲେ ।

ଦୁଇ ତିନ ସେକେଣ୍ଡ ପର୍ଯ୍ୟନ୍ତ ଶେଷାଦ୍ରି ଅନୁଭବ କଲା ଯେ ଦାଦାଙ୍କ କଥା ଠିକ୍ ବୋଲି । ଠିକ୍ ସମୟରେ ଦାଦା ଉପଦେଶ ଦବାରୁ ଏ ବିପଦରୁ ରକ୍ଷା ପାଇଗଲା । ନହେଲେ ପାଦ ତ ଆଗକୁ ପକାଇବା କଥା ବାମ ପାଦ ବି ପକାଇ ପାରିଥାନ୍ତା । ଯଦି ଏପରି ହୋଇଥାନ୍ତା ତ କଣ ହୋଇଯାଇଥାନ୍ତା ? ଏ ପ୍ରଶ୍ନର କୌଣସି ସିଧା ସଳଖ ଉତ୍ତର ନାହିଁ । ଅଧିକ ଭାବିଲେ ଗୋଟିଏ ସନ୍ଦେହ ଦୂର କରିବାକୁ ଯାଇ ଆହୁରି ଅଧିକ ସନ୍ଦେହ ମନରେ ଉଠିପାରେ ।

ଆସ୍ଥିର-ବିଶ୍ବାସର ଅନ୍ଧବିଶ୍ୱାସରେ ଶେଷାଦ୍ରି ବିଶ୍ୱାସ କରେ ନାହିଁ । ଶେଯାରୁ ଉଠିବାଠାରୁ ରାତିରେ ପୁଣି ବିଛଣାରେ ଶୋଇବା ଯାଏ ପ୍ରତ୍ୟେକ କାର୍ଯ୍ୟରେ ପଦେ ପଦେ ସାମନାରେ ଛିଡ଼ାହୋଇ ବାଧା ଦେଉଥିବା ଏଇ ଅନ୍ଧବିଶ୍ୱାସକୁ ସେ ଏ ସମାଜର ଜୀବନରୁ ଉପାଡ଼ି ପକାଇଦବାର ସ୍ୱପ୍ନ ଦେଖୁଥିଲା । ଏହି ବିଷୟରେ ସୁଯୋଗ ପାଇଲେ ବଡ଼ ବଡ଼ ସଭାମାନଙ୍କରେ ସେ ଭାଷଣ ମଧ୍ୟ ଦେଉଥିଲା ।

ପ୍ରବାଦ ଅଛି, କଥା ସାତସମୁଦ୍ର ପାରିକରିଯାଏ; କିନ୍ତୁ ପାଦ ଦୁଆର ପର୍ଯ୍ୟନ୍ତ ଅଗେଇପାରେ ନାହିଁ । ଏହା ଏକଦମ୍ ମିଥ୍ୟା; କାରଣ ଶେଷାଦ୍ରିର ପାଦ ଦୁଆର-

ବନ୍ଧକୁ ଅତି ସହଜରେ ପାରକରିଦେଲା । ପାରକରିବାର ସେହି ପ୍ରକ୍ରିୟାରେ ଆପେ ଆପେ ହଉ ବା ଜାଣିଶୁଣି ହଉ ସେ ତାର ଡାହାଣ ପାଦ ଦେଇ ଶଶୁର ଘରକୁ ପ୍ରବେଶ କରିଥିଲା !

କଅଁଳିଆ ନଡ଼ିଆପତ୍ରର ସବୁଜ-ସୁଗନ୍ଧରେ ମହକୁଥିବା ମଣ୍ଡପ ଦେଇ ଶେଷାଦ୍ରି ଘର ଭିତରେ ପହଞ୍ଚି ତା ପାଇଁ ଖାସ୍‌କରି ବିଛାହୋଇଥିବା ଆସନ ଉପରେ ଯାଇ ବସିପଡ଼ିଲା । ନିଜ କାମରେ ବ୍ୟସ୍ତ ଥାଇ ଯେଉଁ ମହିଳାମାନେ ଶେଷାଦ୍ରିକୁ ଦେଖି-ପାରି ନ ଥିଲେ, ସେମାନେ ଆସି ଶେଷାଦ୍ରିକୁ ଘେରିଗଲେ । ବାହାରେ ବାଜୁଥିବା ବାଜାର ଶବ୍ଦ ମଣ୍ଡପଯାଏ ଶୁଣାଯିବାରୁ ସେଠି ସପ ଉପରେ ଶୋଇପଡ଼ିଥିବା ଶ୍ରେଷ୍ଠ ପୁଅ ଚମକି କରି ଉଠିପଡ଼ିଲା ଏବଂ ସେହି ରାଗ ସହିତ ସ୍ୱର ମିଳାଇ ଗୁଣୁଗୁଣୁ ହବାକୁ ଲାଗିଲା । ଯେଉଁଠି ଶେଷାଦ୍ରି ବସିଥିଲା ସେଠିକି ପବନ ଆଉ ନ ଥିଲା । ଅନେକଟା ଅପରିଚିତ ଅଜଣା ବ୍ୟକ୍ତିମାନଙ୍କ ମଧ୍ୟରେ ରହିବା ହେତୁ ଓ ଆଉ କେତେଟା ସମସ୍ତଙ୍କର ଦୃଷ୍ଟି ତା ଉପରେ ଥିବା ହେତୁ ସେ ମନରେ କିଛି ଉଷ୍ଣତା ଅନୁଭବ କରୁଥିଲା ।

ସମୟ ବିତିଯାଉଥିଲା । ଶେଷାଦ୍ରି ଜାଣିପାରୁ ନଥିଲା ତାକୁ ସେଠି ଆଉ କେତେ ସମୟ ଏପରି ନିଶ୍ଚଳ ହୋଇ ବସିରହିବାକୁ ହେବ । ସେ ଯେତେ ନିର୍ଲିପ୍ତଭାବେ ବସିବାକୁ ଚେଷ୍ଟା କରୁଥିଲେ ମଧ୍ୟ ସମସ୍ତ ଯେତିକି ଯେତିକି ପାଖେଇ ଆସୁଥିଲା ସେ କଣ୍ଟା-ଶେଜ ଉପରେ ବସିଲା ପରି ଅନୁଭବ କରୁଥିଲା । ଯେ ପର୍ଯ୍ୟନ୍ତ କନ୍ୟା ତା ଆଗକୁ ନ ଆସିଛି ତାର ବୋଧହୁଏ ଏହିପରି ଅବସ୍ଥା ହବ । କିନ୍ତୁ ତରତର ହୋଇ କଣ ଲାଭ ? ସମସ୍ତ ପୂଜା, ବିଧିବିଧାନ ସମ୍ପନ୍ନ ହୋଇଗଲେ ସିଧା ଆରାଧ୍ୟ ଦେବୀ ପ୍ରକଟ ହେବେ ।

ଶେଷାଦ୍ରି ଘଡ଼ିଆଡ଼େ ଚାହିଁ ଦେଖିଲା—ଦଶଟା ବାଜିବା ଉପରେ । ସାଢ଼େ ଦଶଟା ଭିତରେ ଖାଇବା ବଢ଼ାବଢ଼ି ଆରମ୍ଭ ହୋଇଗଲା । ଶେଷ ପଙ୍‌ଗତ ଖାଇବା ସରୁ ସରୁ ଏଗାରଟା ବାଜିଗଲା ।

ଭୋଜନ ପରେ ଶେଷାଦ୍ରି ଟିକେ ସମୟ ବିଶ୍ରାମ ନ କରୁଣୁ ତାକୁ ମଙ୍ଗୁଳିବାକୁ ନେଇଗଲେ ।

ଗାଲରେ, ହାତରେ ଚନ୍ଦନ ଲଗାଇ ସାରା ଦେହରେ ଗୋଲାପଜଳ ଛିଞ୍ଚିଦେଲେ । ଅଧରାତିରେ, ଥଣ୍ଡା ପବନ ବହୁଛି; ଏପରି ସମୟରେ ଏ ମାଙ୍ଗଳିକ କାର୍ଯ୍ୟ ତାକୁ କିଛି ଭଲ ଲାଗି ନ ଥିଲା । ତେବେ ସେ ମୁହଁରେ ଦରହାସ ଫୁଟାଇ ରଖି ସେଠି ତାର ଭୂମିକା ବିଧିମତେ ସମ୍ପନ୍ନ କଲା ।

ଶେଷରେ ମଙ୍ଗୁଳା-ସ୍ନାନ କାର୍ଯ୍ୟ ଶେଷ ହେଲା । ପୀତାମ୍ବର ପିନ୍ଧି, ଖାନ୍ଦରରେ ଅଣ୍ଟା ଭିଡ଼ି, ପଣ୍ଡିତ ମହାଶୟ ବେଦୀରେ କଳଶ ସ୍ଥାପନା କରି ମନ୍ତ୍ର ଉଚ୍ଚାରଣ ଆରମ୍ଭ କଲେ । ରାତିସାରା ଚାହିଁ ରହି ଶେଷାଦ୍ରିର ଆଖି ଲାଲ୍ ହୋଇଯାଇଥିଲା । କୌଣସି ପ୍ରକାରେ ଯାଇ ବେଦୀରେ ପିଢ଼ା ଉପରେ ବସିପଡ଼ିଲା । କୋଳାହଳ କରୁ-

ଥିବା ପିଲାମାନେ ସବୁ ଶୋଇପଡ଼ିଥିଲେ; ସେଥିପାଇଁ ମଣ୍ଡପ ତଳେ ବର୍ତ୍ତମାନ ନୀରବତା ଥିଲା । ପ୍ରତୀକ୍ଷା-କାବ୍ୟର ଶେଷ ସର୍ଗରେ ପହଞ୍ଚିଥିବା ଶେଷାଦ୍ରିଙ୍କୁ ବିତୁଥିବା ପ୍ରତ୍ୟେକ କ୍ଷଣ ତାଙ୍କ ସହିଷ୍ଣୁତାର ପରୀକ୍ଷା ନେଇ ଯୁଗ-ଯୁଗ ପରି ଲାଗୁଥିଲା ।

ଶେଷାଦ୍ରି ମୁଣ୍ଡ ତଳକୁ ନୁଆଁଇ ବସିଥିଲା । ମଣ୍ଡପର କେଉଁ କୋଣରେ ଲୋକମାନେ ଉଠିବାର ଏବଂ ଉଠି କାହାକୁ ବାଟ ଛାଡ଼ିଦେବାର କ୍ଷୀଣ ଶବ୍ଦ ଶେଷାଦ୍ରି ଶୁଣିପାରିଲା । ହଠାତ୍ ମୁଣ୍ଡ ଉଠାଇ ଦେଖିଲା । କେତେକ ସୁହାଗିନୀ ସ୍ତ୍ରୀ ରାସ୍ତା ଦେଖାଇ ଦେଖାଇ ଆସୁଛନ୍ତି । ଆଗରେ କିଏ କୁମାରୀ କନ୍ୟା ହାତ ଧରି ପାଦ ବଢ଼ାଉଛି ଏବଂ ଦୁଇଜଣ ଧରି ଧରି କନ୍ୟାକୁ ଧୀରେ ଧୀରେ ବିବାହ ବେଦି ପାଖକୁ ଆଣୁଛନ୍ତି ।

ଏକ···ଦୁଇ···ତିନି · ସେହି ତିନି କ୍ଷଣ ଶେଷାଦ୍ରିଙ୍କୁ ଅସରନ୍ତି ମନେ ହେଲା ।

ସେବେଶି ଉଚ୍ଚା ନଥିଲା ଏବଂ ସେପରି ଶ୍ଳେଣ୍ଡର ବା ମୋଟା ମଧ୍ୟ ନଥିଲା । ଝଟକୁଥିବା ପାଟ ଶାଢ଼ି ପିନ୍ଧି ସେ ଶୋଭାଯାତ୍ରାରେ ବାହାରିଥିବା କେଉଁ ଦେବୀପ୍ରତିମା ପରି ଦିଶୁଥିଲା । ତାର ରଙ୍ଗ ଏକଦମ୍ ଗୋରା ବୋଲି କୁହାଯାଇ ପାରିବ ନାହିଁ । ଗୋଲାପ ପାଖୁଡ଼ା ପରି କିଛି ଗୋରା, କିଛି ହଳଦିଆ ବା ଏ ଦୁଇଟିର ମିଶ୍ରଣ ପରି ଦିଶୁଥିଲା । କଜ୍ଜ୍ୱଳଧାର ମଧ୍ୟରୁ ତାର ଆଖି ଅଧା ଖୋଲା କଢ଼ି ପରି ଫୁଟିଉଠୁଥିଲା । ଆଖି ଦୁଇଟି ଏପରି ଢଳଢଳ ସରଳ ଦିଶୁଥିଲା ଯେ ସେ ଯେପରି ଦୁନିଆଟାକୁ କେବେ ଦେଖି-ନାହାନ୍ତି । ଶେଷାଦ୍ରି ଆଶ୍ଚର୍ଯ୍ୟ ହୋଇଗଲା । ଦୁନିଆର ଅନୁଭୂତିରେ ଅଭିଜ୍ଞ ତା'ର ମା ଏହି ଝିଅଟେଇଁ-କଣ-ଦେଖି ଘରର ବୋହୂ କରିନବାକୁ ମନ କଲା ।

ଶେଷାଦ୍ରିର ନିଜ ଉପରେ ଦୟା ଆସିଲା । ଏ ଝିଅକୁ ସେ ଆଗରୁ ଦେଖିଥିଲେ ବୋଧହୁଏ ସେ ଏ ବିବାହ ପାଇଁ ରାଜି ହୋଇ ନ ଥାଆନ୍ତା । ସୌନ୍ଦର୍ଯ୍ୟ ତା'ଠେଇଁ କିଛି ଅଭାବ ନଥିଲା । କିନ୍ତୁ ଯେଉଁ ଜିନିଷକୁ କାଚ ଆଲମାରିରେ ରଖି ତାର ସୌନ୍ଦର୍ଯ୍ୟରେ ମୁଗ୍ଧ ହେବା କଥା, ସେ ଜିନିଷକୁ ମାଟିରେ ଘୋଷାରି ଆଣିବା ତାଙ୍କୁ ଭଲ ଲାଗୁ ନଥିଲା । କଣ୍ଟେଇ ବାହାଘରରେ ମଧ୍ୟ ଲାଜ କରୁଥିବା ଏହି ଶିଶୁ କନ୍ୟା କୋଉଠି ଏବଂ କଳଆ-ଖୋରଣୀ କୋଉଠି ? ସେ ବୁଝୁ ନଥିଲା ଏହି ସ୍ନିଗ୍ଧ ସୁନ୍ଦର ଲାବଣ୍ୟମୟୀ ଘର କାମ-ଧାମରେ ପେଷି ହୋଇଯାଉ । ତା ମା' ସହିତ ଯଦି ସେ ବି ନିଶ୍ଚୟ କରିନେଇଥାନ୍ତା ଯେ ଏହି ଝିଅ ସାଙ୍ଗରେ ବିବାହ କରିବ ବୋଲି, ତେବେ ବି ସେ ବୋଧହୁଏ ତରତର ହୋଇ ନଥାନ୍ତା । ନିଜେ ସେ ଝିଅକୁ ବୁଝାଇ ଦେଇଥାନ୍ତା କି ଆଉ ଚାରି ପାଞ୍ଚବର୍ଷ ରହିଯାଇ ତା'ର ଭିତରେ ଗାର୍ହସ୍ଥ୍ୟ ଜୀବନ ପାଇଁ ଆବଶ୍ୟକ ଜ୍ଞାନ ଶ୍ରଦ୍ଧା ସହିତ ପ୍ରାପ୍ତ କରିନେଉ ।

ପନ୍ଦ ମଝିରେ ସଜାହୋଇଥିବା କୁସୁମକୁଞ୍ଜ ଭଳି କନ୍ୟା ପିଢ଼ା ଉପରେ ଆସି ବସିଗଲା । ଶେଷାଦ୍ରିର ଆଖିକୋଣରୁ ବାହାରୁଥିବା ଦୃଷ୍ଟି ଧାଡ଼ି ବାରମ୍ବାର ସେହି କୋମଳାଙ୍ଗୀ କନ୍ୟାର ମୁଖ-ମାଧୁରୀ ଆସ୍ୱାଦନ କରିବାକୁ ଲାଳାୟିତ ହେଉଥିଲେ । ଶେଷାଦ୍ରିଙ୍କୁ ମନେ ମନେ ହସ ମାଡ଼ିଲା । ଗୁରୁଜନମାନେ ବହୁତ କଥା କହନ୍ତି ।

କହନ୍ତି—ବାହାରର ସୌନ୍ଦର୍ଯ୍ୟ ଅପେକ୍ଷା ଭିତର ଗୁଣ ଅଧିକ ପ୍ରଧାନ; କିନ୍ତୁ ଆଖି ଆଗରେ ଦେଖାଯାଉଥିବା ଆକୃତିର ଉପେକ୍ଷା କରିବା ମଣିଷର ପ୍ରକୃତିବିରୁଦ୍ଧ। ହସିବା, ଗାଇବା, କଥା କହିବା, ଚାଲିବା, ଲାଜ କରିବା, କେବେ କେବେ ମଧୁର କୃତ୍ରିମ କ୍ରୋଧ ଦେଖାଇବା ଆଦି ହଜାର ଅଙ୍ଗ ଅଛି ଏହି ରୂପର। ଏହି ବିଭିନ୍ନ ସୂତାରେ ଗୁନ୍ଥାହୋଇଥିବା ଶୃଙ୍ଗାର ଝୁଲାରେ ଝୁଲିବା ଯୋଗ୍ୟ ଅଟେ—ମଣିଷର ରୂପ-ମାଧୁରୀ।

କିନ୍ତୁ ଏହି ସଂସାରରେ ସବୁ ସୁନ୍ଦର ବସ୍ତୁ ଆକର୍ଷଣୀୟ ହୋଇ ନ ଥାଏ। ଦେଖିବାକୁ ସୁନ୍ଦର କିନ୍ତୁ ଖାଇଲାବେଳକୁ ବେକାର, ଏପରି କେତେ ଦାନ୍ତ ଥାଏ ? କେତେ ଫୁଲ ଏପରି ଅଛି ଯାହା ଦେଖିବାକୁ ସୁନ୍ଦର; କିନ୍ତୁ ଗନ୍ଧରେ ନାକ ବନ୍ଦ ହୋଇଯିବ। ପଦ୍ମ-ଆଗରେ ଜୁଇର ସୌନ୍ଦର୍ଯ୍ୟ କଣ ? କିନ୍ତୁ ଜୁଇ ସୁଗନ୍ଧର ଖଣି। ନାଲି ଟହଟହ ସୌନ୍ଦର୍ଯ୍ୟରେ ଅଦ୍ୱିତୀୟ ମନ୍ଦାରକୁ କେହି ମୁଣ୍ଡରେ ଖୋଷି ବୁଲନ୍ତି ନାହିଁ। ପୂଜା-ପାଠରେ ବି ସେ ବିଶେଷ କାମରେ ଆସେ ନାହିଁ। ସ୍ତ୍ରୀଲୋକମାନଙ୍କର କେଶ ଏବଂ ନାରାୟଣଙ୍କ ଚରଣରେ ଆଡ଼ମ୍ବରହୀନ ମଲ୍ଲିକା ହିଁ ଗୌରବପୂର୍ଣ୍ଣ ସ୍ଥାନ ଅଧିକାର କରେ। ସେଥିପାଇଁ ଲୋକେ କହନ୍ତି, ସୌନ୍ଦର୍ଯ୍ୟ ଅପେକ୍ଷା ଗୁଣର ଶ୍ରେଷ୍ଠ ସ୍ଥାନ।

ଶେଷାଦ୍ରିଙ୍କ ଶୃଙ୍ଖଳାବଦ୍ଧ ବିଗୃହଧାରା ଗୋଟିଏ ପ୍ରସଙ୍ଗ ଉପର ଦେଇ ଯାଇ ନୂଆ ମୋଡ଼ ନେଲା। ତାଙ୍କୁ ବରବେଶ କରି ବିଦାକଲାବେଳେ ତା ମା'ର ଅଶ୍ରୁପୂର୍ଣ୍ଣ ମୁଖମଣ୍ଡଳ ତାର ହୃଦୟପଟ୍ଟରେ ଅଙ୍କିହୋଇଗଲା। ପୁଅର ବିବାହ ମା ପାଇଁ ଆନନ୍ଦର କଥା ହେବା ଉଚିତ। ତେବେ ଗୀତ ବେସୁରା ହୋଇଗଲେ ଯେମିତି ଖାପଛଡ଼ା ଲାଗେ, ସେମିତି ଏଥିରେ ଅଶ୍ରୁ କଣ ପାଇଁ ? ଗୋଟିଏ କଥା ହୋଇପାରେ—ପୁଅ ବାହାହେବା ମାନେ ମା ତାର କେତେଟା ଗୁରୁତ୍ୱ ଦାୟିତ୍ୱ ବୋହୂକୁ ସମର୍ପି ଦିଏ। ଏହି ଦାୟିତ୍ୱକୁ ବୋହୂ କେତେଦୂର ସମ୍ଭାଳି ପାରିବ ତାର ଜବାବ୍ କେବଳ ଭବିଷ୍ୟତ ଦେଇ ପାରିବ। ଏହି ସମ୍ପର୍କରେ ଲୋକେ ବିଗିବିଗ କହନ୍ତି ଯେ ସ୍ୱାମୀ କାମରୁ ଘରକୁ ଫେରିଲେ ସ୍ତ୍ରୀ ତାର ଧଡ଼ି ଦେଖେ ଆଉ ମା' ପୁଅର ପେଟ ଦେଖେ। ସ୍ତ୍ରୀର ଦୃଷ୍ଟି ସର୍ବଦା ସ୍ୱାମୀର ରୋଜଗାର ଉପରେ ଥାଏ; ଆଉ ମା ସବୁବେଳେ ପୁଅର ଆବଶ୍ୟକ ଜିନିଷ ଉପରେ ଧ୍ୟାନ ଦେଇଥାଏ। ସେ ଚାହେଁ ଥାଏ ତା ପୁଅ ସବୁଦିନେ ସୁଖରେ ଥାଉ। ସ୍ତ୍ରୀ ସବୁବେଳେ ଭାବୁଥାଏ ସେ ତା ସ୍ୱାମୀଠାରୁ କେତେ ସୁଖ ପାଉଛି। ଭର୍ତ୍ତୃହରି ମଧ୍ୟ ସହଧର୍ମିଣୀଙ୍କ ଗୁଣ ବର୍ଣ୍ଣନା କରି କହିଛନ୍ତି—"କାର୍ଯ୍ୟେଷୁ ଦାସୀ, କରଣେଷୁ ମନ୍ତ୍ରୀ"। ଏହିକଥାରୁ ମନେହେଉଛି ଯେ ଅନୁକୂଳ ଦାମ୍ପତ୍ୟଜୀବନ ଈଶ୍ୱରଙ୍କର କୃପାରୁ ପ୍ରାପ୍ତ ବରଦାନ।

ଶେଷାଦ୍ରି ଏହିପରି ଭାବନାସ୍ରୋତରେ ଭାସିଯାଉଥିଲାବେଳେ ପଣ୍ଡିତ ମହାଶୟ ସବୁ ବିଧି-ବିଧାନ ଶେଷ କରି ବାଜା ବଜାଇବାକୁ ଆଦେଶ ଦେଲେ।

ଅସଙ୍ଗତ କଥାବାର୍ତ୍ତା, ଅପ୍ରାସଙ୍ଗିକ ପରିହାସ ଏବଂ ଅଯାଚିତ ଆଦର-ସତ୍କାରରେ

ଶେଷାଦ୍ରିର ମନ ଶୁଖିଯାଇଥିଲା । ସେଦିନ ସନ୍ଧ୍ୟାରେ ସେ ଖୋଲାପବନ ସେବନ କରିବା ଅଭିପ୍ରାୟରେ ଗାଁଠାରୁ ଦୂରକୁ ବାହାରିଗଲା । ଦୌଡ଼ା-ଦୌଡ଼ି, କୋଳାହଳ-ପୂର୍ଣ୍ଣ ସଂସାର ଭିତରକୁ ଶେଷାଦ୍ରି ଯେତିକି ପ୍ରବେଶ କରୁଥିଲା ତା ମନ ସେତିକି ଅଶାନ୍ତ ହୋଇଉଠୁଥିଲା । ତ୍ୟାଗରାଜ କହିଥିଲେ, 'ଶାନ୍ତି ବିନା ସୁଖ ମିଳେନାହିଁ ।' ସଙ୍ଗୀତରେ ତାଙ୍କୁ ଶାନ୍ତି ମିଳିଥିଲା । ଶେଷାଦ୍ରିକୁ ବୋଧହୁଏ ଏକାନ୍ତ ରହିବାରେ ଶାନ୍ତି ମିଳି-ପାରେ । ବୁଲି ବୁଲି ଶେଷାଦ୍ରିର ମନ ପୁଣି ଭାବନାସ୍ରୋତରେ ଭାସିବାକୁ ଲାଗିଲା । ଜଣାନାହିଁ କାହିଁକି ଏହି ଲୌକିକ ଜଗତରେ ଆନନ୍ଦ ପାଇବାର ସମସ୍ତ ଚେଷ୍ଟାରେ କ୍ଳେଶର ଛଟା ଗୋଳେଇ ହୋଇ ରହିଛି । ସଂସାରରେ ସବୁଠୁ ଆନନ୍ଦଦାୟକ ବସ୍ତୁ ବିବାହ । ସୃଷ୍ଟିର ଆରମ୍ଭରୁ କମିକ ବିକାଶ ପାଇଥିବା ମାନବ ସମସ୍ୟାର ପ୍ରଥମ ପାହାଚ ଅଟେ ବିବାହ । ତିନି ମାସ ପୂର୍ବରୁ ତାର ବାହାଘର ଠିକ୍ ହୋଇଯାଇଥିଲା । ସେହିଦିନୁ ବର୍ଷାର ଟଟକା ପାଣିରେ ପ୍ରକୁଳ୍ପିତ ହୋଇ ଭରୁଥିବା ପୋଖରୀ ପରି ତାର ହୃଦୟ ଅବ୍ୟକ୍ତ ଆନନ୍ଦର ଭାବନାରେ ପ୍ଲାବିତ ହୋଇଯାଉଥିଲା । ପ୍ରଥମେ ସେ କଳ୍ପନା କରୁଥିଲା ଯେ ତାର ସ୍ୱପ୍ନର ସୁନ୍ଦରୀ ତାର ମାନସ-ଆକାଶରେ କ୍ଷଣକ ପାଇଁ ବିଜୁଳି ପରି ଚମକି ଯାଇ ଅଦୃଶ୍ୟ ହୋଇଯାଇଛି । ସେହି କଳ୍ପନା ବର୍ତ୍ତମାନ ସାକାର ହୋଇ ତାର ପ୍ରତୀକ୍ଷା କରି ବସିଛି କି ତା ହୃଦୟ-ବୀଣାରେ ଆନନ୍ଦମୟ ରାଗିଣୀ ବାଜୁଛି ଏବଂ ସେ ନିଜକୁ ଭୁଲିଯାଉଛି । ଏହିପରି ଆତ୍ମବିଭୋର ହୁଏ। ସାଙ୍ଗେ ସାଙ୍ଗେ ତା ମନରେ କେତେ କଥା ପ୍ରଶ୍ନଚିହ୍ନ ହୋଇ ଆଗରେ ଭାସିଯାଉଛି—ତାର ଜୀବନ-ସଙ୍ଗିନୀ ଏହି ଝିଅଟି କେମିତିଆ ? କେମିତି ଲାଗିବ ? ମା କହୁଛି ସେ ମୋଟା, ମାଣିକ, ଦୀପଶିଖା ପରି ତେଜୋମୟୀ । ତାର ବର୍ଣ୍ଣନାଦ୍ୱାରା ତା ଚେହେରା ତ ଆଗରେ ଦିଶି-ଯାଉନାହିଁ; କିନ୍ତୁ କୌଣସି ପର୍ବ-ପର୍ବାଣୀରେ ତିଆରି ହଉଥିବା ସୁସ୍ୱାଦୁ ଖାଦ୍ୟ ପରି ଜିଭରୁ ନାଳ ବୁହାଇବାର ଶକ୍ତି ଅଛି ସେଥିରେ ।

ବାସ୍ତବରେ ବୋଧହୁଏ ଅପେକ୍ଷା କରିବାରେ ସୁଖ-ଦୁଃଖ ଦୁଧ ଓ ପାଣି ପରି ମିଶିକରି ଅଛି । ମିଳନର କଳ୍ପନାରେ ସୁଖ ତ ଅଛି ଏବଂ ସେଥିରେ ବିଳମ୍ବ ଘଟୁଥିବାରୁ ଦୁଃଖ ମଧ୍ୟ ହଉଛି ।

ଯେ କୌଣସି ପ୍ରକାରେ ତିନି ମାସ ବିତିଗଲା; କିନ୍ତୁ ତାର ଗ୍ରହ ଏବେ ବି ବକ୍ର-ଗତିରେ ଅଛନ୍ତି ।

ବର୍ତ୍ତମାନ ତ ଅବସ୍ଥା ଏପରି ଯେ ଯଦି ସେ ହସୁଛି ତେବେ ସେ ହସରୁ ଖସି-ପଡ଼ୁଥିବା ମୋତିକୁ ସେ ସାଉଣ୍ଟି ପାରୁନାହିଁ । ତାର ଅଧରରୁ ଝରୁଥିବା ମଧୁ ସେ ଆସ୍ୱାଦନ କରି ପାରୁନାହିଁ । ସେ ଶୁଭ ଦିନ ପାଇଁ ତାକୁ ଆହୁରି ଷୋହଳଦିନ ଅପେକ୍ଷା କରିବାକୁ ପଡ଼ିବ, ଗୁରୁଜନମାନେ ଆଦେଶ ଦେଇଛନ୍ତି ।

ନଦୀବନ୍ଧ ଉପରେ ବସି ଶେଷାଦ୍ରି ସନ୍ଧ୍ୟାର ସୌନ୍ଦର୍ଯ୍ୟ ଉପଭୋଗ କରୁଥିଲା । ଆକାଶରେ ବାଦଲ, ଗଗନରେ ପକ୍ଷୀମାନେ ଏବଂ ପାଣିରେ ମାଛ ଯୋଡ଼ି ଯୋଡ଼ି ହୋଇ

ଆନନ୍ଦରେ ଘୂରିବୁଲୁଛନ୍ତି । ଶେଷାଦ୍ରି ଆଖି ବନ୍ଦ କରିଦେଲା । ନଈକୂଳେ ଗଛର ସଘନ ଶାଖାରେ ବସି ଆମ୍ବ ବଉଳ ଖାଇ ଖାଇ କୋଇଲଟିଏ ବସି ପଞ୍ଚମ ସ୍ୱରରେ ତାର ନୂଆ କରି ପାଇଥିବା ସାଥୀ ପ୍ରିୟାକୁ ଆହ୍ୱାନ କରୁଛି । ଶେଷାଦ୍ରି ତାର କାନ ବନ୍ଦ କରିଦେଲା ।

ପରେ ଶେଷାଦ୍ରି ଆଖି ଖୋଲି ଚାହିଁ ଦେଖିଲା ଯେ ପାହାଡ଼ ଚୂଡ଼ାରେ ବିଚରଣ କରୁଥିବା ମେଘଖଣ୍ଡ, ପଞ୍ଚ ଚନ୍ଦ୍ରକିରଣର ଶୋଭା ସନ୍ଧ୍ୟା ଅନ୍ଧକାର ମଧ୍ୟରେ ଝିଲମିଲ ହୋଇ ଉଠୁଛି ।

ଗାଁକୁ ଫେରିଲାବେଳେ ଶେଷାଦ୍ରି ବାଟ ଭୁଲିଗଲା । ଚୁନ୍ଦମୀ ରାତିର ଫିକା ଆଲୁଅରେ ବିଲର ହିଡ଼ ଓ ବାଙ୍କରୁ ସଙ୍କେତ ପାଇ ଯେତେବେଳେ ସେ ଘରେ ପହଞ୍ଚେ ସେତେବେଳକୁ ରାତି ନଅଟା ବାଜିଯାଇଥିଲା । ବରଯାତ୍ରୀମାନେ ଖାଇସାରି ତାଙ୍କ ପାଇଁ ଠିକଣା ହୋଇଥିବା ବାସସ୍ଥାନକୁ ଚାଲିଯାଇଥିଲେ । ସନ୍ଧ୍ୟା ପାଞ୍ଚଟା ପରେ ବର ମହାଶୟଙ୍କୁ ନ ପାଇ ଝିଅ ତରଫର ଲୋକମାନେ ବ୍ୟସ୍ତ ହୋଇ ଗାଁର କୋଣ କୋଣ ଖୋଜିବୁଲୁଥିଲେ । ବର୍ତ୍ତମାନ ବରଙ୍କୁ ଦେଖି ତାଙ୍କ ପିଣ୍ଡରେ ପ୍ରାଣ ପଶିଲା । ଝିଅବାଲା ଭାବିଥିଲେ କାଳେ ତାଙ୍କ ଆଡ଼ୁ ଶିଷ୍ଟାଚାରରେ କୌଣସି ତ୍ରୁଟି ରହିଯାଇଛି ବୋଲି ବର ଅସନ୍ତୁଷ୍ଟ ହୋଇ କୁଆଡ଼େ ଚାଲିଯାଇଛି । ସେଥିପାଇଁ ଶେଷାଦ୍ରିଙ୍କୁ ପାଇ ସେ ଦ୍ୱିଗୁଣ ଆଦର ଅଭ୍ୟର୍ଥନା ଆରମ୍ଭ କରିଦେଲେ । ଏହି ନବକଳ୍ପିତ ଅନୁନୟ ବିନୟର ବୋଝ ଶେଷାଦ୍ରିଙ୍କୁ ହଇରାଣ କରିଦେଉଥିଲା । ସେଥିପାଇଁ ସେ ଠିକ୍‌ଭାବେ ଖାଇ ବି ପାରିଲା ନାହିଁ । ନିୟମ ରକ୍ଷାକଲା ପରି ଅଳ୍ପ ଟିକେ ଖାଇ ଉଠିଗଲା । ଜୁଆଇଁର ରୁଷ୍ଟହେବାର ଯେଉଁ ଚିନ୍ତା ଘରବାଲାଙ୍କୁ ଆତଙ୍କିତ କରି ରଖିଥିଲା ତାହା ତାର ଖାଇବା ଢଙ୍ଗ ଦେଖି ଆହୁରି ବଢ଼ିଗଲା ।

"ଶୋଇବାର ବ୍ୟବସ୍ଥା କୋଉଠି କରାଯିବ ?" ଶେଷାଦ୍ରିଙ୍କୁ ତାର ଶଳା ପଚାରିଲା ।

"ଯୋଉଠି ହେଉ । କିନ୍ତୁ ଗୋଟିଏ ସର୍ତ୍ତ ଅଛି । ପାଖରେ ଲୋକ କଥାବାର୍ତ୍ତା ହେଉଥିଲେ ମୋର ନିଦ ହୁଏ ନାହିଁ । କୋଉଠି ପିମ୍ପୁଡ଼ି ଚାଲିଗଲେ ବି ମୋ ନିଦ ଭାଙ୍ଗିଯାଏ । ଭଲ ପବନ ହେଉଥିବ । ମୁଁ ଭାବୁଛି ବାରଣ୍ଡାରେ ଠିକ୍ ହେବ ।" ଶେଷାଦ୍ରି କହିଲା ।

"ନାହିଁ ଆଜ୍ଞା, ଆମ ଗାଁରେ ଥଣ୍ଡା ଟିକେ ବେଶୀ ପଡ଼େ । ଆପଣ ବୋଧହୁଏ ସହିପାରିବେ ନାହିଁ । ଆଉ ଗୋଟିଏ କଥା..."

ନିଜ ଶଳା କଥା ମଝିରେ ଚଡ଼ଉଠି ଶେଷାଦ୍ରି କହିଲା, "କିଛି ଚିନ୍ତା ନାହିଁ ଭାଇ ! ତୁମେ ସେଥିପାଇଁ ବ୍ୟସ୍ତ ହୁଅ ନାହିଁ । ମୁଁ ଯେମିତି ହେଉ ସମ୍ଭାଳି ନେବି ।"

ଦୁଇ ତିନି ଦିନ ହେବ ସେ ଶୋଇପାରିନଥିଲା । ସେଥିପାଇଁ ସେ ଭାବିଲା, ଏବେ ପଡ଼ୁ ପଡ଼ୁ ନିଦ ଆସିଯିବ; କିନ୍ତୁ ତାର ଆଶା ନିରାଶାରେ ପରିଣତ ହୋଇଗଲା । ଶଳାର କଥା ସମର୍ଥନ କଲା ପରି ଥଣ୍ଡା ପବନ ବୋହିବାକୁ ଆରମ୍ଭ ହୋଇଗଲା ।

ତା ଛଡ଼ା ମଶାମାନଙ୍କର ଉପଦ୍ରବ ବଡ଼ ଜୋରରେ ଚାଲିଲା । ଶେଷାଦ୍ରି ଗୁଦର ପାଇଁ ବାଛଣା ଉପର, ଚଉକିଆ ତଳ ସବୁ ଦରାଣ୍ଡି ଦେଖିଲା ଗୁଦର ନାହିଁ, ଖାଲି ଶେଜ ପରାହୋଇଛି ।

ସେତେବେଳେ ପ୍ରକୃତରେ ଶେଷାଦ୍ରିକୁ ରାଗ ଲାଗିଲା । ମୁଣ୍ଡରୁ ଗୋଡ଼ଯାଏ ଗୁଦର ଘୋଡ଼ି ହୋଇ ଶୋଇବା ଅଭ୍ୟାସ ତାର; ନ ହେଲେ ତାକୁ ନିଦ ଆସେ ନାହିଁ । ବୋଧହୁଏ ସେ ରାତରେ ଶୋଇବା ତା କପାଳରେ ଲେଖାନଥିଲା । ନ ହେଲେ ଏତେ ଶ୍ରଦ୍ଧାରେ ସବୁ କଥା ଦେଖାଶୁଣା କରୁଥିବା ଲୋକମାନେ ଗୁଦର ବିଷୟରେ ଉପେକ୍ଷା କାହିଁକି କରନ୍ତେ ?

ଗାମୁଛା ଖୋଲି ସେଇଥିରେ ଘୋଡ଼ିହେବାର ଚେଷ୍ଟା କଲା; କିନ୍ତୁ ସେ ଗୋଡ଼ଠାରୁ ମୁଣ୍ଡ ପର୍ଯ୍ୟନ୍ତ ପାଉନଥିଲା । ଗୋଡ଼ଆଡ଼କୁ ଟାଣିଲେ ମୁଣ୍ଡ ଫାଙ୍କା ପଡ଼ୁଥିଲା । ମୁଣ୍ଡଆଡ଼ ଘୋଡ଼େଇ ହେଲେ ଗୋଡ଼ ଖାଲି ପଡ଼ୁଥିଲା ।

ବର୍ତ୍ତମାନ ବାଧ୍ୟ ହୋଇ ଗୋଡ଼କୁ ପେଟରେ ଲଗାଇ, ହାତକୁ ଛାତି ଉପରେ ରଖି ମା' ଗର୍ଭରେ ଥିବା ଶିଶୁ ଭଳି ପଲଙ୍କ ଉପରେ ମୋଡ଼ମାଡ଼ି ହୋଇ ଶୋଇଗଲା ।

ସମୟ ଧୀରେ ଧୀରେ ବିତି ବଢି ଯାଉଥିଲା । ଶେଷାଦ୍ରିର ଆଖି ଟିକେ ଟିକେ ବନ୍ଦ ହୋଇ ଆସୁଥିଲା ।

ଅଧା ନିଦରୁ ସେ ହଠାତ୍ ଚମକି ଉଠିପଡ଼ିଲା । ତାକୁ ଲାଗିଲା ଯେପରି ତା ଦେହରେ କିଛି ନରମ ଜିନିଷ ଘୋଡ଼େଇ ଦିଆହେଉଛି । ଶେଷାଦ୍ରି ଆଖି ଖୋଲି ଦେଖିଲା ତ ଗାମୁଛାର 'ପରଦା' ପଛରୁ ପଲଙ୍କ ପାଖରେ ଗୋଟିଏ ଆକୃତି ଛିଡ଼ାହୋଇ ପରି ଦିଶୁଛି । ନିଜ ଉପରୁ ଘୋଡ଼ାହୋଇଥିବା ଲୁଗାକୁ ହଟାଇବାର ସଂପୂର୍ଣ୍ଣ ସଞ୍ଚାଳନ ଶକ୍ତି ତା'ଠାରେ ନଥିଲାରୁ ସେ ଧୀରେ ହଟାଉ ହଟାଉ ସେ ସ୍ପନ୍ଦନର ଆଭାସ ପାଇ ନିଜ ହାତରେ ଥିବା ଶାଲକୁ ସେହିପରି ସେହି ଅବସ୍ଥାରେ ପକାଇ ଦେଇ ସେ ଆକୃତି ଅନ୍ଧକାରରେ ଲୁଚିଯିବାକୁ ଆଗକୁ ଚାଲିଲା । ଶେଷାଦ୍ରି ଝଟ୍‌କିନା ହାତ ବଢ଼ାଇ ଜବରଦସ୍ତି ସେ ଆକୃତିକୁ ନିଜଆଡ଼କୁ ଟାଣିନବାର ଚେଷ୍ଟାକଲା ।

କିନ୍ତୁ ସେତେବେଳକୁ ସେ ଆକୃତି ହାତରୁ ଖସିଗଲା । କେବଳ ତାର ବେଣୀ ଶେଷାଦ୍ରି ହାତରେ ପଡ଼ିଗଲା —ତାହା ବି କ୍ଷଣ ଦୁଇକ୍ଷଣ ମଧ୍ୟରେ ହାତର ଅଙ୍ଗୁଳି ମଝିରୁ ବାହାରିଗଲା । ବେଣୀରେ ଗୁନ୍ଥା ହୋଇଥିବା ସେବତି ଫୁଲରୁ ଗୋଟିଏ ଶେଷାଦ୍ରି ହାତରେ ରହିଗଲା ।

ପାପୁଲିରେ ଶୋଭାପାଉଥିବା ସେହି ଫୁଲକୁ ଶେଷାଦ୍ରି ଦେଖୁଥିଲା । ଏ ଫୁଲ ନୁହେଁ—ନୂତନ ଆନନ୍ଦମୟ ଜୀବନର ଚିହ୍ନ, ପବିତ୍ର ପ୍ରେମର ପ୍ରମାଣ । ମନ ଦେଇ ମନ କିଣିବାର ଉପଯୁକ୍ତ ଅର୍ଦ୍ଧାଙ୍ଗିନୀ ପାଇବା ପାଇଁ ସେ ଯେଉଁ ତପସ୍ୟା କରଥିଲା, ତାର ଫଳସ୍ୱରୂପ ଇଏ ଈଶ୍ୱରଙ୍କର ବରଦାନ ।

ସେବତିଫୁଲର ମଧୁର ସୁଗନ୍ଧରେ ନିଜକୁ ଭୁଲି ଶାଲର ଉଷ୍ମତାରେ ଶେଷାଦ୍ରି ଅଳସ ଭାଙ୍ଗିଲା ।

ନିଦ୍ରବଟିକା ଖାଇବାର ଘଣ୍ଟାକରୁ ବେଶି ହୋଇଗଲାଣି; କିନ୍ତୁ ତାର କିଛି ପ୍ରଭାବ ଜଣା ପଡ଼ୁନାହିଁ । ବାରଟା ବେଳଯାଏ ବିଛଣାରେ ଏକର ସେକର ହୋଇ ଶେଷରେ ବାଧ୍ୟ ହୋଇ ବଟିକା ଖାଇଥିଲି । ଅତି କମ୍‌ରେ ବି ତିନି ଘଣ୍ଟା ଶୋଇ ନ ପଡ଼ିଲେ ତ ଖାଇବା ହଜମ ହେବ ନାହିଁ । ଖାଇବା ତ ଜୀର୍ଣ୍ଣ ହେବ ନାହିଁ; ଫଳରେ କାଲି ହଇରାଣ ହେବାକୁ ପଡ଼ିବ ଏବଂ ତା ପାଇଁ ଔଷଧ ଖାଇବାକୁ ପଡ଼ିବ । ସେଥିପାଇଁ ମୁଁ ଏଣିକି ନିଦ୍ରବଟିକା ଖାଇନେଲି ।

ଘରେ କେହି ନ ଥିବାରୁ ଭାବିଲି ଖୁବ୍ ଶୋଇପାରିବି । ଖରାବେଳେ ଆଖି ପଲକ ପକାଇଥିଲି କି ନାହିଁ ଡାକବାଲାର ଡାକ କାନ ଫାଟି ହୃଦୟରେ ପଶିଗଲା । ଶେଷରେ ଚିଠି ଖୋଲି ଦେଖିଲି—ବଲକୁ ମହିଳା-ମଣ୍ଡଳର ଚାନ୍ଦା ରସିଦ ବାହାରିଲା । ରାଗ କରି ସେ କାଗଜ ଚିରି ଅଳିଆଗଦାରେ ପକାଇ ଯାଇ ପୁଣି ଗଡ଼ିପଡ଼ିଲି । ହୃଦୟ ବର୍ତ୍ତମାନ ବି ଥରୁଛି । ପାଣି ପିଇବାର ଇଚ୍ଛା ହେଲା; କିନ୍ତୁ ଘରେ ପାଣି ଦେଲାବାଲା କିଏ ? ଆଳସ୍ୟରେ ଖଟର ବାଡ଼ରେ ମୁଣ୍ଡ ଡେରି ଶୋଇରହିଲି । କିନ୍ତୁ କିଛି ସମୟ ପରେ ଥରଥର କମିଗଲା । ପାଖରେ ଥିବା ରେଡ଼ିଓ ଟେବୁଲ୍ ଉପରୁ ଖବରକାଗଜ ଉଠାଇ ପଢ଼ିଲି । "ଆପୋଲୋ-ଏଗାର"ର ପୃଥିବୀ ଉପରେ ନିରାପଦ ପହଞ୍ଚିବା ଖବର ଶୁଣିଲି ପରେ ମନଟା ଆଶ୍ୱସ୍ତ ହେଲା । ଯେବେଠୁଁ ଚନ୍ଦ୍ରମଣ୍ଡଳ ଆଡ଼େ ଏମାନଙ୍କ ଯାତ୍ରା ଆରମ୍ଭ ହୋଇଛି ସେବେଠୁଁ କେତେ ଚିନ୍ତା ମନକୁ ବ୍ୟାକୁଳ କରିପକାଉଥିଲା । ସେମାନେ ପୃଥିବୀର ଆବରଣ ବାହାରେ ପହଞ୍ଚିଲେଣି କି ନାହିଁ, ଚନ୍ଦ୍ରଙ୍କ ଚାରିପାଖେ ତାଙ୍କର ପରିକ୍ରମା ଆରମ୍ଭ ହେଲାଣି କି ନାହିଁ, ଏଲ୍. ଏମ୍.ର ସବୁ ବିଭାଗ ଠିକ୍‌ଠାକ୍ ଅଛି କି ନାହିଁ, ଏଲ୍. ଏମ୍. ଚନ୍ଦ୍ରମଣ୍ଡଳ ଉପରେ ଓହ୍ଲାଇଲାଣି କି ନାହିଁ, ଏହି ଭାବନା ମନକୁ ସବୁକ୍ଷଣରେ ବ୍ୟତିବ୍ୟସ୍ତ କରିପକାଉଥିଲା । ସକାଳୁ ଖବରକାଗଜ ଏବଂ ସନ୍ଧ୍ୟାରେ ରେଡ଼ିଓ ସମାଚାରର ପ୍ରତୀକ୍ଷା—ସାରା ରାତି ସେହି ଚିନ୍ତା—ଆଉ କୋଡ଼ିଏ ତାରିଖରେ ତ ଜାଣେ, ରାତି ପକାଇଲି ପରି ନିଦ ଆସିଲା ନାହିଁ । ଏଲ୍. ଏମ୍. ଚନ୍ଦ୍ରମଣ୍ଡଳରୁ ଉପରକୁ ଉଠିଲା କି ନାହିଁ, 'କୋଲମ୍ବିୟା' ସହିତ ଯୋଗସୂତ୍ର ହେଲା କି ନାହିଁ, ଏହି ଚିନ୍ତା ଥିଲା । ଶେଷରେ ଅଧରାତିରେ ଅଧୀର ହୋଇ ସମାଚାରପତ୍ର କାର୍ଯ୍ୟାଳୟକୁ ଫୋନ କଲି ତ ଖବର ମିଳିଲା ଯେ ସେ ବର୍ତ୍ତମାନ 'କୋଲମ୍ବିୟା'ରେ ପହଞ୍ଚିବାକୁ ଯାଉଛି । ଏ ଖବର ଶୁଣି କିଛି ସମୟ ପାଇଁ ଆଶ୍ୱସ୍ତ ହେଲି ।

ପୁଣି ଭାବନା ଜାଗିଉଠିଲା । ଫେରେ ଫେରିଆସି ଭୂମଣ୍ଡଳ ପର୍ଯ୍ୟନ୍ତ ପହଞ୍ଚିବାର ଶକ୍ତି ତା'ଠାରେ ଅଛି କି ନାହିଁ, ଏହି ଚିନ୍ତା ମନକୁ ବ୍ୟସ୍ତ କରିପକାଇଲା । ଏହି ସବୁ

ବ୍ୟସ୍ତତା କାହିଁକି ? ଏ ସବୁ କଥାରେ ମୋର କଣ ସମ୍ବନ୍ଧ ? ମନକୁ ବୁଝାଇବାକୁ ଲକ୍ଷ ଚେଷ୍ଟା କଲି । କିନ୍ତୁ ଦୁନିଆର ସବୁ ସମସ୍ୟା ମୋର ନିଜ ସମସ୍ୟା ହୋଇଉଠିଲା । ଫଳ ସେଇଥି ଯେ ନିଦ ଆସିଲାଇ ନାହିଁ । 'ଆପୋଲୋ' କାଣ୍ଡ ଶେଷ ହୋଇଛି କି ନାହିଁ, ରାଷ୍ଟ୍ରପତିଙ୍କ ସମସ୍ୟା ଜାଗିଉଠିଲା । ରାତି ସାରା ମୁଁ ଇନ୍ଦିରା ଗାନ୍ଧି ଏବଂ ନିଜଲିଙ୍ଗପ୍ପାଙ୍କ ବିଷୟରେ ଭାବୁଥିଲି ।

ଦିନଯାକ ପୁଅଠାରୁ ଛୋଟକୁ ଅନାଇ ଅନାଇ ସମୟ କଟିଯାଏ । ଟେରେଷେଇ ଘରେ କାମ କଲାବେଳେ ଏବଂ ଆରାମଚୌକିରେ ବସିଥିବା ସମୟରେ ପ୍ରତ୍ୟେକ ମୁହୂର୍ତ୍ତରେ ସେମାନଙ୍କ କଥା ଭାବୁଥାଏ । ସେ ତ ସବୁବେଳେ ନିଜ ପରିବାରର ଚିନ୍ତାରେ ବୁଡ଼ିରହିଥିବେ, ତାଙ୍କର ବାପା-ମା'ଙ୍କ କଥା ଭାବିବାକୁ ବେଳ କାହିଁ ? କେବେ କେବେ ଭାବୁଛି କି ଯାଇ ପୁଅ ପାଖରେ ରହିବ । କିନ୍ତୁ ଏ କଥା ତାଙ୍କର ପସନ୍ଦ ନୁହେଁ । ସେମାନଙ୍କର ସ୍ୱାଧୀନତାରେ ଆମେ ବାଧା ଦେବା ଅନୁଚିତ । ସେମାନଙ୍କର ଚାଲି-ଚଳନ ଅଲଗା, ସେମାନଙ୍କର ଚିନ୍ତାଧାରା ଅଲଗା । ତାଙ୍କ ସାଙ୍ଗରେ ଆମ ବିଚାରଧାରା ମେଳ ଖାଇବ ନାହିଁ । ଆମର ଏଇଠି ରହିବା ଭଲ—ଏହିପରି ସେ ଲମ୍ବା ବ୍ୟାଖ୍ୟାନ ଦେବାକୁ ଲାଗିଯାଆନ୍ତି । ତାଙ୍କର କିଛି ଚିନ୍ତା ନାହିଁ । ସେ ତ' 'ରିଟାୟର' ହୋଇସାରିଛନ୍ତି । ଘରଭଡ଼ା ମିଳେ । ପୁଅ କେବେ କେବେ ପଇସା ପଠାଏ । ମନ ହେଲେ କିଛି ଲେଖାଲେଖି କରିବାକୁ ବସିଯାଆନ୍ତି—ପତ୍ର-ପତ୍ରିକାମାନଙ୍କରେ ଲେଖା ବା କେଉଁ ସଭା-ସମାରୋହ ପାଇଁ ଭାଷଣ ଲେଖିବାରେ ବ୍ୟସ୍ତ ରହିଯାଆନ୍ତି । ଦିନରେ କାହା ସହିତ ସାକ୍ଷାତ କରିବାକୁ ଯାଆନ୍ତି । ନ ହେଲେ ବସି-ବସି ବଡ଼ ମନଦେଇ କିଛି ଲେଖୁଥାଆନ୍ତି । କିନ୍ତୁ ହଇରାଣ ତ ମୁଁ ହେଉଛି; କାହିଁକି ନା—ନା ମୁଁ ରୋଷେଇ ଘର କାମ ଏକାକିଆ ସମ୍ଭାଳି ପାରୁଛି ନା ଖାଲି ବସିବାକୁ ମନ ହେଉଛି । ସେଥିପାଇଁ ବାଜେ ବାଜେ କଥାରେ ବ୍ୟସ୍ତ ହୋଇପଡ଼ୁଛି ।

ଯେତେବେଳେ ମୁଁ ଆରାମରେ ଶୋଇପାରୁଥିଲି, ସେତେବେଳେ ମତେ ଘରେ କେହି ଶୁଆଇ ଦେଲେନାହିଁ । ଏବେ ବି ମୁଁ ଆରାମରେ ଶୋଇପାରିଲି ନାହିଁ । ଯେତେବେଳେ ମୁଁ ଏକଦମ ଛୋଟ ଥିଲି ସେତେବେଳ କଥା ତ ମୋର ମନେ ନାହିଁ । କିନ୍ତୁ ଯେବେଠାରୁ ମୋର ହୋସ ପାଇଲିଣି ମୁଁ ଦେଖିଆସୁଛି । ପ୍ରଥମ ଶ୍ରେଣୀରେ ପଢ଼ିଲାବେଳେ ମଧ୍ୟ ମତେ ଗରାର ନିଦରୁ ଉଠାଇ ମା' କହୁଥିଲା "ଉଠ, ଉଠୁ, ସ୍କୁଲ ଯିବୁ ପରା, ଜଲ୍‌ଦି ତିଆର ହୋଇଯା ।" ମୋର ମା ବଡ଼ ଧର୍ମପରାୟଣା ଥିଲା, ଏଥିପାଇଁ ରୋଷେଇ କାମ ଆରମ୍ଭ କରିବା ପୂର୍ବରୁ ମୋର ଗାଧୁଆ ପାଧୁଆ, ସାଜ-ସଜ୍ଜା ସବୁ କାମ ଶେଷ କରିବାକୁ ଚାହୁଁଥିଲା । ସେଥିପାଇଁ ସୂର୍ଯ୍ୟୋଦୟ ପୂର୍ବରୁ ମତେ ଉଠାଉଥିଲା । ଖରାଦିନେ ରାତିରେ ନିଦ ଶୀଘ୍ର ହୁଏ ନାହିଁ ଏବଂ ସକାଳେ ଜଲ୍‌ଦି ନିଦ ବି ଭାଙ୍ଗେ ନାହିଁ । କଣାନାହିଁ ଏତେ ତରତର କାହିଁପାଇଁ । ମା ମୋ ମୁହଁରେ ପାଣିଛିଟିକା ମାରି ମତେ ଉଠାଇ ଦେଉଥିଲା । ରବିବାର ଦିନ ଘଣ୍ଟି-

ମାଜି ହୋଇ, ତେଲ ହଳଦୀ ଲଗାଇ ଗାଧୋଇବାର ଯେଉଁ କାଣ୍ଡ-କାରଖାନା ଥାଏ, ସେଥିପାଇଁ ଅନ୍ତତଃ ସେ ଦିନ ବି ଡେରିଯାଏ ଶୋଇ ହୁଏ ନାହିଁ । ଗରମ ଛୁଟି ଆଗରୁ ଯେତେବେଳେ ସକାଳୁ ସକାଳୁ ସ୍କୁଲ ଯିବାକୁ ପଡ଼େ ସେତେବେଳେ ମନେ-ହୁଏ ନିଦୁଆ ନିଦୁଆ ଆଖିରେ ଯାଇ ମୁଁ ସ୍କୁଲରେ ବସୁଛି । ପରୀକ୍ଷା ସମୟରେ ବହି ହାତରେ ନେଇ ନେଇ ମତେ ନିଦ ଆସିଯାଏ । କାଳେ ପଢ଼ା ଛାଡ଼ି ମୁଁ ଶୋଇପଡ଼ିବି ଏହି ଭୟରେ ବାପା ମୋର ପାଖରେ ବସି ପଢ଼ାଉଥିଲେ । ଭିତରୁ ହାଇ ଉପରେ ହାଇ ଉଠିଆସୁଥିଲେ ମଧ୍ୟ ତାକୁ ଭିତରେ ଭିତରେ ଚପି ରଖି ବାଧ୍ୟ ହୋଇ ବସି ପଢ଼ିବାକୁ ପଡ଼ୁଥିଲା । ପୁଣି ସକାଳ ହେଉ ନ ହେଉଣୁ ମତେ ପଢ଼ିବାକୁ ଉଠାଇ ଦେଉଥିଲେ । ଛୁଟି ହେଲେ ଶୋଇବି, ଏହି ଆଶାରେ ପରୀକ୍ଷା ଦିନଗୁଡ଼ିକ ଯେକୌଣସି ପ୍ରକାରେ କଟାଇଦେଉଥିଲି । କେଜାଣି କଣ ହେଉଥିଲା କି କାହାର ଅଭିଶାପ ପଡ଼ୁଥିଲା ଛୁଟିରେ ଲକ୍ଷ ଚେଷ୍ଟା ସତ୍ତ୍ୱେ ନିଦ ହେଉ ନ ଥିଲା । ପରୀକ୍ଷାବେଳେ ବହି ପଢ଼ୁ ପଢ଼ୁ ନିଦ ଆସିଯାଉଥିଲା; କିନ୍ତୁ ଛୁଟି ବେଳେ ପତ୍ରିକା ଏବଂ ଉପନ୍ୟାସ ପଢ଼ିବାରେ ଜଣା-ପଡ଼ୁ ନ ଥିଲା ସମୟ କିପରି ଗଳିଯାଉଛି । ମା ତ ମତେ ବରାବର ଗାଳି ଦେଉଥିଲା "ବର୍ତ୍ତମାନ ଶୋଇପଡ଼ ଝିଅ, ଅଧରାତି ଯାଏ କଣ ପଢ଼ୁଛୁ ?" କଲେଜପଢ଼ାର ଶେଷ ବର୍ଷରେ ମୁଁ ନିଶ୍ଚୟ କରି ଏହା ଠିକ୍ କରିଥିଲି ଯେ ଆଉ ଏ ଜନ୍ମରେ ପରୀକ୍ଷାର ନାଁ ନେବାର ନାହିଁ ଏବଂ ମୁଁ ଆରାମରେ ପ୍ରତିଦିନ ଯେତେ ଇଚ୍ଛେ ସେତେ ଶୋଇବି । ଘରେ ଭାଇ-ଭଉଣୀଙ୍କୁ ମୁଁ ଦେଖେ ନଅଟା ବାଜୁ ନ ବାଜୁଣୁ କବାଟ ବନ୍ଦ କରି ଶୋଇ-ଯାଆନ୍ତି । ସେତେବେଳେ ମୋ ପାଇଁ ଅପରିଚିତ ତାଙ୍କର ଆନନ୍ଦର କଳ୍ପନା ମାନେ ମୋ ମନରେ ଆଲୋଡ଼ନ ସୃଷ୍ଟି କରୁଥିଲା । ମୁଁ ଠିକ୍ କରି ନେଇଥିଲି ଯେ ମୁଁ ମଧ୍ୟ ଏହି ସମୟରେ ବିବାହ କରି ସବୁ ଦିନ ଆରାମରେ ଶୋଇବି । ଏପରି ଉଲ୍ଲାସମୟ ଜୀବନ ପାଇବି ଯେଉଁଥିରେ ନା ଥିବ ପରୀକ୍ଷାର ସଙ୍କଟ ନା ନିଦରେ କିଛି ବାଧା ପଡ଼ିବ ।

ବିବାହ ହେଲା; କିନ୍ତୁ ଜୀବନ ତ ସେମିତି ନ ଥିଲା ଯେମିତି ମୁଁ ଭାବିଥିଲି । ସକାଳୁ ଯାହାନ୍ତାରୁ ଉଠିବାକୁ ପଡ଼ୁଥିଲା । ଅଧରାତି ଯାଏ ପ୍ରେମର ଦୁନିଆରେ ବିଚରଣ କରି ହାଲିଆ ହୋଇ ଶୋଉ ଶୋଉ ସକାଳୁ ଦୁଧବାଲାର ସ୍ୱରରୁ ମତେ ଯମରାଜାଙ୍କର ଆକାରର ଆଭାସ ଜଣାଯାଉଥିଲା । ଅନିଦ୍ରା ଆଖିରେ ହିଁ ଉଠିପଡ଼ିବା, ଦାନ୍ତଘଷା-ଗାଧୁଆ ଆଦି ସାରି ନାଇ କଫିର କାର୍ଯ୍ୟକ୍ରମ ଆରମ୍ଭ କରିବା, ଚାକରାଣୀର ଆସିବା ଯିବା, ଖାଇବା ତିଆରି କରି 'ଅଫିସ'କୁ ପଠାଇବା, ଶେଷରେ ଘର କାମଦାମ ସାରି ଆରାମଚୌକିରେ ବସୁ ବସୁ ଏଗାରଟା ବାଜିଯାଏ । ସକାଳୁ ମତେ ପ୍ରତୀକ୍ଷା କରୁଥିବା ସମ୍ବାଦପତ୍ରଟି ଧରୁ ଧରୁ ଆଖି ମାଡ଼ିହୋଇ ଆସେ । ଆଖି ବନ୍ଦ ହୁଏ ନ ହୁଏଣୁ ପୋଷ୍ଟମ୍ୟାନର ଡାକ ବା ପରିବାବାଲାର ଡାକ ବନ୍ଦ ଆଖି ପତାକୁ ଖୋଲିଦେଉଥିଲା ବା ପଡ଼ିଶାଘରର ପିଲା ମଜାରେ ଆସି ଘଣ୍ଟି ବଜାଇ ଦିଅନ୍ତି । କିଏ ଆସିଥିବ ଭାବି

କବାଟ ଫିଟାଇ ଦେଖେ ତ କେହି ଦିଶନ୍ତି ନାହିଁ । କିନ୍ତୁ ଦୂରରୁ ପିଲାଙ୍କର ଖିଲ୍ ଖିଲ୍ ହସ ଶୁଣାଯାଏ ଯାହା ।

ପୁଣି ଦି'ପହରରେ ସେ ଖାଇବାକୁ ଆସନ୍ତି । ତାଙ୍କୁ ବିଦାକରି ଫେରେ କେଉଁ ପତ୍ରିକା ବା ଉପନ୍ୟାସ ହାତରେ ନେଇ ନେଇ ଶୁଆଇଯାଇଥିବା ନିଦ ବଡ଼ ଆଶାରେ ଫେରିଆସେ । ଏତିକିବେଳେ "ମା ସାଆନ୍ତାଣୀ" ଚାକରାଣୀର କର୍କଶ ମଇଁଷିଆ ରଡ଼ି ଶୁଣାଯାଏ; ଯେପରି ମୋର ଶୋଇଯିବାଟା ତାର ପସନ୍ଦ ନୁହେଁ । ଫେରେ ଉପରଓଳି ଜଳଖିଆର ପ୍ରବନ୍ଧ, ତା ପରେ ରୋଷେଇ । ରାତିରେ ଫେରେ ସେହି ପ୍ରଣୟକାଣ୍ଡ ଏବଂ ଅଧା ନିଦ । ଯେମିତି ଆମର ପ୍ରେମର ଉଷ୍ମତା ଟିକେ ଶିଥିଳ ପଡ଼ିଯାଉଥିଲା ତ ବିଛଣା ସେତିକିବେଳେ ସକ୍ରିୟ ହୋଇଉଠୁଥିଲା । ସେ ଦିନସାରା ଆଶ୍ରମରେ ଶୁଏ । ସନ୍ଧ୍ୟାବେଳେ ଆମ ସାଙ୍ଗରେ ଖେଳାଖେଳି କରି ରାତିରେ ଦୁଧ ପିଇ ପିଇ ଶୋଇଯାଏ । କୁକୁଡ଼ାଡ଼ାକରେ ପ୍ରଭାତ ହେବା ପୂର୍ବରୁ ତାର ନିଦ ଭାଙ୍ଗିଯାଏ ଏବଂ ସେ 'ଉଁ ଆଁ' କରି ତାର ଅପୂର୍ବ ଆନନ୍ଦ ପ୍ରକଟ କରିବା ଆରମ୍ଭ କରିଦିଏ । ଯଦି ମୁଁ ତା ଆନନ୍ଦରେ ଭାଗ ନ ନିଏ ତ ଏକଦମ ଜୋରରେ କାନ୍ଦି ଚିତ୍କାର କରି ବ୍ୟତିବ୍ୟସ୍ତ କରି ପକାଉଥିଲା । ଏଥିପାଇଁ ତାର ଯୋଗୁ ଚାରିଟା ବେଳୁ ଆଲୁଅ ଲଗାଇ ତାକୁ କଥା କହି, 'ଧୋରେ ବାଇଆ ଧୋ' ଗୀତ ବୋଲି ତାକୁ ବୁଝାଇବା ଆବଶ୍ୟକ ହେଉଥିଲା । ସକାଳେ ତାକୁ ଗାଧୋଇ ଦେଇ, ଦୁଧ ପିଆଇ, ସ୍ନୋ-ପାଉଡ଼ର ଲଗାଇ ସଜାଇ ଦୋଳିରେ ଶୁଆଇ ଦେଉଥିଲି ତ ସେ ଆରାମରେ ଶୋଇପଡ଼ି ପ୍ରାୟ ସାଢ଼େ ଦଶଟା ବେଳକୁ ଉଠେ; ସେତେବେଳେ କି ମୁଁ ଘରର କାମ-ଧାମ ସାରି ଟିକେ ସମସ୍ତ ଆରାମରେ ବସିବାର ଯୋଗାଡ଼ରେ ଥାଏ । ମୁଁ ତ ଚାହୁଁଥିଲି ତା ସାଙ୍ଗରେ ଖେଳିବାକୁ ଏବଂ ତାକୁ ଗେହ୍ଲା ଆଦର କରି ତାର ମନ ଭୁଲାଇବାକୁ; କିନ୍ତୁ ନିଦ ମୋ ଉପରେ ଆକ୍ରମଣ କରିଦେଉଥିଲା । ତାର ପାଖରେ ଗଡ଼ିପଡ଼ି ମୁଁ କୌଣସି ପ୍ରକାରେ ଶୋଇଯିବା ପାଇଁ ଚେଷ୍ଟା କରେ; କିନ୍ତୁ ସେ ମୋ ଲୁଗାକାନି ହଲାଇ ନିଜ ଆଡ଼କୁ ଟାଣେ, ବାଳକୁ ମୁଠାରେ ଟାଣିନିଏ, ତାର ଟିକି ଟିକି ଗୋଡ଼ରେ ମୋ ପେଟ ଉପରେ ବାଡ଼ାଏ ଏବଂ ମୋର ନିଦ ଖରାପ କରିବାପାଇଁ ଯାହା କିଛି ହୋଇପାରିବ, ସବୁ କରେ । ସେ ଟିକେ ବଡ଼ ହୋଇଗଲାରୁ ମଧ୍ୟ ଶୋଇବାର ସୁଯୋଗ ମିଳିଲା ନାହିଁ; କାରଣ ତାର ପଢ଼ାପଢ଼ି ଆରମ୍ଭ ହୋଇଗଲା । ସକାଳୁ ଉଠାଇ ତାକୁ ସ୍କୁଲ ପଠାଇବା ପାଇଁ ମତେ ବି ସକାଳୁ ଉଠି ତାର ବନ୍ଦୋବସ୍ତ କରିବାକୁ ପଡୁଥିଲା । ସେ ଛଡ଼ା ପେଟରେ ଆଉ ଗୋଟିଏ କୁନିପିଲା ଚଳ-ପ୍ରଳ କରିବା ଆରମ୍ଭ କରିଥିଲା । ଏହିପରି ଘରେ ଦିନକୁ ଦିନ କାମ ବଢ଼ିଚାଲିବାରୁ ଶୋଇବାର ଅବସର ମିଳିଲା ନାହିଁ ।

ଯେମିତି ଯେମିତି ପିଲା ବଡ଼ ହେବାକୁ ଲାଗିଲେ, ତାଙ୍କର ଚାଲିଚଳନ ଏବଂ ଭବିଷ୍ୟତ ଦେଖାଶୁଣା କରିବାର ଭାର ବି ବଢ଼ି ଚାଲିଲା; ଯାହା କି ମୋ ପାଇଁ ପିଲାଦିନେ ପରୀକ୍ଷା ପାଇଁ ବ୍ୟସ୍ତତାଠାରୁ ଅଧିକ ମନେହେଲା । ସର୍ବଦା ପିଲାଙ୍କର ଚିନ୍ତା ଲାଗି-

ରହିଥାଏ । କେଉଁ ଦିନ ତାଙ୍କର କଲେଜରୁ ଫେରୁ ଫେରୁ ଡେରି ହୋଇଗଲେ ଚିନ୍ତା, ତାଙ୍କର ଦେହ ଖରାପ ହୋଇଗଲେ ତ ବ୍ୟସ୍ତ । ପୁଅ 'ଫାଷ୍ଟ ଡିଭିଜନ'ରେ ପାସ୍‌କଲୁ, ଝିଅ କେଉଁ ଭଲ ଘରେ କୋହ୍ନୁ ହେଉ, ପୁଅକୁ ଭଲ ଚାକିରି ମିଳୁ, ବିଭାଘର ପାଇଁ ପଇସା କୋଉଠୁ ଆସିବ, ଝିଅ କେମିତି ଶାଶୁଘରେ କାମ ସମ୍ଭାଳି ପାରିବ କି ନାହିଁ—ଏହିପରି ସବୁବେଳେ କିଛି ନା କିଛି ଚିନ୍ତା ଲାଗିରହିଥାଏ । ଏବେ ବାହାହବା ପରେ ମୋ ପୁଅ ଆଉ ଆଗଭଳି ନାହିଁ । ସେ ମୋଠାରୁ ଦୂରେଇ ଯାଉଛି, ଏହା ଭାବି ମୁଁ ବ୍ୟସ୍ତ ହୋଇଉଠୁଛି । ଏହା ପରେ ପୁଣି ବ୍ୟସ୍ତ ଲାଗୁଛି ସେ ବୋହୂର ପିଲାପିଲି ହବାକୁ ନାହାନ୍ତି । ଯଦି ମୁଁ ବେମାର ପଡ଼ିଯାଏ ତ ମତେ ଦେଖାଶୁଣା କରିବାକୁ କିଏ ଅଛି ? ଏ ବୟସରେ ମଧ୍ୟ ସେ ମୋ ସୁଖଦୁଃଖ ବିଷୟରେ କିଛି ଭାବନ୍ତି ବି ନାହିଁ । ଏତେ ଚିନ୍ତା, ବ୍ୟସ୍ତତା ଭିତରେ ନିଦ କିପରି ଆସିବ ?

ସବୁ ପିଲା ବଡ଼ ହୋଇ ନିଜ ନିଜ ପରିବାର ନିଜେ ସମ୍ଭାଳୁଛନ୍ତି । ତାଙ୍କର ପିଲା ହେଉ ବା ନ ହେଉ ତାଙ୍କ ନିଜ ବୋଝ ସେ ନିଜେ ଉଠାଉଛନ୍ତି । ଏଠି ତ ଆମେ ଦୁଇ ପ୍ରାଣୀ ହିଁ ଅଛୁ । ବେଳେବେଳେ ସେ କହନ୍ତି, "ବର୍ତ୍ତମାନ ଆମର ତ ଆଉ କିଛି ସମସ୍ୟା ନାହିଁ । ସମୟ ଅନୁସାରେ ଖିଆପିଆ କରି ଶୋଇପଡ । ନାହିଁ ତ ରାମ ନାମ ସ୍ମରଣ କରି ମଜାରେ ରୁହ ।" ରାମନାମ ସ୍ମରଣ ମୁଁ କେତେବେଳଯାଏ ବସି କରୁଥିବି ? ଯଦି ମୁଁ ରାମନାମ ଶବ୍ଦ ଉଚ୍ଚ ସ୍ୱରରେ ଉଚ୍ଚାରଣ କରିଲାଗିବି ତ ଶୁଣିଲାବାଲା ମତେ ପାଗଳ ଭାବିବେ । ଯଦି ମୁଁ ମନେ ମନେ ମୌନବାଚନ କରେ ତେବେ ମୋର ଡାକ ରାମଙ୍କ ପାଖରେ ପହଞ୍ଚିବ କି ନାହିଁ ଏଥିରେ ବି ସନ୍ଦେହ ଅଛି । ଯଦି ତାଙ୍କ ଯାଏ ମୋର ଡାକ ପହଞ୍ଚି ପାରିବ ନାହିଁ ତ ଏତେ ପରିଶ୍ରମ କୋଉଥି ପାଇଁ ? ସ୍ବାଇଡ଼ା ସେ କାମରେ ଶୋଇବାର କିଛି ସୁବିଧା ମତେ ଜଣାଯାଉ ନ ଥିଲା, ଯାହା କି ମୋ ପାଇଁ ଅତି ଆବଶ୍ୟକୀୟ ଥିଲା । ରାମନାମ କରୁ କରୁ ମୋର ଆଖି ଭାରି ହୋଇ ଆସିଲା; କିନ୍ତୁ ପଲକ ଟିକେ ବି ପଡ଼ିଲା ନାହିଁ ।

କେତେବେଳେ କେତେବେଳେ ବା ସମୟ କାଟିବା ପାଇଁ ସମ୍ବାଦପତ୍ରରେ ଛପା ହୋଇଥିବା ଖବରଗୁଡ଼ିକ ବିଷୟରେ ଚିନ୍ତା କରେ । ଫେରେ ସେହି 'ଆପୋଲୋ ଏଗାର', ରାଷ୍ଟ୍ରପତି, ତେଲେଙ୍ଗାନା ଇତ୍ୟାଦି ଇତ୍ୟାଦି; ଆଉ ନିଦ ଆସେ ନାହିଁ । କେତେବେଳେ ଭାବେ, ପିଲାମାନେ ବଡ଼ ହୋଇଗଲେଣି । ସମସ୍ତଙ୍କର ନିଜ ନିଜର ପରିବାର ମଧ୍ୟ ହୋଇଗଲେଣି, ମୁଁ ନିଶ୍ଚିନ୍ତ ହୋଇଯିବି । କିନ୍ତୁ ମମତା ଏବଂ ମାୟାର ଏ ବନ୍ଧନ ଛାଡ଼େ ନାହିଁ । ମନକୁ ସର୍ବଦା ସେହିମାନଙ୍କ କଥା ସ୍ମରଣ ଆସେ, ସେଇମାନଙ୍କ କଥା ମୁଁ ଭାବିବାରେ ଲାଗିଯାଏ ।

କିନ୍ତୁ ନିଦ ତ ଆସେ ନାହିଁ ।

କେଉଁ ଦିନ ମୁଁ ଆରାମରେ ମନପୁରା କରି ଶୋଇପାରିଛି, ଏପରି ତ ମୋର ମନେପଡ଼ୁନାହିଁ । ଜୀବନସାରା ନିଦ ପାଇଁ ବ୍ୟାକୁଳ ହୋଇ ରହିଲି । କରି ଭଗବାନ

ମତେ ଜୀବନରେ ଥରେ ଆରାମରେ ଶୋଇବା ପାଇଁ ବରଦାନ ଦେଇପାରିବେ ନାହିଁ । "ମତେ ଉଠାଅ ନାହିଁ" ଲେଖା 'ବୋର୍ଡ଼' ଲଗାଇ ଶୋଇବାର ଚେଷ୍ଟା-କଲେ ବି ଫୋନ୍‌ର ଘଣ୍ଟି ବାଜିବ ବା ପଡ଼ୋଶୀଘର ପିଲା ଖବରକାଗଜ ନେବା ପାଇଁ ଆସିବ ବା ଫେରେ ପରିବାବାଲା ବା ଖବରକାଗଜବାଲା ଆସିବ । ରାତିରେ ପଡ଼ୋଶୀଘରେ କେଉଁ ପିଲା କାନ୍ଦିବାରେ ବା କୁକୁରଙ୍କର ଭୋବାଳରେ ନିଦ ଚୌପଟ ହୋଇଯିବ ।

ବର୍ତ୍ତମାନ ଦୁଇ ଘଣ୍ଟା ପରେ କୁକୁଡ଼ା ପ୍ରଭାତର ଘୋଷଣା କରିଦେବ । ଅତି କମ୍‌ରେ ଦୁଇଘଣ୍ଟା ଶୋଇ ନ ପାରିଲେ ତ ସାରା ଘର ଅଡ଼ୁଆ-ଝଡ଼ୁଆ ହୋଇଯିବ । ସେଥିପାଇଁ ଅଉ ଗୋଟିଏ ବଟିକା ଖାଇନେବା ଭଲ । ଆଜିର ଚିନ୍ତା ମତେ ଏତେ ସଜାଗ କରି ଦେଇଛି ଯେ ଅତି କମ୍‌ରେ ଦୁଇଟା ବଟିକା ନ ହେଲେ କାମ କରିବ ନାହିଁ ।

ବିଛଣାରୁ ଉଠି ଆଲମାରି ପାଖକୁ ଯାଇ ନିଦବଟିକାର ବୋତଲ ଏବଂ ପାଣି ଗିଲାସଟେ ନେଇ ଆସିଲି । ଥରେ କରି ବସି ବୋତଲରୁ ଗୋଟିଏ ଗୋଲି ବାହାର କରିବାର ଚେଷ୍ଟା କଲି ତ ହାତ ଥରିବାକୁ ଲାଗିଲା ଏବଂ ସବୁ ଗୋଲିତକ ବାଁ ହାତର ପାପୁଲିରେ ପଡ଼ିଗଲା । ନିଦର ବଟିକା ଏ—ଏଥିରେ ନିଦ ଅଛି, ସେ ନିଦ ମୋର ଆବଶ୍ୟକ । ଥରେ ବୁନ୍ଦି-ଚନ୍ଦେକ ହୁଇସ୍କି ଖାଇଦେବାକୁ ଇଚ୍ଛା ହେଲା । କୁକୁଡ଼ାପରି ଅଧମେଲା ଆଖିରେ ଅଧା ନିଦ ଶୋଇବାରେ ମୋର ମନ ପୂରିବ ନାହିଁ । ମୋର ମନିଷର ନିଦ ଦରକାର । ଜନ୍ମ ହେଲା ଦିନୁ ଆଜିଯାଏ ମୁଁ ନିଦ କେବେ ପାଇନାହିଁ । ଆଜି ଯଦି ସେ ମନ୍ତ୍ର ମିଳିଗଲା ଗଲା ତ···

ଏହି କଥାର କଳ୍ପନାମାତ୍ରେ ମୋର ମନ ଉତ୍ସାହପୂର୍ଣ୍ଣ ହୋଇଉଠିଲା । ଏ ସଂସାରରେ ନିଦଠାରୁ ବଳି ଆନନ୍ଦଦାୟକ ଜିନିଷ ଆଉ କିଛି ନାହିଁ । ଆଜିପର୍ଯ୍ୟନ୍ତ ମୁଁ ଏ ଆନନ୍ଦକୁ ହାସଲ କରି ପାରିନାହିଁ । ଥରେ ହେଉ ନା କାହିଁକି ମନଭରି ଶୋଇଯିବା ଉଚିତ ।

ଫେରେ ମନରେ ଗୋଟିଏ ବିଚାର ଜାଗିଲା । ଉଠିକରି ପାଖ ଟେବୁଲ ଉପରେ ରଖାହୋଇଥିବା କାଗଜ ନେଲି । କୋଳରେ ଗୋଟିଏ ବହି ଉପରେ କାଗଜ ରଖି ଥରୁଥିବା ହାତରେ ପେନ୍‌ସିଲ୍‌ରେ ସେ କାଗଜ ଉପରେ ଲେଖିବାକୁ ଲାଗିଲି—

"ତୁମେ ବ୍ୟସ୍ତ ହବ ନାହିଁ । ମୁଁ ଶୋଇଛି, ଆଉ କିଛି କଥା ନାହିଁ । ତମେ ଏହା ଭାବିବ ନାହିଁ କି ମୁଁ ଆତ୍ମହତ୍ୟା କରିଛି ବୋଲି । ମୁଁ କେବଳ ଶୋଇବା ପାଇଁ ଶୋଉଛି ।"

# ଖାଲି ବୋତଲ

ସେ କେ. ଜି. ଡାକ୍ତରଖାନା ବାରଣ୍ଡାରେ ଆଗକୁ ଯାଉଥିଲା—ବାହାର ଫାଟକ ପାଖରେ ପହଞ୍ଚିବା ପାଇଁ । ତାର ଚେହେରା ପୁରୁଣା ମାଟିଆ କାଗଜ ଭଳି । ଫିକା ନେଳିଆ ରଙ୍ଗର କୁର୍ତ୍ତା ତାର ନୁହେଁ ବୋଲି ମନେ ହେଉଛି । ତାର ପ୍ୟାଣ୍ଟ ପାଇଜାମା ପରି ଢିଲା, ଆଣ୍ଠୁ ପାଖରେ ବହୁତ ଓହଳିପଡ଼ିଛି ଏବଂ ପଛରୁ ଜାବ ହୋଇଯାଇଛି । ସେ ପୋଷାକରେ ତାର ପଚିଶି ବର୍ଷର ବୟସ ଦୁର୍ବଳ ଓ ହାଲିଆ ହୋଇ ଚାଳିଶି ବର୍ଷ ପରି ବୋଧହେଉଛି ।

ସେ ବଡ଼ ଉଦାସ ହୋଇ ବାହାରକୁ ବାହାରୁଥାଏ । ଡାକ୍ତରଖାନାରେ ତାର ମା' ବେମାର ଅଛି । କଣ ବେମାରି ହୋଇଛି ତାହା ନା ତାକୁ ଜଣା ନା ତାର ମା'କୁ । ଡାକ୍ତରଖାନାରୁ ବାହାରକୁ ବାହାରି ସେ ଫାଟକ ପାଖରେ ଛିଡ଼ାହୋଇଛି । ପଛରୁ ଡାକ୍ତରଖାନା ନିସ୍ତବ୍ଧ ରୋଗୀ ପରି ନୀରସ ଦିଶୁଛି ।

ତାର ଡାହାଣ ହାତ 'ପକେଟ'ରେ ପଇସା ଦବାଣ୍ଡୁଥିଲା । ତାର ଆଙ୍ଗୁଳିରେ ଗୋଟିଏ ଦଶ ପଇସି ଗୋଟିଏ ପାଞ୍ଚ ପଇସି ସବୁ ମିଶି ଦୁଇଟି ହାତରେ ବାଜିଲା । ଏ ଦୁଇଟି ପଇସି ପକେଟରେ ଏପରି ଲୁଚକରି ପଡ଼ିଥିଲେ ଯେପରି ଗୋଳିଆ ପଚ୍ଚ ପାଣିରେ ବେଙ୍ଗଛୁଆ ପଡ଼ିରହିଥାନ୍ତି ।

ମୁଁ ପନ୍ଦର ପଇସାର ଅଧିକାରୀ । ଏହି ବିଶାଖାପଟ୍ଟନମ୍‌ରେ ଯେଉଁଠି ଦରଦାମ ଆକାଶ ଛୁଇଁବାକୁ ଚାଲିଛି, ମୋର ଖାଲି କେବଳ ପନ୍ଦର ପଇସା । ଏହି ପନ୍ଦର ପଇସାରେ ମୁଁ ଗୋଟିଏ ଖାଲି ବୋତଲ କିଣିବା କଥା । ବାଁ ପାଖ ସ୍ତନ କୁଣ୍ଡାଉ କୁଣ୍ଡାଉ ସେ ନର୍ସ କହିଲା "ବୋତଲ ଆଣିନୁ ? ନେଇଆ, ଔଷଧ ପୂରାଇଦେବି ।" "ଯଦି ଆପଣଙ୍କ ପାଖରେ ଥାଏ······!" ଯେତେବେଳେ ମୁଁ ହସିକରି କହିଲି ସେ ପାଟି କଲା ଓ କହିଲା, "କଣ, ମତେ ବୋତଲ ବିକି କଲାବାଲୀ ଭାବିଛୁ ?"

ଆରେ, ନଳ ପ୍ୟାଣ୍ଟବାଲା ଡାକ୍ତରର ପୁଅ ! ତୁମେ ଏତେ ସହଜରେ ଦେଖୁ ଦେଖୁ ଡାକ୍ତର ହୋଇଗଲ ? ତୁମ ପାଖରେ ପଇସା ଅଛି, ମୋ ପାଖରେ ନାହିଁ । ତୁମକୁ ସୁବିଧା ମିଳିଲା ଏବଂ ମତେ ମିଳିଲା ବ୍ୟଥା । ମୁଁ ଗରିବ । ଯେବେଠୁଁ ମୋର ବୁଝିବା ପରି ଜ୍ଞାନ ହେଲାଣି ମୁଁ ଗରିବ; ଗତ କୋଡ଼ିଏ ବର୍ଷ ହେଲା ମୁଁ ଗରିବ । ମୋର ବାପା ବି ଗରିବ ଥିଲେ, ଅଜା ବି ଗରିବ ହୋଇଥିବେ ଏବଂ ତାଙ୍କର ଅଜା ମଧ୍ୟ ।

ଆଲୋ, କୁକୁର ନେଇ କାର ଚଳାଇଯାଉଥିବା ଛଇ-ଛଟକି ବାଲା ! ତୁମର କୁକୁର 'କାର' ଭିତରୁ ଉଙ୍କି କରି କେତେ ଆଟରେ ଅନାଇ ଦେଖୁଛି ! ଯାଃ, ଯାଃ ! ତୁମର କୁକୁରକୁ ରାସ୍ତାର କୁକୁର କୁକୁର ପରି ଦିଶନ୍ତି ନାହିଁ ।

ଯା, ଟୋକ, ଚାଲି ଯା !
ଯାଇ ସେଇ ଲୀଳା ସେଇ ଥିଏଟରରେ !
ଇଂରାଜୀ 'ଫିଲ୍ମ' ଦେଖ୍ !

ମା, ଭବାନୀ ! ତୁମେ କିଏ ? କେଉଁ ପଡ଼ାରେ ତୁମର ନିବାସ ? କେଉଁ ପଚରା ଗାଁର କେଉଁ କୁଡ଼ିଆରେ ରହୁଛ ? ତୁମର ବାଳ କଣ୍ଢାବୁଦା ପରି ଏପରି ଅଳରା ହୋଇଛି କାହିଁକି ? ଧୂଆଁରେ ଭରିଯାଇଥିବା ଏ ଆଖି କଣ ଦେଖୁଛି ? ମା, ତୁମ ଭିତରେ କଣ ଯନ୍ତ୍ରଣା ହେଉଛି ? ପିଲାପିଲି ଜଞ୍ଜାଳ ଅଛି ନା ନାହିଁ ? ଏପରି ଯାଅନା । ଅଧାଭରା ମାଠିଆ ପରି ଯାଅ ନାହିଁ । ବେସୁରା ସଙ୍ଗୀତ ପରି କାନ୍ଦ ନାହିଁ ।

ଆରେ ଘୁଷୁରି ! ଡାକ୍ତରଖାନାରେ ଘୂରି ଘୂରି ଆସୁଛୁ ? କୋଉ କୋଉ କଣରେ ବୁଲି ଆସିଛୁ ? କୋଉଠିକା କୋଉଠିକା ଅଳିଆ ଚରି କରି ଆସିଛୁ ? ସେ ଅଳିଆର ବି କାହାଣୀ ଶୁଣା । ବଦହଜମି କାହାକୁ ହୋଇଛି ? ହଇଜା କାହାକୁ ହୋଇଛି ? ଝାଡ଼ା ଆଉ କାହାଁ କାହାକୁ ହୋଇଛି ?

କହ ଘୁଷୁରି ଝିଅ ! କହ ନା ।

ତୋର କାହାଣୀଗୁଡ଼ିକୁ କୌଣସି ପତ୍ରିକା ଛାପିବ ନାହିଁ ? ଆଲୋ, ଘୁଷୁରିଛୁଆ କଲେଜ ଗାର୍ଲ ! ମାରେ ନା । ଶିଙ୍ଗ ପ୍ରଶିଣୀକୁ ମୋଡ଼ ଦେ ନାହିଁ । କାଲି ପଅରଦିନ କିଏ ତୋର ପରି ଟୋକା, ସେଠି ଲକ୍ଷ୍ମୀ ଟକିଜ୍ ପାଖରେ ଗୋଟିଏ ଟଙ୍କା ନେଇ ଗାଲ ଖଣ୍ଡିଆ କରି, ବେକ ମୋଡ଼ି, କହୁଥାଏ—ନିରୋଗ ଦେବତାର ଠିକଣା ସବୁ ରିକ୍ସାବାଲାଙ୍କୁ ଜଣା ।

ହୁଃ, କଞ୍ଚା ରାଣ୍ଡୀ ! ବେମାରର ଖଣି । ସେ ଦିନ କମ୍ପାଉଣ୍ଡର କହୁଥିଲା, "ଇନ୍‌ଜେକସନ୍ ଛୁଞ୍ଚି ବାଜଲେ ପାଟି କରୁଛୁ । ସେ ଦିନ କୁଆଡ଼େ ଯାଇଥିଲି ତୋ ଅକଲ !' "ଆଜିର ବେମାରଭରା ଗଳିରେ ଘୂରିବୁଲୁଥିବା ଲୋକ । କଣ କରିବ, ବେମାର କିଣି ନବାକୁ ହିଁ ପଡୁଛି ।

ସେ ଡାକ୍ତରଖାନାର ଫାଟକ ପାଖରେ ଛିଡ଼ା ହୋଇଥାଏ । ଫାଟକ ପାଖରେ କୋଡ଼ିଏ ଚମ ପରି ଆବଡ଼ା ଖାବଡ଼ା ଟେବୁଲଟିଏ ଅଛି ଯାହା ଉପରେ କି ରଙ୍ଗ ବେରଙ୍ଗ ବୋତଲଗୁଡ଼ିଏ ଥୁଆ ହୋଇଛି— ବିକ୍ରି ପାଇଁ । ଏହି ଟେବୁଲ ପାଖରେ ଗ୍ଲେଟ ପକୋଡ଼ି, ବାସି ଇଡ଼ଲି, ଶୁଖିଲା ସୁମନ୍ଦି ଏବଂ ଏସବୁ ସହିତ ସମ୍ପର୍କ ସ୍ଥାପନ କରୁଥିବା ଏସବୁ ଜିନଷଠାରୁ ବଳକରି -- ମାଛି ।

ଏହି ଟେବୁଲଗୁଡ଼ିକ ପଛପଟେ ଡାକ୍ତରଖାନାର ପାଚିରୀକୁ ଲାଗି କରେ କରେ ବୋହିଯାଉଥିବା ପଚା ନର୍ଦ୍ଦମା ଅଛି । ସେଥିରେ ସଡ଼କ ଉପରୁ ଗଲେଇଖଣ୍ଡେ ତଳେ ସ୍ୟାହି ପରି କଳା ପଚା ପାଣି ବୋହୁଛି— ଅଳିଆଭରା ଗନ୍ଧ ପାଣି । ଗନ୍ଧ ନର୍ଦ୍ଦମା ପାଖରେ ବସି ସାତ-ଆଠ ବର୍ଷର ଦୁଇଟି ଝିଅ ଆଉ ଦଶ ବର୍ଷର ଗୋଟିଏ ପୁଅ ଆରାମରେ ଝାଡ଼ା ଫେରୁଛନ୍ତି । ପରସ୍ପର ମଧ୍ୟରେ କିଏ କେତେ ଲମ୍ବା ପରସ୍ରା କଲା ସେ ବିଷୟକୁ ନେଇ କଳିଆ କରୁଛନ୍ତି । ତାଙ୍କଠାରୁ କିଛି ଦୂରରେ ଗୋଟିଏ ବୁଢ଼ାକୁକୁର ଏବଂ ଘୁଷୁରିଟି

ଘୁଷୁରିଚୁଆ ଘୁଅ, ଆବର୍ଜନା ଘାଣ୍ଟି ଖାଉଛନ୍ତି ।

ଡାକ୍ତରଖାନାର ଫାଟକ ସାମନାରେ ଆଉ ପାଖରେ ହୋଟେଲ, ବେକଷ୍ଟ, ଦୋକାନ, ସଡ଼କ ଉପରେ ଛିଡ଼ାହୋଇଥିବା ମଟର ଗାଡ଼ି, ସାଇକେଲ, ସ୍କୁଟର, ସିଟି-ବସ ଇତ୍ୟାଦି ଦେଖାଯାଉଛି । ଆସିବା ଯିବା ମଧ୍ୟରେ କେତେ ଲୋକ ବଡ଼ ଆଟରେ ନର୍ଦ୍ଦମା କୁଳିଯାଉଛନ୍ତି; ଆଉ କେତେକ ଡରି ଡରି ଆଗକୁ ଗୋଡ଼ ପକାଉଛନ୍ତି ।

ଖାଲି ବୋତଲ ଆଡ଼କୁ ଅନାଇବା ପୂର୍ବରୁ ଏହି ସବୁ ବସ୍ତୁ ଦେଖାଗଲା ।

"ସଡ଼କ ଉପରେ ଆବର୍ଜନା ଖେଳାଅ ନାହିଁ, ଆବର୍ଜନା ହିଁ ସବୁ ବେମାରର ମୂଳ ।" ଏ କଥା କିଏ କହିଥିଲା ? ଗାନ୍ଧୀ ? ନେହରୁ ? ନା ଇନ୍ଦିରା ଗାନ୍ଧୀ ନେହରୁ ? କିଏ କହିଥିଲା ?

ଆବର୍ଜନାକୁ ସଡ଼କ କର ନାହିଁ, ସଡ଼କ ହିଁ ବେମାରର ମୂଳ ।

ବା ଏହା ନୁହେଁ

ବେମାର ହିଁ ସଡ଼କର ମୂଳ

ଏଥିପାଇଁ—ସଡ଼କରୁ ଆବର୍ଜନା ତିଆରି କର ଆଉ

ଆବର୍ଜନାରୁ ସଡ଼କ ତିଆରି କର ।

କୁହ ଭାଇ କୁହ ନା !

"କଣ ବାବୁ, ବୋତଲ ଦର୍କାର ? ଆସନ୍ତୁ ବାବୁ ଅସନ୍ତୁ ।

ମୋଟେ ଛଅ ଅଣା ।"

ଫାଟକର ବାଁଅଡ଼େ ଗୋଟିଏ ସ୍ତ୍ରୀ—ଦେହରେ ଜାମା ନାହିଁ, ଖାଲି ଦେହରେ ଶାଢ଼ୀ ପିନ୍ଧି ତିରିଶି ବର୍ଷର ଯୁବତୀ—ଲୋକଙ୍କୁ ସ୍ନେହର ଆମନ୍ତ୍ରଣ କଲା ଭଳି ଛିଡ଼ା-ହୋଇଛି ।

ଆଉ ସେ—

ପଣତ ପଲ୍ଟରେ ତୁଳ ବର୍ଷର ବୈଧବ୍ୟ ଭିତରେ ଦଶ ପନ୍ଦର ବା ତାଠାରୁ ବି ଅଧିକ ଲୋକଙ୍କର କୋଡ଼ିଏ ବାଇଶି ହାତର ଶକ୍ତ ଦେଢ଼ଶହ ଅଙ୍ଗୁଳିମାନଙ୍କ ଦ୍ୱାରା ମନ୍ଥନ ହୋଇ, ଯୋଶ ସହିତ, ଆରାମରେ ଦବାଯାଇଥିବା—ଆଉଁସା ହୋଇଥିବା, ଚକଟା ଯାଇଥିବା, ମଳା ଯାଇଥିବା ଆଉ ଜଣା ନାହିଁ କଣ କଣ କରିଯାଇଥିବା ବକ୍ଷ, ଟିକେ ଢିଲା ହୋଇଯାଇଥିଲେ ମଧ୍ୟ ସୁନ୍ଦର ଓ ସୁଗୋଲ ଦିଶୁଥିବା ସେହି ସ୍ଥାନକୁ—

ଗୃହିଣୀଦ୍ୱାରା ଆଉଁସି ଦେଇ, ଗାଧୋଇଦେଇ ସେହି ମହିଳା ଅଡ଼କୁ ଯାଉଛି ।

"ସମସ୍ତଙ୍କର ଜୟ ହେଉ !" ସକାଳୁ ବସିଛି, କେହି ସଉଦା କରିବାକୁ ଆସୁନାହାନ୍ତି । ଛଅ ଅଣା କହିଲେ ଅତି କମ୍‌ରେ ଚାରି ଅଣାରେ ଏହି ବାବୁ କୌଣସି-ନା-କୌଣସି ବୋତଲ ନେଇଯିବେ । ଚାରିଅଣାରେ ପ୍ରେଷ୍ଟ ଭଉଣୀକୁ 'କଙ୍ଗି' କିଣିଦେବ । ଅଳପେଇସା ରଙ୍ଗୀନ୍ ରିବନର ଛୁଡକୁ ଦେଲି କୁକୁର ପରି ପୁଚି ପୁଚି କେବଳ ଦୁଇ

ଟଙ୍କା ନେଇଗଲା । ଫେରେ ଅଧଘଣ୍ଟାରେ ଆସି କହିଲା, "ପୁଲିସବାଲା ଆସିଗଲେ । ସେ ଦୁଇଟଙ୍କା ନେଇ ନେ, ଫେରେ ପରେ ଦେଖିନେବା ।" ବାସ୍, ପଇସା ନେଇ ଚାଲିଗଲା । ମୁଁ ଭାବିଲି, ଦୁଇ ଟଙ୍କାରେ ମୋ ଭଉଣୀ ପାଇଁ ଜାମା ଆଉ ଗୋଟିଏ ରିବନ କିଣିନେବି । ସେ ବି ଦେଖିବାକୁ କେଡ଼େ ସୁନ୍ଦର ! ସେ ବଡ଼ ହୋଇ ପଡ଼ିବ ·· ଛିଃ ଛିଃ···ଏ ବି ଜଣ ଜାଣିବା···ସେ ରାଣୀ ଘର ବସିବ । ଫିଲମଷ୍ଟାରଙ୍କୁ ବାନ୍ଧା ହୋଇ ଯମୁନା ପରି ଜୀଇଁବ । ସେ ତ ମୋଟେ ଏଗାର ବର୍ଷର । କିନ୍ତୁ କେବେ କେବେ ପଚାରେ "ସେ ରଙ୍ଗନ୍ନା ଯେପରି ଲୋକ ରାତିରେ କାହିଁକି ଆସନ୍ତି, ଅପା ?" ତାକୁ କଣ ଜଣା, ମୁଁ ତାର ଭଲ ପାଇଁ, ଦୁନିଆଁର କୁକୁର ଏବଂ ଘୁଷୁରିମାନଙ୍କଠାରୁ ତାକୁ ବଞ୍ଚାଇବା ପାଇଁ ଏଡ଼େ ମରଣ ମରୁଛି । ଅତି କମ୍‌ରେ ମଦ ଦୋକାନ ଖୋଲିବାକୁ ଚାହିଁଲେ ଆଗ ପଇସା ଦର୍କାର । ଦୋକାନ ଚଳାଇବା ପାଇଁ ବୁଦ୍ଧି ବି ଦର୍କାର । ପୁଲିସବାଲାମାନେ ତ କୁକୁରଙ୍କ ଭଳି ପହରା ଦେଉଛନ୍ତି । ବିପଦରୁ ବଞ୍ଚିବାର ହେଲେ ପଇସା ଫୋପାଡ଼ିବାକୁ ପଡ଼ିବ । ସେ ନର୍କର ଜଞ୍ଜାଳଠାରୁ ଏ ଦେହ ବିକି ଜୀଇଁବାରେ ଆରାମ ଅଛି । ···କେହି ନା କେହି ନିଶ୍ଚୟ ମିଳିଯିବେ···କେତେବେଳେ ସୁଯୋଗ ଦେଖି କୋଉ ପଇସାବାଲାକୁ ଫାନ୍ଦରେ ପକାଇବାକୁ ହବ । ଶରୀରର ବଳ ଚାଲିଗଲେ କେହି ପାଖ ପଶିବେ ନାହିଁ ।

"ଆସନ୍ତୁ ବାବୁ, ଆସନ୍ତୁ । ଏହି ବୋତଲ ଯଥେଷ୍ଟ ହବ ? ନା, ଏଥିଠାରୁ ବି ବଡ଼ ଦର୍କାର ? ଆସି ଦେଖି ନିଅନ୍ତୁ ।"

"ଛଅ ଅଣା···ଏହି ଖାଲି ବୋତଲ···ଆଲୋ···ବିନା 'ବ୍ଲାଉଜ'ବାଲୀ··· ଛଅ ଅଣା ସେଇଟା ! ଦେଖିବାକୁ ଗୋରୀ ବୋଲି ପାଖକୁ ଆସିଗଲି । ସେଇଥିପାଇଁ ଛଅ ଅଣା ମାଗୁଛି ! ମୋ ପାଖରେ ପନ୍ଦର ପଇସା ଅଛି···ମୁଁ ପନ୍ଦର ପଇସାର 'ବାଦଶାହା'···ପନ୍ଦର···ପନ୍ଦର ପଇସାରେ ଦବୁ ? ଏତେ ବଡ଼ ଦର୍କାର ନାହିଁ । ଏହାଠାରୁ ଛୋଟ ହେଲେ ଚଳିବ ।"

"ଚାରି ଅଣା ଲାଗିବ, ବାବୁ ! ଗୋଟିଏ ପଇସା କମ୍ ନୁହେଁ ।"

"ବାବୁଜୀ, ଏଠିକି ଆସନ୍ତୁ, ମୋ ପାଖରେ ଅଛି, ଦୁଇ ଅଣାରେ ମିଳିବ । ବଡ଼ ବୋତଲ ଅଛି, ନିଅନ୍ତୁ ।" ଫାଟକର ଡାହାଣ ପାଖରେ ଆଉ ଗୋଟିଏ ମହିଳାର ଡାକ । ପୁରୁଣା ଛିଣ୍ଡା ଶାଢ଼ୀ—ବିନା ବ୍ଲାଉଜ—କଳା—ପାତଳୀ ମାଇକିନିଆ—

ଦୋଅଣି, ମୋର ଦୋଅଣି ଦର୍କାର । ସକାଳୁ ଚାହା ପିଇ ନାହିଁ । ଘରେ କେବଳ ବାରଅଣା ପଇସା ଥିଲା ତ ତାକୁ ରାତିରେ ସେ ନେଇଗଲା । ଏପର୍ଯ୍ୟନ୍ତ ଜଣାନାହିଁ କୁଆଡ଼େ ଗଲା । କେଜାଣି କୋଉଠି ନିଶାରେ ଭୁଲି କରି ପଡ଼ିଥିବ । ମରିକରି ପଡ଼ିଥିଲେ ବି ଖବର ମିଳିବ ନାହିଁ । ଟୋକା-ଟୋକୀ ଦୁଇଟା ଯାକ କୋଉଠି 'ବସ୍‌ଷ୍ଟାଣ୍ଡ'ରେ ଭିକ ମାଗି ଖାଉଥିବେ । ଟୋକା ଗୀତ ଗାଏ, ଆଉ ସେ ବାଜା ବଜାଏ । ହସି ଖେଳି କଟାଇବା ବୟସରେ ସେମାନେ ଭିକ ମାଗି ଖାଉଛନ୍ତି, ବାବୁ ! ଏଇ ଛୋଟ ଛୁଆ ଗୋଡ଼ ପଥର ଉପରେ ମାଟିରେ ପଡ଼ିରହିଛି । ତା ଆଡ଼େ ଦେଖନ୍ତୁ, ସେ ଆକାଶକୁ

କିଛି ମାଗିଲା ପରି ହାତଗୋଡ଼ ଦେଖାଇ ପଡ଼ୁଛି । ଆକାଶ ଫାଟି ପଡ଼ୁଛି ଖରାରେ । ସେ ଛଟପଟ ହୋଇଯାଉଛି । ବାବୁ ! ଏ ପିଲାକୁ ଦୁଧ ପିଆଇବା ପାଇଁ ମଧ୍ୟ ମୋ ପାଖରେ ପଇସା ନାହିଁ, ଦୁଧ ମଧ୍ୟ ନାହିଁ । ସ୍ତନ ତ ଏକେବାରେ ଶୁଖିଗଲାଣି; ରବର ପରି ଏହି ସ୍ତନକୁ ଶୋଷି ନେଉଛି । ଏ ସ୍ତନରୁ ଆଉ ଏବେ କଣ ବାହାରିବ—ମା'ର ବ୍ୟାକୁଳତା ବାହାରିବ ! ···ମୋର ଗୋଟିଏ ଦୋଅଣି ଯଥେଷ୍ଟ···କ୍ଷୁଧା ମିଟାଇବା ପାଇଁ···ସେଥିରୁ ଟିକେ ଦମ୍ଭ ଆସିଯିବ···ବାବୁ ! ବଞ୍ଚିରହିବା ତ ବଡ଼ କଷ୍ଟକର । କୌଣସି ଘରେ କାମ କରିବାକୁ ଚାହୁଁଛି; କିନ୍ତୁ ମତେ କେହି କାମରେ ଲଗାଉ ନାହାନ୍ତି । ବହୁତ ଦିନ ଆଗରୁ ମୋ ଅକଲ ଘାସ ଖାଇଥିଲା । ଜୀବନ ତ ସମସ୍ତଙ୍କୁ ଭଲ ଲାଗେ, ବାବୁ ! ଜୀଇଁବା ପାଇଁ ମନିଷ ସବୁ କିଛି କରିପାରେ । ସେପାଖରେ ପୈଡ଼ୀକୁ ଦେଖନ୍ତୁ, ସେ ଦେହ ବିକି ଜୀଇଁଛି । କିନ୍ତୁ ମୋ ପାଖରେ ତାହା ମଧ୍ୟ ନାହିଁ । ସେ ଠାଣି, ସେ ଚେହେରା ମୋ ପାଖରେ ନାହିଁ । ଆଉ କୋଉ ରାସ୍ତା ବି ନାହିଁ । ଏଇଥିପାଇଁ ମୁଁ ବୋତଲ ବିକୁଛି । ସେ ଅଛି ନା ··? ମୋର ମରଦ···। ପିଏ ମାରେ, ରିକସାରୁ ତାକୁ କେତେ ମିଳେ ସେ ଜାଣେ ବା ରାମ ଜାଣନ୍ତି; ନହେଲେ ସେ ମଦବାଲା ଜାଣେ । ପିଲା ଅଛନ୍ତି ବାବୁ, ଭୋକରେ କଲବଲ ହେଉଛନ୍ତି ।

ନୁକାଲକ୍ଷ୍ମୀ ଏହିପରି ଭାବନାଧାରାରେ ବୋହିଯାଉଛି ।

ଦୁଇଅଣା କହୁଛି । ବାକି ଛଅ ପଇସା କଣ ବଞ୍ଚାଇବି । ପନ୍ଦର ପଇସା ଦେଇ କିଣିନେବି ।

"ଆଚ୍ଛା, ତେବେ ବୋତଲ ଦେଖା" କହି ସେ ଫାଟକର ବାଁ ଆଡ଼େ ଚାଲିଗଲା ।

"ଏଇଠି ଅଛି, ସାହେବ, ଏଇଠି ଅଛି ।"

"ବାବୁ କିଣିନେଲେଣି ପନ୍ଦର ପଇସା ଦେଇକରି । ତିନି ପଇସା ଅଧିକା ବି ଦେଇଦେଲେ ।"

ଔଷଧ ଆଣିବା ପାଇଁ ଏ ଖାଲି ବୋତଲ ଏବଂ ଦେହରେ ମଇଳା ଲୁଗା; ବାସ୍, ଏଇ ମୋର ପରିଚୟ ।

କେଜାଣି, ମା ମୁସମ୍ବି ଆଣିବାକୁ କହିବ ନା ଅଙ୍ଗୁର ପାଇଁ କହିବ ।

ନାହିଁ—ନାହିଁ, କହିବ ନାହିଁ ।

ମା ଜାଣିଛି ଏସବୁ କିଣିବା ପାଇଁ ମୋ ପାଖରେ ପଇସା ନାହିଁ । ସେଥିପାଇଁ ସେ ସେମିତିଆ କିଛି ଜିନିଷ ମାଗିବ ନାହିଁ । ଯଦି ଏଥିପାଇଁ ମରିବାକୁ ପଡ଼େ ସେ ମରି-ଯିବାକୁ ପ୍ରସ୍ତୁତ ହୋଇଯିବ ।

ମା, ମରି ହିଁ ଯା ।

ସମୃଦ୍ଧିଶାଳୀ ଭାରତବର୍ଷରେ ମରିକରି କୌଣସି ସ୍ୱର୍ଗ ବା ନରକରେ ପହଞ୍ଚି ମୁକ୍ତ କଣ୍ଠରେ ଗା—

ଯଏ ପଛେ ମୁଁ ଯେଉଁ ଦେଶ
ବଢ଼ାଇବ ଜନନୀ ଯଶ ।

ଗାଅ ମା, ଗାଅ ।

ଡାକ୍ତରଖାନାର ଅଗଣା ତାଙ୍କୁ କୌଣସି ରାକ୍ଷସର ମୁହଁ ଭଳି ଦିଶିଲା । ନର୍ସ, ରୋଗୀ, ଡାକ୍ତର—ଏ ସମସ୍ତେ ପୋକ ପରି ଦିଶିଲେ ।

ତା ପଛରେ—ଫାଟକ ପାଖରେ –

ପୈଡ଼ୀ—ନୁକାଲକ୍ଷ୍ମୀ, ତୁ ଏ କଣ କଲୁ, ରାଣ୍ଡୀ କୋଉଠିକାର ! ବୋତଲ ମୋର ବନ୍ଦି ହୋଇନାହିଁ; ଆଉ ତୁ ଆସିଲୁ ଭଲ ବନ୍ଦି କଲାବାଲୀ । ଦୋଅଣିରେ ଦେଲୁ । ଓଃ, ଗୋଟାଏ ଅନ୍ନପୂର୍ଣ୍ଣା ! ସେ ମୋ ପାଖକୁ ଆସୁଥିଲା । ଦୋଅଣିର ଲୋଭ ଦେଖାଇ ବୋତଲ ବନ୍ଦ ଦେଲୁ ! ବେଢଙ୍ଗୀ କୋଉଟିକାର ।

ନୁକଲକ୍ଷ୍ମୀ—କଣ ବକର ବକର ହଉଛୁ, ପୈଡ଼ୀ ! ଫେରେ କହିବୁ ତ ଗାଲରେ ଚଟକଣା ବସେଇ ଦେବି । ଦାନ୍ତଝାଡ଼ିଦେବି···ତୁ ବି ଭାଉ କମ୍ କରିଦେଲେ ଜମିଦାର ମଧ୍ୟ ତୋ ପାଖକୁ ଯିବ । ରାଣ୍ଡୀ, ମତେ କହୁଛୁ – ଦୁନିଆଯାକ ତତେ ରାଣ୍ଡୀ କହୁଛନ୍ତି ।

ପୈଡ଼ୀ—କଣ କହିଲୁ ? ମୁଁ ରାଣ୍ଡୀ ? ତୁ ରାଣ୍ଡୀ ହୋଇଥିବୁ । ତୋ ମା ରାଣ୍ଡୀ, ତାର ମା ବି ରାଣ୍ଡୀ, ଆଉ ତୋ ଝିଅ ବି ରାଣ୍ଡୀ ବାହାରିବ ।

( ପୈଡ଼ୀ ରାଗରେ ସାପ ପରି ଫଁ ଫଁ ହଉଥିଲା, ସେ ନୁକଲକ୍ଷ୍ମୀ ପାଖକୁ ଯାଇ ତା ଗାଲରେ ଚଟକଣା ବସେଇଦେଲା । )

ନୁକଲକ୍ଷ୍ମୀ—ଆଲୋ ଡାହାଣୀ ! ଶାଢ଼ି ଟାଣୁଛୁ ! ଆଲୋ ଗୁଣ୍ଡି ଦେ, ରହ ରହ ପୈଡ଼ୀ, ପୈଡ଼ୀ, ତତେ ଲାଜ ନାହିଁ ? ଶାଢ଼ି କାଢ଼େ ନା । ହାୟରେ ହାୟ ! ବାବୁମାନେ ସବୁ ଚୁପ୍‌ଚାପ୍ ଦେଖୁଛନ୍ତି । ଦେଖ ବାବୁ ! ଶାଢ଼ି ଟାଣିନଉଛି······ ଶାଢ଼ି ।

( ନୁକଲକ୍ଷ୍ମୀ ତଳେ ପଡ଼ିଯାଇଛି ଆଉ ହାତରେ ଶାଢ଼ି ଧରି ସମସ୍ତଙ୍କୁ ମିନତି କରୁଛି )

ବାବୁ ! ବାବୁ !

(ବର୍ତ୍ତମାନ ସେ ଶାଢ଼ି ଗୁଣ୍ଡି ଦୁଇ ହାତ ସାହାଯ୍ୟରେ ଛଡ଼ା ହବାର ଚେଷ୍ଟା କରୁଛି, ଏତିକିବେଳେ ପୈଡ଼ୀତାକୁ ଧକ୍କା ଦେଇ ତଳେ ଗଡ଼େଇଦେଲା ଆଉ ଫେରେ ଶାଢ଼ି ଟାଣିବା ଆରମ୍ଭ କରିଦେଲା···ଫର୍ ଫର୍ ଫର୍···)

ଆରେ, ସେ ମୋ ଶାଢ଼ିକୁ ନଳାରେ ପକାଇ ଦଉଛି । ପୈଡ଼ୀ ହାତ ଯୋଡ଼ୁଛି ।

(ହାୟ, ମୋ ଶାଢ଼ିକୁ ନଳାରେ ପକାଇଦେଲା, ବର୍ତ୍ତମାନ ମୋର ଶାଢ଼ି ନାହିଁ । ହାୟ, ଏତେ ଲୋକ—ମର୍ଦ୍ଦ ବି ଅଛନ୍ତି, ମାଇକିନା ମଧ୍ୟ ଅଛନ୍ତି—ସମସ୍ତେ ମୋର ନଙ୍ଗଳା ଦେହକୁ ଦେଖୁଛନ୍ତି । )

ରାଣ୍ଡୀ, ଦେଖେ ଏବେ ଉଡେ କଣ କରୁଛୁ ।

(ନୁକଲକ୍ଷ୍ମୀ ପୈଡ଼ୀର ହାତ କାମୁଡ଼ି ଖଣ୍ଡିଆ କରିଦେଲା)

ପୈଡ଼ୀ-- ଆଲୋ ଡାହାଣୀ, କେମିତି କାଦମ୍ବିନୀ ଭଳିରେ କାମୁଡ଼ୁଛୁ ।

ନୁକଲକ୍ଷ୍ମୀ—ତୁ ମୋ ଶାଢ଼ି ଛଡ଼ାଇ ନେଇଛୁ ନା ।

(ନୁକଲକ୍ଷ୍ମୀ ପୈଡ଼ୀର ବାଳ ବାଁ ହାତରେ ଧରି ଡାହାଣ ହାତରେ ତା ପେଟରେ ହାତ ପୁରାଇ ନଇଁପଡ଼ି ତାର ଶାଢ଼ି ଉପରକୁ ଟାଣିଦେଲା, ଫେରେ ଟାଣିବାକୁ ଲାଗିଲା । ଶାଢ଼ି ପୁରା ନ ଟାଣିହବାରୁ ପୈଡ଼ୀ ଉପରେ ଝାମ୍ପି ପଡ଼ି କାନ ଧରି ଟାଣିଲା ଆଉ ବାହୁକୁ କାମୁଡ଼ି ପକାଇଲା, ଶାଢ଼ି ଟାଣି ଆଣି ପକାଇ ଦେଲା—ଯେମିତି ଦହିରୁ ଲହୁଣି ବାହାର କରନ୍ତି ।)

"ଏବେ କହ, କେମିତି ଲାଗୁଛି ପୈଡ଼ୀ ?"

ପୈଡ଼ୀ—ବାପ ଲୋ, ପାଗଳା କୁକୁର ପରି କେମିତି କାମୁଡ଼ୁଛୁ ! କେତେ ରକ୍ତ ବାହାରୁଛି ।

ପୈଡ଼ୀର ଶାଢ଼ି ନୁକଲକ୍ଷ୍ମୀ ନଳାରେ ପକାଇଦେଲା; କିନ୍ତୁ ସେ ସେଠି ପଡ଼ିଲା ନାହିଁ —ପାଖରେ ଘୁଷୁରି ଘୁଅରେ ଯାଇ ପଡ଼ିଲା ।

ପୈଡ଼ୀ ସେମିତି ଲଙ୍ଗଳା ଦେହରେ ନୁକଲକ୍ଷ୍ମୀ ଉପରେ ଝାମ୍ପି ପଡ଼ିଲା ।

ଦୁଇଜଣଙ୍କ ମଧ୍ୟରେ ଟଣା-ଓଟରା, ଧକ୍କା-ଧକ୍କି ଆରମ୍ଭ ହୋଇଗଲା । ମଝିରେ ଟିକେ ଉଠିପଡ଼ି ପୁଣି ଗଡ଼ାଗଡ଼ି ହୋଇ ଉପର ତଳ, ତଳ ଉପର...ଉପର-ତଳ ଗଡ଼ାଗଡ଼ି ହେଲେ ।

ନୁକଲକ୍ଷ୍ମୀ ଉଠିପଡ଼ି, ହାତ ଛଡ଼ାଇ ନେଇ ପଳାଇଗଲା ।

ପୈଡ଼ୀର ଶାଢ଼ି, ଯିଏ ନଳାରେ ପଡ଼ିନଥିଲା । ତାକୁ ଏମିତି ଉଠାଇନେଲେ ଯେମିତି କାଉ ସାବୁନ ଉପରେ ଝାମ୍ପ ନେଇଯିବ ।

"ମରିଯା, ତୁ, ପୈଡ଼ୀ ମରିଯା ! ମୋ ଶାଢ଼ି ତୁ ନଳାରେ ଫୋପାଡ଼ି ଦେଇଛୁ ନା ! ଏବେ ଦେଖେ ମୁଁ ତୋ ଶାଢ଼ି ନେଇଯାଉଛି । ଖାଲି ଦେହରେ ତୁ ଏଇଠି ମରିଯା ! ରାଣ୍ଡୀ !

ନୁକଲକ୍ଷ୍ମୀ ଦୌଡ଼ିଲା । ଜଙ୍ଘ ଭିତରେ ଶାଢ଼ି ଜାକି ଦୌଡ଼ିଲା ।

ଏ ସମସ୍ତ ଘଟଣା ପାଞ୍ଚ ମିନିଟ ମଧ୍ୟରେ ହୋଇଗଲା । ତଳେ ପଡ଼ିଥିବା ପୈଡ଼ୀ ଉଠିକରି ବସିପଡ଼ିଲା । ତା ଶାଢ଼ି ନେଇ ପଳାଉଥିବା ନୁକଲକ୍ଷ୍ମୀକୁ ଧରିବାକୁ ଚେଷ୍ଟା କଲା; କିନ୍ତୁ ସେ ବିଜୁଳି ପରି ଖସି ପଳାଇଲା ।

ସେହି ଅବସ୍ଥାରେ—

ଦେହସାରା ଲଙ୍ଗଳା ଦେହରେ ସେଠି ଛିଡ଼ା ହୋଇ ରହିବା ପୈଡ଼ୀ ପାଇଁ ଭୟଙ୍କର ଜଣାପଡ଼ିଲା । ତା ମନରେ ବହୁତ ଦୁଃଖ ହେଲା । ଆଖିରୁ ଅଶ୍ରୁ ସମୁଦ୍ର ଉଚ୍ଛୁଳି ପଡ଼ିଲା । ସେମିତି ପଡ଼ିରହିଥିଲେ ଭଲ ହୋଇଥାଆନ୍ତା, ଉଠିକରି ସେ ଭାବିଲା ସେ

ବଡ଼ ଭୁଲ୍ ହୋଇଯାଇଛି; ସେମିତ ଖାଲି ଭୂଇଁ ଉପରେ ଦଉଡ଼ିବାକୁଥାନ୍ତା ଯଦି ବୋଧହୁଏ ଭଲ ହୋଇଥାନ୍ତା । ସେ ତା ହାତ ନେଇ ସ୍ତନକୁ ଘୋଡ଼ାଇ ନେଲା, ଯେମିତ କୁକୁଡ଼ା ତାର ଡେଣାରେ ତା ଛୁଆମାନଙ୍କୁ ଲୁଚାଇ ରଖେ । ଫେରେ ସେହି ହାତ ଦୁଇଟିକୁ ସ୍ତନ ଉପରୁ କାଢ଼ି ଜଙ୍ଘ ଉପରେ, ଫେରେ ଜଙ୍ଘ ମଝିରେ ରଖି ସ୍ତନକୁ ପବନରେ ଝୁଲିବା ପାଇଁ ଛାଡ଼ିଦେଲା । ଫେରେ ଗୋଟାଏ ହାତରେ ସ୍ତନ ଏବଂ ଆରଟିରେ ଜଙ୍ଘ ମଝିରେ ଲୁଚାଇବାକୁ ଚେଷ୍ଟା କରି ଏପାଖ ସେପାଖ ଦେଖିବାକୁ ଲାଗିଲା । ତେବେ···

ମଣିଷ, ମଣିଷ, ମଣିଷ; ମଣିଷ ହିଁ ଦେଖାଗଲେ—ପୁଅଛନ୍ତି ଗୃହିଁ ସିଆଡ଼େ ମଣିଷ ।

ଆଉ ସେମାନଙ୍କର ମୁଣ୍ଡ ମୁଣ୍ଡ ମୁଣ୍ଡ ଖାଲି ମୁଣ୍ଡ
ମୁଣ୍ଡର ସମୁଦ୍ର ମୁଣ୍ଡର ସମୁଦ୍ର,
ତାଙ୍କ ଆଖିରେ ଲାଳସାର କାଣ୍ଟା
ଫାଟିଯାଉଥିବା କଣ୍ଟା

ନୂକାଲମ୍ବାର ଶାଢ଼ି, ଯାହାକୁ ସେ ନଳାରେ ପକାଇଦେଇଥିଲା, ସେ ଅବଳା ନଳାର ଲଜ୍ଜା ରକ୍ଷା କରିବା ପାଇଁ ତା ଉପରେ ବିଛେଇ ହୋଇଯାଇଛି, କାଳୀ, ଧୀର ଓ କନ୍ଦର୍ପ ମୁରୁକି ହସ ସହ—

ଯଦି ସେ ଶାଢ଼ିକୁ ବାହାରକୁ କାଢ଼ିବ ତ ଅନେକ ତଳକୁ ଓହ୍ଲାଇବାକୁ ପଡ଼ିବ ନଳାକୁ, ଗଳେଇଛନ୍ତି ତଳକୁ ତା ଉପରେ ଅନେକ ଆଖି—ଦୟା ବରଷାଉଥିବା, ପ୍ରେମ-ସଙ୍କେତ ଦେଲାବାଲା, ନିଆଁ ଲଗାଇଲାପରି, ଗୋଡ଼ ତଳେ ପଡ଼ିଲା ପରି, କିଣିବା ଭଳି, ତିରସ୍କାର କଲା ପରି, ସଜାଇବା ବାଲା, ଚୁମ୍ବନ ଦେଲା ଭଳି, ଏତେ ଆଖି ଏହିପରି ଆଖି ଏବଂ ଜଣାନାହିଁ ଆହୁରି କେତେ ରକମର ଆଖି ।

ମତେ—

ସ୍ତ୍ରୀଲୋକକୁ—

ଝୁଲି ଦୋହଲି ଗୃଲିଲା ବାଲାକୁ, ଚମକାଇଦେଲାବାଲାକୁ ଦେଖିବେ । କଳଆ-ଗୋଳରେ ମାତିଯାଇ ମୁଁ ଏକଦମ୍ ଏ କଥା ଭୁଲିଗଲି ଯେ ମୁଁ ସ୍ତ୍ରୀଲୋକ—ଯଦି ଏ ବୁଦ୍ଧି ସେତେବେଳେ ପଶିଥାନ୍ତା—ବା ଏ ଲୋକମାନେ ମୋ ଲଙ୍ଗଳା ଦେହକୁ ଗୋଟାଏ ବାଡ଼ି ନେଇ ପିଟନ୍ତେ···

ହାୟରେ ହାୟ, ବାପ୍‌ରେ ! ବାପ୍ ! ମୁଁ ସ୍ତ୍ରୀଲୋକ, ମୋ ଦେହରେ ଲୁଗା ନାହିଁ, ବର୍ଷାରେ ଗାଈ ପରି ଏ ସଡ଼କ ମଝିରେ ଛିଡ଼ାହୋଇଛି । ଏତେଗୁଡ଼ାଏ ଲୋକଙ୍କ ଦୃଷ୍ଟିରେ ରକମ ରକମର ବଦଳିସାରିଲିଣି, ହେ ଭଗବାନ ! ତୁ କଣ ମରିଯାଇଛୁ, ନା କୋଉ ଶ୍ମଶାନରେ ଘୁରିବୁଲୁଛୁ, ଆକାଶକୁ ଚିରିକରି ଆସିଯା ଏବଂ ମୋର ଲଜ୍ଜା ରକ୍ଷାକର । ତୋର କୃପା ପାଇବା ପାଇଁ କଣ ପାଣ୍ଡବମାନଙ୍କ ସ୍ତ୍ରୀ ହେବାକୁ ପଡ଼ିବ ?

ହେ ଭଗବାନ୍, ମୋର ଏଇ ଗ୍ଲାନି ଉପରେ ଗ୍ଲାଇ ଯା । ଏ ଲୋକମାନେ ସବୁ ମର୍ଦ୍ଦ, ମୋର କୁନ୍ଥେଇବା ଦେଖି ଜଣାନାହିଁ କଣ କଣ ବକାଯାଉଛନ୍ତି । ନାହିଁ ତଲେ, ଜଙ୍ଘ ମଝିରେ ଜଣାନାହିଁ କେତେ ଆଖି କେତେ ଥର କାଦୁଅରେ ଗୋଡ଼ ଘଷିଲା ପରି ଚକଟି ଗଲେଣି । ଆରେ ଟୋକା ! ଯଦି ତୋର ଭଉଣୀ ଏହିପରି ଲଙ୍ଗଳା ହୋଇ ଛିଡ଼ାହୋଇଥାନ୍ତା ତ ତୁ କଣ ଏମିତ ଗୁହିଁରହିଥାନ୍ତୁ ? ତୋ ମା ଛଟପଟ ହଉଥିଲେ ତୁ ଛିଡ଼ା ହୋଇ ରହିପାରନ୍ତୁ ? ଓ ମା, ତୁ ଏଭଳି ଏତେ ଲୋକଙ୍କ ମଝିରେ ଛିଡ଼ାହୋଇ ପାରନ୍ତୁ ? ଘରଣି ପାଇଁ, କେବଳ ଗୋଟିଏ ଘରଣି ପାଇଁ ମୁଁ ଏବଂ ଦୋଅଣି ପାଇଁ ନୁକାଲମ୍ମା ଆମେ ଦୁଇଜଣ ନିଜ ନିଜ ଶାଢ଼ି ହରାଇଲୁ । ବାବୁ, ଆମେ ଏ କଥା ଭୁଲିଗଲୁ ଯେ ଆମେ ସ୍ତ୍ରୀଲୋକ । ଚକଚକିଆ ବାବୁ ! କଡ଼ିଆ ଘୋଡ଼ା ପିନ୍ଧିଥିବା ବାବୁ ! ଆପଣଙ୍କ ସ୍ତ୍ରୀମାନେ ରେଶମ ନାଇଲନର ଶାଢ଼ିରେ ଛପିରହିଥାନ୍ତି । ଦୋଅଣି, ଘରଅଣି ଫୋପାଡ଼ ଦିଅନ୍ତି, ହଜାଇ ଦିଅନ୍ତି, ହସି ଦିଅନ୍ତି, ହସରେ ଉଡ଼ାଇ ଦିଅନ୍ତି । ବାବୁ ! ମା ! ଆରେ ଆରେ, ଏ ତ ପୁଲିସବାଲି ଛିଡ଼ା ହୋଇଛନ୍ତି । ପଇସା ପାଇଁ ମଣିଲିବାଲି ଭାବ ଆମକୁ ଦେଖୁଥାଇ ବି ଏମାନେ ପୋଲ ପାଖରେ ଛିଡ଼ା ହୋଇ ଆରାମରେ ବିଡ଼ି ଟାଣୁଛନ୍ତି । ଖରାପ କାମ ରୋକିବା ଏବଂ ଭଲ କାମ କରାଇବା ତମର କାମ ନା ? ନ୍ୟାୟକୁ ବଜାଏ ରଖିଲାବାଲା ତମେମାନେ ? ଏହା ସବୁ ଦେଖିକରି କେମିତି ଚୁପ୍ ହୋଇ ବସିଛ ତମେମାନେ ? ତମେମାନେ ? ବାବୁ ! ମୁଁ ଅବଶ୍ୟ ରାଣ୍ଡୀ, ଶରୀର ବିକାକରି ଜାଇଁଲାବାଲୀ ମୁଁ, ଭଡ଼ା ଲଗୁଥିବା ସାଇକଲ ମୁଁ, ଅନ୍ଧାରର ଆଡ଼ୁଆଳରେ ଲାଜ-ସରମ, ଶାଢ଼ ଫାଡ଼ି କାଚଦବା ରାଣ୍ଡି ମୁଁ, ସବୁ ବେମାରର ଖଣି ମାଇକିନିଆ ମୁଁ ବାବୁ !

ତେବେ ବି ମୁଁ ସ୍ତ୍ରୀଲୋକ ।

ବାବୁ, ମୁଁ ସ୍ତ୍ରୀଲୋକ ।

ଆପଣ ସମସ୍ତେ ମୋର ଦେହକୁ ସମ୍ପୂର୍ଣ୍ଣଭାବେ ଦେଖିଛନ୍ତି । ଆଖିକୁ ମଦ ମାଠିଆ କରି, ଆପଣମାନେ ମୋର ଲଜ୍ଜା ଆଉ ଇଜ୍ଜତକୁ ଆଖିଦେଇ ପିଇଯାଇଛନ୍ତି । ମୋର ଆଉ ଜାଇଁବାର କଣ ସ୍ପୃହା ଅଛି ? ହଁ, ଜାଇଁବାରେ କଣ ସରାଗ ?

ପୈଡ଼ୀ ଏ ସମସ୍ତ କଥା ଖୋଲିକରି କହିବାକୁ ଗ୍ଲହୁଁଥିଲା । ଉପରୁ ଆକାଶ ଛିଣ୍ଡିପଡ଼ୁ ଆଉ ତଳୁ ଧରଣୀ ଫାଟିଯାଉ · ଏହିପରି ସେ ପାଟି କରିବାକୁ ଗ୍ଲହୁଁଥିଲା । କିନ୍ତୁ ତାର ଗଳାକୁ ଲଜ୍ଜା ଏବଂ ଇଜ୍ଜତ ଏପରିଭାବରେ ଚାପିଦେଲେ ଯେପରି ବୋତଲକୁ ଠିପି ବନ୍ଦ କରିଦିଏ । ପୈଡ଼ୀ ପାଟି କରିପାରିଲା ନାହିଁ । କିନ୍ତୁ —

ଡାକ୍ତରଖାନା ପାଖରେ ଥିବା ଗଡ଼ାଣିଆ ସଡ଼କ ଦେଇ ସିଟି ବସ୍ ଗଡ଼ିଆସୁଥିଲା—

କୂଳରେ ଯଥେଷ୍ଟ ସମୟ ଯାଏ ବାଡ଼େଇ-ପିଟି ହୋଇ, ଛଟପଟ ହୋଇ, ଶେଷରେ ହଠାତ୍ ପାଣିକୁ ଡେଇଁପଡ଼ିଲା ମାଛ ପରି—

ବସ୍‌ର ଆଗ ଚକ ମଝିକୁ ଡେଇଁପଡ଼ିଲା, ପୈଡ଼ୀ ଡେଇଁପଡ଼ିଲା । ସେତେବେଳେ—

ଭୟ, ଆଶ୍ଚର୍ଯ୍ୟ ଏବଂ ହାହାକାର ହେତୁ ସଡ଼କର ଦୁଇପାଖରେ ଝଡ଼ ଉଠିଲା —

ପାଣିଭର୍ତ୍ତି ଗିଲାସ ଭାଙ୍ଗିଗଲେ ପାଣି ଯେପରି ବୋହିଯାଏ, ସେହିପରି ପୈଡ଼ୀର ଶରୀରରେ ଏପର୍ଯ୍ୟନ୍ତ ସଜୀବ ଓ ସଙ୍ଗଠିତ ରୂପରେ ବୋହୁଥିବା ରକ୍ତ ବିନା କିଛି କାରଣରେ କିମ୍ବା ବିନା କିଛି ପ୍ରୟୋଜନରେ ସଡ଼କ ଉପରେ ବିସ୍ତୃତ ହୋଇପଡ଼ିଲା ।

ସେତେବେଳେ ସେ ରକ୍ତ ଧରଣୀକୁ କେଉଁ କରୁଣ କାହାଣୀ ଶୁଣାଇଛି, ମୁଣ୍ଡରୁ ବାହାରିପଡ଼ିଥିବା ଖପୁରି ମାଟିରେ ଗଡ଼ି କଣ କଣ ଭାବିଥିବ । ବାହାରକୁ ବାହାରି-ପଡ଼ିଥିବା କହୁଣି ହାଡ଼ ବସ୍ତ୍ର ଆଗନ୍ତୁକଙ୍କୁ କେଉଁ କେଉଁ ଦାଗକୁ ଦେଖାଉଛି ଏବଂ ନିର୍ନିମେଷ ନୟନ କାହାକୁ କାହାକୁ ମୃତ୍ୟୁ-ଅଭିଶାପ ଦେଉଛି -

ଆଶ୍ରମରେ ବୋହୁଥିବା ପବନକୁ, ପତଳା ଧୂଳିକଣାକୁ, ସବୁଜ ସବୁଜ ଗଛକୁ, ଗରମ ଗରମ ଖରାକୁ, ଅନ୍ତ ଦୂରରେ ଗରଜୁଥିବା ସାଗରକୁ ଏବଂ ଗଛ ଉପରେ ବିସ୍ତୃତହୋଇଥିବା ଆକାଶରୂପୀ ସମାଧିକୁ ଏହା ସବୁ ଜଣାଯାଇଥିବ; ବା ହୋଇପାରେ ଜଣା ବି ନଯାଇପାରେ ।

## ଏକ ଲକ୍ଷ

ଗୋଟାଏ ବାଜିବାକୁ ଯାଉଛି —

ବାହାରେ ଖରା ବଡ଼ କଷ୍ଟ ହେଉଛି ଆଉ ଯେଉଁ ଅଫିସରେ ଚକ୍ରପାଣି କାମ କରୁଛି, ତା ଭିତରେ ଗରମରେ ବ୍ୟତିବ୍ୟସ୍ତ ଲାଗୁଛି ।

ଆଉ ଚକ୍ରପାଣି ପେଟରେ—ଅଧଘଣ୍ଟା ହେଲା—ମୂଷା ଦୌଡ଼ୁଛନ୍ତି ।

ମଧ୍ୟାହ୍ନ-ଭୋଜନର ବେଳ । ସମସ୍ତେ ଅଫିସରେ, ଯେଉଁ ଲୋକମାନେ ବିଭିନ୍ନ ପ୍ରକାର ବାକ୍ସ, ପୁଡ଼ିଆ ଆଉ ରଙ୍ଗ-ବେରଙ୍ଗ 'ଫ୍ଲାସ୍କ'ରେ ଖାଇବା-ପିଇବା ଜିନିଷ ଘରୁ ଆଣିଛନ୍ତି, ସେମାନେ ନିଜ ନିଜ ଜିନିଷ ଖୋଲି ଜଲଦି ଜଲଦି ଖାଉଛନ୍ତି । ମଝିରେ ମଝିରେ ବାହାର ଖରାକଥା ମନେ ପଡ଼ିଲାରୁ କ୍ଲାନ୍ତିର ଚିହ୍ନାକୁ ଦୀର୍ଘ ନିଶ୍ୱାସ ରୂପରେ ସ୍ୱୀକାର ମଧ୍ୟ କରିନେଉଛନ୍ତି ।

ସାମନାରେ ସେ ଦୃଶ୍ୟ ଦେଖି କୋଡ଼ିଏ ବର୍ଷର ଚାକିରି ଆଉ ଚାଳିଶିବର୍ଷର ବୟସବାଲା ଚକ୍ରପାଣି ଦୁଇତିନି ମିନିଟ୍‌ରୁ ବେଶୀ ନିଜ ଚୌକିରେ ବସିପାରିଲା ନାହିଁ ।

"ବସିଲେ କାମ ଚଳିବ ନାହିଁ । ବାହାରକୁ ଯାଇ ପେଟରେ କିଛି ନା କିଛି ପକାଇବାକୁ ପଡ଼ିବ ।" କହିକରି ସେଠୁ ଉଠି ଚାଲିଗଲା ।

ଅଫିସ ଭିତରର ଗରମରୁ ବାହାରି ଚକ୍ରପାଣି ବାହାରର ଖରାରେ ପ୍ରବେଶ କଲା । ସଡ଼କର ସେପାଖରେ କଫି ଦୋକାନ ଅଛି ଆଉ ତାର ପାଖରେ ଲାଗିକରି 'ନାଗାସ୍ୱାମୀ ଏଣ୍ଡ ସନ୍ସ'ଙ୍କର ପାନ ଦୋକାନ ଅଛି ।

ଖରାରେ ଜଲଦି ଜଲଦି ପାଦ ପକାଇ ଚକ୍ରପାଣି ସେପାଖ ଫୁଟ୍‌ପାଥ୍‌ରେ ପହଞ୍ଚି-ଗଲା ।

'କଫିହାଉସ୍' ଏକଦମ୍ ନୂଆ ରକମର । କାଚର କାନ୍ଥ ଏବଂ ଦୁଆର ପାଖରେ ଗରମ ଗରମ ଖାଇବା ଦ୍ରବ୍ୟମାନଙ୍କର ତାଲିକା 'ବୋର୍ଡ୍'ରେ ଲେଖାଅଛି ।

'ନାଗାସ୍ୱାମୀ ଏଣ୍ଡ ସନ୍ସ' ବାଲା ପାନ ଦୋକାନରେ 'ଟବ୍'ର ଗରମ ପାଣିରେ 'କୁଲ୍ ଡ୍ରିଙ୍କସ୍' ରଖାହୋଇଛି । ଯେଉଁମାନଙ୍କର 'ପକେଟ' ସେ ସବୁ ସେବନ କରିବା ପାଇଁ ଆବଶ୍ୟକ ପରିମାଣରେ 'ଗରମ' ଅଛି ସେମାନେ ଗରମ କାଣିକରି ମଧ୍ୟ ସେବନ କରୁଛନ୍ତି ।

ବାହାରେ ଖରା ଯେତେ ତେଜ୍ ଅଛି - ଚକ୍ରପାଣିର ପେଟରେ ଭୋକର ଦାଉ ସେତିକି ଜଣାପଡ଼ୁଛି ।

ଗରମ ଗରମ ଜିନିଷର ଉପରେ କଳା ବୋର୍ଡ଼ ଉପରେ ଧଳା ଅକ୍ଷର—'ଇଡ଼ଲି'

ପର ଅକ୍ଷର—'କଂକ୍ରୀଟ' କରାହୋଇଥିବା ରାସ୍ତା ଉପରେ ଖରା ପରି ଝଲକୁଛି ।

'ଇଡ଼ଲି'—ଚାରିଅଣା ।

(ଲକ୍ଷ୍ମୀମଣ୍ଡଳ ଚଟଣି ବି ଦେଉନାହାଁନ୍ତି ଆଉ ସାଁବାର ପାଇଁ ଦଶପଇସା ଅଲଗା ମାଗୁଛି । ଚକ୍ରପାଣିଙ୍କୁ ଏହି ଭାବନା ଉଦାସ କରିଦେଲା ।)

କଫି ମଧ୍ୟ—ଚାରିଅଣା

ସାଧା ଦୋସା—ସେ ବି ଚାରିଅଣା

ସିଙ୍ଗଲ୍ ବରା—ପନ୍ଦର ପଇସା

ବାକି ଜିନିଷ—ଚକ୍ରପାଣିଙ୍କୁ ଅନାବଶ୍ୟକ ମନେହେଲା ।

ନାଗାୟା ଝାଳନାଳ ହୋଇ କାମ କରୁଛି । କୌଣସି ଧର୍ମ-ଭୋଜିରେ ବଳି-ଯାଇଥିବା ପତ୍ର ପରି ପାନପତ୍ର ଅଲଗା ଅଲଗା ରଖି ତା ଉପରେ ରଙ୍ଗୀନ୍ ବୋତଲ ଗୁଡ଼ିକରୁ କଣ ଜିନିଷ ଢାଳୁଛି ।

. ଚୌଧୁରୀ ବାବୁ, ସିଗାରେଟ୍ ଦେଲ—ନାଗାୟା ମହାଶୟ, ପାନ—ନାଗାୟାବାବୁ, ପାନ—କେତେ ଲୋକ ପାଟି କରୁଛନ୍ତି—ନାଗାୟା ଆଗ୍ରହରେ ସମସ୍ତଙ୍କ କଥା ଶୁଣୁଛି ଏବଂ ବଡ଼ ସାବଧାନରେ ହିସାବ କରି ପଇସା ଅସୁଲ୍ କରୁଛି ।

"ମିଠା ପାନ ଦଶ ପଇସା ।"

"ସିଗାରେଟ୍ ପନ୍ଦର ପଇସା···ଆଉ—"

ଚକ୍ରପାଣିର ଆମେରିକାନ୍ ଟେରିଲିନ୍ ସାର୍ଟରେ ଦୁଇଟି ପକେଟ ଅଛି ଏବଂ ଧଳା 'ଡ୍ରିଲ୍' ପାଣ୍ଟରେ ତିନୋଟି ।

ଟେରିଲିନ ସାର୍ଟର 'କଲର' ଖାଲରେ ମଇଳା ହୋଇ କାଳେ ଶୀଘ୍ର ଚିରିଯିବ, ସେଥିପାଇଁ ଚକ୍ରପାଣି ସାର୍ଟର କଲର ଏବଂ ନିଜ ବେକ ଭିତରେ ଯେଉଁ ରୁମାଲ ଲଗାଇଥିଲା, ସେ ଝାଳରେ ଓଦା ହୋଇଗଲାଣି ।

ସବୁ ପକେଟରେ ଯେଉଁ ପଇସା ଥିଲା—ସବୁ ଏକାଠି କରି—ହିସାବ କରି ଚକ୍ରପାଣି ଦେଖିନେଲା କି ସେ ସବୁ ମିଶି ତେପନ ପଇସା ହେଉଛି ।

ଆଉ ଥରେ ଗଣିକରି ଦେଖିଲା—ହଁ, ସେଇ ତେପନ ହିଁ ହେଉଛି ।

ଇଡ଼ଲି, କଫି, ପାନ ଓ ସିଗାରେଟ—ସ୍ଥାଇ ବି ହିସାବ କଲା ।

ଯେତେ ରକମର ହିସାବ ଲଗାଇଲେ ମଧ୍ୟ ଗୋଟାଏ ପଇସାର ତଫାତ ହେଉନାହିଁ ଦେଖି, ସେତେବେଳେ 'ଏକାଉଣ୍ଟାଣ୍ଟ' ଚକ୍ରପାଣି ହିସାବ ଯୋଡ଼ିବା ବନ୍ଦ କରିବା ଛାଡ଼ି, ପଇସା କାଢ଼ିବା ଆରମ୍ଭ କରିଦେଲା ।

ଠିକ୍ ସେତିକବେଳେ ନାଗାୟା କାମରେ ବହୁତ ବ୍ୟସ୍ତ ଥାଇ ମଧ୍ୟ ଚକ୍ରପାଣିଙ୍କୁ ଦେଖି କହିଲା, "କଣ ବାବୁ, ଏପର୍ଯ୍ୟନ୍ତ କଫି ପିଇନାହାଁନ୍ତି ?"

"ନା, ଆଜି ପେଟ ଟିକେ ଭଲ ନାହିଁ ଜଣାଯାଉଛି", ହିସାବ କରିବା ଓ ପଇସା ବାହାର କରିବାର ଗଣ୍ଡଗୋଳରେ ଥିବା ଚକ୍ରପାଣି କହିଲା ।

ନାଗାସ୍ୱା ଏଣ୍ଡ ସନ୍‌ସ ପାନ ଦୋକାନରେ ତୋରଣ ପରି ବନ୍ଧା ହୋଇଥିବା ଢଙ୍ଗରେ ଲଟକିଥିବା ସିନେମା-ଷ୍ଟାରମାନେ—ପାମ୍ପିଡ଼ ପରି ଶୃଙ୍ଖିଳ ଦିଶୁଛନ୍ତି । ଚକ୍ରପାଣି ସେହି ଛବିଗୁଡ଼ିକ ଆଡ଼େ ଦୟାର୍ଦ୍ର ଦୃଷ୍ଟିରେ ଚାହୁଁ ଚାହୁଁ ନିଜର ତାଲିକାରୁ ବଡ଼ ନିର୍ଦ୍ଦୟ ଭାବରେ ଇଡ଼ଲିକୁ କାଟିଦେଲା ।

କଫି ପିଇବା ତ ଅତି ଆବଶ୍ୟକ, ତା ବିନା କାମ ଚଳିବ ନାହିଁ । ନ ହେଲେ ମଧ୍ୟାହ୍ନ ପରେ 'ବସ୍‌'ଙ୍କ ସହିତ ଦେଖାହେବ ତ ସବୁ ଅକ୍ଷର ଭୁଲ ଲେଖା ହୋଇଯିବ; ଆଉ 3+2=4 ହୋଇଯିବ ।

ପୁଣି ସିଗାରେଟ୍‌ ମଧ୍ୟ ନିଶ୍ଚୟ ଆବଶ୍ୟକ । ବ୍ରହ୍ମା ବା ବିଷ୍ଣୁ ସ୍ୱୟଂ ଆସିଲେ ମଧ୍ୟ ତାକୁ ଏ ତାଲିକାରୁ କାଟିପାରିବ ନାହିଁ । ଆଉ ମିଠା ପାନ ?

ନାଗାସ୍ୱା ବଡ଼ ସମ୍ମାନ ସହିତ କଥାବାର୍ତ୍ତା କଲା । ଯଦି ପାନ ନ ନିଏ ତା ମନ ଦୁଃଖ ହବ । ଭାବିବ ମୁଁ କୃପଣତା କରୁଛି । ଏଥିଯୋଗୁ ସିଗାରେଟ୍‌ ଓ ପାନ ତ ନିଶ୍ଚୟ ନବାକୁ ପଡ଼ିବ, ଚକ୍ରପାଣି ଠିକ୍ କରିନେଲା ।

ବେକରୁ ଓଦା ରୁମାଲ କାଢ଼ି ସେଥିରେ ମୁହଁରୁ ଝାଳ ପୋଛିନେଲା ।

ତେପନ ପଇସାରେ ଭୋକ, ଶୋଷ, ଅଭ୍ୟାସ, ଅଭିମାନ, ଆଉ ଅଧିକାର ଜାଣିବାର ନିଶ୍ଚୟ କରି ଚକ୍ରପାଣି ଓଠରେ ଗରମ ଦାଜିବାଯାଏ ସିଗାରେଟ୍‌କୁ ଶେଷ ପର୍ଯ୍ୟନ୍ତ ଟାଣିସାରି ବାହାରେ ପକାଇଦେଲା ଏବଂ କଫି 'କ୍ଲବ୍‌'ରେ ପଶିଗଲା ।

ପାଞ୍ଚଟାଯାକ ପକେଟରେ ଥିବା ପଇସା ଏକାଠି କରିନେଲା ।

ଆଉ ଏପରି ହେଲେ କାମ ଚଳିବ ନାହିଁ । କେତେ ଦିନ ଏପରି ଚଳିପାରିବ । କିଛି ନା କିଛି କରିବାକୁ ପଡ଼ିବ । ଚାକିରି ଛାଡ଼ି 'ପ୍ରଭିଡେଣ୍ଟ ଫଣ୍ଡ'ର ପଇସାରେ ତେନ୍ତୁଳି, ଲଙ୍କା ଦୋକାନ ଖୋଲିବା ଉଚିତ ।

କିଏ ଚାରି ଜଣ—ଜଣାଶୁଣା ଲୋକ—ଏଇ ଅଳ୍ପଦିନ ହେଲା ଅନ୍ୟ ବିଭାଗରେ 'କ୍ଲାର୍କ' ହୋଇ ଭର୍ତ୍ତି ହୋଇଛନ୍ତି ଭଳି ଲାଗୁଛି—ଚକ୍ରପାଣିକୁ ଦେଖି ଦେଖି ଦରଖିଆ ଦୋସା ମୁହଁରୁ କାଢ଼ି ତାକୁ ଅଭିବାଦନ ଜଣାଇଲେ । ପରଷିଲାବାଲା ରଙ୍ଗସ୍ୱା ବଡ଼ ବିନମ୍ର ହୋଇ ପଚାରୁଛି—"ସାହେବ ଗରମ ଗରମ ଇଡ଼ଲି ନେଇ ଆସିବି ?"

ଚକ୍ରପାଣି ଆଟରେ ହସିଦେଲା । ରଙ୍ଗସ୍ୱା ବୟସରେ ଶ୍ରେଷ୍ଠ ଏବଂ ଗରିବ ପିଲା । ବୟସ ଏବଂ 'ଷ୍ଟାଟସ୍‌'ରେ ଯଥେଷ୍ଟ ନୀଚ ସ୍ତରର—ଏଇସ୍ୱା ଥିଲା ଏ ହସର ଭାବାର୍ଥ । ଜିଭ-ଲାଳସା ରଙ୍ଗସ୍ୱା ପରି କିଶୋରମାନଙ୍କ ପାଇଁ ଠିକ୍ ଅଛି । ନୂଆ ନୂଆ 'ଗ୍ରାଜୁଏଟ୍‌' ପରୀ କୁହାଯାଉଥିବା ଜୀବନ-ସହସ୍ରଶ୍ରେଣୀମାନଙ୍କୁ ଯିଏ ଏପର୍ଯ୍ୟନ୍ତ ପାଇନାହାନ୍ତି—ସେହି ନୂଆ କିରାଣୀମାନଙ୍କ ପକ୍ଷରେ ଏହା ସ୍ୱାଭାବିକ । କିନ୍ତୁ ଜୀବନର ମନ୍ଥନରେ ସକ୍ରିୟ ଭାଗ ନେଲାବାଲା ମୋ ପରି ଅନୁଭବୀ ବ୍ୟକ୍ତିମାନଙ୍କ ପାଇଁ ଏହା ଅସମ୍ଭବ; ସମ୍ମାନ-ସୂଚକ ମଧ୍ୟ ନୁହେଁ । ଏହା ଥିଲା ସେ ହସର ସାରାଂଶ ।

"ନାହିଁ ରଙ୍ଗସ୍ୱା ! ଆଜି ଘରେ ପ୍ରୟୋଜନରୁ ଅଧିକ ଖାଇବାକୁ ପଡ଼ିଥିଲା—

ରକମ ରକମର ଖାଦ୍ୟ ତିଆରି ହୋଇଥିଲା ନା ? ତୁ ଯାଇ ଗରମ ଗରମ କାଫି ନେଇ ଆ, ଶନି ଟିକେ କମ୍ ଦବୁ”—ଚକ୍ରପାଣି କହିଲା ।

‘ଅଲ ରାଇଟ୍’ କହି ରଙ୍ଗୟ୍ୟା ଚାଲିଗଲା ।

ଚକ୍ରପାଣି ମନରେ କିଛି ସମୟ ପୂର୍ବରୁ ଡେଲୁଲ ଇତ୍ୟାଦିର ଦୋକାନ ପାଇଁ ଯେଉଁ ଖିଆଲ୍ ଉଠିଥିଲା ସେ କଥା ଭାବି ତାକୁ ଲାଜ ମାଡ଼ିଲା । ଏକାଉଣ୍ଟାଣ୍ଟର ମର୍ଯ୍ୟାଦାକୁ—ଯାହା ଅତି କମ୍‌ରେ ଦଶ ପନ୍ଦର ବର୍ଷଯାଏ ଟେକି ରଖିବ ଇଡ଼ଲି ଖାଇବା ଲୋଭରେ କଣ ସେ ହରାଇ ବସିବ ?

ଚପ୍ରାସି, ଟାଇପିଷ୍ଟ, ନିମ୍ନ ସ୍ତରର କର୍ମଚାରୀଠାରୁ ନେଇ ମାନେଜର ରମାକାନ୍ତ ପର୍ଯ୍ୟନ୍ତ ତାକୁ ବଡ଼ ‘ରେସ୍ପେକ୍ଟ’ କରନ୍ତି ।

ଚକ୍ରପାଣି ମୁଣ୍ଡ ଉଠାଇ ଦେଖିଲା । ସାମନାରେ ହୋଟେଲ ମାଲିକ ‘ପକୋଡ଼ି ରାଓ’ ନିଜ ଜାଗାରେ ଜାକଜୁକ ହୋଇ ବସି ହଲଦିଆ ହଲଦିଆ ଦାନ୍ତ ବାହାର କରି ହସୁଛି । ତାହାର ଉଦ୍ଦେଶ୍ୟ ଏହା ଯେ ସେ ଆଗରେ ବସିଥିବା ଚକ୍ରପାଣିକୁ ସ୍ୱାଗତ କରୁଛି ।

ଚକ୍ରପାଣି ମଧ୍ୟ ପ୍ରତ୍ୟୁତ୍ତର ରୂପରେ ବଡ଼ ଆର୍ଟ୍ ସହି ହସିଦେଲା । ପକୋଡ଼ି ରାଓ ତାକୁ ଏତେ ଖାତିର କାହିଁକି କରେ ? ସେ ଭାବିଲା, ଏବେ ନିଜ ମନରେ ବି ସେ ନିଜକୁ ପକୋଡ଼ି ରାଓ ରୂପରେ ଦେଖିବା କଥା ନୁହେଁ । କିନ୍ତୁ ପକୋଡ଼ି ରାଓର ଆଗରୁ ‘କୁବେରନ୍’ ନାମ ଥିଲା, ସେ କଥା କାହାରି ମନେ ନାହିଁ ।

ରଙ୍ଗୟ୍ୟା କଫି ନେଇ ଆସିଲା । ପାଖରେ ଆଉ ଗୋଟିଏ ଗିଲାସରେ କିଛି ଡିକାକ୍‌ସନ୍ ମଧ୍ୟ ରଖିଦେଲା । ଏହା ଥିଲା—ପକେଟରେ ତେପନ ପଇସା, ପେଟରେ ପ୍ରୋହଲଟା ଇଡ଼ଲି ଖାଇବାପରି ଭୋକ, ଘରେ ଚାରୋଟି ପିଲା ଥିବାବାଲା ଏକାଉଣ୍ଟାଣ୍ଟ ଚକ୍ରପାଣିର ‘ଷ୍ଟାଟସ୍’ ।

ଆଜି ପକୋଡ଼ି ରାଓ ପାଖରେ ଦଶଲକ୍ଷ ଟଙ୍କାର ସମ୍ପତ୍ତି । କାଚର କବାଟ ଲାଗିଥିବା ତିନି ତିନୋଟି ହୋଟେଲ୍ । କିନ୍ତୁ ଏହି ଛକରେ ଦିନେ ଏହି ‘କୁବେରନ୍’ ରାସ୍ତା-କଡ଼ରେ ବସି ଲଙ୍କା ପକୋଡ଼ି ବିକୁଥିଲା । ବହୁତ କମ୍ ଲୋକ ସେ ପଡ଼ାର ଏ କଥା ନିଜ ଆଖିରେ ଦେଖିଥିବେ । କିନ୍ତୁ ସମସ୍ତେ ଶୁଣିଛନ୍ତି, ଜାଣିଛନ୍ତି ।

ଷ୍ଟୋଭ ଚୁଲିଟିଏ, ଗୋଟିଏ କଡ଼େଇ, ଆଲୁମିନିୟମ ପାତ୍ରଟିରେ ଅଟା, ତାଟିଆରେ ଲଙ୍କାମରିଚ—ତଳେ ଲୁଙ୍ଗି ଏବଂ ଉପରେ ହାତକୁଣ୍ଡା ଗେଞ୍ଜିରେ ଗଡ଼ାହୋଇଥିବା କାଳୀ ପ୍ରତିମାପରି ବସି କୁବେରନ ପ୍ରଥମେ ପ୍ରଥମେ ପ୍ରତିଦିନ ସେରେ ଖଣ୍ଡେ ଲଙ୍କାର ପକୋଡ଼ି ଛାଣି କରି ବିକୁଥିଲା । ସେହି, ମାସକୁ ବସ୍ତାଏ ଲଙ୍କାର ପକୋଡ଼ି କଲା-ବାଲା, ବଡ଼ ବେପାରୀ ହୋଇଗଲା ।

ଧୀରେ ଧୀରେ କୁବେରନ୍ ଜନତା ପାଇଁ ନିଜେ ଲଙ୍କାର ପକୋଡ଼ି ହୋଇଗଲା । ପ୍ରଥମେ ଅଣାକୁ ଛଅଟା ପକୋଡ଼ି ଦେଉଥିଲା । ପରେ ତିନିଟାରୁ ବେଶୀ ଦବାକୁ ନାହିଁ

କଲା । କଏ କେଉଁ ପ୍ରକାରର ମାଗିଲେ ମଧ୍ୟ, ବହକା ମାଗୁ, ମାହାଲଆ ମାଗୁ କି ଉଧାର ମାଗୁ—କୁବେରନ ମୁହଁରୁ ସିଧା ଜବାବ ଏଇଆ ବାହାରୁଥିଲ—ମିଳିବ ନାହିଁ ବାବୁ, ମିଳିବ ନାହିଁ । ଏହି ବ୍ୟବହାରରେ ଚଢ଼ିଯାଇ ଲୋକମାନେ ତା ନାଁ ପକୋଡ଼ ଗ୍ରାଓ ରଖିଲେ ।

ଏହିପରି କୁବେରନ୍ ତ୍ରିଭେନ୍ଦ୍ରମ୍‌ରୁ ଆସି ଏହି ସହରରେ ପକୋଡ଼ ଗ୍ରାଓ ରୂପରେ ରହିଗଲା; ଆଉ ସେ ଆଜ ପ୍ରକୃତରେ 'କୁବେର' ହୋଇଗଲା । କିନ୍ତୁ···

ଚକ୍ରପାଣିର ସମ୍ମୁଖରେ ଥିବା ପିଆଲାରୁ କଫି ସରିଗଲା ଏବଂ ତାର ବଗୁରଧାରା ମଧ୍ୟ ଛିଣ୍ଡି ଗଲା ।

କାଲି ଯଦି ମୁଁ ତେନ୍ତୁଳି ଲଙ୍କା ଇତ୍ୟାଦିର ତେଜରତି ଦୋକାନ ଖୋଲେ ତ ଲୋକେ କଣ କହିବେ ? ଏହି ପ୍ରଶ୍ନ ବାରବାର ତାର ହୃଦୟକୁ ବ୍ୟସ୍ତ କରି ପକାଉଲା ।

'ତେନ୍ତୁଳି ଚକ୍ରପାଣି' କହିବେ । ତାର ପିଲାମାନଙ୍କୁ ବର୍ତ୍ତମାନ ସମସ୍ତେ 'ଧନମ ଏଣ୍ଡ ସନ୍ସ'ର ଏକାଉଣ୍ଟାଣ୍ଟର ପିଲା ବୋଲି କହୁଛନ୍ତି । ସେତେବେଳେ ?

ଚକ୍ରପାଣି ସେଠାରୁ ଚାଲିଗଲା ।

ନାରାୟଣଠାରୁ ସ୍ପେସାଲ୍ ପାନ କରାଇନେଲା । ପାନ ଖାଉ ଖାଉ ଚକ୍ରପାଣି ଭାବିଲା, "ବାହାରେ ଖରା ଯେମିତି ପ୍ରଖର ହୋଇଯାଉଛି, ବଜାରରେ ଖାଉ ମଧ୍ୟ ସେମିତି ପ୍ରଖର ହୋଇ ହୋଇ ଚାଲିଛି ।"

ଦେହରୁ ଝାଳ ବୋହିଯାଉଛି । ଷ୍ଟେରଲିନ୍ ହାଟ ବଡ଼ ହଇରାଣ କରୁଛି । ଉଦାସ ଭାବରେ ଚକ୍ରପାଣି ଉପରେ ଟଙ୍ଗାହୋଇଥିବା 'ଶର୍ମିଳାଟାଗୋର'ର ଛବିକୁ ଦେଖୁଛି— ଗ୍ରେଟରେଇ ଗ୍ରେଟରେଇ ଗ୍ରହିଁ (ସ୍ଲାକସ୍‌ରେ ବଢ଼ିଆ ଣା) ।

"ବର୍ତ୍ତମାନ ଆଉ ଆପଣଙ୍କୁ ଏହିପରି ଟାଣ ଖରାରେ ଅଫିସ୍ ଯିବାରେ ହଇରାଣ ହବାକୁ ପଡ଼ିବ ନାହିଁ ।"

ପଛରୁ ଶୁଣାଯାଉଥିବା କଥା ଶୁଣି ଚକ୍ରପାଣି ଚମକି ଉଠିଲା । ଫେରେ ଭାବିଲା ସେ ତାକୁ କୁହାଯାଉନାହିଁ ।

କିନ୍ତୁ ସେ ଅନ୍ୟ ବ୍ୟକ୍ତି ଅୟ୍ୟାଗ୍ରାଓ ଚକ୍ରପାଣିକୁ ହିଁ କହୁଥିଲା ।

"ଗୋଟାଏ ମସଲାଦିଆ ପାନ ବନାଇଲୁ, ନାରାୟଣବାବୁ ! ଆଜ ଏ ମହାଶୟର ଭାଗ୍ୟକୁ ଲଗାଇବାକୁ ହବ । ଝଣ-ଝଣ ଶବ୍ଦରେ ଲକ୍ଷ୍ମୀଙ୍କର ଆଗମନ ହବା ଉଚିତ," ଆୟ୍ୟା ଗ୍ରାଓ କହିଲା ।

ଚକ୍ରପାଣିକୁ ଅୟ୍ୟାଗ୍ରାଓ ଏପରି ଆତ୍ମୀୟତା ସହ ଚାହିଁଲା ଯେପରି ସେ ତାର କେତେ ଦିନର ପୁରୁଣା ମିତ୍ର । ଖରାରେ—ନର୍ମା ବରଷାଇଲା ପରି ସେ ଖରାରେ —ପେଟର ଜ୍ୱାଳା ଶାନ୍ତ କରିବା ପାଇଁ କଫି ପିଇକରି—ସେଠି ଛିଡ଼ା ହୋଇଥିବା ଚକ୍ରପାଣିକୁ ଦେଖି—ଅୟ୍ୟାଗ୍ରାଓ ଆଦରପୂର୍ଣ୍ଣ ହସ ହସିଦେଲା ।

"ନମସ୍ତେ, ସାର । ଆପଣଙ୍କର କଣ ଦରକାର ପଡ଼ୁଛି, ଏତେ ବଡ଼ ଟାଣ ଖରାରେ ଚାଲିକରି ଆସି ଏତେ ଦାମିକିଆ ଟେରିଲିନ୍ ସାର୍ଟକୁ ଓଦା କରିବାର ? ଗୋଟିଏ ମାସ ଧୈର୍ଯ୍ୟ ଧରି କଷ୍ଟ କରି ଦେଇ ତା ପରେ ଦେଖନ୍ତୁ । ଆପଣ ପ୍ଲିମଥ୍ ଗାଡ଼ିରେ ଏଠିକି ଚଢ଼ି ଆସିବେ, ପେଁ । ପେଁ । ଶବ୍ଦ ଶୁଣି ଶୁଣି ନାଗାୟା ବଢ଼ିଆ ପାନ ଭଙ୍ଗି କରି ଆପଣଙ୍କ ପାଖକୁ ନେଇ ପହଞ୍ଚାଇବ । ଆପଣ କାର୍‌ରେ ବସି ବସି ପାନ ଖାଇବେ । ଫେରେ ଝଟ୍ କରି ଚାଲିଯିବେ ।" ଅପ୍ପାରାଓ ପକେଟରୁ ଚେକ୍‌ବହି ପରି କେତେ ଗୁଡ଼ାଏ ବହି କାଢ଼ୁ କାଢ଼ୁ କହିଲାଗିଲା ।

କାର୍ ଖୁବ୍ ଜୋର ଶବ୍ଦରେ ଚାଲିଲା ପରି ଗଡ଼୍ ଗଡ଼୍ କରି ଲେକଚର୍ ଝାଡ଼ୁଥିବା ଅପ୍ପାରାଓ ଆଡ଼କୁ ଚକ୍ରପାଣି ବଡ ଧ୍ୟାନରେ ଅନାଇଲା —

କୋଉଠି ଦେଖିଲା ପରି ମନେ ହଉଛି ଚେହେରା ।

ଗଳା ମଧ୍ୟ ଜଣାଶୁଣା ମନେହଉଛି ।

ଅପ୍ପାରାଓକୁ, ତା ନାମ ନ ଜାଣିଥିବା, ଚକ୍ରପାଣି ବହୁତ ଧ୍ୟାନପୂର୍ବକ ଚାହିଁ ରହିଲା ।

ନାଗାୟା ପାନ ଭଙ୍ଗି ଚକ୍ରପାଣି ହାତରେ ଦଉ ଦଉ କହିଲା, "ଏ ଅପ୍ପାରାଓ କଥାରେ ବିଶ୍ୱାସ କରନ୍ତୁ ନାହିଁ । ଏ ପୁରାପୁରି ଠକ । ଗତ ପାଞ୍ଚବର୍ଷ ହେଲା ମୁଁ ନଉଛି । ଅରେ ହେଲେ ସେ ଲକ୍ଷ୍ମୀଙ୍କର ଝଣ୍-ଝଣ୍ ଶବ୍ଦ ଶୁଣିବାକୁ ପାଉନାହିଁ ।"

ଚକ୍ରପାଣି ବୁଝିନେଲା ।

ଅପ୍ପାରାଓ କିଏ, ଏ କଥା ସେ ଭଲଭାବରେ ବୁଝିଗଲା ।

ଅପ୍ପାରାଓ ବଡ଼ ଦାମୀ ଲୁଗାପଟା ପିନ୍ଧିଛି । ତାରିଖ ଏବଂ ଦିନ ନିର୍ଦ୍ଦେଶ କରୁଥିବା ବଡ଼ ଘଣ୍ଟାଟିଏ ହାତରେ ବାନ୍ଧିଛି । ସବୁ ଆଙ୍ଗୁଠିରେ ମୁଦି । ସେହି ମୁଦି ପିନ୍ଧିଥିବା ଆଙ୍ଗୁଳିଗୁଡ଼ିକ ମଝିରେ ଚେକ୍‌ବହି ପରି ଦିଶୁଥିବା ଲଟେରୀ ଟିକଟ ବହି ଗୁଡ଼ାଏ ଧରିଛି । ଏହିପରି ଅପ୍ପାରାଓ ସେହି ଛକକୁ ତାର ଆଡ୍ଡା ଜାଗା କରି ମାସକ ସାକ ପ୍ରତ୍ୟେକ ଦିନ ଲୋକମାନଙ୍କୁ ଝଣ୍-ଝଣ୍ ଶବ୍ଦରେ ଆସୁଥିବା ଲକ୍ଷ୍ମୀଙ୍କର କଥା ଶୁଣାଇ ଶୁଣାଇ—ପିଲାଠାରୁ ଆରମ୍ଭ କରି ବୁଢ଼ା ପର୍ଯ୍ୟନ୍ତ ସମସ୍ତଙ୍କୁ ନିଜର ମିଠା ଗଳାରେ, କମନୀୟ କବିତାଦ୍ୱାରା ପ୍ରଭାବିତ କରୁଛି ।

ଚକ୍ରପାଣି ଭାବିଲା, ଭଦ୍ରଲୋକ ପରି ହସିଦେଇ ସ୍ଥାଠାରୁ ଖସିଯିବା ଦରକାର ।

ସେ ଅପ୍ପାରାଓକୁ ଗୋଟିଏ ଚାହାଣିଦ୍ୱାରା ଏହା ବୁଝାଇଦବାକୁ ଚେଷ୍ଟା କଲା ଯେ ସେ ସେସବୁ ପ୍ରଲୋଭନରେ ପଡ଼ିବା ପରି ଲୋକ ନୁହଁ, କେତେକ ସାଧାରଣ ଲୋକ ହିଁ ଏହା ପଛରେ କୋକ ପରି ଲାଗିରହିଥାନ୍ତି ।

ଅପ୍ପାରାଓ ନିରାଶ ହେଲାନାହିଁ; ବରଂ ତାର ଆତ୍ମବିଶ୍ୱାସ ଆଗ ଅପେକ୍ଷା ବଢ଼ିଗଲା ।

ଭୋଟ ମାଗିବାକୁ ଆସୁଥିବା ଭୂତପୂର୍ବ ଏମ୍. ଏଲ୍. ଏ.ଙ୍କ ପରି ମୁରୁକି ହସ ମାରି

ଅୟ୍ୟାଗ୍ରଓ କହିଲା, "ଏପରି ସଫା ସଫା କହନ୍ତୁ ନାହିଁ, ସାର୍ ! ଆପଣଙ୍କ ପରି ଲୋକଙ୍କ ଭାଗ୍ୟରେ ଲକ୍ଷ୍ମୀଙ୍କର ଅନୁକମ୍ପା ଲଖା ଅଛି । ନ ହେଲେ ଆପଣ ହିଁ କହନ୍ତୁ । ଏତେ ବଡ଼ ଟାଣ ଖରାରେ ମୁଁ ଏତେବେଳେ ଆପଣଙ୍କ ପାଖକୁ କାହିଁକି ଚାଲି କରି ଆସନ୍ତି ? ମୋର ଅନ୍ତର୍ଯ୍ୟାମୀ ମା କନକଦୁର୍ଗାଙ୍କ ଭବିଷ୍ୟବାଣୀ କହୁଛି......

ଏଥରକ ମଧ୍ୟ ମୋର ହାତରେ ବିକି ହୋଇଥିବା ଟିକଟ ଉପରେ ଲକ୍ଷେ ଟଙ୍କା ଝଣ୍ ଝଣ୍ (ଝଣ୍ ଝଣ୍ ଶବ୍ଦ ଉଚ୍ଚାରଣ କରିବାରେ ତାକୁ ସେ ପଡ଼ାରେ କେହି ଟପି ପାରିବେ ନାହିଁ । ଲୋକେ କହନ୍ତି କି ସେ ଯେତେବେଳେ ଏହି ଶବ୍ଦ ଉଚ୍ଚାରଣ କରେ ପ୍ରକୃତରେ ପଇସା ଝଣ୍-ଝଣ୍ ହେଲାପରି ଶୁଣାଯାଏ, ଶବ୍ଦ ସହି ନିଶ୍ଚୟ ପଡ଼ିଯିବ ।"......

କଲମରୁ 'କ୍ୟାପ' ଖୋଲି ତାକୁ ପଛରେ ଲଗାଇ ଆୟ୍ୟାଗ୍ରଓ କହିଲା, "କହନ୍ତୁ ସାହେବ । ଆପଣ ଯାହା ନାମ କହିବେ, ତାର ନାଁ ଲେଖିଦେବି—ଆପଣଙ୍କ ସ୍ତ୍ରୀ, ଆପଣଙ୍କ ପୁଅମାନେ, ଝିଅମାନେ, ଶଳା, ଭୁଆମାନେ ଯାହାର ହେଲେ ନାଁ ଲେଖା ଯାଇପାରେ ।"

'ଆମ କୁକୁରର ନାମ ମଧ୍ୟ ଲେଖା ଯାଇ ପାରିବ ?' ଚକ୍ରପାଣି ମନେ ମନେ କହିଲା, ମୁହଁରେ କିଛି କହିଲା ନାହିଁ । ବାସ୍ତବରେ ତା ଘରେ ନା ଅଛି ଏପରି ପାଳିତ କୁକୁର, ନା ତା ପକେଟରେ ଫାଲତୁ ପଇସା ।

"ଗୁଡ଼" କହି ଟାଳିଦବାକୁ ଚାହୁଁଥିଲା । କିନ୍ତୁ ସେ କହିଲା, "ଆଚ୍ଛା, ତା ହେଲେ କହନ୍ତୁ, ଆପଣ ଏତେ ଜୋର୍ ସହିତ କହୁଛନ୍ତି କି ମତେ ଲକ୍ଷେ ଟଙ୍କା ମିଳିବ । ସେଥିରେ ଆପଣଙ୍କର କଣ ଲାଭ ହେବ ? କେବଳ ଦଶପଇସା କମିସନ୍ ?" କହି ସେ ହସିଦେଲା ।

"ଅପମାନ" ଅୟ୍ୟାଗ୍ରଓ ଠୋ ଠୋ ହୋଇ ହସି କରି କହିଲା, ସାର୍, ଆପଣଙ୍କୁ ଦଶ ଲକ୍ଷ ମିଳିବ ତ ଦଶ ହଜାର୍ ଏଇ ଶ୍ରୀମାନ୍‌ଙ୍କୁ ମିଳିବ ।" ଶ୍ରୀମାନ କହିଲାବେଳେ ସେ ନିଜ ଛାତି ଆଡ଼କୁ କଲମ୍‌ଦ୍ୱାରା ସଙ୍କେତ କରୁଥିଲା । ସାଙ୍ଗେ ସାଙ୍ଗେ "ଏଇ ନିଅନ୍ତୁ, ବର୍ତ୍ତମାନ ଏହି ନମ୍ବର ଆପଣଙ୍କର ହୋଇଗଲାଣି । ବଡ଼ ସୁଲକ୍ଷଣ ନମ୍ବର 'ଏକ୍' ସାର ! 'ପ୍ରାଇଜ୍' ନିଶ୍ଚୟ ମିଳିବ ।"—ଏତକ କହି ସେ ନାଗାସ୍ୱାମୀକୁ ପଚାରିଲା "ଶ୍ରୀମାନ୍ ମହାଶୟଙ୍କର ପୁରା ନାମ କଣ ? କହ, ଗୁରୁ ।"

ଚକ୍ରପାଣି ଶେଷ ଚେଷ୍ଟା କରି କହିଲା, "ସେ ଭାଗ୍ୟବାନ୍ ନମ୍ବରଟା ଆପଣ ନିଜେ ନେଇ ନିଅନ୍ତୁ ନା ।"

"ନାଁ ଯେ ସାର୍ । ମୋର ଲକ୍ଷ ପାଇଁ ଲୋଭ ନାହିଁ; ଦଶ ହଜାର୍ ମୋ ପାଇଁ ଯଥେଷ୍ଟ !" ଅୟ୍ୟାଗ୍ରଓ ଅଦ୍ଭୁତ ଭାବରେ ହସି ଦେଲା ।

ନାଗାସ୍ୱାମୀର ଏଥର ବିଶ୍ୱାସ ହୋଇଗଲା ଯେ ଚକ୍ରପାଣି ଆଉ ଅୟ୍ୟାଗ୍ରଓ ହାତରୁ ଖସିପାରିବ ନାହିଁ ।

"ହଁ,ଅନ୍ତୁ ସାର୍ । ପକେଟ୍ଟୁ ରେ ପରି ଆପଣ ମଧ୍ୟ ଗୋଟିଏ ମିନାଟ୍‌ରେ କେତେ ବଡ଼ ବଡ଼ କମ୍ପାନୀ ଖୋଲିପାରିବେ ।" ନାଗାସ୍ୱାମୀ କହିଲା ।

ଚକ୍ରପାଣି ମନରେ ଅଙ୍କୁରିତ ଆଶା ଧୀରେ ଧୀରେ ପଲ୍ଲବିତ ହୋଇ 'ଯାଦୁକରର ଆମ୍ବଗଛ' ଅଳ୍ପ ସମୟ ମଧ୍ୟରେ ବଡ଼ି ବଡ଼ ଗଛର ଆକାର ଧାରଣ କରିସାରିଥିଲା ।

କିନ୍ତୁ ପକେଟରେ ପଇସା ନାହିଁ । ଯଦି ତାହା ଆଥାନ୍ତା ତ ସୃଷ୍ଟି ସୃଷ୍ଟିଟା ଇଡ଼ଲି ଆନନ୍ଦରେ ଖାଇ ଦେଇଥାଆନ୍ତା ।

"ଆଜି ଥାଉ, କାଲି ନେଇଯିବି । ଆଜି ସାଙ୍ଗରେ ପଇସା ଆଣିନାହିଁ ।" କହି ଟାଳି-ଦେଲା ।

ଅସ୍ୱାମୀର ମୁହଁ ଶୁଖିଗଲା । ଚକ୍ରପାଣି ପରି ବ୍ୟକ୍ତି ମୁହଁରୁ ଏପରି ଦୀନ ଭାବରେ କଥା ସେ ଶୁଣିବାକୁ ଚାହୁଁ ନଥିଲା, ଏହାହିଁ ତାର ମୁଖଭଙ୍ଗୀର ଅର୍ଥ ଥିଲା ।

"ବିଳମ୍ବ କଲେ ହେଉଥିବା କଥା ବିଗିଡ଼ିଯାଏ । କାଲି ପୁଣି ଏହି ନମ୍ବର, ଏହି ସମୟ, ଏହି କ୍ଷଣ, ଏହି ଭାଗ୍ୟ···କପରି ମିଳିବ ? ନୋ ଇଉଜ୍ ସାର୍ !···ଆଜି···ଏହି ବେଳାରେ···ଝଣ୍ ଝଣ୍ ଶବ୍ଦରେ···ଲକ୍ଷ୍ମୀଙ୍କର ଅନୁକମ୍ପା···ଆପଣଙ୍କୁ ମିଳିବା ଉଚିତ··· ଆପଣଙ୍କର କାର୍‌ରେ ଅଫିସ୍ ଯିବା ଉଚିତ ।"

"ବାସ୍, ଏବେ ବନ୍ଦ କର ତମର ଝଣ୍ ଝଣ୍···ଲେଖିଦିଅ ଏ ନାଁରେ ଗୋଟାଏ ଟିକେଟ······ଗୋଟାଏ ଟଙ୍କା ପାଇଁ କଣ ଏତେ ଭାବନା···କାଲି ମୁଁ ଏହାଙ୍କଠୁ ନେଇ ନେବି···ହେଇ ନିଅ · କହି ଉଦାର ହୃଦୟ ନାଗାସ୍ୱାମୀ ଗୋଟାଏ ଟଙ୍କା କାଢ଼ି ଦେଇ-ଦେଲା ।—

ଚକ୍ରପାଣିକୁ, କେଜାଣି କାହିଁକି, ଏଡ଼େ ବଡ଼ ଖରାତାପରେ ବି କିଛି ସମୟ ପାଇଁ ପବନଟା ଥଣ୍ଡା ଜଣାଗଲା । ହସି ହସି ସେ କହିଲା, "ଗୋଟାଏ ଟଙ୍କାରେ ଲକ୍ଷେ; ଏତେ ଲୋଭ ମୋର ନାହିଁ ।"

ଅସ୍ୱାମୀ ନାଗାସ୍ୱାମୀ ହାତରୁ ଟଙ୍କା ନେଇନେଲା, ଚକ୍ରପାଣିର ନାମ ପଛପଟ ଲେଖିଦେଲା । ଇଷ୍ଟଦେବଙ୍କ ନାଁ ନ ପଚାରି "ବଜରଙ୍ଗବଲୀ" ଲେଖିଦେଲା ଏବଂ ଟିକେଟ ଫର୍ କରି କାଟିଦେଲା ।

ଟିକେଟ ନାଗାସ୍ୱାମୀ ହାତକୁ ଦେଇ କହିଲା, "ଆପଣ ଆପଣଙ୍କ ହାତରେ ସେ ଶ୍ରୀମନ୍ତଙ୍କୁ ଦେଇ ଦିଅନ୍ତୁ । ସୌଭାଗ୍ୟ—ଏକ ଲକ୍ଷ ଟଙ୍କା ବାଟ ଖୋଜିକରି ଆସି-ଯିବ···ଏବେ ଜାଣ ଏହା ଚକ୍ରପାଣିଙ୍କ ହାତରେ ସୁଦର୍ଶନ ଚକ୍ର ହୋଇ ରହିବ···ଲକି ଚ୍ୟାନ୍ସ । ସୁବର୍ଣ୍ଣ ସୁଯୋଗ, ବାଃ ବାଃ ।"

ଚକ୍ରପାଣି ହସିପକାଇଲା ।

"କଥା ଏପରି କହୁଛନ୍ତି ସତେକି ଲକ୍ଷେ ଟଙ୍କା ବର୍ତ୍ତମାନ ଗଣିଦେବ ।"

"ଆପଣ ଯଦି ଭାଗ୍ୟବାନ୍ ହୋଇଥିବେ ଏଇଟି ଲକ୍ଷେ ଟଙ୍କା ହୋଇଯିବ । ଆପଣଙ୍କର ଲକ୍ଷେ ସମସ୍ୟା ସମାଧାନ କରିବାର ଏକ ଲକ୍ଷ । ଆପଣଙ୍କର ମଧୁର କାମନା-

ଗୁଡ଼ିକ ପୂର୍ଣ୍ଣକରିବାର କଳ୍ପବୃକ୍ଷ । ଉଦ୍ୟାନରେ ଥାଆନ୍ତୁ ବା କାର୍ଯ୍ୟାଗାରରେ ଥାଆନ୍ତୁ— ଆପଣଙ୍କୁ ଖୋଜିକରି ଦର୍ଶନଦେଲାବାଲା ଲକ୍ଷ୍ମୀ ଏହି ଲକ୍ଷେ ଟଙ୍କାରେ ଅଛି । ଆଚ୍ଛା, ନାଗାସ୍ବାବାବୁ, ବର୍ତ୍ତମାନ ଆପଣଙ୍କର କଣ ବିଗୁଡ଼ିବ ? ଆପଣଙ୍କ ନାମରେ ମଧ୍ୟ ଖଣ୍ଡେ ଟିକେଟ ଦେଇଦେବି ?'' ଅଯ୍ଯାଗୁଡ଼ି କହିଯାଉଥିଲା ।

''ଯା ହେ । ତାଙ୍କୁ ଲକ୍ଷେ ଟଙ୍କା ଉଡ଼ାଇବାର ପ୍ରତିଶ୍ରୁତି କରିସାରିଛି । ଫେରେ ମତେ କୋଉଠୁଁ ଆଣିଦେବ ? ତମେ ବି ବଡ଼...''ନାଗାସ୍ବା ପାଟିକରି କହିଲା ।

ଚକ୍ରପାଣି ଟିକେଟ ନେଇନେଲା । ଟଙ୍କା ସାଙ୍ଗେ ସାଙ୍ଗେ ନ ଫେରାଇ ପାରିବାର ଅସମର୍ଥତାକୁ ଗୋଡ଼ାଇଲା ପରି ହସି ଦେଇ ସେ ବାହାରର ସେହି ମୁଣ୍ଡଫଟା ଖରାରୁ ଅଫିସ୍‌ର ଗରମ ବାତାବରଣ ଭିତରେ ପହଞ୍ଚିଗଲା ।

ଲଟେରୀ ଟିକେଟ ପ୍ୟାଣ୍ଟ ପକେଟ୍‌ରେ ରଖିଦେଲା ।

'ହୁଁ...ସୁଦର୍ଶନ ଚକ୍ର । ଏକ ଲକ୍ଷ ଟଙ୍କା । ଏହି କାଗଜ ଖଣ୍ଡକରେ ? କଣ ଗେରେଣ୍ଟି ଅଛି ଯେ ମତେ ହିଁ ମିଳିଯିବ । ଏହିପରି ଭାବୁ ଭାବୁ ସେ ଯାଇ ତା ଚୌକିରେ ବସିଲା । ଅଯ୍ଯାଗୁଡ଼ି ବଡ଼ ଚତୁର । ଯାହା ବି ହଉ, ମୋଠାରୁ ସେ ଭଲ ଅବସ୍ଥାରେ ଅଛି, କେତେ ବଢ଼ିଆ—

ଚକ୍ରପାଣି କାମ କରିବା ଚେଷ୍ଟାରେ ଥିଲା; କିନ୍ତୁ ମନରେ ଶାନ୍ତି ନଥିଲା । ସେ ପକେଟରୁ ଲଟେରୀ ଟିକେଟ କାଢ଼ି ଥରେ ଦେଖିବାକୁ ଚାହୁଁଥିଲା ।

କ୍ୟାସିୟର୍ ନିଜ ଜାଗାରେ ବସି ନାସ ଶୁଙ୍ଗୁ ଶୁଙ୍ଗୁ କହୁଥାଏ—''କଣ ସାହେବ, ଆଜି ତ ବଡ଼ ଖୁସି ଅଛ ଜଣାଯାଉଛି ? କଣ କିଛି ଖାସ୍ କଥା ଅଛି ?''

ଚକ୍ରପାଣିକୁ ଆଶ୍ଚର୍ଯ୍ୟ ଲାଗିଲା । ସେ ବୁଝିପାରିଲା ନାହିଁ ତାର ଲଟେରୀ ଟିକେଟ କିଣିବା କଥା ଏମାନଙ୍କୁ କିପରି ଜଣାଗଲା ।

''ନାହିଁ ତ, ସେମିତି ଖାସ୍ କଥା ତ କିଛି ନାହିଁ'' ଛଟପଟ ହୋଇ କହିଲା 'ହେଁଇ' କ୍ୟାସିୟର ଭଙ୍ଗମତି ହୁଙ୍କ ମାରି କହିଲା, ''ଆଜି ମୋ ପତ୍ନୀ ମାସିକଧର୍ମରେ ଅଛି ! ମୁଁ ନିଜେ ରାନ୍ଧିକରି କଣ ଟିକେ ଖାଇଦେଇଛି । ଲଞ୍ଚ୍-ଫଞ୍ଚ୍ କିଛି ଆଣିନାହିଁ । ବାହାରେ ଖରା ଓ ଭିତରେ ଭୋକରେ ହଇରାଣ ହୋଇଗଲିଣି'' ଭଙ୍ଗମତି ତାର ନିଜର ଦୁଃଖ ଶୁଣାଇ କହିଲା ।

''ବଡ଼ ଅବଶୋଷ, ଭାଇ !'' ସହାନୁଭୂତିପୂର୍ବକ ଚକ୍ରପାଣି କହିଲା । 'ମୋର ମଧ୍ୟ ପ୍ରାୟ ସେହି ଦଶା । ମୋର ପତ୍ନୀ ତ ଘରେ ଅଛି । କିନ୍ତୁ ମୁଁ ଏକଲା ଖାଇଲେ କଣ ହବ ? ଉପମା କଲେ ତ ବୃଦ୍ଧପିଲାଙ୍କୁ ଟିକେ ଟିକେ ଖୁଆଇବାକୁ ପଡ଼ିବ, ଏତେ କୋଉଠୁ ତିଆରି ହୋଇପାରିବ ?' ମନେ ମନେ ଚକ୍ରପାଣି କହିଲା । କିନ୍ତୁ ବାହାରେ ଏତିକି କହିଲା, ''ଏ ପଙ୍ଖା ବି କେଡ଼େ ବେକାର, ଗରମ ପବନ ଆସୁଛି । ଛିଃ ଛିଃ, କେଡ଼େ ଭୀଷଣ ଗରମ ହଉଛି ।''

ଏତିକିରେ ସୁଦର୍ଶନ-ଚକ୍ର କଥା ମନେ ପଡ଼ିଗଲା । ଏକ ଲକ୍ଷ ଟଙ୍କା ମିଳିଲେ

କିଣି ଏ ଲୋକ ସତରେ ଦେବେ ? କାହିଁକି ଦେବେ ନାହିଁ ? ପିଲାଦିନ ତେଲବାଲା ସୁବ୍ରୟା ବିଷୟରେ ମଧ୍ୟ ଏହିପରି କଥା ମୁଁ ଶୁଣିଥିଲି । ସେହି ପଇସାରେ ସେ 'ବର୍ମାଶେଲ' କମ୍ପାନି ଖୋଲିଥିଲା । ଯଦି ମତେ ମିଳିଯାଏ ତ ମୁଁ ସର୍ବପ୍ରଥମେ ଏସ୍ୱାର କଣ୍ଡ ସନ୍ଦୁଡ଼ କୋଠରି କରିବି; କିନ୍ତୁ ମୋ ପରି ବ୍ୟକ୍ତିକୁ ଲକ୍ଷେ ଟଙ୍କା···ନାହିଁ ନାହିଁ ମିଳିବ ନାହିଁ···ମିଳିବ ନାହିଁ···'

'କାହିଁକି, ମୁଁ ତାଙ୍କଠାରୁ କୋଉ ହିସାବରେ କମ୍ କି ? ତା ଛଡ଼ା ମୁଁ ଗଣ୍ଡେଇଖୋରଙ୍କ ପରି ଟିକଟର ପୋକ ହୋଇ ଘୂରିଆଡ଼େ ଖୋଜି ବୁଲୁ ନଥିଲି ତ । ସେଇ ମୋ ପାଖକୁ ଆସିଲା । ଯେପରି ଅସ୍ୱାଗତ କହିଲା, ଝଣ୍ ଝଣ୍ ଶବ୍ଦ ସହିତ ଲକ୍ଷ୍ମୀ ସ୍ୱୟଂ ଆସିପାରନ୍ତି । ପିଲାଦିନେ ମୁଁ କେଉଁ ପୋଥିରେ ମଧ୍ୟ ପଢ଼ିଥିଲି—ଲକ୍ଷ୍ମୀ ଆସନ୍ତି ତ ନଡ଼ିଆ ପାଣି ପରି ହଠାତ ବୋହିଆସନ୍ତି ।'

'ଲକ୍ଷେ ଟଙ୍କା ମିଳିଗଲେ ତ କଣ କରାଯିବ' ଚକ୍ରପାଣି ଆଗରେ ଏହି ସମସ୍ୟା ଆସିଗଲା ।

ଆଗ ଯେଉଁ ଗାରେଜ୍‌ରେ ସେ ଅଛି ତାକୁ ଘରର ମାଲିକ ରାମପ୍ରସାଦର ମୁହଁକୁ ଫୋପାଡ଼ିବ । ଅଢ଼େଇ ବଖରାର ପୁରୁଣା ଘର···ସେଥିରେ ନା ପାଇପ ଅଛି, ନା ପାଇଖାନା ! ବୁଢ଼ିଆଣୀ ଜାଲ, ମୂଷା, ଅସରପା···ସବୁ ଅସନା · ଆବର୍ଜନା···

ସାଙ୍ଗେ ସାଙ୍ଗେ ତିରିଶି ହଜାରରେ ଗୋଟିଏ ଶ୍ରେଷ୍ଠିଆ ଘର କିଣିବା—କିପରି ଘର କିଣିବା କଥା, ତାହା ଚକ୍ରପାଣି ସେତେବେଳେ ଠିକ୍ କରିପାରିଲା ନାହିଁ । ଏବେ ଅନ୍ଧନାରାୟଣ ରାଜାରାଓ କୋଡ଼ିଏ ବର୍ଷ ହେଲା ଅଧାପେଟ କରି ଖାଇ ଗୋଟିଏ ଘର କରିଛି । ତ୍ରେକରେ ରହି କଲେ ମଧ୍ୟ ବହୁତ ବଢ଼ିଆ ହୋଇଛି ଆଉ ଆରାମରେ ଦିନ କଟାଉଛି । ସେହିପରି ଘର କିଣିବା କଥା ଚକ୍ରପାଣି ଠିକ୍ କରିନେଲା ।

ହିସାବ ମିଳାଉଛି । ଶେଷ ମୋଟ୍ ଦେଖି 'ଟିକ୍' ଚିହ୍ନ ଦଉଛି । ବଡ଼ପୁଅ ହିସାବ କରିବାରେ ବଡ଼ ତୀକ୍ଷ୍ଣ (ଯେପରି ସେ ନିଜେ) । ତାକୁ ଇଞ୍ଜିନିୟରିଙ୍ଗ ପଢ଼ାଇବାକୁ ହିବ···ଯଦି ମୋର ପରି କ୍ୟାଲ୍‌କୁଲେଟରରେ ପଶିଗଲା ତ ଦଶ ପନ୍ଦର ବର୍ଷରେ ଏକାଉଣ୍ଟାଣ୍ଟ ହିବ । ଏହିପରି ପୁଅର ଭବିଷ୍ୟତ ବିଷୟରେ ମଧ୍ୟ ଚକ୍ରପାଣି ଚିନ୍ତା କରିବା ଆରମ୍ଭ କରିଦେଲା ।

'ବିଚାରୀ ଶାରଦା । ସାମନାରେ ଆସି ମୁହଁ ଖୋଲିପାରେ ନାହିଁ···ବାହାଘରରେ ଯେଉଁ ରେଶମୀ ଶାଢ଼ୀ ଦେଇଦେଲି, ବାସ୍, ତା ପରେ କେବେ ଏ ଜନ୍ମରେ ଆଉ ରେଶମୀ ଶାଢ଼ି କିଣିପାରିଲା ନାହିଁ ।' ପତ୍ନୀ ଉପରେ ଦୟା ଆସିଲା । ସ୍ୱା ଭିତରେ ନାଇଲନ୍ ଲୁଗା ଆସିଲା, ନାଇଲେକ୍ସ ଆସିଲା, ଟେରିଲିନ୍ ଆସିଲା, ଟେରିକଟ୍ ବାହାରିଲା ଏବଂ ଆହୁରି କେତେ ରକମର ବାହାରିଲା । ବଡ଼ପୁଅକୁ ଅଠର ବର୍ଷ ହିବାକୁ ଯାଉଛି । ତାଠାରୁ ମୋ ସ୍ତ୍ରୀ ଷୋହଳ ବର୍ଷ ବଡ଼ ହିବ । ତେବେ ବି ସେ ମୁଣ୍ଡରେ ଉଚ୍ଚା ଖୋସା କରି ଏମ୍ବ୍ରୟଡ଼ରିକରା ଶାଢ଼ି ଯଦି ପିନ୍ଧିଦବ ନା, ବାଳ୍ପପନମାନଙ୍କର ଛପା

ହୋଇଥିବା ଝିଅମାନଙ୍କ ଛବିକୁ ଝପି ମାତ୍ର କରିଦବ । ତେବେ ତା ପାଇଁ ଦୁଇଟା···
ନାହିଁ ନାହିଁ ଏତେ କୃପଣତା କରିବା ନାହିଁ । ଯେତେବେଳେ ଏତେ ପଇସା ମିଳୁଛି ତେବେ ଦୁଇଡର୍ଜନ କିଣିପକାଇବ ।' ଏହାପରି ଚକ୍ରପାଣି ଠିକ୍ କରିନେଲା ଯେମିତ ଫେରେ ସେଥିରେ ପରିବର୍ତ୍ତନ ହୋଇପାରିବ ନାହିଁ ।

ସବୁ ଲୋକ ଖଦୁଡ଼ଛନ୍ତି କି ମୁଁ ସଉକ କରି ଟେରିନ୍ ପିନ୍ଧୁଛି, ଯେପରି କି ଏ ଖଦି ବଢ଼ିଆ ଜିନଷଟାଏ । ରାତରେ ଧୋଇ ଶୁଖାଇଦେଲେ ସକାଳେ ମଇଳା, ଝାଲୁଆ, ସାର୍ଟ ପିନ୍ଧିବା ଅପେକ୍ଷା ସଫା, ଧଳାସାର୍ଟ ପିନ୍ଧି ଯିବାରେ ସୁବିଧା ହୁଏ । ସେଥିପାଇଁ କରଜ କରି କରି ଏଇଟା କରାଇଛି । କିନ୍ତୁ ଏ କଥା କାହାରିକୁ ଜଣାନାହିଁ ।

ଚକ୍ରପାଣି ମୁଣ୍ଡ ଉଠାଇ ସମସ୍ତଙ୍କୁ ଅନାଇଲା, କାଳେ କିଏ ତାର ବିଗୁଢ଼ଗୁଡ଼ାକ ବୁଝିପାରିଥିବ ଏହି ଆଶଙ୍କାରେ । କିନ୍ତୁ ଦୂରରେ ବସିଥିବା ନମ୍ନ ଶ୍ରେଣୀର କିରାଣୀ 'ଫିଲମ୍ ଫେୟାର୍' ପଢ଼ୁଥିଲା, ତାକୁ ତରତର ହୋଇ ଦରଜା ଭିତରକୁ ଟାଣିନେଲା ।

ଚକ୍ରପାଣିକୁ ହସ ମାଡ଼ିଲା । ସେ ଭାବିଲା 'ଅୟାଗ୍ରୱାଲ ଏକଦମ୍ ଠିକ୍ କଥା କହୁଛି । କିନ୍ତୁ ବର୍ତ୍ତମାନ ପ୍ଲିମଥକାର୍ ତ ବଡ଼ ଜିନଷ ହୋଇଛି । ଯେତେବେଳେ ବଡ଼ପୁଅ ଜନ୍ମ ହୋଇଥିଲା, ସେତେବେଳଠୁଁ ତାର ସାଇକଲ ବେକାର ହୋଇପଡ଼ିଛି । ତାକୁ ମରାମତ କରିବାଠାରୁ ବରଂ ଗୋଟାଏ ମଟରସାଇକଲ୍ ବା ଲାମ୍ବ୍ରେଟା କିଣିନେଲେ କାମ ଚଳିଯାଇପାରେ ।'

ଏତିକିବେଳେ ଚପ୍ରାସି ଗଣେଶ ଆସି କହିଲା, 'ସାହେବ ଡାକୁଛନ୍ତି' । ଫେରେ ଚକ୍ରପାଣି ସ୍କୁଟର ଉପରୁ ସିଧା ଯାଇ 'ମ୍ୟାନେଜିଙ୍ଗ ଡାଇରେକ୍ଟର'ଙ୍କ ପାଖରେ ପହଞ୍ଚିଗଲା ।

ଚକ୍ରପାଣି ସେ ବଖରାରୁ ବାହାରିଲାବେଳକୁ ଘଣ୍ଟା ପନ୍ଦର ହୋଇଥିଲା । ଯେତେବେଳ ପର୍ଯ୍ୟନ୍ତ ଚକ୍ରପାଣି ମ୍ୟାନେଜରଙ୍କ ବଖରାରେ ଥିଲା ତାର ଭିତରେ ତା ମୁହଁରୁ ତନୋଟି ପଦ ବାହାରିଥିଲା—'ଏସ୍ ସାର', 'ଠିକ୍ ଅଛି ସାହେବ୍', 'ନିଶ୍ଚୟ କରିବ ସାହେବ୍ !'

ଚକ୍ରପାଣି ପକେଟରେ ହାତ ପୁରାଇ ନାରାୟଣଠାରୁ ନେଇ ଅୟାଗ୍ରୱାଲଠାରୁ ବାଧ ହୋଇ କିଣିଥିବା ଲକ୍ଷ ଟଙ୍କିଆ ଲଟେରି ଟିକେଟକୁ ଥରେ ହାତମାରି ଦେଖିନେଲା, କିନ୍ତୁ ତାକୁ ବାହାରକୁ କାଢ଼ିଲା ନାହିଁ ।

ସେ ଭାବିଲା, 'ଆଉ ଅଳ୍ପ ଦିନରେ ଏ 'ଏସ୍ ସାର୍' ଧାରା ଛାଡ଼ି ଦେଇ ପାରିବ ।'

ସେ ଜଲଦି ଘରକୁ ଯାଇ ଶାରଦାକୁ ଏ ଖବର ଶୁଣାଇବାକୁ ଚାହୁଁଥିଲା । ତା ପୁଅ ପାର୍ଥସାରଥୀ ବର୍ତ୍ତମାନ ମ୍ୟାନେଜିଙ୍ଗ ଡାଇରେକ୍ଟରର ପୁଅ ହୋଇଯିବ । ସେତେବେଳେ ଆମେରିକା ଯିବାର ସୁଯୋଗ ମଧ୍ୟ ଆସିଯିବ । କାହିଁକି ହବ ନାହିଁ ? ପଇସା ଥିଲେ ଏସବୁ ଆପେ ଆପେ ହୋଇଯିବ ।

କାନ୍ଥରେ ଲଟକା ହୋଇଥିବା ଘଡ଼ିଆଡ଼େ ଚାହିଁଲା । ହଂସ ପରି ଧୀରେ ଧୀରେ ଚାଲିଛି । ଘଣ୍ଟା ବାଜି ପଚିଶି ମିନଟ୍ ମୋଟେ ହୋଇଛି । ତାର ସନ୍ଦେହ ହେଲା

ଶେଷରେ ଅପ୍ପାରାଓଠାରୁ ନେଇଥିବା ଟିକଟଟି ଜାଲ୍ ନୁହେଁ ତ ।

କ୍ୟାସିୟର ନାସ ଶୁଙ୍ଘି ପୁଣି ଛୁଙ୍କିଲା ।

ଟଙ୍କିକିଆ ନୋଟ୍ ବଣ୍ଡା କରି ବାନ୍ଧି ସେ ଶୀଘ୍ର ଶୀଘ୍ର ଗଣିଯାଉଛି । ଚକ୍ରପାଣି ଭାବିଲା, ଏଥିରୁ ଗୋଟିଏ ନୋଟ୍ କାଢ଼ି ସାଙ୍ଗେ ସାଙ୍ଗେ ନାଗାୟାଙ୍କୁ ଦେଇଦେଲେ କେତେ ଭଲ ହୁଅନ୍ତା । କାହାରିଠାରୁ କିଛି ଜିନିଷ ଉଧାର ନବା—ଜୀବନ ଯାଉଥିଲେ ମଧ୍ୟ—ସେ ତାର ନୀତିବିରୁଦ୍ଧ ମନେ କରୁଥିଲା ।

କିନ୍ତୁ କଣ କରାଯାଏ । ଅପ୍ପାରାଓ ତାକୁ ଫାନ୍ଦରେ ପକାଇଦେଲା । ପ୍ରଲୋଭନ ଦେଖାଇଲା ।

ଚକ୍ରପାଣି କାମ କରିବାର ବାହାନା ମାତ୍ର କରୁଥିଲା । ତାର ଭୟ ଏବଂ ସନ୍ଦେହ ତାକୁ କାମ କରାଇ ଦଉ ନଥିଲେ ।

'ଲକ୍ଷେ ସମସ୍ୟା ସମାଧାନ କଲାବାଲା ଲକ୍ଷେ ଟଙ୍କା କଣ ତାକୁ ମିଳିବ ?' ହିସାବ ଯାଞ୍ଚ କରି ଯେଉଁଠି 'ଟିକ୍' ଚିହ୍ନ ଦେଉଥିଲା ସେଇଠି ପ୍ରଶ୍ନ ଚିହ୍ନ ଦେଇଦେଲା ଚକ୍ରପାଣି ।

କାହିଁକି ନ ମିଳିବ ?—ପଟୋଡ଼ାରାଓ, ତେଲି ସୁବୟା, ଗୁଡ଼ିଆ ସୋମୟା, ପାମ୍ପଡ଼-ବାଲା ପାପୟା—ଏମାନେ କଣ ଜନ୍ମ ହଉ ହଉ ହାତରେ ସୁନାରୁପା ନେଇ ଆସିଥିଲେ ? ତେବେ ?

ଏହିପରି ଲକ୍ଷ୍ମୀ ତା ଉପରେ ଅନୁକମ୍ପା କରି ଆସିପାରନ୍ତି । ତେବେ ତା ପୁଅ ଡାକ୍ତର, ଇଞ୍ଜିନିୟରଙ୍କ ପରି ପଇସା ଅର୍ଜନ କଲା ପରି କାମ କରିପାରିବେ ।

ସେତେବେଳେ ଲୋକେ ତାକୁ ଦେଖି କଣ କହିବେ ? ଏକାଉଣ୍ଟାଣ୍ଟ୍—ନାହିଁ, ନା—ଲକ୍ଷପତି ଚକ୍ରପାଣି କହିବେ—କଣ ସତରେ କହିବେ ?—ଚକ୍ରପାଣିର ସନ୍ଦେହ ହେଲା । ଏବେ ପର୍ଯ୍ୟନ୍ତ କୌଣସି ଲକ୍ଷପତିକୁ ଲକ୍ଷପତି କହିବାର ସେ ଶୁଣିନାହିଁ । କୁବେରନ୍‌କୁ କେହି ଲକ୍ଷପତି କହୁନାହାନ୍ତି । ଲୋକେ ତାକୁ ପଟୋଡ଼ାରାଓ ହିଁ କହୁଛନ୍ତି ।

ଫେର ତେଲବାଲା ସୁବୟାକୁ ? ଚକ୍ରପାଣିର ହୃଦୟର ସ୍ପନ୍ଦନ ବନ୍ଦ ହୋଇଗଲା । ହାୟ ଭଗବାନ୍ । କାଲିକି ମତେ କଣ କହିବେ, କାହିଁ ଲଟେରୀ ଲକ୍ଷ ଚକ୍ରପାଣି ତ କହିବେ ନାହିଁ ? ଲ-ଟେ-ରୀ—ଚକ୍ରପାଣି ?

ଚକ୍ରପାଣି ଝାଳରେ ଓଦା ହୋଇଗଲା । ଗତ ପଚିଶି ବର୍ଷଧରି ଲୋକରେ ରହି, ପିଲାଙ୍କର ସୁଖରେ ସ୍ୱାସ୍ଥ୍ୟ ନ ଦେଇ ପତ୍ନୀର ଆଶାକୁ ଉପେକ୍ଷା କରି ହାଡ଼ଭଙ୍ଗା ପରିଶ୍ରମ କରି ସେ ଯେତେବେଳେ ଏକାଉଣ୍ଟାଣ୍ଟର ମର୍ଯ୍ୟାଦା ପାଇଛି, ଏହା ସବୁ ଲଟେରୀ ପ୍ରଭାବରେ ଆସି ଭସ୍ମ ହୋଇଯିବ ? ନୋ···ନୋ...

ତାର କୁଳର ବେଶ୍ ନାଁ ଅଛି । ଶ୍ରୀମୁଖମ୍ ଚକ୍ରପାଣି ସର୍ବଦା ତାର ମିତ୍ରମାନଙ୍କ ଆଗରେ ନିଜର ନାଁ ଅପେକ୍ଷା ନିଜ କୁଳର ନାମ ଗର୍ବରେ ଉଲ୍ଲେଖ କରୁଥିଲା । ଏବେ

କଣ ତା ଜାଗାରେ ଲଟେରୀ ପ୍ରତିଷ୍ଠିତ ହୋଇଯିବ ? ନାହିଁ—ଏପରି ହୋଇପାରିବ ନାହିଁ । ହୋଇପାରିବ ନାହିଁ । ଚକ୍ରପାଣି ମନକୁ ମନ ଗୁଣୁଗୁଣୁ ହେଲା ।

କେଶିଅର ପୁଣି ନାସ ଶୁଙ୍ଘୁଛି—ଶୁଙ୍ଘୁ ଶୁଙ୍ଘୁ ମଝିରେ ଚକ୍ରପାଣି ଆଡ଼କୁ ଚାହିଁ ଦେଖିଲା ।

ଚକ୍ରପାଣି ରାଗରେ ନିଆଁବାଣ ହୋଇଗଲା । ଏହି ଅକାରଣ କ୍ରୋଧକୁ ନ ଦେଖାଇବାର ଚେଷ୍ଟା କରି ଆବେଗ ହୋଇ କହିଲା, "କାଶିଅର ସାହେବ ! ଏଠିକି ଟିକେ ଆସିବାର କଷ୍ଟ କରିବେ ? କ୍ୟାସ ଚେକ୍ କରିନେବା ।"

"ହଉ ଆଜ୍ଞା" କହି କେଶିଅର ଭଙ୍ଗମତ ଦୁଇ ଚାରଥର ଛିଙ୍କି ନିଜ ଜାଗାରୁ ଉଠିଲା । ଯେକୌଣସିମତେ ଏଇ ବ୍ୟସ୍ତତା ମଝିରେ କାମ ତ ଚଳାଇ ନଉଛି; କିନ୍ତୁ ତାକୁ ଶାନ୍ତ ମିଳୁନାହିଁ । ପକୋଡ଼ିବାଲା, ତେଲବାଲା ସୁଜିଆ, ମଦବାଲା ରଘୁଆ ଯେପରି ନାମ ହିଁ ତାର ମନେପଡ଼ୁଛି । ନାଗାଅ୍ୟା ଆଉ ଅମ୍ଭାରିଓ ଉପରେ ବହୁତ ରାଗ ଆସୁଛି । ତାର ଭୟ ହୁଅଥିଲା କାଳେ ଲଟେରୀରେ ଜିତିଯିବ । ଭୁଲ୍‌ରେ ଜିତ ନଯାଏ ଏହି କଥା ତା ମନକୁ ମୋଡ଼ି ପକାଉଥାଏ ।

ଏକ ଲକ୍ଷ ଟଙ୍କା କେଉଁ କାମକୁ ଆସିବ ? ମାନ-ମର୍ଯ୍ୟାଦା ଆଗରେ ଏହି କାଗଜ-ଗୁଡ଼ିକର ଦାମ ବା କଣ ? ଏହି ମନର କଥା ଲୁଚାଇବାରେ ଅସମର୍ଥ ଚକ୍ରପାଣି ପ୍ରକଟ କରି କହି ବ ଦେଲା ।

"ତିନ ହଜାର ନଅଶହ ଚୌଷଠି ଟଙ୍କା ଆଉ ଡବଲି ପଇସା—ଶ୍ରେଣ" କହୁଥିବା ଭଙ୍ଗମତ ଏକଦମ୍ ଚମକି ପଡ଼ି କହିଲା, "ଏ କଣ ମହାଶୟ ।" ଆଗକୁ କଥା ବଢ଼ାଇ କହିଲା, "ଲକ୍ଷେ ଟଙ୍କାଠାରୁ ବଡ଼କରି ମାନ-ମର୍ଯ୍ୟାଦା ଆଉ କଣ ହୋଇପାରିବ ?"

"ଆପଣଙ୍କ କଥା କହୁନାହିଁ । ଲେଟସ୍ ପ୍ରୋସିଡ଼୍" ଚକ୍ରପାଣି କ୍ଷୁଦ୍ର ଏକାଉଣ୍ଟାଣ୍ଟ ହିସାବରେ କହିଲା ।

ପାଞ୍ଚଟା ପର୍ଯ୍ୟନ୍ତ କାମ କରି ଚକ୍ରପାଣି ଥକିଗଲା । ବହି ଖାତା ଦରାଜରେ ରଖୁ ରଖୁ ଭାବିଲା ଏଥରକ ଦୋକାନ ବନ୍ଦ କରିବା ଉଚିତ ।

ସୂର୍ଯ୍ୟପ୍ରକାଶ ପାଖକୁ ଯିବା ଦର୍କାର । ସେ ପଚିଶି ଟଙ୍କା ଉଧାର ଦେବାକୁ ପ୍ରତିଶ୍ରୁତି ଦେଇଥିଲା । କହିଥିଲା କ୍ଲବକୁ ଆସି ନେଇଯିବାକୁ । ଆଜି ନ ଗଲେ କାଲିକି ସେ କହିବ ସେ ଟଙ୍କା ତାସଖେଳରେ ଲାଗିଗଲା, ଭ୍ରାତର ।

ସୂର୍ଯ୍ୟପ୍ରକାଶ କଲେକ୍‌ଟରର ଅଫିସ୍‌ରେ ସାଧାରଣ କିରାଣି ତ ଅଛି; କିନ୍ତୁ ପ୍ରତିଦିନ କ୍ଲବରେ ଖେଳିବାର ସାମର୍ଥ୍ୟ କେଉଁଠୁ ମିଳୁଛି । ସେ କଥା ଚକ୍ରପାଣି ମୁଣ୍ଡରେ ପଶୁନାହିଁ ।

"ଯାଉ ଏ କଥାଗୁଡ଼ା । ସେ ତ ମୋର ପାଠପଢ଼ା ସାଥୀ । ସାନନାଥ ପରି କେବେ କେବେ ଉଧାର ଦଉଛି ।"

ଚକ୍ରପାଣି ନିଜ ମନକୁ ବୁଝାଇ ନେଲା । ବର୍ତ୍ତମାନ ସେ ପଙ୍ଖା ବନ୍ଦ କରି ବାହାରକୁ

ଯିବା ପାଇଁ ଉଠିଲା—

ଏବେ ପ୍ୟାଣ୍ଟର ପକେଟରେ ଥିବା ଲଟେରୀ ଟିକଟ ତାକୁ ବୋଝପରି ଲାଗିଲା । ଅଫିସରୁ ବାହାର ଆଗରେ ଥିବା ରାସ୍ତା ଉପରେ, ଉପରଓଳର ଖାଁ ଖାଁ ଖରାରେ ପାଦ ପକାଇଲା ।

ସାମନା ଫଳ ଦୋକାନ ଆଗରେ ଗୋଟିଏ କାର୍ ଆସି ଛିଡ଼ା ହୋଇଗଲା । ଖରାରେ କାଳିଆ ରଙ୍ଗର ଗାଡ଼ି ଚକ୍ ଚକ୍ କରୁଛି । ସେ ଗାଡ଼ି ଭିତରୁ ଗୋଟିଏ ମହିଳା ବଡ଼ ଆଟରେ ଓହ୍ଲାଇଲା । ଦାମ୍ ନ ପଚାରି ସେଓ ଏବଂ କଦଳୀ କିଣି ପୁଣି କାରରେ ବସି ଚାଲିଗଲା ।

ଚକ୍ରପାଣି ଭାବିଲା, "ଯଦି ମୋର ମଧ୍ୟ ଏହିପରି ଗାଡ଼ି ହୁଅନ୍ତା, ଶାରଦା ବି ଏହିପରି ଚାଲନ୍ତା ।"

ସେ ମହିଳା କିଏ ? କିଏ ହୋଇଥିବ ? ତାର ପିଲା ନିଶ୍ଚୟ ଥିବେ । ନ ହେଲେ ଡଜନେ ସେଓ କଣ କରିବ ?

ଫଳ ଦୋକାନରେ କେତେକ ଲୋକ କହୁଥାନ୍ତି । "ଏ ଚନ୍ଦା ବୁଢ଼ୀର ଝିଅ । ସ୍ତ୍ରୀର ସ୍ୱାମୀ ଫିଲ୍ମ ତିଆରି କରେ ।"

ଚକ୍ରପାଣିକୁ ସେ ଲୋକଗୁଡ଼ିକଙ୍କ କଥା ଭଲ ଲାଗିଲା ନାହିଁ । ମନେ ମନେ ସେମାନଙ୍କ ଉପରେ ଅସନ୍ତୁଷ୍ଟ ହେଲା ।

ବର୍ତ୍ତମାନ ସେ ବୁଝିପାରିଲା ସେ କାରବାଲୀ କିଏ । କାଠ ବେପାରି ନୀଳମୀକାନ୍ତର ପତ୍ନୀ । ନୀଳମୀକାନ୍ତର ମା' କାଠ ଦୋକାନ ଖୋଲିଥିଲା । ତା ମୁଣ୍ଡ ଚନ୍ଦା ଥିଲା । ସେଥିପାଇଁ ସେ ଦୋକାନକୁ ଚନ୍ଦାବାଲୀ ଦୋକାନ କହୁଥିଲେ । ପରେ ତା ପୁଅ ବଡ଼ ହୋଇଗଲା ଏବଂ ଲକ୍ଷ ଲକ୍ଷ ଟଙ୍କାର କାଠ ବ୍ୟବସାୟ ଚଲେଇଲା । ବର୍ତ୍ତମାନ ସେ ସାରା ଦେଶରେ ଗୋଟାଏ ବଡ଼ କାଠ ବେପାରି ରୂପରେ ବିଖ୍ୟାତ । କିନ୍ତୁ ଲାଭ କଣ ? ଲୋକେ ତ କହୁଛନ୍ତି ଯେ ସିଏ ଚନ୍ଦାବାଲୀର ପୁଅ; ଆଉ ଇଏ ତା ବୋହୂ । ଚକ୍ରପାଣିର ମନ ଉଦାସ ହୋଇଗଲା ।

"ନମସ୍କାର, ଚକ୍ରପାଣି ବାବୁ !" ପଛରୁ ଶୁଭିଲା । କିନ୍ତୁ ଏ କଥା ତା କାନରେ ଅନ୍ୟ ରକମର ଶୁଣାଗଲା । ସେ ଶୁଣିଲା "ଲଟେରୀ ଚକ୍ରପାଣି ବାବୁ ।" ସେ ଶବ୍ଦ କେଉଁଠୁ ବାହାରୁ ଆସି ନ ଥିଲା, ତାର ଭିତରୁ ଆସିଥିଲା ।

"ଏ ଲକ୍ଷେ ଟଙ୍କା ନ ମିଳିଲେ ଭଲ ହବ" ସେଇଠୁ ପୁଣି ଶୁଭିଲା ।

ବର୍ତ୍ତମାନ ସେ 'ବସ୍ ଷ୍ଟପ'ରେ ଛିଡ଼ା ହୋଇଛି । ଦେହରେ କାଣ୍ଟା ଫୁଟିଗଲା ପରି ମନେ ହଉଛି ଏ ଖରାରେ । ପକେଟ ଅଣ୍ଡାଳି ଦେଖିଲା—କ୍ଲବ ପର୍ଯ୍ୟନ୍ତ ପହଞ୍ଚିବା ପାଇଁ ପଇସା ଅଛି । ପଇସା ସାଙ୍ଗରେ ଲଟେରୀ ଟିକେଟ ମଧ୍ୟ ଅଛି । ଇଚ୍ଛା ହେଲା ବି ଥରେ ତାକୁ ବାହାର କରି ପଢ଼ିନେବ । କିନ୍ତୁ ପରିବେଶ—ଭିଡ଼, ଖରା, ଗରମ ପବନ, ଧୂଳି, ଧୂଆଁ—ସେ ଲଜ୍ଜିତ ହୋଇଗଲା । ଭାବିଲା ସେଠି ଲଟେରୀ ଟିକେଟ କାଢ଼ିକରି

ପଡ଼ିବା ତାର ପ୍ରତିଷ୍ଠାର ଅନୁକୂଳ ନୁହେଁ ।

ଏକ ଲକ୍ଷ ଟଙ୍କା । ଲକ୍ଷେ ଚିନ୍ତା ଦୂର କରିବାର ଲକ୍ଷେ ଟଙ୍କା । ଥରେ ସେ ଶୁଭ ନମ୍ବରଟି ଦେଖିବାକୁ ଇଚ୍ଛା ହେଲା ।

ବସ୍‌ର ଦେଖାନାହିଁ ।

ଚକ୍ରପାଣି ବର୍ତ୍ତମାନ ନିଜ ପୁଅର ଆମେରିକାଯାତ୍ରା କଥା ଭାବୁଛି—

କଣ ବଡ଼ପୁଅ ପାର୍ଥ ସାରଥି ଆମେରିକା ଗ୍ରାଜୁଏଟ୍ ହେବା ପରେ ଏମିତିପରି ଖରାରେ ମୁଁ ବସ୍ ଅପେକ୍ଷାରେ ଛିଡ଼ା ହେବି ?

ସୂର୍ଯ୍ୟପ୍ରକାଶ ପାଖକୁ ଉଧାର ମାଗିବାକୁ ଯିବି ?

ଯିବି ନାହିଁ—ସେ ଠିକ୍ କରିନେଲା ।

କେହି ପରିଚିତ ବ୍ୟକ୍ତି 'ନମସ୍ତେ' କହିଲା ।

କାଲି ତାର ବଡ଼ପୁଅ ପାର୍ଥସାରଥିକୁ ଦେଖି ଏମିତିପରି 'ନମସ୍ତେ' କରିବାର ସହସ୍ର ଲୋକ ହେବେ । କଣ ହେବେ ନାହିଁ ?

ତେବେ ବି ତାର ସନ୍ଦେହ ହେଲା ।

ହେଇପାରେ; ପାର୍ଥସାରଥିକୁ ଲୋକେ ଈର୍ଷା କରିବେ । ଲୋକେ ତାକୁ ଦେଖି କଣ କହିବେ ? ବୋଧହୁଏ ସେ ପରସ୍ପର ଭିତରେ କୁହାକୁହି ହେବେ — ଯଦି ତମକୁ ନିଷ୍ଠା ବାପ ପରି ଲଟେରୀର ପଇସା ମିଳିଯିବ ତ ତେବେ ଆମେରିକା କଣ 'ମୁନ୍' ପର୍ଯ୍ୟନ୍ତ ବି ବୁଲି ଆସିବ ବ୍ରଦର।" ( ଛିଃ ଛିଃ, କେଡ଼େ ଖରାପ ଅବସ୍ଥା ଏ ଦେଶର )

'ହଠାତ୍ ମଣିଷ ସମ୍ପନ୍ନଶାଳୀ ହୋଇଯାଏ ତ ଏମିତିପରି ଅନ୍ଧ ହୋଇଯାଏ'— ପାଖରେ ଛିଡ଼ାହୋଇ କିଏ ଜଣେ ଆଉ କାହାକୁ କହୁଛି ।

ଶୁଣିକରି ଚକ୍ରପାଣି ଚମକି ପଡ଼ିଲା ।

କେହି ଝିଅ ତା ପାଦ ଉପରେ କାର୍ ଚଲାଇ ନେଇ ଚାଲିଯାଇଥିଲା । ଏହି ଆଘାତରେ ତ୍ରସ୍ତ ହୋଇ ସେ ବ୍ୟକ୍ତି ଏହା କହୁଥିଲା । ସେ କାର୍ ଚଲାଇଲାବାଲୀ ଝିଅ କିଏ ଥିଲା, ତାହା ଜାଣିବାର କୌତୂହଳ ପର୍ଯ୍ୟନ୍ତ ହେଲା ନାହିଁ ଚକ୍ରପାଣିର, ଜାଣିବାର ଆବଶ୍ୟକତା ମନେ କଲା ନାହିଁ ।

କାହିଁକି ନା ଆଜିଠାରୁ ଦଶବର୍ଷ ପରେ ( ଯଦି ସେ ଲଟେରୀ ଜିତିଯାଏ ତେବେ ) ତାର ଝିଅ ମଧ୍ୟ କାର୍ ଚଲାଇପାରେ ।—

ଗୋଟିଏ ପଟେ ଚକ୍ରପାଣି ଚିନ୍ତା କରୁଛି ତା ଝିଅକୁ ନିଶ୍ଚୟ ଡାକ୍ତରୀ ପଢ଼ାଇବ ଆଉ ଅନ୍ୟ ପଟେ କାର୍‌ର ଦୁର୍ଘଟଣାରେ ବାଳେ-ବାଳେ ବଞ୍ଚିଯାଇଥିବା ବ୍ୟକ୍ତିକୁ ପଚାରୁଛି ସେ ଝିଅ କିଏ ଥିଲା ?

"କେହି ବି ହଉ ଏହା ତ କଳିଯୁଗ । ଆଖିକୁ ମୁଣ୍ଡରେ ଖୋସି ଚାଲୁଛନ୍ତି ଏ ନବ-ଯୁବତୀମାନେ । ଗୁନିୟା ନାମରେ ଗୋଟିଏ ଫକୀର ଥିଲା । ସେତେବେଳେ ମୁଁ ପିଲା ଥିଲି । ହଠାତ୍ କୌଣସି ଲଟେରୀରେ ତାର ଭାଗ୍ୟ ଖୋଲିଗଲା । ବାସ , ସେ ଯିଏହୁଁ

ସୃଷ୍ଟି ନବାବ ବନିଗଲା। ତାର ଦ୍ୱିତୀୟ ପତ୍ନୀର ପୁଅର ଝିଅ ଏହି ପ୍ରଜାପତିଟି। ଡାକ୍ତରୀ ପଢ଼ିବା ଆଳରେ ସେ ଦୁନିଆଁ ଯାକର ଅସାମାଜିକ କାମ କରୁଛି" ଏହା କହି ସେ ମୁହଁ ମୋଡ଼ିଦେଲା।

—ଗୁଲ୍ନାସ୍ତା। ଏ ନାମ ଚକ୍ରପାଣିର ପରିଚିତ ପରି ମନେହେଲା।

ପରିଚିତ କ'ଣ ତାଙ୍କ କମ୍ପାନୀରେ ଗୁଲ୍ନାସ୍ତାର କାରବାର ଅଛି। ଏଇ ଅଲ୍ପଦିନ ହେବ ତାର କ୍ଷତିପୂରଣ ମଧ୍ୟ ହେଲା। ସେ ତ ଲକ୍ଷପତି। ଯାର କମ୍ପାନୀର ଗୁଲ୍ନାସ୍ତା ଏହି ଅଟେ।

ଚକ୍ରପାଣିର ବହୁତ ଦୁଃଖ ହେଲା। ପାଖରେ ଛିଡ଼ା ହୋଇଥିବା ବୁଢ଼ା ଉପରେ ତାର ରାଗ ହେଲା। ଏହି ଅକର୍ମଣ୍ୟ ଅନ୍ୟର ଉନ୍ନତିରେ ଈର୍ଷାରେ ଜଳିଯାଉଛି। ଭାବିଲା, ଯଦି ଇଏବି ସେ କାର ତଳେ ମରିଯାଇଥାନ୍ତା ତ ଭଲ ହୋଇଥାନ୍ତା।

ଲଟେରି ଟିକେଟର ଗୋଟିଏ ଗାଡ଼ି ସେହି ରାସ୍ତାରେ ଯାଉଛି। ବୁଢ଼ା ଲୋକଟି କହିଲା, "କେଡ଼େ ଖରାପ ସମୟ ଆସିଛି ? ଏହି ଲଟେରିବାଲାମାନେ ଦୁନିଆକୁ ଲୁଟ୍ କରି ନେଉଛନ୍ତି।"

ଚକ୍ରପାଣିକୁ ଯେତେବେଳେ ଲଟେରୀରୁ ଲକ୍ଷେ ଟଙ୍କା ମିଳିବ, ତାପରେ ଶାରଦା ଏବଂ ପିଲାଙ୍କ ସହ ତାର ଜୀବନ କିଭଳି କଟିବ ତାର ଆଭାସ ମିଳିବା ଏବେ ବନ୍ଦ ହୋଇଗଲା।

ବର୍ତ୍ତମାନ ତ ସେଇ ଲଟେରୀ ଚକ୍ରପାଣି ଏବଂ ତାର ପରିବାରର ଟିକାଟିପ୍ପଣୀ ଆଉ ଉପହାସଭରି କଥା ଲୋକଙ୍କ ମୁହଁରୁ ଶୁଣାଯାଉଛି।

ପକେଟରେ ହାତ ପୂରାଇ ଦେଖିଲା—ଲକ୍ଷେ ଆଶାକୁ ପୂରା କରିବାବାଲା···ଝଣ୍ ଝଣ୍ ଶବ୍ଦରେ ଆଗମନ କରିବାବାଲା ଲକ୍ଷ୍ମୀ···ଅଷ୍ଟାବକ୍ରଙ୍କ କଥା ତା କାନରେ ପ୍ରତିଧ୍ୱନିତ ହେବାକୁ ଲାଗିଲା। କିନ୍ତୁ ଚକ୍ରପାଣିକୁ ଲାଗୁଛି···ଲକ୍ଷେ ଆଶା ବଦଳରେ ଲକ୍ଷେ ସମସ୍ୟା ଆଣିଦେବାବାଲା ସେ···

ସେ ବ୍ୟସ୍ତ ହୋଇଉଠିଲା। ବିଶ୍ୱରଧାରା ବଦଳାଇବା ପାଇଁ ନିର୍ଲଜ୍ଜଭାବେ ଶଳା ମହାଶୟଙ୍କ ଦ୍ୱାରା ଲିଖିତ ଇନ୍‌ଲାଣ୍ଡ ଚିଠି ଭିତରେ ହେପାଜତରେ ରଖା-ହୋଇଥିବା ଲଟେରୀ ଟିକେଟ ବାହାର କରି ଦୁଇପାଖଯାକ ଭଲଭାବରେ ଦେଖିଲା।

ବସ୍‌ର ତ ଦେଖାନାହିଁ। ଚିଠି ଭିତରେ ରଖିକରି ଲଟେରୀ ଟିକେଟକୁ ସେ ଧ୍ୟାନ ସହିତ ଏକାନ୍ତରେ ପଢ଼ିବାକୁ ଲାଗିଲା।

ଲକ୍ଷେ ଟଙ୍କାର ଗୋଟିଏ ପ୍ରଥମ ପୁରସ୍କାର, ଦୁଇଟି ଦ୍ୱିତୀୟ ପୁରସ୍କାର ତିରିଶି ହଜାରର। ତିନୋଟି ତୃତୀୟ ପୁରସ୍କାର ଦଶ ହଜାରର। ଛୋଟ ଛୋଟ ଧାନ ପରି ଅକ୍ଷରରେ ଏହା ସବୁ ଲେଖା ହୋଇଛି। ନମ୍ବର···3245670

ଚକ୍ରପାଣି ଭାବିଲା, ଲକ୍ଷେ ଟଙ୍କା କାହାର ଦରକାର ? ଦଶହଜାର ମିଳିଗଲେ ଯଥେଷ୍ଟ। କରଜ ଶୁଝି ଦେଇ ଆରାମରେ ରହିହେବ। ସେଥିରେ ଏ ଖବର ଗୁପ୍ତ ହେବ ବି ହଇରାଣରୁ ମଧ୍ୟ ରକ୍ଷା ମିଳିଯିବ—କିନ୍ତୁ ନାରାୟଣ ବା ଅଷ୍ଟାବକ୍ର ଏହାର କଥା

ମୋଟେ କହୁ ନଥିଲେ ।

ଲକ୍ଷେ ! ଲକ୍ଷେ ! କହୁ ବ୍ୟତିବ୍ୟସ୍ତ କଲେ । ମତେ ଗୋଟିଏ ଟଙ୍କାର ଦେଣାଦାର ମଧ୍ୟ କରାଇଲେ ।

ଲକ୍ଷେ ଟଙ୍କା ମିଳିଗଲେ ଆରାମ ତ ମିଳିବ; କିନ୍ତୁ ମାନମର୍ଯ୍ୟାଦା ମାଟିରେ ମିଶିଯିବ । ଜୀବନଯାକ ଅପମାନ ସହିବାକୁ ପଡ଼ିବ ।

ଟିକେଟର ନମ୍ବର ସଂଖ୍ୟାଗୁଡ଼ିକ ଯୋଡ଼ି ଦେଖିଲା ସତେଇଶି ହେଉଛି ଦୁଇ ଓ ସାତ ମିଶାଇଲେ ନଅ ହେଉଛି ।

ଗ୍ରହ ଥରହରିଲା । ତାର ଭାଗ୍ୟ ସାଙ୍ଗରେ ନମ୍ବର ନଅର ଏକଦମ୍ ପଡ଼େନାହିଁ । ସେଥିରେ ଅପମାନ, ଅପଯଶ ଏବଂ ଅପକାର ଅବଶ୍ୟମ୍ଭାବୀ ଅଟେ ।

ବର୍ତ୍ତମାନ ଚକ୍ରପାଣି ଲକ୍ଷେ ଟଙ୍କାକୁ ଏକେବାରେ ଡରିଗଲା ।

ଏତିକିବେଳେ ଗୋଟାଏ ବସ୍ ଆସିଗଲା ।

ସେ ତାର କାମକୁ ଯାଇବ ନାହିଁ ।

ସୂର୍ଯ୍ୟପ୍ରକାଶ ଛଅଟା ବାଜିବା ଆଗରୁ ଆସିବାକୁ କହିଥିଲା । ଚକ୍ରପାଣି ଘଡ଼ି ଦେଖିଲା । ପାଞ୍ଚଟା ବାଜି ପାଞ୍ଚ ମିନିଟ ହୋଇଗଲାଣି ।

ସୂର୍ଯ୍ୟପ୍ରକାଶ ବିଷୟରେ ସବୁ ଖବର ରଖିଥିବା ଚକ୍ରପାଣିକୁ ଜଣା ସେ ଛଅଟା ବାଜିବା ପରେ ସେ ତାସ୍ ଖେଳ ଛାଡ଼ି ମୋଟେ ଆସିବ ନାହିଁ ।

ଯଦି ଲଟେରି ପଇସା ମିଳିଗଲା ତ କାଲିଠୁଁ ସେ ମଧ୍ୟ ତାସ୍ ଖେଳିବ । ତାସ୍ ଖେଳରେ ସେ ଅତ୍ୟନ୍ତ ପ୍ରତିଭାଶାଳୀ । ବ୍ରିଜ୍ ଖେଳରେ ତ ସିଏ ମଇଦାନ ଜିତିଲାବାଲା ଖେଳୁଆଡ଼ି । କିନ୍ତୁ ବର୍ତ୍ତମାନ ସେ ସଂଯମ ରକ୍ଷାକରୁଛି, (ପଇସା ଅଭାବରୁ) ।

ଚକ୍ରପାଣିକୁ ନଅ ନମ୍ବରର ଖରାପ ପ୍ରଭାବ ଏବେଠୁ ଜଣାପଡ଼ୁଛି ।

ନିଜ କଥା ଛାଡ଼—ଯଦି ପିଲାଏ ଏଇ ସବୁର ପ୍ରଲୋଭନରେ ପଡ଼ିଯାଆନ୍ତି ତ ତାଙ୍କର ଅବସ୍ଥା କଣ ହେବ ? ତାର ଇଚ୍ଛା ହେଲା ଲଟେରି ଟିକେଟକୁ ଚିରି ଫୋପାଡ଼ି ଦିଅନ୍ତା ।

କିନ୍ତୁ ତାର ଅନ୍ତରାତ୍ମା ମାନିଲା ନାହିଁ ।

ଲକ୍ଷେ ଦର୍କାର ନାହିଁ, ଦଶହଜାର ଯଥେଷ୍ଟ ହେବ । ମନକୁ ମନ ଗୁଣୁଗୁଣୁ ହେଲା—ଏକ ହଜାରର ପୁରସ୍କାର ଥିଲେ ସେହି ଯଥେଷ୍ଟ ହେବ—ଫେର ଗୁଣୁଗୁଣୁ ହେଲା ।

ଆରେ, ବସ୍ ଆସିଗଲା । ଲୋକେ ଧକା-ପେଲା କରୁଛନ୍ତି ।

ଚକ୍ରପାଣି ବସ୍‌ରେ ଚଢ଼ିଗଲା । କ୍ଲବ ଆଗର ଷ୍ଟପ୍ ପର୍ଯ୍ୟନ୍ତ ଟିକେଟ ନେଇନେଲା ।

'ଲଟେରି ଚକ୍ରପାଣି ମଧ୍ୟ ଏହିପରି କୃପଣତା ଦେଖାଇଲେ କିପରି କାମ ଚଳିବ ?' କଣ୍ଡକ୍ଟର ଏହିପରି କହିଲା ପରି ଦୃଷ୍ଟିରେ ତାକୁ ଚାହିଁଲା । 'ଦଶଗଜ ଆଗରେ ଥିବା ଷ୍ଟପ୍ ପାଇଁ ପାଞ୍ଚ ପଇସା ବେଶି ମାଗୁଛନ୍ତି ।' ଚକ୍ରପାଣି ମନେ ମନେ ଏହା କହି

କଣ୍ଡକ୍‌ଟରକୁ ଗାଳିଦେଲା ।

ବସ୍‌ରେ ବହୁତ ଭିଡ଼ । ଝାଳଗନ୍ଧରେ ନାକ ରୁନ୍ଧ ହୋଇଯାଉଛି । ବସ୍ କଣ, ସ୍ୱୟଂ ତ ନରକ ଭଳି ।

ଭିଡ଼ରେ ବ୍ୟତିବ୍ୟସ୍ତ ହୋଇ ଚକ୍ରପାଣି ଭାବିଲା, "ପୁରସ୍କାର ଟଙ୍କା ମିଳିଗଲେ ଦେଖାଯିବ ।"

ଅଟାରେ ତୁଳା ଠେସିଲା ପରି କଣ୍ଡକ୍ଟର ବସ୍‌ରେ ଲୋକ ପୂରାଉଥାଏ ।

ଚକ୍ରପାଣିର ସୂର୍ଯ୍ୟପ୍ରକାଶ ପାଖକୁ ଯିବା ଅତ୍ୟନ୍ତ ଆବଶ୍ୟକ । ତାହା ବିନା କାମ ଚଳିବ ନାହିଁ ।

"କାଲି ନାଗସ୍ୱାମୀକୁ ଟଙ୍କା ମଧ୍ୟ ଫେରାଇବାକୁ ହେବ ।"

ଲକ୍ଷେ ଟଙ୍କାର ପୁରସ୍କାର ନ ମିଳିଲେ ଭଲ ହେବ । ଦଶ ହଜାରର ପୁରସ୍କାର ହିଁ ଭଲ । ବାରମ୍ବାର ସେ ଏହା ଭାବୁଛି ।

ତାସ୍ ଖେଳାଳିବାଲା ସୂର୍ଯ୍ୟପ୍ରକାଶଙ୍କୁ ଏହି ଟିକେଟ ଦିଆଯାଏ ତ··· ? ସେ ଖୁସି ହୋଇଯିବ । ଯଦି ଦର୍କାର ପଡ଼େ ତ ଏହି ଟିକେଟ ବିଷୟରେ ମୋର କୌଣସି ଅଧିକାର ନାହିଁ, ଏହି କଥା ସୂର୍ଯ୍ୟପ୍ରକାଶଙ୍କୁ ଲିଖିତ ରୂପରେ ଦେଇପାରିବ । ଯିବ ତ ଗୋଟିଏ ଟଙ୍କା ଯିବ । ଯାଉ, ତା ସହିତ ଲକ୍ଷେ ସମସ୍ୟା ମଧ୍ୟ ଦୂର ହୋଇଯିବ । ମାନ୍ ବଞ୍ଚିବ, ମର୍ଯ୍ୟାଦା ରହିବ ।

ଏତେ ଭିଡ଼ାଭିଡ଼ି ମଧ୍ୟରେ ବି ଦୁଇଜଣ ଲୋକଙ୍କ ମଝିରେ ଖାଲି ଜାଗାରେ ଛିଡ଼ା ହୋଇଥିବା ମହିଳାମାନଙ୍କ ସିଟ୍ ପାଖରେ ନାଇଲନ୍ ସୁନ୍ଦରୀ ଚକ୍ରପାଣି ନଜରରେ ପଡ଼ିଗଲା ।

ନାଲି ଲିପ୍‌ଷ୍ଟିକ ଲଗାହୋଇଥିବା ଓଠ, କଜ୍ଜ୍ୱଳ ଲଗାହୋଇଥିବା କଳା ଭ୍ରମର ଆଖି, ଶବନ ବନ୍ଧା ନ ହୋଇଥିବା ଲମ୍ବା ବେଣୀ ଉଚ୍ଚ ବକ୍ଷସ୍ଥଳ ଉପରେ ଦୋଳାୟମାନ । କାନ୍ଧରେ ଟଙ୍ଗାହୋଇଥିବା ମାଳାସିଲ୍କାର ଛତ୍ରିପରି ଛିଡ଼ା ହୋଇଅଛି । ଏତେ ଭିଡ଼ରେ ବି ଚକ୍ରପାଣି ମନରେ ଲାଳସା ଉତ୍ପନ୍ନ ହେଲା ।

ବସ୍, ଫେରେ କଣ ? ବସ ଷ୍ଟପ୍‌ରେ କଣ୍ଡକ୍ଟରର ଡାକ ଶୁଣାଯିବା ପର୍ଯ୍ୟନ୍ତ ଚକ୍ରପାଣିର ଧ୍ୟାନ ଆଉ କୋଉଥିରେ ନ ଥିଲା (ଲକ୍ଷେ ଟଙ୍କା ସମେତ) ।

କାହାର କହୁଣୀ, କାହାର ଆଣ୍ଠୁ, ବାବାଜୀର ଛଡ଼ି, ମାଷ୍ଟରସାହେବଙ୍କ ଛତା, ସ୍କୁଲ ଯିବା ପିଲାଙ୍କର ଲଞ୍ଚ ବାକ୍ସ ଆଉ ଶେଷରେ ସେହି ମାଳା ସିଲ୍କା ଶାଢ଼ିର ଅଞ୍ଚଳ—ସମସ୍ତ ପାର କରି କୌଣସି ପ୍ରକାରେ ଚକ୍ରପାଣି ବସ୍‌ରୁ ଓହ୍ଲାଇଗଲା ।

ଆଲୁଅ ଜଳୁଛି । ଛଅଟା ବାଜିଯାଇଛି । ଦୌଡ଼ିକରି ଯାଇ କ୍ଲବ୍‌ରେ ପହଞ୍ଚିଗଲା । ସୂର୍ଯ୍ୟପ୍ରକାଶଙ୍କୁ ଦେଖି ଦେଖି ଚକ୍ରପାଣି କହିଲା, "ଭଗବାନଙ୍କ ଦର୍ଶନ ହେଲା ପରି ତୁମ ଦର୍ଶନ, ଭାଇ ।" ସେତେବେଳେ ତାକୁ ଲଟେରି ଟିକେଟର ପଇସା ମିଳିଲା ପରି ଆନନ୍ଦ ଲାଗୁଥିଲା ।

ଭିତରେ ତାସ୍‌ର ଯୋଗାଡ଼ ହଉଥିବ, ସୂର୍ଯ୍ୟପ୍ରକାଶ ତରତର ହୋଇ ବାହାରକୁ ଆସିଲା ।

"କ୍ଷମା କର, ପାଣି, ପଚଶି ଜାଗାରେ କୋଉଠିଏ ମିଳୁଛି—ଯେଉଁଠି ଲୋକେ ହୁଇଗୁଣ କରୁଛନ୍ତି—ମୁଁ ଯାଉଛି । 'ବାଇ'···'ବାଇ' ।"

ଦଶ-ଦଶର ଦୁଇଟି କାଗଜ ଚକ୍ରପାଣିର ଓଦା ହାତରେ ରଖି ସୂର୍ଯ୍ୟପ୍ରକାଶ ସାଙ୍ଗେ ସାଙ୍ଗେ ଭିତରକୁ ଚାଲିଗଲା, ଯେପରି କେହି ତାକୁ ଗୋଡ଼ାଉଛି ।

ଚକ୍ରପାଣିକୁ କୋଉଠିଏ ଜାଗାରେ ଜଣେଇଗି ହିଁ ଦେଖାଗଲା—ସେଥିରୁ ଯେ ଗୋଟାଏ ନାଗସ୍ବାମୀକୁ ଦବାକୁ ହବ ।

"ଆରେ, ମୁଁ ଭୁଲିଗଲି । ଲଟେରୀ ଟିକେଟ ଯାକୁ ଦବା କଥା ଥିଲା ନା ?" ଚକ୍ରପାଣି ପକେଟରେ ହାତ ପୂରାଇ ପୁଣି ପ୍ରକାଶମ୍‌କୁ ଡାକିଲା. "ପ୍ରକାଶମ୍ ଗୋଟାଏ କଥା ଶୁଣିଯା ।"

ପ୍ରକାଶମ୍ ବ୍ୟସ୍ତ ହୋଇ ପଛକୁ ଅନାଇଲା, ତାର ଆଖି ପଚାରୁଛି "କାହିଁକି, ଆଉ କଣ କଥା ?"

ଚକ୍ରପାଣିର ବିଚାର ପୁଣି ବଦଳିଗଲା । ଏକ ଲକ୍ଷ ଟଙ୍କା । ଗୋଟାଏ ଦୁଇଟା ନୁହେଁ । ଯାକୁ ଦେଇ କଣ ଲାଭ ? "ନାହିଁ, କିଛି ନାହିଁ । ଏମିତି ଖାଲି ଡାକି ଦେଲି ।" 'ଆଚ୍ଛା ଗୁଡ୍ ନାଇଟ୍' କହି ସେ ଫେରିଯିବାକୁ ଲାଗିଲା ।

ପକେଟରୁ ହାତ କାଢ଼ିଲା, ତା ସହିତ ଖାଲି ପକେଟରୁ ରୁମାଲ ବି କିଛି ବାହାରିଲା । ଶଳା ମହାଶୟଙ୍କର ଓଦା ଚିଠି ନାହିଁ (ସେଥିରେ ରଖାହୋଇଥିବା ଲଟେରୀ ଟିକେଟ ମଧ୍ୟ) ।

ଆର ପକେଟରେ ମଧ୍ୟ ଦେଖିଲା ।

"ନାହିଁ, ସେଠି ବି ନାହିଁ ? ନା ଚିଠି ଅଛି ନା ଟିକେଟ" ଚକ୍ରପାଣିର ମନ ଧରିଗଲା ।

"ଆରେ ଟିକେଟ କୁଆଡ଼େ ଗଲା ?" କହି ସେ ଆଲୁଅରେ ପକେଟ ଅଣ୍ଡାଳି ଦେଖିଲା ।

'ଛିଃ, ଛିଃ, କେଡ଼େ ହତଭାଗା ଜୀବନ ଇଏ । ଭିକ ମୋ ଭାଗ୍ୟରେ ଲେଖା ଅଛି । ଫକୀରର ଜୀବନ । ଜଣା ନାହିଁ ସେ କିଏ ଥିଲା, କାତପରୀ ଭଳି ଛୁଡ଼ାହୋଇଥିଲା । ତାକୁ ଦେଖି ମୋ ମନରେ ଲାଳସା ଉତ୍ପନ୍ନ ହେଲା ଆଉ ଲକ୍ଷେ ଟଙ୍କାର ଟିକେଟ ହଜିଗଲା । ଛିଃ ଛିଃ, ମୋ ଜୀବନରେ ଭଲ ଦିନ କେବେ ଆସିବ ନାହିଁ । ଲକ୍ଷେ ଟଙ୍କାର ଭାଗ୍ୟ ମୋଠୁଁ ବହୁ ଦୂରରେ" ଚକ୍ରପାଣି ଆଖିରେ ଲୁହ ତ ନଥିଲା; କିନ୍ତୁ ସାଗର ପରି ଥିଲା ତାର ଦୁଃଖ । ଯେଉଁ କାଗଜ ଇନ୍‌ଲାଣ୍ଡ୍ ଲେଟର ପରି ଦିଶିଲା । ତାକୁ ଉଠାଇ ନେଇ ବିଜୁଳି ଆଲୁଅ ପାଖରେ ଦେଖିଲା ।

ନ ଦେଖି, ନ ପରଖି କାଲେ କୌଣସି କାଗଜ ପକାଇ ଦେଇଥିବ, ଏହିପରି ଖୋଜ ଖୋଜ ସେ ଫେରେ ଅଫିସ୍ ପାଖ ବସ୍ ଷ୍ଟପ୍‌ରେ ପହଞ୍ଚିଗଲା ।

ଘଡ଼ ଗୋଟାଏ ଟଙ୍କା ହୋଇଯାଇଥାନ୍ତା ତେବେ ତାର ଏତେ ଚିନ୍ତା ହୁଅନ୍ତା ନାହିଁ । ଖୋଜାକରି ଆସିଥିବା ଲକ୍ଷ୍ମୀ—ଏକ ଲକ୍ଷ ଟଙ୍କାର ଟିକଟ ହଜିଗଲା, ଗଲା ।

ଚକ୍ରପାଣି ଜୀବନରେ ଏତେ ନିରାଶା କେବେ ଆସି ନ ଥିଲା । ଯେତେବେଳେ ତିରିଶି ବର୍ଷ ପର୍ଯ୍ୟନ୍ତ ତା'ର 'ପ୍ରମୋସନ୍' ବନ୍ଦ ଥିଲା, ସେତେବେଳେ ବି ସେ ଏତେ ଦୁଃଖ କରି ନଥିଲା ।

କୌଣସି ଭଗ୍ୟବାନ୍‌ର ହାତରେ ପଡ଼ିଯାଇଥିବ । ଯେ କୌଣସି କଥା ପାଇଁ ଭାଗ୍ୟ ଦରକାର ।

'ନହେଲେ ଏ ଗରୀବ ଲୋକକୁ ଏ ପୁରସ୍କାର କୋଉଠୁ ମିଳିବ ।' ବୋଧହୁଏ ସେ ବସ୍‌ରେ ହଜିଯାଇଛି । ତାର ନମ୍ବର କେତେ ଥିଲା ? କଣ୍ଡକ୍ଟରକୁ ପଚାରିବ ? କଣ ପଚାରିବ ? ( ଲଜ୍ଜା ଆସିବା ଉଚିତ ) କା କହିବ କି ମୋର ଗୋଟିଏ ଚିଠି ହଜି ଯାଇଛି, ଖାସ୍ କରୁଛି ଚିଠି ।

କିନ୍ତୁ ଚକ୍ରପାଣି ସେ ବସ୍‌ର ଖବର ପାଇଲା ନାହିଁ । ଗରୀବ ତ ନଣ୍ଡା ହୁଇ ହୁଇ କୁଆଁପଥର ବଟକେ । ସେ ଭାବିଲା, ବୋଧହୁଏ ସେ ବସ୍ ମଧ୍ୟ କୋଉଠି ହଜିଗଲାଣି ।

"ଗଲା, ବିପଦ କଟିଗଲା" ବାରମ୍ବାର ଏକାଥରା ଭାବୁଛି; କିନ୍ତୁ ବସ୍‌ଷ୍ଟାଣ୍ଡ୍ ଛାଡ଼ି ଯାଇ ପାରୁନାହିଁ । ଆଠଟା ବାଜିଗଲା । ପୁରୁଣା ଘଡ଼ି କାନ ପାଖରେ ରଖି ଦେଖିଲା, ଘଡ଼ି ବନ୍ଦ ହୋଇଯାଇଛି । ଆଠଟାବେଳେ ସେ ବି ବନ୍ଦ ହୋଇ ଯାଇଛି ।

ବସ୍, କେତେ ଆସିଲା ଆଉ ଗଲା । ତାର ସେ ବସ୍ ଆସିଲା ନାହିଁ ।

'ଜଣା ନାହିଁ କେତେଟା ବାଜିଲାଣି । ନଅଟା ବାଜିସିବଣି । ଘଡ଼ି ବି ଅବେଳା କାହିଁକି ବନ୍ଦ ହୋଇଗଲା ?'

ଚକ୍ରପାଣି କ୍ରୋଧରେ ଜଳିଯାଉଛି । ସଂସାର ପ୍ରତି ବୈରାଗ୍ୟ ଭାବନା ଆସିଗଲା ।

ଅସ୍ୟାଗ୍ରେଓ, ନାଗଯ୍ୟା, ଆଉ ସେ ମାଳା ସିନ୍ଧା ଭଲ ବାଳା—ସମସ୍ତଙ୍କ ଉପରେ, ନିଜ ଉପରେ ଏବଂ ଏ ସଂସାର ଉପରେ ସେ ବିରକ୍ତ ହଉଛି, ଦୁଃଖ ମଧ୍ୟ ହଉଛି ।

ହିସାବ ଦେଖିବାରେ କୋଡ଼ିଏ ବର୍ଷ ହେଲା । ଅଭିଭୂତ ଥିବାରୁ ଟିକଟ ନମ୍ବର ( ଆଶା ଖରାପ୍ ଜିନିଷ ଅଟେ—ଏଥିରେ କ୍ଷତି ବା କଣ ) 345670 ସ୍ମରଣ କରି କରି ଏକାଉଣ୍ଟାଣ୍ଟ ଚକ୍ରପାଣି ଦୁଃଖ, କ୍ରୋଧ ଏବଂ କରୁଣା ସହ ପାଦରେ ଚାଲି ଚାଲି ଘର ରାସ୍ତା ଧରିଲା ।

## ନେଉଳର କାହାଣୀ

ବଂଶଧାରା ନଦୀ କୂଳରେ ମଣ୍ଡ୍ରସ୍କାମ୍ ନାମକ ଗାଁରେ ଡାକ୍ତର ଅସ୍ୱାରୱଙ୍କର ଘର । ନଦୀର ପୂର୍ବ-ତଟରେ ଗୋଟିଏ ଉଚ୍ଚ କୂଦ ଅଛି । ସେହି କୂଦ ଉପରେ ଡାକ୍ତର ସାହେବଙ୍କର ଘର । ସେଠାରେ ଦୁଇଟି ଘର । ସେଥିରୁ ଗୋଟିଏ ପକ୍କାଘର ଏବଂ ଅନ୍ୟଟି ଚାଳଘର । ପ୍ରତିବର୍ଷ ବଢ଼ି ଭୟରେ ନଦୀକୂଳକୁ ସଂରକ୍ଷିତ ରଖିବା ପାଇଁ ସରକାରଙ୍କ ତରଫରୁ ପାହାଡ଼ରୁ ପଥର ଆଣି ନଦୀ ବନ୍ଧାଯାଏ । ବନ୍ଧ ବନ୍ଧାଯିବା ପରେ ଦୁଇଥର ବଢ଼ି ଆସିଛି; କିନ୍ତୁ ବନ୍ଧର କୌଣସି କ୍ଷତି ହୋଇନାହିଁ ।

ସେହି ନଦୀକୂଳ ଗ୍ରୀଷ୍ମଦିନରେ ମାଳଗିରି ପରି ଥଣ୍ଡା ରହେ । ଶୀତଦିନରେ ଗାଁଠାରୁ ଅଧିକ ଥଣ୍ଡା ଏଠାରେ ହୁଏ । ଅଗଣାରେ ଠିଆହୋଇ ଦକ୍ଷିଣ ପଟରୁ ବହି-ଆସୁଥିବା ନଦୀକୁ ଦେଖିବାଦ୍ୱାରା ହୃଦୟକୁ ପୁଲକିତ କରୁଥିବା ରମଣୀୟ ପ୍ରାକୃତିକ ଦୃଶ୍ୟ ଦେଖାଯାଏ । କିଛି ଦୂରରେ ଐତିହାସିକ ପର୍ବତ 'ସାଲିହୁଣ୍ଡାମ' ମଧ୍ୟ ସେଠାରୁ ଦେଖାଯାଏ । ପାହାଡ଼ର ଲମ୍ବା ଲମ୍ବା ଗଛ, କଦଳୀ ବଗିଚା ଏବଂ ବାଦଲକୁ ରଙ୍ଗ ଦେଉଥିବା ସୂର୍ଯ୍ୟାସ୍ତର ସୌନ୍ଦର୍ଯ୍ୟ ନୟନକୁ ଆକୃଷ୍ଟ କରି ପକାଏ । ଫେବ୍ରୁଆରୀ ମାସରେ ସନ୍ଧ୍ୟାର ଅନ୍ଧକାରରେ ପଶ୍ଚିମ ଦିଗକୁ ଆଲୋକିତ କରୁଥିବା ଶୁକ୍ରତାରାର ଜ୍ୟୋତି ଯେତେବେଳେ କଳକଳ ସ୍ୱରରେ ବହିଯାଉଥିବା ନଦୀରେ ପ୍ରତିବିମ୍ବିତ ହେଉଛି ତାହା ନୃତ୍ୟ-ସଙ୍ଗୀତ ନାଟ୍ୟ ଭଳି ଆନନ୍ଦ ଦେଉଛି ।

ଏହି ନଦୀକୂଳ ପାଖ ଘରେ କେତେକ ସୁବିଧା ସହିତ ଅନେକ ଅସୁବିଧା ମଧ୍ୟ ଅଛି । ବର୍ଷାଦିନେ ଯେତେବେଳେ ବଢ଼ି ଆସେ ସେତେବେଳେ ଅନେକ କାଠ, ଶବ ସବୁ ଭାସିଆସି ସେଠାରେ ପହଞ୍ଚିଯାଏ ଏବଂ ତା ସହିତ ଅନେକ ଜୀବିତ ସର୍ପଗୁଡ଼ିକ ମଧ୍ୟ ଦର୍ଶନ ଦିଅନ୍ତି । ସେହି ସାପ କେବେ କେବେ ରାତିରେ ଘରେ ପଶିଯାଆନ୍ତି । ଦିନେ ଘରେ ଯେତେବେଳେ ଘରର ସମସ୍ତ ଲୋକ ଶୋଇଯାଇଛନ୍ତି ସେତେବେଳେ ଉପରୁ ଗୋଟିଏ ସାପ ଖସିପଡ଼ିଲା । ଆୟୁର୍ବେଦିକ ଚିକିତ୍ସା ସହିତ ବିଲବାଡ଼ିର କାମ ମଧ୍ୟ ସମ୍ଭାଳୁଥିବା ଅସ୍ୱାରୱଙ୍କୁ ଖରିଫ୍ କରି ଫସଲ କାଟିବା ସମୟରେ ଆଉ ଗୋଟିଏ ବିଷୟର ସମ୍ମୁଖୀନ ହୋଇ ହଇରାଣ ହେବାକୁ ପଡ଼ୁଥିଲା । ବହୁ ଯତ୍ନର ସହିତ ରଖାଯାଇଥିବା ଶସ୍ୟ ଭଣ୍ଡାରକୁ ଅତି କମ୍‌ରେ ନବେଭାଗ ମୂଷା ଖାଇଯାଆନ୍ତି । ଏହି ପଥର ମଝିରେ ରହୁଥିବା ମୂଷା ରାତିରେ ସ୍ୱଚ୍ଛନ୍ଦରେ ବୁଲବୁଲି କରନ୍ତି । ଦିନବେଳା ମଧ୍ୟ, କୋଠିରେ ଘେରା ପକାଇ ସେଠାରେ ରଖିଥିବା ଖାଦ୍ୟସାମଗ୍ରୀ ଏବଂ ଲଙ୍କାର ଅଖାମୁଣାକୁ କାଟିପକାନ୍ତି । ଏହି ବିପଦରୁ ରକ୍ଷା ପାଇବା ପାଇଁ ଅସ୍ୱାରୱ ମୂଷା ଧରିବା ପାଇଁ ବ୍ୟବସ୍ଥା ମଧ୍ୟ କଲେ; କିନ୍ତୁ ଧରିଥିବା ମୂଷାକୁ ମାରିବା ପାଇଁ ତାଙ୍କ

ମନ ଗୃହୁଁ ନଥିଲା; ଦୂରରେ ଗ୍ରୁଡ଼ ଆସୁଥିଲେ । ସେହି ମୂଷାମାନେ ଘରକୁ ଯଥାସ୍ଥାନରେ ପହଞ୍ଚିଯାଉଥିଲେ । ଅରେ ମୂଷାମରା ଔଷଧ ମଧ୍ୟ ପ୍ରୟୋଗ କଲେ । ମରିଯାଇଥିବା ମୂଷାମାନଙ୍କ ଗନ୍ଧରେ ନାକ ଫାଟିଯାଉଥିଲା । ସେହି ଦୁର୍ଗନ୍ଧ ଯୋଗୁ ତାଙ୍କୁ ବାହାରକୁ ବାହାରିଯିବାକୁ ପଡ଼ୁଥିଲା । ପରେ ଯେତେବେଳେ ସେ ଖାଇବା ପାଇଁ ବସୁଥିଲେ ଉପରୁ ସେତେବେଳେ ମରିଥିବା ମୂଷା ଦେହରେ ହୋଇଯାଇଥିବା ଧଳା ପୋକ ସବୁ ଖସିପଡ଼ୁଥିଲେ । ଏଥିରେ ଅସ୍ୱାସ୍ଥ୍ୟ ଡରିଗଲେ । ବିଲେଇ ଗୋଟିଏ ପାଳିଲେ ତ ସେ ମଧ୍ୟ ଏହି ମୂଷାଙ୍କ ମଣ୍ଡଳକୁ ଡରି ମାଲିକିଆଣୀ ସହିତ କୋଠାଘରେ ଯାଇ ଶୋଇଯାଉଥିଲା; ସେ ଘରେ କେବେ ଶୋଉ ନଥିଲା ।

ଡାକ୍ତରବାବୁଙ୍କର ଦୁଇଟି ପିଲା । ପୁଅ, ପ୍ରାୟ ହଜାରେ ମାଇଲ ଦୂରରେ ଥିବା ସୈନ୍ୟ ବିଭାଗର ଅଫିସର । ଝିଅର ଶାଶୁଘର ସେଠାରୁ ଆଠ ମାଇଲ ଦୂରରେ । ଯେତେବେଳେ ତାଙ୍କର ମନ ବିରକ୍ତ ହୋଇଉଠେ ସେତେବେଳେ ସେ ଘରେ ତାଲା ଲଗାଇ ଦେଇ କିଛି ଦୂରରେ ଜଉର ଦାଗରେ ଥିବା ଗୋଟିଏ ବରଗଛ ତଳେ ଠିଆହୋଇ ଏଆଡ଼ୁ ସେଆଡ଼ୁ କଥାବାର୍ତ୍ତା ହୁଅନ୍ତି । ଏହା ମଧ୍ୟରେ ଯେବେ କୌଣସି ବସ୍ ଆସିଯାଏ ତେବେ ସେହି ବସ୍‌ରେ ଚଢ଼ି ଝିଅର ଶାଶୁଘରେ ପହଞ୍ଚିଯାଆନ୍ତି । ସେଠାରେ ଗୋଟିଏ ଦିନ ରହି ଫେରିଆସନ୍ତି । ଅଧିକାଂଶ ସମୟରେ ତାଙ୍କର ଏହିପରି 'କାର୍ଯ୍ୟକ୍ରମ ଥାଏ ।

ଡାକ୍ତର କେତେ ଲୋକଙ୍କୁ କେତେ ଯନ୍ତ୍ରଣାରୁ ମୁକ୍ତ କରିଥିଲେ; କିନ୍ତୁ ମୂଷା ଏବଂ ସାପଙ୍କ ଯନ୍ତ୍ରଣାରୁ ନିଜେ ମୁକ୍ତ ହୋଇପାରୁ ନଥିଲେ ।

ଦିନେ ସକାଳେ ଗୋଟେ ଲୋକ ଆସିଲା । ଗରିବମାନଙ୍କ ଉପରେ ଦୟା ଦେଖାଉଥିବା ଡାକ୍ତରବାବୁଙ୍କ ପାଇଁ ଗୋଟିଏ ନେଉଳଛୁଆ ନେଇ ଆସିଥିଲା । ତାର ସ୍ତ୍ରୀକୁ ବାତ ହେଉଥିଲା; ତାକୁ ଡାକ୍ତର ଠିକ୍ କରିଦେଇଥିଲେ । ତାହାର ଏହା ପ୍ରତିଦାନ ।

"ଏହାକୁ ନେଇ ମୁଁ କ'ଣ କରିବି ?" ଡାକ୍ତର କହିଲେ ।

"ଆପଣଙ୍କ ଘରେ ସାପ ଏବଂ ମୂଷା ଅଧିକ ହେଉଛନ୍ତି ବାବୁ ! ବର୍ତ୍ତମାନ ତ ଏହା ଛିଟିପିଟି ପରି ଲାଗୁଛି । ଛଅ ମାସ ଭିତରେ ଏହା ବହୁତ ବଡ଼ ହୋଇଯିବ । ତେବେ ଜଣାପଡ଼ିବ ଏ ଆପଣମାନଙ୍କୁ କେତେ ସାହାଯ୍ୟ କରିବ ।"

"ଏହାକୁ କ'ଣ ଘରେ ପୋଷାଯାଇପାରିବ ?"

"ଏହା ତ ଆମ୍ଭମାନଙ୍କ ଉପରେ ନିର୍ଭର କରେ ବାବୁ ! ପନ୍ଦର ଦିନ ପର୍ଯ୍ୟନ୍ତ ଏହାକୁ କୌଣସି ପିଞ୍ଜରାରେ ବା ଦଉଡ଼ି ବାନ୍ଧି କରି ରଖନ୍ତୁ । କୌଣସି ବିଲେଇ ଏବଂ କୁକୁରକୁ ପାଖକୁ ଯିବା ପାଇଁ ଦିଅନ୍ତୁ ନାହିଁ । ଦୁଧ, ଭାତ ଖାଇବ, ମାଛ ଖାଇବ, ମିଠା ଜିନିଷ ମଧ୍ୟ ଖାଇବ । ତାପରେ ବେକରେ ଘୁଙ୍ଗୁର ବାନ୍ଧିଦେବେ ।"

"ଘୁଙ୍ଗୁର ବାନ୍ଧିଲେ, ମୂଷାକୁ କିମ୍ବା ସାପକୁ କିପରି ଧରିବ ? ବିଲେଇ

ବେକରେ ଘଣ୍ଟି ବାନ୍ଧିବା ଯେପରି ଅଛି ।"

"ଏପରି ନୁହେଁ ବାବୁ ! ଘୁଙ୍ଗୁର ବାନ୍ଧିବାଦ୍ୱାରା ତାହାର ଶବ୍ଦ ଶୁଣି ଏହାର ସାଥୀ ନେଉଳ ଏହାକୁ ପାଖରେ ପୂରାଇ ଦେବେ ନାହିଁ । ସେତେବେଳେ ବିବଶ ହୋଇ ଏଠାରେ ପଡ଼ିରହିବ ।"

ନେଉଳଛୁଆକୁ ହାତରେ ଧରିବା ପାଇଁ ଡାକ୍ତରଙ୍କୁ ଡର ଲାଗୁଥିଲା । କୋଲା ତା ବେକରେ ଦଉଡ଼ି ବାନ୍ଧିଦେଲା । ତାହାର ବୁଲିଚାଲି ପାଇଁ ସେହି ସମୟରେ ବ୍ୟବସ୍ଥା କରିଦେଲା । ଦୁଧ ମିଶାଇ ଭାତ ରଖିଲା; କିନ୍ତୁ ସେ ଖାଇଲା ନାହିଁ । କିଚି କିଚି କରୁଛି ।

"ଆରେ ଏ ତ ବିରକ୍ତ ହେଉଛି । ଏହା ଏଠାରେ କିପରି ରହିବ ?"

"ମାଆକୁ ଛାଡ଼ି ଆସିଛି ନଁ, ଦୁଇ ଦିନ ମା ପାଇଁ କାନ୍ଦିବ ।"

"ଏହା ତୁମକୁ କେଉଁଠାରୁ ମିଳିଲା ?"

"ହେଇ ଦେଖନ୍ତୁ ବାବୁ ! ସେହି ରାସ୍ତାପାଖ କରଗଛ ଉପରେ ।"

"ଚାଲ ।" କହି ଡାକ୍ତର ସେଠାରୁ ଉଠିଗଲେ । ଯେତେବେଳେ ସେ ଦୁହେଁ ସେଠାରେ ପହଞ୍ଚିଲେ ସେତେବେଳେ ଦେଖିଲେ ଯେ ଦୁଇଟି ବଡ଼ ବଡ଼ ନେଉଳ ଗଛ ଉପର କୋରଡ଼ରୁ ତଳକୁ ଏବଂ ତଳୁ ଉପରକୁ ଦୌଡ଼ ଦୌଡ଼ ଚିତ୍କାର କରୁଛନ୍ତି ।

"ବୋଧହୁଏ ନିଜ ପିଲାକୁ ଖୋଜୁଛନ୍ତି । ମୁଁ ଏ ଭୁଲ କାମ କରିବି ନାହିଁ । ତାକୁ ଆଣି ଏଠାରେ ଛାଡ଼ିଦିଅ ।"

"ନା ବାବୁ ! ନା, ଏମାନଙ୍କର ଅନେକ ଛୁଆ ହୋଇଯିବ । ଯଦି ଆପଣ ଖରାପ ଭାବିବେ ନାହିଁ ତେବେ ମୁଁ ଗୋଟିଏ କଥା କହୁଛି– ବର୍ତ୍ତମାନ ଆପଣଙ୍କର ଆଉ ସନ୍ତାନ ତ ହେବନାହିଁ । ଏହି ଛୁଆ ବଡ଼ ହୋଇ ଆପଣଙ୍କୁ ବହୁତ ସାହା ହେବ । ସେ ତ କୋଳକୁ ଯାଇସାରିଛି । ବର୍ତ୍ତମାନ ଆପଣମାନେ ତାର ମା' ବାପ ଅଟନ୍ତି ।"

ଡାକ୍ତର ଏକୁଟିଆ ଫେରିଆସିଲେ । ଡାକ୍ତରଙ୍କର ସ୍ତ୍ରୀ ଅମ୍ବାଯମ୍ମା ଚିନି ଦହିଭାତ ରୁଟି ଖୁଆଇ ତାକୁ ଚୁପ୍ କରାଇ ଦେଇଛନ୍ତି । ଦୁଇ ତିନି ଦିନ ପରେ ମଝିରେ ମଝିରେ କୋଲା ଏଡ଼ନ୍ନା ଆସି ନେଉଳକୁ ପାଳିବା ବିଷୟରେ ପରାମର୍ଶ, ଉପଦେଶ ଦେଉଥିଲା ।

ଅମ୍ବାଯମ୍ମା ରୋଷେଇ କାମ ଶେଷ କରି ନେଉଳ ପାଖରେ ରହୁଥିଲେ । ଆସ୍ତେ ଆସ୍ତେ ସେ ବଡ଼ ହୋଇଗଲା । ପନ୍ଦର ଦିନ ପରେ ତାକୁ ବାନ୍ଧିକରି ରଖିବାକୁ ଆବଶ୍ୟକ ପଡ଼ିଲା ନାହିଁ । ଗଳାରେ ଦଉଡ଼ି ଲଗାଇ ଯୁଆଡ଼େ ନେଇଯାଅ ସେ ସେଆଡ଼ରୁ ବୁଲି ଆସୁଥିଲା । ଛୋଟ ମୁହଁ, ଛୋଟ ମୁହଁ ସାମନାରେ ହାଲକା ଲାଲ ଏବଂ ବାଇଗଣି ରଙ୍ଗର ଦେହ, ଗହଳିଆ ଲାଞ୍ଜ, ଛୋଟ ଛୋଟ ଆଖି, ଛୋଟ ନାକ, ଖେଳିବା ବୁଲିବା ସମୟରେ ଘୁଙ୍ଗୁରର ଟିନ ଟିନ ଶବ୍ଦ । ଅମ୍ବାଯମ୍ମା ନାଁ ଡାକ ଦେଇଥିଲି "ବସ୍ସନ୍ନା··· ବସ୍ସନ୍ନା ।"

ଗୋଟିଏ ମାସପରେ ଦଉଡ଼ିର ମଧ୍ୟ ଆବଶ୍ୟକତା ରହିଲା ନାହିଁ । ନାଁ ଧରି ଡାକ

ଦେଲେ ସେ ଦଉଡ଼ି ଆସେ । ଖାଇବା ଖାଇ ଦିନକୁ ଦିନ ଶୁକ୍ଳପକ୍ଷର ଚନ୍ଦ୍ରମା ପରି ବଢ଼ିବାକୁ ଲାଗିଲା, ବର୍ତ୍ତମାନ ସେ ଆଉ ଘରେ ରହୁନାହିଁ । ନଦୀକୂଳରେ ଚଟାଣ ମଝିରେ ଗୋଟିଏ ଛୋଟ ଗାତ କରି ସେଠାରେ ରହୁଛି । ସକାଳୁ କର୍ମ ଯିଇବା ସମୟ ହେବାକ୍ଷଣି ଗାତରୁ ବାହାରି ଆସେ । କୋଠା ଉପରଦେଇ କାନ୍ଥ କଡ଼େ କଡ଼େ ରୁଣୁଝୁଣୁ ଶବ୍ଦ କରି ସେ ତଳକୁ ଚାଲିଆସେ । ତାର ରୁଣୁଝୁଣୁ ଶବ୍ଦ ଶୁଣିଲା କ୍ଷଣି ଅମ୍ମାୟମ୍ମା ତାକୁ "ବସ୍ୟନ୍ନା ଆ··ଆ···" କହି ଡାକନ୍ତି । ତା ପାଇଁ ଗୋଟିଏ ପୁରୁଣା କାଠବାକସ କାନ୍ଥ ପାଖରେ ପଡ଼ିଥାଏ । ଆସିବାକ୍ଷଣି ତା ଉପରେ ବସି ପ୍ରଥମେ ଆଗ ପାଦ ଦୁଇଟିକୁ ଉପରକୁ ଉଠାଏ । ଇଡ଼ଲିରେ ଯଦି ଚଟନି ନ ଦିଆ ହୋଇଛି ତେବେ ସେ ରାଗିଯାଏ । ଚଟନି ପକାଇବାକ୍ଷଣି ସବୁ ଇଡଲିକୁ ପାଞ୍ଚ ମିନଟରେ ଖାଇଦିଏ । ପୁଣି ଫେରିବା ବାଟରେ କୋଠା ଉପରଦେଇ ଦରିର ଚାରିଆଡ଼େ ପହରା ଦେଇ ପୁଣି ନିଜ ଗାତକୁ ଚାଲିଯାଏ ।

ମଝିରେ କେବେ ଅମ୍ମାୟମ୍ମା ନଦୀକୂଳକୁ ଯାଇ 'ବସ୍ୟନ୍ନା' କହି ଡାକ ଛାଡ଼ିବାକ୍ଷଣି ଗୋଟିଏ ଡାକରେ ରୁଣୁଝୁଣୁ ଶବ୍ଦ କରି ସେ ବାହାରକୁ ଚାଲିଆସେ । ଅମ୍ମାୟମ୍ମା ହାତରେ ମାଛ ଦେଖିନିଏ । ଯଦି ମାଛ ନ ଥାଏ ତେବେ ତା ଗୋଡ଼ରେ ଠିଆହୋଇ ଉପରକୁ ଚଢ଼ିବାକୁ ଚେଷ୍ଟା କରେ । ଅମ୍ମାୟମ୍ମା ତାକୁ କାନ୍ଧ ଉପରକୁ ଉଠାଇ "ତୋ ପାଇଁ ଆଣିଛୁ" କହି ମାଛକୁ ତଳେ ପକାଇ ଦିଅନ୍ତି । ପୁଣି ସେ ଅମ୍ମାୟମ୍ମା ହାତରୁ ଛଡ଼ାଇ ମାଛ ନେଇ ତା ଗାତକୁ ଚାଲିଯାଏ ।

ବର୍ତ୍ତମାନ ତ ବସ୍ୟନ୍ନା ଘରର ଗେହ୍ଲା ପୁଅ ଅଟେ । ପେଟଭରି ଖାଇବାକୁ ଯଦି ନ ମିଳେ ତେବେ ସେ ପାଟିତୁଣ୍ଡ କରେ । ଅମ୍ମାୟମ୍ମାର ଗୋଡ଼ ତଳେ ପଡ଼େ । କୌଣସି କାମ କରିବାକୁ ଛାଡ଼ିଦିଏ ନାହିଁ । ତା ଉପରେ ଚଢ଼ି କାନରେ କଥା କହିବାକୁ ଚେଷ୍ଟାକରେ । ଛୋଟ ଛୋଟ ପାଦରେ ମୁହଁରେ ସେ ଗେହ୍ଲା ପୁଅ ମା' ଭିତରେ ଗୁଦଗୁଦି ସୃଷ୍ଟି କରେ ।

ତା ଦୃଷ୍ଟିରେ ବସ୍ୟନ୍ନା ବର୍ତ୍ତମାନ ଦୁଇ ମାସର ପୁଅ । କିନ୍ତୁ ସେ ଘରର ମାଲିକ ହୋଇ ବସିଯାଇଛି ! ଯେଉଁ କାମ ଘରର ମାଲିକଦ୍ୱାରା ହୋଇ ନ ପାରେ ସେ ସବୁକୁ ଏହି ପ୍ରକାର ପୁଅ କରି ଦେଖାଇ ଦେଇଛି । ବର୍ତ୍ତମାନ ଘରେ ମୂଷା ନାହାନ୍ତି । ଜଣାନାହିଁ, କୁଆଡ଼େ ଚାଲିଯାଇଛନ୍ତି । ସାପର ଛୁଆ ମଧ୍ୟ ଦେଖାଯାଉ ନାହାନ୍ତି । ନଦୀକୂଳରେ ସାପର କାତି ମଧ୍ୟ ଦେଖାଯାଉ ନାହିଁ ।

ଏ ବର୍ଷ ତଳେ ଯେଉଁଠାରେ ଯେଉଁ ଜିନିଷ ରଖାହୋଇଛି ଠିକ୍ ସେହିଠାରେ ଅଛି । ପରିବା ଟୋକେଇ ସେଟି ଉପରେ ରହୁଛି । ଶାଗ୍ କେବେ କେବେ ମାଟି ଉପରେ ତ କେବେ କେବେ ଟୋକେଇରେ ପଡ଼ିରହୁଛି । ପାଣି ଉପରଦେଇ ବହିଯାଉଥିବା ଥଣ୍ଡାପବନରୁ ମିଳୁଥିବା ଶାନ୍ତି ଅନୁଭବ କରି ଜ୍ୟୋସ୍ନାତଳେ ନୌକାରେ ଯାଉଥିବା ଲହଡ଼ିର ସୌନ୍ଦର୍ଯ୍ୟ ଦେଖୁ ଦେଖୁ ସେ ଦୁହେଁ

ଆନନ୍ଦରେ ଜୀବନ ବିତାଇ ଦେଉଛନ୍ତି । କେବେ କେବେ ସେମାନଙ୍କ ଯୌବନର ଦିନଗୁଡ଼ିକ ମନେ ପଡ଼ିଯାଉଛି । ପ୍ରଥମ ପର ପାଦ ଉପରେ କୌଣସି ସାପ ଚଢ଼ି ଯିବାର ଭୟ ବର୍ତ୍ତମାନ ନାହିଁ ।

ରାତିବେଳା କେବେ "ବସୁନ୍ଧା ଆ···ଆ···"କହି ଘରର କୌଣସି କୁଆଡ଼ୁ ଡାକିଲା ଭଳି ଆବାଜ ଦେଲାକ୍ଷଣି ରୁଣ୍ଡୁଝୁଣ୍ଡୁ ଶବ୍ଦ ଶୁଣାଯାଏ । ସେ ପାଖକୁ ଆସି ଦୁଇଜଣଙ୍କୁ ପରିକ୍ରମା କରି ନମସ୍କାର କରିବା ଢଙ୍ଗରେ ଗୁରିଆଡ଼େ ବୁଲିଯାଏ । ପୁଣି ମୁଣ୍ଡ ଉଠାଇ ଅମ୍ମାୟୁମ୍ମାଙ୍କୁ ଥରେ ଦେଖେ ଏବଂ ତା କୋଳରେ ଯାଇ ବସିପଡ଼େ । ସେ ବସୁନ୍ଧାକୁ ହାତରେ ନେଇ ଯେବେ କାନ୍ଧରେ ବସାଇଦିଏ ସେ ନିଜ ମୁହଁରେ ତାର ଗାଲକୁ ଗେଲ କରିଦିଏ । "ଗୃଲିଯା···ନିଜ ଗାତକୁ" କହିବାକ୍ଷଣି ସେ ରୁଣ୍ଡୁଝୁଣ୍ଡୁ ଶବ୍ଦ କରି ପୁଣି ଫେରିଯାଏ ।

ଦିନେ ସକାଳୁ ସକାଳୁ ଡାକ୍ତରବାବୁଙ୍କ ଘର ସାମନାରେ ହାତରେ ବାଡ଼ି ଧରି ଭୈରବସ୍ୱା ଆସି ଠିଆହୋଇଗଲା । ସେ ତାଙ୍କର ଦୂର ସମ୍ପର୍କୀୟ ବନ୍ଧୁବାନ୍ଧବ ଅଟେ । ଏହି ଲୋକମାନଙ୍କ ଅବସ୍ଥା ନିଜଠାରୁ ଭଲ ଦେଖି ସେ ମନେ ମନେ ରାଗି-ଯାଉଛି । ସବୁବେଳେ କୌଣସି ନା କୌଣସି ବାହାନା କରି ଏମାନଙ୍କ ଉପରେ ବିପଦ ପକାଇବାର ସୁଯୋଗ ଅପେକ୍ଷାରେ ରହିଛି । ରାଗରେ ସେ ବହୁତ ଭୟଙ୍କର ଦେଖାଯାଏ । ନିଜର ବଙ୍କା ନିଶ ଉପରେ ବଡ଼ ବାହାଦୁରୀରେ ହାତ ମାରୁଥାଏ । ଲମ୍ବା ଲମ୍ବା ବାଳକୁ କୁଣ୍ଡାଇ ପଛପଟକୁ ଛାଡ଼ିଦେଇଛି ।

କବାଟ ପାଖରେ ମରିଯାଇଥିବା ପାଞ୍ଚଟି କୁକୁଡ଼ାଙ୍କୁ ଫୋପାଡ଼ି କରି କର୍କଶ ଗଳାରେ ଡାକିଲା ।

"କ'ଣ ହେଲା ?" ଡାକ୍ତର ପଚାରିଲେ ।

"ମୋର କହିବାର କ'ଣ ଅଛି ? ରାତିରେ ବସୁନ୍ଧା ଏହି କୁକୁଡ଼ାଙ୍କ ଗଳା କାଟି ଦେଇଛି ।"

"କିଏ ଦେଖିଛି ?"

"ଏଥିପାଇଁ ପ୍ରମାଣ ମଧ୍ୟ ଦରକାର ?"

"ଆଖିଗୁଡ଼ାକୁ ଲାଲ କଲେ କାମ ଚଳିବ ନାହିଁ । ଆମ ବସୁନ୍ଧା ଉପରେ ମିଥ୍ୟା ଅଭିଯୋଗ ଏପରି କର ନାହିଁ । ସେ ଏପରି ଭୁଲ କାମ କରେ ନାହିଁ । ତାକୁ ଡାଳ ଯାହା ଖୁଆଇ ଦେବ, ବାସ, ତାକୁ ସେ ଖାଏ ।"

"ଯଦି ତୁମକୁ ପ୍ରମାଣ ଦରକାର ତେବେ ଆଣୁଛି ।"

ପଡ଼ୋଶୀମାନଙ୍କୁ ଡାକିକରି ଭୈରବସ୍ୱା ସାକ୍ଷୀ ଦେଲା ଯେ ବସୁନ୍ଧା ହିଁ କୁକୁଡ଼ା-ମାନଙ୍କୁ ମାରିଛି । ଡାକ୍ତର ଚିତ୍କାର କରି କହିଲେ, "ସାକ୍ଷୀ ପ୍ରମାଣ ଭୁଲ, ମିଥ୍ୟା ।"

"ଏମାନଙ୍କର ମୂଲ୍ୟ ଦଶଟଙ୍କା ଦେଇଦିଅ ।"

"ବିନା କାରଣରେ ଦେବି ନାହିଁ । ଆମର ବସୁନ୍ଧା ଗଳା କାଟିଲାବାଲା ପାପୀ ନୁହେଁ ।

ମୁଁ ଗୋଟିଏ ପଇସା ମଧ୍ୟ ଦେବ ନାହିଁ···ଦେବ ନାହିଁ ।''

"କାହିଁକି, ବଡ଼ଘର ଲୋକ, ସେଥିପାଇଁ ଆକାଶରୁ କଥାବାର୍ତ୍ତା କରୁଛ । କ୍ଷତି ତ ମୋର ହୋଇଛି; ତୁମର ନୁହେଁ । ଛାଡ଼, ମୁଁ ବୁଝିନେବ ଯେ ଏହି କୁକୁଡ଼ାମାନେ ମୋ ଭାଗ୍ୟରେ ନାହାନ୍ତି ।'' କହୁ କହୁ ସେ ସେହି କୁକୁଡ଼ାମାନଙ୍କୁ ନର୍ଦ୍ଦମାରେ ପକାଇ ଦେଲା । ଉଡ଼ୁଥିବା ଶଳଗୁଡ଼ିକ ତାଙ୍କୁ ମଝିରୁ ଝାମ୍ପି ନେଲେ; ପୁଣି ସେମାନେ ପରସ୍ପର ସହ କଳଗୋଳ କରିବାକୁ ଲାଗିଲେ ।

ରାଗରେ ଗରଗର ହୋଇ ଡାକ୍ତର ଯେତେବେଳେ ଘର ଭିତରକୁ ଆସିଲେ ତାଙ୍କର ସ୍ତ୍ରୀ କହିଲେ, "ସେ ତ ବଦ୍‌ମାସ ମଣିଷ । ତା ସହିତ ଝଗଡ଼ା କାହିଁକି କରୁଛ ? ଅଧା ଦାମ୍ ଦେଇ ବୁଝାଇଦେବା ।''

ଡାକ୍ତର ଆହୁରି ବିରକ୍ତ ହୋଇ କହିଲେ, "ହତଭାଗୀ, ନିର୍ଦ୍ଦୋଷ ବସ୍ଥନ୍ନା ବିରୁଦ୍ଧରେ କଥା କହୁଛ । ସେଥିରେ ଆମେ ଚୁପ୍ ହୋଇ କିପରି ରହିବା ?'' ଯଦି ସେ ସେଠାକୁ ଯାଇଥାଆନ୍ତା ତେବେ ରୁଣ୍ଡଝୁଣ୍ଡ ଶବ୍ଦ କ'ଣ ହୋଇ ନ ଥାଆନ୍ତା ? କୁକୁଡ଼ାଙ୍କର ଆବାଜ୍ କ'ଣ ଶୁଣାଯାଇ ନ ଥାଆନ୍ତା ? ଏହି ଲୋକମାନେ ମଧ୍ୟ ଉଠି ପଡ଼ି ନ ଥାଆନ୍ତେ ?''

ଭୈରବସ୍ୱାମୀ ଘରକୁ ଯାଇ ସମସ୍ତଙ୍କ ଆଗରେ କହିଲା, "କଥା ବିଗିଡ଼ିଗଲା । ଆମେ ସବୁ ମିଛୁଆ; ଆଉ ସେ ସତ୍ୟଆ ! ଆମମାନଙ୍କୁ ତ ଆମର ହୃପାକଣ୍ଡ ନିଜେ କରିବାକୁ ହେବ, ବାକି କୁକୁଡ଼ାଗୁଡ଼ିକୁ ସମ୍ଭାଳିବାକୁ ହେବ । ସେମାନଙ୍କୁ ଘରେ ରଖିବା, ଆମେ ବାହାରେ ଶୋଇବା ।

ଦଶଦିନ କଟିଗଲା । ଭୈରବସ୍ୱାମୀ ଡ଼ାକ୍ତର ପାଖକୁ ଔଷଧ ପାଇଁ ଆସିଲା । ଗୋଟିଏ ପଇସା ସୁଦ୍ଧା ନ ନେଇ ଡାକ୍ତର ଔଷଧ ଦେଇଦେଲେ । କୁକୁଡ଼ା କଥା ସେ ଏକବାରେ ଭୁଲିଗଲା ।

ସହରରେ ନାଳ ଝିଅକୁ ଦେଖିବା ପାଇଁ ଡାକ୍ତର ଏବଂ ତାଙ୍କର ସ୍ତ୍ରୀ ପ୍ରସ୍ତୁତ ହୋଇ ବାହାରି ପଡ଼ିଲେ । ଘର ତାଲା ପକାଇସାରିବା ପରେ ପଛପଟେ ଦୁଧଭାତ ଡାଟିଆରେ ରଖି ଅମ୍ମାସ୍ୱାମ୍ମା କହିଲା, "ବସ୍ଥନ୍ନା, ମଧ୍ୟାହ୍ନରେ ଖାଇନେବୁ । ସହରକୁ ଯାଇ ଆମେ ସନ୍ଧ୍ୟାବେଳକୁ ଫେରିଆସିବୁ । ଘରେ ହୁସିଆର ହୋଇ ରହିଥିବୁ ।'' ଏହା କହି ସେମାନେ ଚାଲିଗଲେ ।

ବହୁତ କହିବା ପରେ ମଧ୍ୟ ବସ୍ଥନ୍ନା ସେମାନଙ୍କ ପଛେ ପଛେ ଗଲା । ଦୁଇଜଣ ବସ୍ ପ୍ରତୀକ୍ଷାରେ ବରଗଛ ତଳେ ବସି ମଧ୍ୟ ନ ଥିଲେ, ଠିକ୍ ସେତିକିବେଳେ ପଛରୁ ନେଉଳର ଗର୍ଜନ ଶୁଣାଗଲା । ପଛକୁ ଚାହିଁ ଦେଖିଲେ ନେଉଳ ଗୋଟେ ନୁହେଁ, ବସ୍ଥନ୍ନା ବ୍ୟତୀତ ଅନ୍ୟ ଦୁଇଟି ବଡ଼ ବଡ଼ ନେଉଳ । ଦୁଇଟି ଯାକ କାନ ଠିଆକରି ଗର୍ଜନ କରୁଛନ୍ତି ଏବଂ ବସ୍ଥନ୍ନାକୁ ଆଗକୁ ଯିବା ପାଇଁ ବନ୍ଦ କରୁଛନ୍ତି । ବସ୍ଥନ୍ନା ସେମାନଙ୍କୁ ଦେଖି ସେମାନଙ୍କ ସହିତ ଯିବା ପାଇଁ ବ୍ୟଗ୍ର ହେଉଛି ।

"ଦେଖ, ଏମାନେ ବସୁନ୍ଧାର ବାପ, ମା ଅଛନ୍ତି।" ଡାକ୍ତର କହିଲେ। ଦୁହେଁ ଆଶ୍ଚର୍ଯ୍ୟ ହୋଇ ଦେଖୁଛନ୍ତି ଏବଂ ବସୁନ୍ଧା ଉପରେ ଆକ୍ରମଣ କରିବାକୁ ଯାଉଚନ୍ତି। ବସୁନ୍ଧା ଜାତରୁ ବାହାରିଯିବା କଥା ଅନୁଭବ କରୁଛି।

"ସେମାନେ ମାରି ମଧ ପାରନ୍ତି, ତାଙ୍କୁ ହଟାଇ ଦିଅନା।" ଅମ୍ବାସୁମ୍ନା କହିଲେ।

'ଆସି ଯା ବସୁନ୍ଧା" କହି ବଡ଼ ନେଉଳକୁ ହଟାଇ ଦେବା ପରେ ବସୁନ୍ଧା ଅମ୍ବାସୁମ୍ନା ପାଖକୁ ଆସିଲା ଏବଂ ତାର ପାଦତଳେ ଗଡ଼ିଗଲା। ସେ ତାକୁ ହାତରେ ଉଠାଇ ନେଲେ ତ ସେ ମୁହଁରେ ମୁହଁ ଲଗାଇ କିଛି ଶବ୍ଦ କରିବାକୁ ଲାଗିଲା।

"ତୋର ମା, ବାପା ତୋତେ ଅଟକାଉଥିଲେ। ଏଥିପାଇଁ ତୁ କାନ୍ଦୁଛୁ? ମୋ ଆଡ଼କୁ ଦେଖ! ମୁଁ ତୋର ମା, ସେ ତୋର ବାପା···ଯା ଘରକୁ ଯା। ଯଦି ତୁ ଘରେ ରହିବୁ ନାହିଁ ତେବେ ଶତ୍ରୁ ପୁଣି ଆକ୍ରମଣ ଆରମ୍ଭ କରିଦେବେ। ଯା, ସୁଅ ଯା।" ଅମ୍ବାସୁମ୍ନା ତା ମୁହଁକୁ ଗେଲ କରି କିଛି ଦୂରକୁ ଫେରିଯାଇ ତାକୁ ଛାଡ଼ିଆସିଲା। ଏହାରି ମଧ୍ୟରେ ବସ୍ ଆସିଗଲା। ଡାକ୍ତରବାବୁ ଡାକ ପକାଇଲେ ଏବଂ ସେ ଚାଲି-ଆସିଲେ। ଏପଟେ ଫେରିଆସି ବସୁନ୍ଧା ଘର ଗୁମ୍ଫପଟ ଥରେ ବୁଲିଆସି ପୁଣି ଗାତରେ ଯାଇ ବସିଲା।

ଦଶଟା ବାଜିଗଲା। ବର୍ତ୍ତମାନ ଦୁଧଭାତ ଖାଇବାର ସମୟ ହୋଇନାହିଁ। ଠିକ୍ ସମୟରେ ବସୁନ୍ଧା ବାହାରି ଆସିବ—ଯେପରି ଘଣ୍ଟା ବାଜିଯିବ। "ବସୁନ୍ଧା, ଆସି ଯା।" ବାହାରୁ ଆବାଜ ଆସିଲା। ବସୁନ୍ଧା ବାହାରକୁ ଆସି ଦେଖିଲା। ପୁଣି ଆବାଜ ଆସିଲା। ଭୈରବସ୍ୱା କୂଳରେ ଠିଆହୋଇଛି। ବାହାରେ ଆଉ କେହି ନାହାନ୍ତି। ନଗର ଆଖପାଖରେ ମଧ୍ୟ କେହି ନାହାନ୍ତି।

"ଆ···ଆ···ବସୁନ୍ଧା···ସେ ନେ ମାଛ···ଆ ଆ···ଆ ଆସି ଯା।"

ରୁଣ୍ଡୁଝୁଣ୍ଡୁ ଶବ୍ଦ ହେଲା। ଚଟ୍ ଚଟ୍ କରି ସେ ଉପର ତଳ ଦୌଡ଼ିବାକୁ ଲାଗିଲା। ଭୈରବସ୍ୱା ହାତରେ ମାଛ ଦେଖାଗଲା। ଭୈରବସ୍ୱା କିଛି ଆଗକୁ ଆସି କହିଲା, "ତୋ ପାଇଁ ମୁଁ ମାଛ ଆଣିଛି···ବସୁନ୍ଧା · ଆ···ଆ···।"

ଟିକିଏ ପଛକୁ ହଟିଯାଇ ··ଆଗକୁ ଯାଇ·· ପୁଣି କୋଣରେ ଲୁଚ ଲୁଚ କରି··· ପୁଣି ବାହାର ଆଡ଼କୁ ଗୁହିଁ କିଛି ସମୟ ମନ୍ଦାର ଗଛ ପଛରେ ଲୁଚ କରି ଶେଷରେ ତାର ଆବାଜରେ ବସୁନ୍ଧା ମାଛ ଆଡ଼େ ଆକୃଷ୍ଟ ହୋଇଗଲା।

ମାଛ ଧରିବା ପାଇଁ ରୁଣ୍ଡୁଝୁଣ୍ଡୁ ଶବ୍ଦ କରି ସେ ଆଗକୁ ଆଗେଇଲା। ଆଗରେ ହାତରେ କଣ୍ଟାବାଡ଼ିଆ ବାଡ଼ି ଧରି ଜଣକୁ ସାଉଁଳି ଭୈରବସ୍ୱା ଠିଆହୋଇଥିଲା। ସେ ହଠାତ୍ ବାଡ଼ି ଉଠାଇ ବସୁନ୍ଧା ଦେହକୁ ପ୍ରହାର କଲା। ବସୁନ୍ଧା ଏକକାଳ ଗର୍ଜନ କରି କରି ମୁହଁ ଉପର କରି ଠିଆହୋଇଥିଲା। ଯେପରି ସେ କହୁଥିଲା କି "ମାର ନାହିଁ, ମାର ନାହିଁ, ମୋର କୌଣସି ଭୁଲ ନାହିଁ।" ଆଗ ଦୁଇ ଗୋଡ଼ ଉପରକୁ ଉଠାଇ ସତେ ଯେପରି ସେ କହିବାକୁ ଚାହୁଁଥିଲା, "ମୁଁ ତୁମକୁ ପ୍ରଣାମ କରୁଛି; ମୋ

ପର ନିରପରାଧ ଶ୍ରେଷ୍ଠ ଜନ୍ତୁକୁ ମାର ନାହିଁ ।” ପୁଣି ଆଉ ଗୋଟିଏ ପ୍ରହାରରେ ବସ୍ୟନ୍ତା ଛଟପଟ ହେବାକୁ ଲାଗିଲା । ଆଉ ଦୁଇ ତିନୋଟି ପ୍ରହାରରେ ବସ୍ୟନ୍ତା ନିର୍ଜୀବ ହୋଇ ପଡ଼ିଗଲା ।

ଭୈରବସ୍ୱାମୀ ଲାଞ୍ଜ ଧରି ତାକୁ ଉପରକୁ ଉଠାଇଲା । ମୁହଁରୁ ରକ୍ତ ବାହାରୁଥିଲା । ପାଟି ଭିତରୁ ଶ୍ରେଷ୍ଠ ଶ୍ରେଷ୍ଠ ଦାନ୍ତ ଦେଖାଯାଉଥିଲା । ଏ ସେହି ଦାନ୍ତ ଯେ ମନୁଷ୍ୟଙ୍କୁ ମାରିବାରେ ସମର୍ଥ ବିଷଧର ସର୍ପକୁ କାଟି କାଟି ଖଣ୍ଡ ଖଣ୍ଡ କରି ଦେଇପାରେ । ସାପକୁ ଦେଖିବାକ୍ଷଣି ବୀର ସୈନିକ ଭଳି ଉତ୍ସାହରେ ଆକ୍ରମଣ କରିବା ପାଦ ବର୍ତ୍ତମାନ ନିର୍ଜୀବ ହୋଇପଡ଼ିଛି । ଆଖିଗୁଡ଼ିକ ବହୁତ ଶ୍ରେଷ୍ଠ । ତଥାପି ମୂଷା ଓ ଚଢ଼େଇଙ୍କୁ ଧମକାଇବାରେ ସମର୍ଥ ଅଟେ । ବର୍ତ୍ତମାନ ସେହି ଆଖି ବନ୍ଦ ହୋଇଯାଇଛି । ଯେଉଁ କାନ ବସ୍ୟନ୍ତା···ଆ·· ଯା · ଶବ୍ଦକୁ ତା'ପରି ଜୀବନ ପ୍ରତି ମାନବଜାତିର ସୌହାର୍ଦ୍ଦ୍ୟ ପ୍ରେମ ଏବଂ ବାତ୍ସଲ୍ୟର ପ୍ରତୀକ ବୋଲି ଧରିନେଇଥିଲା, ବର୍ତ୍ତମାନ ସେ କାନ ସବୁ ଦିନ ପାଇଁ ବଧିର ହୋଇଗଲା ।

ଭୈରବସ୍ୱାମୀ ବଡ଼ ଉତ୍ସାହ ସହିତ ତାର ଲାଞ୍ଜ ଧରି ଜୋରରେ ବହିଯାଉଥିବା ନଦୀରେ ଶବକୁ ପକାଇ ଦେଲା ଯେପରି ସେ କିଛି ଜାଣିନାହିଁ । ନଦୀ ପାଖକୁ ଯାଇ ହାତ ଗୋଡ଼ ଧୋଇନେଲା ।

ବସ୍ୟନ୍ତାର ଶବ ନଦୀରେ ଭାସିଗଲା । ସେ ସଢ଼ିଗଲା ନାହିଁ । କୌଣସି କୂଳରେ ପହଞ୍ଚିଗଲା । କୌଣସି ଗୋଟିଏ ଶାଗୁଣାର ଖାଦ୍ୟ ହେଲା ।

ସନ୍ଧ୍ୟାବେଳେ ସୂର୍ଯ୍ୟାସ୍ତ ପୂର୍ବରୁ ପଶୁମାନଙ୍କ ସହିତ ବାଲ୍ୟରୁ ଯାଇଥିବା ଟ୍ରକର ଫେରି-ଅସିଲା । ସହରରୁ ଡାକ୍ତର ଏବଂ ଅମ୍ମାୟମ୍ମା ଫେରିଆସିଲେ । ବସ୍ୟନ୍ତାକୁ ମିଠାଇ ବହୁତ ଭଲ ଲାଗେ । ଶ୍ରୁଖୁଆ ପାଇଁ ସେ ଜୀବନ ଦିଏ । ଏହି ବିଷୟରେ ଅମ୍ମାୟମ୍ମା ଏହି ସବୁ ଜିନିଷ କିଣିକରି ଆଣିଛନ୍ତି । ଘରେ ପହଞ୍ଚିବାକ୍ଷଣି ସମସ୍ତଙ୍କ ଆଗରୁ ବସ୍ୟନ୍ତା ପାଇଁ ରଖାଯାଇଥିବା ଦୁଧଭାତ ସେ ଖାଇଲା କି ନାହିଁ, ଏହା ଦେଖିବା ପାଇଁ ସେ ପଛପଟକୁ ଗଲେ । ଦୁଧଭାତ ସେହିପରି ରଖାହୋଇଥିଲା ।

"ଦେଖ ତ ଆମ ବସ୍ୟନ୍ତା କେତେ ଅଭିମାନୀ ଅଟେ । ଆମେ ବୁଲେଇ ଶୁଳେଇ ଯାଇ-ଥିଲେ ମଧ୍ୟ ସେ ଖାଇଲା ନାହିଁ ।"

"ତୁମେ ପାଖରେ ବସି ଖୁଆଇବ ତ ସେ ଖାଇବ ।"

ବ୍ୟାଗରୁ ମିଠାଇ, ଶ୍ରୁଖୁଆ ବାହାର କରି ଅମ୍ମାୟମ୍ମା ନଦୀ କୂଳରେ ପହଞ୍ଚିଲେ ।

"ବସ୍ୟନ୍ତା ଆ···ଯା···ତୋର ମନମୁତାବକ ଜିନିଷ ଆଣିଛି । ···ଆ··· ···ଯା···ସୁଆ···ଆ··· ।"

ଥରେ ନୁହେଁ ଅନେକ ଥର ଡାକିଲେ । ରାତି ହେବା ପର୍ଯ୍ୟନ୍ତ ବଗିଚାରେ, ଅଗଣାରେ ଘରକୋଣରେ ଯାଇ ଏପରି ଡାକିଲେ ।

ଜଣାନାହିଁ କୁଆଡ଼େ ବାହାରିଯାଇଛି । ଘର ପର୍ଯ୍ୟନ୍ତ ଆଣି ଛାଡ଼ିଲେ ନାହିଁ, ସେଇଥି ଭୁଲ ହେଲା । ରାସ୍ତାରେ ହିଁ ଛାଡ଼ି ଦେଇ ଯାଇଥିଲି । ସେଇ ଅପଦାର୍ଥ ବସ୍ ସେଇ ସମୟରେ ଆସିଗଲା । ଏ-ତ ଡେରି ହୋଇଥିଲା ତ, ଆଉ ଟିକିଏ ଡେରି ହୋଇ ଯାଇ-ଥାଆନ୍ତା । ରାସ୍ତାରେ ଜଣାନାହିଁ କୌଣସି କୁକୁର ମାରି ପକାଇଥିବ ଅଥବା କୌଣସି ବିଲେଇ ହାବୁଡ଼ରେ ପଡ଼ିଯାଇଥିବ ଅଥବା ସେହି ଦୁଇଟି ନେଉଳ ତା ଉପରେ ଆକ୍ରମଣ କରିଥିବେ ।

ରାତିରେ ଡାକ୍ତରବାବୁ ମଧ୍ୟ ସ୍ତ୍ରୀ ସହିତ ଡାକ ଡାକ ବରଗଛ ପର୍ଯ୍ୟନ୍ତ ଯାଇଥିଲେ । କେତେ ଥର ଡାକିଲେ, ଫେରିବା ସମୟରେ ମଧ୍ୟ କେତେ ପ୍ରକାରରେ ଡାକିଲେ ।

ଘରକୁ ଫେରିଲେ କିନ୍ତୁ ଶ୍ରେଷେଇ କରିବାର ନାଁ ଧରିଲେ ନାହିଁ । ପାଣି ଟୋପାଏ ପିଇଲେ ନାହିଁ । ରାତି ସାରା ଅନିଦ୍ରା ରହିଲେ । ମଝିରେ ମଝିରେ ନଦୀକୂଳକୁ ଯାଇ ଡାକ ଛାଡ଼ିଲେ, "ଧୁଅ ବସୁନ୍ଧା ! ତୋର ମନ ମୁତାବକ ଭଲ ଭଲ ମିଠାଇ ଆଣିଛି··· ଭଲ ଭଲ ମାଛ ଆଣିଛି । ଆ ଯା···ଧୁଅ ! ଆ···ଯା··· ।"

ସକାଳ ହେଲା; କିନ୍ତୁ ସେ ରୁଣ୍ଡୁଝୁଣ୍ଡୁ ଶବ୍ଦ ଆଉ ଶୁଣାଗଲା ନାହିଁ । ସକାଳେ ଗାଧୋଇ ସାରିବା ପରେ ଭଗବାନଙ୍କୁ ପୂଜା କରି ହାତ ଯୋଡ଼ି ତାଙ୍କୁ ପ୍ରାର୍ଥନା କରି ବର ମାଗିଲା, "ମୋ ବସୁନ୍ଧାକୁ ମୋତେ ଫେରାଇ ଦିଅ ।" ପାଞ୍ଚ ଜଣଙ୍କୁ ଖୋଜିବାକୁ ପଠାଗଲା । ଭଗବାନଙ୍କୁ ମାନସିକ ହେଲା ଯେ ଯଦି ସେ ମିଳିଯାଏ, ତେବେ ପୂଜାପାଠ କରିବେ ।

ଦୁଇଟି ରାତି କଟିଗଲା । ବସୁନ୍ଧାର ଖବର ମିଳିଲା ନାହିଁ । ତୃତୀୟ ଦିନ ରାତିରେ ଉପରୁ ଶବ୍ଦ ଶୁଣାଗଲା । ଅମ୍ବାସୁନ୍ଧା ବଡ଼ ଆଶାରେ ଉଠିଗଲା । ସେ ରୁଣ୍ଡୁଝୁଣ୍ଡୁ ଶବ୍ଦ ନୁହେଁ; ପଟ୍‌ପଟ୍ ଶବ୍ଦ ଶୁଣାଯାଉଛି । ଦୀପ ଉଠାଇ ଦେଖିଲା ଯେ ପ୍ରଥମ ଭଳି ମୂଷା ଖୋଳି ଶସ୍ୟ ଭକ୍ଷଣ କରୁଛନ୍ତି । ସେମାନଙ୍କୁ ହୁରୁଡ଼େଇବା ପାଇଁ ମନ ହେଲା ନାହିଁ ।

ବର୍ତ୍ତମାନ ମଧ୍ୟ ସେ ଯଦି ମାଛ କିଣୁଛନ୍ତି ତେବେ ସେଥିରୁ ବସୁନ୍ଧା ପାଇଁ ଅଲଗା ରଖୁଛନ୍ତି । କାଗଜରେ ବସୁନ୍ଧାର ରେଖାଚିତ୍ର ଟାଣି ତାକୁ ଅଲଗା କାଟିନେଇଛି ଏବଂ ତାର ଗଳାର ଘୁଙ୍ଗୁର ବାନ୍ଧି କରି ପିଞ୍ଜରାରେ ରଖିଦେଇଛି । ପବନରେ ଯଦି ସେ ହଲିଯାଉଛି ତେବେ ବଡ଼ ଆଶାରେ ସେଠାକୁ ଯାଇ ଦେଖୁଛି । ଦୁଧ-ଗୋଳାଇ ଭାତ ସେଠାରେ ରଖିଦେଉଛି । ଯଦି କୌଣସି ବିଲେଇ ଆସି ଦୁଧ ପିଇଯାଏ ତେବେ ସେ ଭାବେ ଯେ ବସୁନ୍ଧା ଆସି ଖାଇଦେଇଛି ।

ବର୍ତ୍ତମାନ ମଧ୍ୟ ଅମ୍ବାସୁନ୍ଧା ଆଶା ନେଇ ବସିଛି, ବସୁନ୍ଧା ତାର ବଞ୍ଚିଛି ଏବଂ ତାକୁ କିଏ ଲୁହା ପିଞ୍ଜରାରେ ବାନ୍ଧି ରଖିଛି ଏବଂ ସେ ଜଞ୍ଜିରକୁ କାଟି କାଟି ଭାଙ୍ଗିଦେବ ଏବଂ କୌଣସି ଦିନ ସେ ଫେରିଆସିବ ।

ଦିନେ ସକାଳେ ସୂର୍ଯ୍ୟ କିଛିଟା ଉପରକୁ ଉଠିଛନ୍ତି ତ ଭୈରବସ୍ୱାମୀ କୁକୁଡ଼ାଛୁଆ-

ଗୁଡ଼ିକୁ ଘରୁ ବାହାର କରିଦେଲା । ବଡ଼ କୁକୁଡ଼ା ସହିତ ତାର ପିଲା ମଧ୍ୟ ଆଗକୁ ଯାଇ ନଦୀକୂଳରେ ପହଞ୍ଚିଗଲେ । ଡାକ୍ତରଙ୍କ ଘର ଆଗରେ ସଡ଼କ ଅଛି ।

ଚିଁଚୁଳି ଗଛ ତଳେ ନଦୀକୂଳରେ ପଡ଼ିଥିବା ଶସ୍ୟଦାନାଗୁଡ଼ିକୁ କୁକୁଡ଼ାଛୁଆ ଖୁଣ୍ଟି ଖୁଣ୍ଟି ଖାଉଛନ୍ତି । ଭୈରବୟା ଭାବିଥିଲା ଯେ ବର୍ତ୍ତମାନ ଦୁଷ୍ଟ ବସୁନ୍ନାର ଅତ୍ୟାଚାର ଶେଷ ହୋଇଛି ଏଥିପାଇଁ କୁକୁଡ଼ାଛୁଆଙ୍କୁ ବାହାର ଚଉତରି ଉପରେ ଛାଡ଼ିଦେଇ ରଙ୍ଗ ବେରଙ୍ଗର ସୌନ୍ଦର୍ଯ୍ୟକୁ ଦେଖି ସେ ଖୁସି ହୋଇଯାଉଛି । ସେଥିରେ ପ୍ରତିଦିନ ଅଣ୍ଡା ଦେବାବାଲା କୁକୁଡ଼ା ଅଛନ୍ତି । କୁକୁଡ଼ା ଖେଳରେ ସହଜଭାବେ ଜିତିଲାବାଲା ଗଞ୍ଜା ମଧ୍ୟ ଅଛନ୍ତି । ସେ ମନେ ମନେ ଖୁସି ହେଉଛି ।

ଆଗରେ ସେ ବସିଥିଲା ଏବଂ ତା ନିଜ ଆଖିକୁ ବିଶ୍ୱାସ ମଧ୍ୟ ହେଉ ନଥିଲା ଯେ ହୋ ମଧ୍ୟରେ ଗୋଟିଏ ବଡ଼ ନେଉଳ ବସୁନ୍ନାଠାରୁ ବଡ଼, ଦେଖିବାକୁ ଭୟଙ୍କର ଏବଂ ଶ୍ୟାମଳ ବର୍ଣ୍ଣ—କେଉଁଠାରୁ ଆସି କୁକୁଡ଼ାଛୁଆମାନଙ୍କ ଉପରେ ଝାମ୍ପ ମାରିଲା । ସେମାନଙ୍କ ମଧ୍ୟରୁ ଗୋଟିଏ ଦୁଇଟି ଧରିନେଲା । ଭୈରବୟା ନେଉଳକୁ ଗୋଡ଼ାଇଗଲା । ଜଣାନାହିଁ, ସେହି ଚଟାଣରେ ଯାଇ ସେ କେଉଁଠାରେ ଲୁଚିଗଲା । ବହୁତ ଖୋଜିଲା; କିନ୍ତୁ ମିଳିଲା ନାହିଁ । ଶେଷରେ ସେ ନିରାଶ ହୋଇ ଧୀରେ ଧୀରେ ବାକି କୁକୁଡ଼ାଙ୍କୁ ସାଙ୍ଗରେ ଆଣି ଘର ଆଡ଼କୁ ଆସିଲା । ଘରକୁ ଯାଇ ପତ୍ନୀକୁ କହିଲା । ବର୍ତ୍ତମାନ କୁକୁଡ଼ାଙ୍କୁ ପୁଣି ଭିତରେ ବନ୍ଦ କରିଦେଲା ।

ଭୈରବୟା ବେମାର ପଡ଼ିଲା । ଯେତେବେଳେ ସେ ବାଡ଼ିରେ ମାରୁଥିଲା ସେତେବେଳେ ସରଳ ନିରୀହ ନେଉଳ ଜୀବ ବସୁନ୍ନାର ମୁହଁ ଉଠାଇ ହାତ ଯୋଡ଼ିବା ଏବଂ ମଣିଷ ପରି "ମୋର କିଛି ଦୋଷ ନାହିଁ । ମୋତେ ମାର ନାହିଁ ··ମାର ନାହିଁ" ବିନୀତ ପ୍ରାର୍ଥନା କରିବା, ପ୍ରାଣର ମୋହରେ ତାର ବିକଳତା ଇତ୍ୟାଦି ବାରମ୍ବାର ମନେପକାଇ ସେ ଦିନକୁ ଦିନ ଉଦାସ ହେବାକୁ ଲାଗିଲା । ସେଥିରୁ ଆଉ ଉଠିବା ତା ପକ୍ଷରେ ସମ୍ଭବ ହେଲା ନାହିଁ ।

## ଥ୍ୟାଙ୍କସ୍ ଫର୍ ଦ ପୀ· ଏମ୍·

ସେହି ଧାଡ଼ିର ଘରଗୁଡ଼ିକ ଯେପରି ସିମେଣ୍ଟର କେକ୍ । ତା ସାମନାରେ ବଙ୍କ ମର୍ଯ୍ୟାଦାରେ ବଙ୍କେଇ ଯାଇଥିବା ରାସ୍ତା ସେହି ଘରମାନଙ୍କରେ ରହିବା ଲୋକଙ୍କ ପାଖରେ ଦାରିଦ୍ର୍ୟକୁ ଜୀବନରୁ ଘୁଞ୍ଚାଇବା ପାଇଁ ଭଗବାନଙ୍କ ଦ୍ୱାରା ଟଣାଯାଇଥିବା ନିର୍ଦ୍ଦେଶ-ରେଖା ଭଳି । ସେହି ରାସ୍ତା ଆଗରେ ଥିବା ସମୁଦ୍ରତଟ ଜ୍ୟୋତ୍ସ୍ନାର ପାହାଡ଼ ପରି । ସମୁଦ୍ର ଉପରେ ବିଛୁଡ଼ି ପଡ଼ିଥିଲା ଚନ୍ଦ୍ରର ସତେ କି ରୂପେଲି ଧୂଆଁ । ସେହି ଲାଇନ୍‌ର କୋଠା ମଧ୍ୟରୁ ତେର ନମ୍ବର ଘର ପ୍ରାୟ ଛ'ଏକର ଜମି ଉପରେ ଛିଡ଼ାହୋଇଥିଲା ।

ଶୀତଋତୁରେ ଘର ଆଗରେ ଗତଯୌବନ ବୃକ୍ଷ ପଥରର ଗଛ ପରି ଠିଆହୋଇଛନ୍ତି ।

ଘରର ଫାଟକ ପାଖରେ ନୂଆ ଗ୍ୟାରେଜ୍ ଖଣ୍ଡେକ ସାବୁନ୍ । ପୋର୍ଟିକୋରେ ରଖାହୋଇଥିବା ତିନୋଟି କାର୍ ପକ୍ଷୀକୁ ଜାକିଜୁକି ଲୁହାର ଚଢ଼େଇ ପରି ଅଛନ୍ତି ।

ଘର ସାମନାରେ ଥିବା ଫୁଲ ବଗିଚାରେ ଦୁଇଟି ଚଲାପଥ ଦୁର୍ବଳ ଶରୀର ଝିଅର ବେଣୀ ପରି । ସେହି ଚଲାପଥ କଡ଼ରେ ରଖାଯାଇଥିବା ଲାଲ୍ ଲାଲ୍ କୁଣ୍ଡଗୁଡ଼ିକ ଗ୍ରେଟ ପିଲମାନଙ୍କର ଅଙ୍ଗୁଳି ସଦୃଶ । ସେଥିରେ ରଖାଯାଇଥିବା ଗଛ ଫୁଲଭରରେ ଝୁଙ୍କି ପଡ଼ିଥିବା ସଫଳ ମନୋରଥ ପରି ।

ଘର ଆଗରେ ଥିବା ମୋଜାଇକ୍ ଶିଡ଼ିଗୁଡ଼ିକ ଜମା ହୋଇଥିବା ଦୁଧଖଣ୍ଡ ପରି ।

ଉପର ଶିଡ଼ିରେ ବିଛାଯାଇଥିବା ଗାଲିଚା ସ୍ପଞ୍ଜର କେକ୍ ପରି ।

ବାରଣ୍ଡାରେ ରଖାଯାଇଥିବା ଗୋଲ୍ ଟେବୁଲ୍ ଯେପରି କୌଣସି ବଡ଼ଫୁଲର କେଶର ପରି ଏବଂ ତା ଚାରିପଟେ ପଡ଼ିଥିବା ଚୌକି ସେହି ଫୁଲର ପାଖୁଡ଼ା ପରି । ତା ଉପରେ ସଜା ହୋଇ ରଖାହୋଇଥିବା କଳା କାଚର କୁଣ୍ଡ ବହୁତ ଖାଇପିଇ ମୋଟା ହୋଇଥିବା ଭଅଁର ଭଳି ।

ସେହି ବାରଣ୍ଡାର କୋଣରେ ଶୋଇଥିବା ଚପରାଶି ଘରର ଗୋଲାମ ଭଳି ।

ବାରଣ୍ଡା ପଛପଟ ହଲ୍‌ରେ ଗ୍ଲାସ ମଝିରେ ସବୁଜରଙ୍ଗର ବିଜୁଳିବତି ବାଘ-ଆଖି ଭଳି ।

ଚଟାଣ ଉପରେ ବିଛାଯାଇଥିବା ଲାଲ୍ ରଙ୍ଗର ଗାଲିଚା ଯେପରି ରକ୍ତର ଗାଢ଼ ରଙ୍ଗ ଭଳି ଦିଶୁଛି ।

ସେହି ଘରର ସାମନାରେ ଗୋଟିଏ କଳା ରଙ୍ଗର କାର୍ କୌଣସି ଶବ୍ଦ ନ କରି ଚୁପ୍‌ଚାପ୍ ଆସି ଠିଆହୋଇଗଲା । ସେଥିରୁ ଜଣେ ଲମ୍ବା ନବଯୁବକ ଓହ୍ଲାଇଲା । ସେ

କଳା ରଙ୍ଗର ସୁଟ୍ ଏବଂ ଫେଲ୍ଟ ହ୍ୟାଟ୍ ପିନ୍ଧିଥିଲା । ତାର ଯୋତାତଳେ ରବର ସୋଲ୍ ଅଛି । ତା ହାତରେ କଳା ବ୍ୟାଗ୍ ଅଛି ଏବଂ ଆଖିରେ ମୋଟା ଚଷମା । ଚାଲନ୍ତୁ ପାଠକ ମହାଶୟ, ଆମେ ଏହି ଆଗନ୍ତୁକର ପଛେ ପଛେ ଯିବା ।

ଫାଟକ ଧୀରେ ଧୀରେ ଖୋଲି ସେ ଭିତରେ ପ୍ରବେଶ କଲା । ଧୀରପାଦରେ ବାରଣ୍ଡାରେ ପହଞ୍ଚି ଟର୍ଚ୍ଚ ଆଲୁଅରେ ଚପରାଶିକୁ ଶୋଇଥିବାର ଦେଖି ଖୁସି ହୋଇଗଲା । ସେ ତାର କୋଟ୍‌ର କଲର୍ ଉପରକୁ ଉଠାଇଦେଲା ଏବଂ ହ୍ୟାଟ୍‌ର ଆଗ ଅଂଶକୁ ଆଖି ଉପର ପର୍ଯ୍ୟନ୍ତ ଟାଣିଦେଲା । ତା'ପରେ କଳା ସୁଟ୍ ପିନ୍ଧିଥିବା ସେହି ବ୍ୟକ୍ତି ଧୀରେ କବାଟକୁ ଭିତର ଆଡ଼କୁ ଠେଲିଦେଲା ।

କବାଟ ଭିତରୁ ବନ୍ଦ ନ ଥିଲା ।

ସେ ହଲ୍‌ରେ ପହଞ୍ଚିଯାଇ ଶିଡ଼ିରେ ଜଳୁଥିବା ବିଜୁଳି ଆଲୁଅକୁ ଲିଭାଇଦେଲା । ସେହି ଘରର ତଳ ଅଂଶରେ କୌଣସି ସ୍ପନ୍ଦନ ନାହିଁ ।

ସେ ହ୍ୟାଣ୍ଡ ବ୍ୟାଗ ଖୋଲି ଦେଖିଲା ଏବଂ ଚୁପ୍‌ଚାପ୍ ଶିଡ଼ି ଉପରେ ଚଢ଼ିବାକୁ ଲାଗିଲା । ସେ ଶିଡ଼ିର ମୋଡ଼ ପର୍ଯ୍ୟନ୍ତ ପହଞ୍ଚିଗଲା । ଏଥିମଧ୍ୟରେ ଉପରୁ ତଳକୁ ଓହ୍ଲାଉଥିବା ଗୋଟିଏ ଯୁବକ ତାକୁ ଜୋରରେ ଧରି ଚିତ୍କାର କଲା "ମ୍ୟାଥ୍ୟୁ ! ଚୋର ଆସିଛି ।"

ତାର ଚିତ୍କାର ଶୁଣି ଉପର ହଲ୍‌ରୁ ପାଞ୍ଚଜଣ ଯୁବକ ଆସି ତାକୁ ଘେରିଗଲେ ।

"ସରି ବ୍ରଦର୍ସ, ଡେରି ହୋଇଗଲା ।" କଳା ସୁଟ୍ ପିନ୍ଧିଥିବା ଯୁବକ କହିଲା ।

"ଆରେ ଏବେ କହିଦେ ରେଗ୍‌ଗୀ, ତୁମେ ଠିକ୍ ସମୟରେ କେବେ କୋଉ ପାର୍ଟିରେ ପହଞ୍ଚିଥିଲ ?" ପ୍ରଶ୍ନର ସହିତ ଚଳପତି ଉତ୍ତର ଦେଲା ।

"ତୋ ପାଇଁ ବିବାହ ବନ୍ଦ ହୋଇନାହିଁ ।" ସୁନ୍ଦରମ୍ କହିଲା ।

"ଠିକ୍ କଲେ ଆପଣମାନେ ।" ରେଗ୍‌ଗୀ ଖରାପ ଭାବିଲା ନାହିଁ ।

"ବର୍ତ୍ତମାନ ଦ୍ୱିତୀୟ ପ୍ରସ୍ତୁତିରେ ଅଛି ।" ଡାକ୍ତର ଜଗନ୍ନାଥମ୍ କହିଲେ ।

"ତୃତୀୟ ସୁଯୋଗ ପ୍ରାପ୍ତହୋଇଯାଉ ତେବେ ଆମକୁ ଜଣାଯିବ କି ଏହା ପାଣି ନୁହେଁ; ଔଷଧ ଅଟେ ।" ସୁନ୍ଦରମ୍ ଘୋଷଣା କଲା ।

"ଭଲ କଥା, କିନ୍ତୁ ଶୀଘ୍ର ଆଉ କାହାକୁ ଲୁହ ନାହିଁ ।" କହି ରେଗ୍‌ଗୀ ହସିବାକୁ ଲାଗିଲା ।"

ସବୁଲୋକ ଉପର ହଲ୍‌ରେ ପହଞ୍ଚିଗଲେ । ପରଦା ପଛପଟେ ଲୁଚିଯାଇଥିବା ଚନ୍ଦ୍ରମା ପରି ହଲ୍‌ରେ କଂସିଲ୍‌ଡ୍ ଲାଇଟିଙ୍ଗ୍ ଅଛି ।

ହଲ୍‌ର ମଝିରେ ମେହଗନୀ ଡାଇନିଙ୍ଗ୍ ଟେବୁଲ୍ ପାହାଡ଼ର ହ୍ରଦ ପରି କଳା କଳା ହୋଇ ବିସ୍ତାରିତ ହୋଇଛି ।

ତା ଉପରେ ସଜାହୋଇଥିବା ପ୍ଲେଟ୍ ସେହି ହ୍ରଦରେ ଯେପରି ନୂଆ ନୂଆ ପୁଷ୍ପ ।

ପ୍ଲେଟ ପାଖରେ ରଖାଯାଇଥିବା ବୋତଲଗୁଡ଼ିକ ମୂଲ୍ୟବାନ୍ 'ଔଷଧର ବୋତଲ'

ଭଲ । ସେଥିରୁ ଗୋଟିଏ ବୋତଲ ରକ୍ତରଙ୍ଗ ଭଲ ।

ସେହି ହଲ୍‌ର କାନ୍ଥରେ ଗୋଟିଏ ଛେଳିଚନ୍ଦ ଉନ୍ନତ ବକ୍ଷ-ପ୍ରଦର୍ଶନ କରୁଥିବା ଗୋଟିଏ ଝିଅର ଚନ୍ଦ୍ରପଟ । ସେହି ଝିଅର ବ୍ଲାଉଜର ତଳବୋତାମ ଖୋଲା ହୋଇଛି । ଉପର ବୋତାମ ସେ ଖୋଲୁଛି ଅଥବା ଲଗାଉଛି ଏହା କହିବା କଠିନ ।

ପାର୍ଟି ତ ବହୁତ ଆଡ଼ମ୍ବରସହକାରେ କୋଳାହଳ ମଧ୍ୟରେ ଗ୍ଲୁଛି । ପାର୍ଟିରେ ସମସ୍ତଙ୍କୁ ମିଶାଇ ସାତଜଣ ସହଯୋଗ କରିଛନ୍ତି । ସେଉଁଥିରେ ଜଣେ ମୈଥ୍ୟୁ (ମଧୁ), ରେଗଗୀ (ରଘୁ), ସୁନ୍ଦରମ୍, ଜଗନ୍ନାଥମ୍ ଏବଂ ଜଗନ୍ମୋହନ ଡାକ୍ତର ଅଛନ୍ତି । ଏହାଙ୍କ ବ୍ୟତୀତ କଣ୍ଟ୍ରାକ୍ଟର ଚଲପତି ଏବଂ ଓକିଲ ବେଙ୍କଟ୍ରାବ ମଧ୍ୟ ସହଯୋଗ ଦେଇଛନ୍ତି ।

ଅନେକ ଲୋକ ଅନେକ କାରଣରୁ ଡାକ୍ତରଙ୍କର ମିତ୍ର ହୋଇଯାଆନ୍ତି । କେତେକ ଲୋକ ମର୍ଯ୍ୟାଦାସହକାରେ ମିତ୍ର, କେତେକ ଲୋକ ମାଗଣାରେ ଚିକିତ୍ସା ପାଇବା ପାଇଁ ଏବଂ କେତେକ ଲୋକ ମାଗଣା ନମୁନା ଔଷଧ ପାଇଁ ମିତ୍ର ହୁଅନ୍ତି ।

ବେଙ୍କଟ୍ରାବ୍ ଔଷଧ ପାଇଁ ମିତ୍ରତା କରୁଛି ।

ଚଲପତି 'ନର୍ସ'ମାନଙ୍କ ପାଇଁ ମିତ୍ରତା କରୁଛି ।

ଚଲପତିର ଏହି ଔଷଧରେ କୌଣସି ଆଗ୍ରହ ନାହିଁ । କିନ୍ତୁ ସେ କୌଣସି ପାର୍ଟିକୁ ମଧ୍ୟ 'ମିସ' କରୁନାହିଁ । ପ୍ରଥମ ସୁଯୋଗରେ ତାର ଭୋକ ଶେଷ ହୋଇଯାଏ । ଦ୍ୱିତୀୟ ସୁଯୋଗରେ କାମବାସନା ଶେଷ ହୋଇଯାଏ । ତୃତୀୟ ସୁଯୋଗରେ ନିଦ ଆସିଯାଏ । ବର୍ତ୍ତମାନ ସେ ତୃତୀୟ ସୁଯୋଗରେ ପଦାର୍ପଣ କରିଛି । ଏଥିପାଇଁ ସେ ଆଳସ୍ୟ ନେଇ ପଗ୍ଭୁରୁଛି "ଶେଷରେ ପାର୍ଟି କେଉଁଥିପାଇଁ ଦିଆହେଉଛି ?"

"ଏଥିରେ ତୁମର କ'ଣ ଅଛି ? ମୈଥ୍ୟୁ ଦେଉଛି ଏବଂ ଆମେ ନେଉଛୁ ? ସେ ଯେ କୌଣସି ପାଇଁ ହେଉ ।" କେହି ଜଣେ ବିରକ୍ତ ହୋଇ କହିଲା ।

"ମେମ୍ ସାହାବ କୌଣସି ପ୍ରକାର ନରମ ହୋଇଯାଇଛନ୍ତି ?" ଚଲପତିକୁ ସନ୍ଦେହ ହେଲା ।

"ତୁମକୁ ଏହି କଥାର ସନ୍ଦେହ ହେଉଛି ନା ଈର୍ଷା ?"

"ମାଗଣାରେ ମିଳବ ତ ଭଅ, କ'ଣ ନୁହେଁ ?

"ବୋଧହୁଏ ଦୁଇଜଣଯାକ ଏହିପରି ।"

"କୁହ, କାହିଁକି ।"

"ଅଚ୍ଛା, ଭବିଷ୍ୟତରେ ଏଭଳି କାମ କରିବ ନାହିଁ । ବାସ୍ତବରେ ତୁମେ ପାର୍ଟିକୁ କାହିଁକି ଆସୁଛ ?"

"ତୁମେ ତ ନିଜେ ପିଅନାହିଁ ଏବଂ ଅନ୍ୟମାନଙ୍କୁ ପିଇବାକୁ ମଧ୍ୟ ଦେଉନାହଁ ।"

"ମେଣ୍ଢାମାନଙ୍କ ସହିତ ଛେଳି ଯେପରି ।"

"ଅରେ ଚଲପତି, ପଛପଟ କମଗ୍ରରେ ବିଛଣା ବିଗ୍ଛୁଯାଇଛି ।"

"ତା ଉପରେ ସଫା ସୁନ୍ଦର ବସ୍ତ୍ରହୋଇଛି ।"

"ଦୁଇଟି ଡଙ୍କଆ ଏବଂ ଗୋଟିଏ ମାଣ୍ଡି ମଧ୍ୟ ରଖାଯାଇଛି ।"

"ଯାଇ ଶୋଇଯାଅ ।"

"ଆରେ ମୁଁ ପଚାରୁଛି ଏହି ପାର୍ଟି କେଉଁ ଉପଲକ୍ଷେ ଦିଆଯାଉଛି ଏବଂ ତମେମାନେ କହୁଛ ଶୋଇଯାଅ ।"

"ପାର୍ଟି ତ...କୌଣସି ମଧ୍ୟ କାରଣ ପାଇଁ ହୋଇପାରେଥାଏ; ସେଥିରେ କ'ଣ ଅଛି ?" ମୈଥ୍ୟୁ କହିଲା ।

"ମୈଥ୍ୟୁ କାଲି ଅଶ୍ୱମେଧ ଯଜ୍ଞ କରିବା ପାଇଁ ପ୍ରସ୍ତୁତ ହେଉଛି । ବୋଧହୁଏ ସେଥି ଉପଲକ୍ଷେ ।"

"ଏଥିରେ ତୁମକୁ ଘୋଡ଼ା ହେବାକୁ ହେବ । ସକାଳୁ ବହୁତ ଦୌଡ଼ିବାକୁ ପଡ଼ିବ । ଶୀଘ୍ର ଯାଇ ଶୋଇଯାଅ ।"

"କିଏ ଦୌଡ଼ିବ ?"

"ବାବା, ତୁମକୁ । ଶୋଇଯାଅ ।"

"ପାର୍ଟି କାହିଁକି ଦିଆଯାଉଛି, ପ୍ରଥମେ କହିଦିଅ । ତେବେ ଯାଇ ମୁଁ ଶୋଇ-ଯିବି ।"

"ପାର୍ଟି କଥା ପଚାରୁଛନ୍ତି ?..." ସିଗାରେଟ୍ ଟାଣୁ ଟାଣୁ ମୈଥ୍ୟୁ କହିଲା, "ଗୋଟାଏ ତମାସା ହେଲା ।"

"କେଉଁ ତମସା ?"

"କେବେ ।"

"କାଲି ରାତିରେ......"

କାଲିର ଜ୍ୟୋସ୍ନା ରାତି ସୁନ୍ଦର ପାଉଡ଼ର ଲଗାଇଲା ପରି ଥିଲା ।

ଯେଉଁ ଲୋକମାନେ ଭିତରୁ ଉଷ୍ଣତା ସୃଷ୍ଟି କରିପାରୁଛନ୍ତି, ସେମାନଙ୍କ ପାଇଁ ତାହାର ବହୁତ ଅର୍ଥ ଥିଲା ।

ଥିଏଟରରେ ଦ୍ୱିତୀୟ ଖେଳ ଆରମ୍ଭ ହୋଇଗଲା ଆଉ ରାସ୍ତା ନିସ୍ତବ୍ଧ ହୋଇଗଲା ।

ଏମର୍ଜେନ୍‌ସି ଓ୍ୱାର୍ଡ଼କୁ ଦେଖିଲେ ଦୂରରୁ ହସପିଟାଲ କାଚପ୍ରାସାଦ ପରି ଦେଖାଯାଉଛି । କିନ୍ତୁ ଏମର୍ଜେନ୍‌ସି ଓ୍ୱାର୍ଡ ତ ନିଷ୍ପ୍ରାଣ ଏବଂ ନୀରବ; ବାରଣ୍ଡାରେ ସିଂହାଚଳମ୍ ଖୁବ୍ ପିଇଦେଇ ନିଶାରେ ଶୋଇଯାଇଛି ।

ଓ୍ୱାର୍ଡ଼ର କାନ୍ଥରେ ଲଗାଯାଇଥିବା ଘଣ୍ଟା ଲୁହାରେ ପିଟାଘଣ୍ଟା ପରି ସମୟ ଜଣାଇ ଦେଉଛି ।

ଘର ମଝିରେ ଟେବୁଲ ପଡ଼ିଛି । ତା ଉପରେ ଖଦି କନାରେ ଟେବୁଲ୍-କ୍ଲଥ୍ ପଡ଼ିଛି । ଟେବୁଲ୍-କ୍ଲଥ୍ ଉପରେ ବହିଟିଏ ରଖାଯାଇଛି । ସେହି ବହିଟିକୁ ଦୁଇଟି ଆଖି ପଢ଼ୁଛି ।

ସେହି ବନ୍ଧୁ, ବିଦ୍ୱାନ୍ ଲୋକଙ୍କ ପାଇଁ ବିଶେଷ ରୂପରେ ପୁଦ୍‌ଚେରୀରୁ ପ୍ରକାଶିତ ହୋଇଛି ।

ସେହି ଆଖି କର୍ଣ୍ଣ ସର୍ଭେକାର । ସର୍ଭେକାର ବର୍ତ୍ତମାନ ପୁସ୍ତକ ପଢ଼ିବା ପାଇଁ ଇଚ୍ଛା ନାହିଁ । ସେହି ସମୟରେ ତା ମନରେ ଯାହା ଥିଲା ତାହା ଲେଖାଯାଏ ତ କୌଣସି ଭଦ୍ରଲୋକ ତାକୁ ପଢ଼ିବ ନାହିଁ । କିନ୍ତୁ ସେ ତ ଷାଠିଏ ବର୍ଷ ବୟସରେ ମଧ୍ୟ ଏହି ପୁସ୍ତକ ପଢ଼ିବା ଲୋକଙ୍କ ମନରେ ଅବଶ୍ୟ ସ୍ପଷ୍ଟ ହୋଇଥିବା ଇଚ୍ଛା ଅଟେ ।

ତାହାର ହାଡ଼ଗୁଡ଼ିକରେ କୌଣସି ଅବ୍ୟକ୍ତନୀୟ ଯନ୍ତ୍ରଣା ଆରମ୍ଭ ହୋଇଗଲା । ଭିତର ଯନ୍ତ୍ରଣା ବଢ଼ିଯିବାଦ୍ୱାରା ସାମନା କାନ୍ଥରେ ବାଡ଼େଇ ହେବା ପାଇଁ ତାର ଇଚ୍ଛା ହେଲା ।

ଆଗରେ ପଡ଼ିଥିବା ଟେବୁଲକୁ ଭାଙ୍ଗି ପକାଇବା ପାଇଁ ତାର ଇଚ୍ଛା ହେଲା ।

ସ୍ୱାଦ ବଦଳାଇବା ପାଇଁ ସେ ଫ୍ଲାସ୍କରୁ କଫି ବାହାର କରି ପିଇବାକୁ ଲାଗିଲା ।

କଫି ପିଇବାରେ ତାକୁ ଜଣାଗଲା ସେ ଯେପରି ଗରମ ପାଣି ପିଇଯାଉଛି । ନିଶ୍ୱାସ ଛାଡ଼ିବା ସମୟରେ ତାର ଅନୁଭବ ହେଲା ଯେପରି ଅଗ୍ନି ସ୍ଫୁଲିଙ୍ଗ ବାହାରିକି ବାହାରୁଛି । ଏହି ଉତ୍ତାପର ଶାନ୍ତ ନାହିଁ ।

କପ୍ ତଳକୁ ପଡ଼ିଯିବା ଉପରେ ।

ଟେବୁଲକୁ କାନ୍ଥରେ ଭିଡ଼ିଦେଉଛି ।

ନ ହେଲେ, ନିଦର ବଟିକା ।

କେତେଦିନ ଚାଲିବ ଏହି ନିଦ ବଟିକାରେ ।

ବିନା ବଟିକାରେ ରାତି, ଔଷଧ ବ୍ୟତୀତ ରାତି, ରୋଗୀ ବ୍ୟତୀତ ରାତି—ମନଭୁଲାଇବା ପାଇଁ ତାକୁ ଛାଡ଼ି ରାତିରେ ରହିଯାଉଥିବା ଡ଼ାକ୍ତରଙ୍କ ବ୍ୟତୀତ କଟେଇବା ରାତି—

ବର୍ତ୍ତମାନ ଏହି ମାସରେ ଆସିବ ନାହିଁ ।

ବାପ୍‌ରେ ଏକ ମାସ ! ଗୋଟାଏ ପୂରା ମାସ ।

ତିରିଶଟି ରାତି !

ସେହି ରାତିରେ—

କମଳା ଚଉକିରେ ବସିଛି । ଆଗରେ ଥିବା ଦର୍ପଣରେ ନିଜ ଚେହେରା ଦେଖି ସେ କୌଣସି ନୂତନ ଚେହେରା ଦେଖି ପକାଇବାପରି ଚମକି ପଡ଼ିଲା ।

ଦର୍ପଣ ସାମନାରେ ବସି କମଳା ନବବଧୂ ପରି ସଜେଇ ହୋଇଛି ।

ଏହି ଘର ସବୁଜ ରଙ୍ଗର । ସବୁଜ ରଙ୍ଗର ଆଲୁଅର ଜ୍ୟୋତିରେ ସେହି ଘର ସୁନ୍ଦର ମଗରମାଛର ପୋଖରୀ ଭଳି ।

ସେହି ଘରର କବାଟ ଏବଂ ଝରକା ସବୁ ବନ୍ଦ ଥିଲା । ଏଥିପାଇଁ ପବନରେ ସାମାନ୍ୟ ଉଷ୍ଣତା ଥିଲା ।

ଗରମ ପବନରେ କମଳାର ଦେହ ମଧ୍ୟ ଗରମ ହୋଇଗଲା ଏବଂ ତାକୁ ଜ୍ୱର ପରି ଜଣାପଡ଼ିଲା । ସେ ତାର ଇଚ୍ଛା ବିରୁଦ୍ଧରେ କୌଣସି କାମ କରୁଛି ଏବଂ ସେ କାମ ଭୁଲ । ସେ ଭୟଭୀତ ଏବଂ ବ୍ୟାକୁଳ ମଧ୍ୟ । ଭୟଯୋଗୁ ତାର ବିଶାଳ ନେତ୍ର ଆହୁରି ମଧ୍ୟ ବଡ଼ ହୋଇ ନିଜର ପ୍ରାକୃତିକ ସୌନ୍ଦର୍ଯ୍ୟକୁ ହରାଇବସିଲା ।

ତାର ରେଶମି ଶାଢ଼ିରେ ଛପାହୋଇଥିବା ଜରିର ଫୁଲ ଏବଂ ତାର ଗହଣାରେ ପଡ଼ିଥିବା ବିଜୁଳି ଆଲୁଅ ଗୃହରେ ତାର ସୌନ୍ଦର୍ଯ୍ୟରେ ଆକର୍ଷଣ ସୃଷ୍ଟି କରୁଛି ।

ତାର କାନ୍ଧରେ ନାଇଲନର ଓଢ଼ଣୀ ଚନ୍ଦ୍ରର ଜ୍ୟୋତ୍ସ୍ନା ପରି । ତାର ବେଣୀର ଅଗ୍ରଭାଗ ଗୋଲାପ ଫୁଲରେ ସଜାହୋଇଥିବା ଆଶ୍ଚର୍ଯ୍ୟ ଏକ ଗଛ ଭଳି ।

ତାର ଗହଣାର ଭାର ଛଅ-ସାତ ସେର ହେବ । ତାକୁ ଦେଖିବାଦ୍ୱାରା ଜଣାଯାଉଛି ସେ ଏହି ଗହଣାକୁ ଘୃଣା କରୁଛି ।

ସେହି ଗହଣାରେ ଲାଗିଥିବା ପଥର ତାକୁ ରଙ୍ଗ-ବେରଙ୍ଗ ପୋକ-ପରି ଜଣା-ଯାଉଛନ୍ତି ।

ତାର ପତଳା କଟିରେ ପିନ୍ଧିଥିବା କମରପଟି ସୁନାର ସାପ ପରି ଜଣାଯାଉଛି ।

ତାର ବେଶଭୂଷା ଏବଂ ଗହଣାର ଝକଝକ୍ୟ ଦେଖିଲେ ଜଣାପଡ଼େ ଯେ, ସେ ପଳାଇ ଯିବା ପାଇଁ ପ୍ରସ୍ତୁତ । ବଡ଼ଘରର ଝିଅ ପରି କାନ୍ଥ ବାହାରେ ବାଜୁଥିବା ବ୍ୟାଣ୍ଡ ବାଜାର ଗୀତ ଶୁଣିବା ପରେ ସେ ତାର ନିଜ ଇଚ୍ଛା ବିରୁଦ୍ଧରେ ବିବାହ ପାଇଁ ପ୍ରସ୍ତୁତ; ବାଧ୍ୟ ନବବଧୂ ପରି ।

ଏଥିମଧ୍ୟରେ କେହି ଜଣେ ଧୀରେ ଧୀରେ ଘର ଭିତରକୁ ଆସି କବାଟ ବନ୍ଦ କରି ଦେଲା । ତାର ବୟସ ତିରିଶ, ପଇଁତିରିଶ ହେବ । ପଇଁତିରିଶ ବର୍ଷରୁ ଖୁବ୍ କସରତ୍ କରୁଥିବା ତାର ଶରୀରର ଗଠନ ମଜବୁତ । ତାର ଭ୍ରୂଲତା ମୋଟା ପତଙ୍ଗ ପରି । ତାର ସଜାଇ କୁଣ୍ଡାହୋଇଥିବା ବାଳ ମେଲାଇଦେଲେ ତାର ଲମ୍ବ ୨-୩ ହାତ ହେବ । ତାର ଧାର ନଖ ଯେପରି ବ୍ଲେଡ ବ୍ଲେଡ ଦୁଇଟି କଇଁଚ ଭଳି । ତାର ଟେରେଲିନ ସାର୍ଟ ସାପକାତି ପରି ଚକ୍‌ଚକ୍ । ତା କାନ୍ଧରେ ପଡ଼ିଥିବା ସ୍କାର୍ଫ ସାପ ଉପରର ଚମଡ଼ା ଭଳି ।

ତାର ଯୋତା ବୋଧହୁଏ ଏଥିପାଇଁ ଖୁବ୍ ଚିକଣ କରାଯାଇଛି ଯେ ଯେତେବେଳେ ସେ ନଇଁପଡ଼ିବ ତାର ସୌନ୍ଦର୍ଯ୍ୟ ଦେଖିପାରିବ ।

ତାର ଡାହାଣ ପଟ ଗାଲରେ କ୍ରସ୍ ଭଳି ଲଗାହୋଇଥିବା ଚିହ୍ନରୁ ଜଣାଯାଉଛି ଯେ କେଉଁଠି ଗୁଣ୍ଡାଙ୍କ ଉପରେ ଝାମ୍ପି ପଡ଼ିଥିବା ସମୟରେ ଲାଗିଥିବା ଆଘାତର ଚିହ୍ନ ।

ତାର ଡାହାଣ କହୁଣୀରେ ଦଶଇଞ୍ଚ ଚମଡ଼ାର ପଟି ଲାଗିଛି । ସେହି ପଟିର ମଝିରେ ମଝିରେ ପିତଳର କଣ୍ଟା ଲଗାହୋଇଛି । ଯଦି ସେହି ପଟିଦ୍ୱାରା କାହାକୁ ମାରିବାକୁ ହୁଏ, ତେବେ ତିନସେର ରକ୍ତ ବାହାରିଯିବ ।

ତା ମୁହଁରୁ ବଡ଼ ଟାଣିବା ଶେଷ ହୋଇନାହିଁ । ସେହି ମଣିଷ କୌଣସି ହୁଏଇନାକୁ

ବିବାହ ପାଇଁ ପ୍ରସ୍ତୁତ ହୋଇଥିବା ଭିଲେନ୍ ପରି ଦିଶୁଛି । ତାକୁ ଦେଖି କମଳା ଉଠି ପଳାଇଲା । ବୋଧହୁଏ ତାକୁ ଅଟକାଇବା ପାଇଁ ସେ ବ୍ୟକ୍ତି ତାର ହାତ ମେଲାଇଦେଲା । ତିନ ପାଦ ଯାଇ କମଳା ତାର ବାହୁ ଉପରେ ଯାଇ ପଡ଼ିଲା । ସେ ତାର ମୁଣ୍ଡକୁ ସ୍ନେହରେ ଆଉଁସି ଆଉଁସି କହିଲା, "କେମିତି ଲାଗୁଛି ?"

"ଡର ମାଡ଼ୁଛି ....."

"ମଞ୍ଚରେ ଡରିଲେ କିପରି କାମ ଚଳିବ ?"

ଏଥିଭିତରେ କବାଟକୁ ବାଡ଼େଇବାର ଆସ୍ତେ ଆସ୍ତେ ଶବ୍ଦ ଶୁଭିଲା । କମଳା ଯାଇ ଚୌକିରେ ବସି ମୁଣ୍ଡବାଳ ସଜାଡ଼ିବାର ବାହାନା କଲା । ସ୍କାର୍ଫକୁ ସଜାଡ଼ୁ ସଜାଡ଼ୁ ସେ ଯୁବକ ଯାଇ କବାଟ ଖୋଲିଲା ।

ଦୁଇଟି ଯୁବକ ହାତରେ ଫୁଲମାଳା ନେଇ ସେ ଘରେ ପ୍ରବେଶ କଲେ । ସେଥିରୁ ସାନ ଜଣକ 'ଭିଲ୍ୟନ୍'ର ଗଳାରେ ମାଳ ପିନ୍ଧାଇଲା । ଆଉ ଜଣକ "କମଳାସୁଓଣୀ, ମୁଁ ବୁଝିପାରୁନାହିଁ, ଆପଣଙ୍କୁ କିପରି ଅଭିନନ୍ଦନ ଜଣାଇବି ?" କହି ଫୁଲମାଳା ତା ହାତରେ ଧରାଇଦେଲା ।

ମାଳା ହାତରେ ନେଇ କମଳା କହିଲା, "ମତେ ଡର ମାଡ଼ୁଛି ।"

"ପ୍ରଥମ ରାତି ସମସ୍ତଙ୍କୁ ଏହିପରି ଲାଗେ; କିନ୍ତୁ ଆପଣ ବ୍ୟସ୍ତ ହେବାର କିଛି ନାହିଁ ।" ସାନ ଜଣକ ବ୍ୟଙ୍ଗ କଟାକ୍ଷ ଚାହାଣି ହାଣି କହିଲା ।

ବଡ଼ ଯୁବକଟି ଭିଲେନ୍ ଆଡ଼େ ଚାହିଁ କହିଲା, "ସାବାସ୍ ! ଆପଣ ଦୁଇଜଣଙ୍କର ଅଭିନୟ-କୌଶଳ ଅଦ୍ଭୁତ ଅଟେ । ଏଥିରେ ଆପଣ ସାରା ଆନ୍ଧ୍ରରେ ବିଜୟ ପତାକା ଉଡ଼ାଇବେ । ପତି-ପତ୍ନୀ ହୋଇ ମଧ୍ୟ ଆପଣ ଦୁହେଁ ଭିଲେନ୍ ଓ ମୁଖ୍ୟ ନାୟିକାର ଭୂମିକା ପ୍ରଦର୍ଶନ କରିବା ବିଶେଷ ଆକର୍ଷଣର ବିଷୟ ଅଟେ ।

"ଯଦି କେହି କହେ କି ଆପଣଙ୍କର ଆଗରୁ ରଙ୍ଗମଞ୍ଚର ଅନୁଭୂତି ନାହିଁ, ତେବେ କେହି ବିଶ୍ୱାସ କରିବେ ନାହିଁ ।" ସାନ ଯୁବକ କହିଲା ।

"ଦ୍ୱିତୀୟ ଦୃଶ୍ୟ ଆରମ୍ଭ ହେଉଛି । ଏହି ଅଙ୍କ ଆପଣଙ୍କୁ ନେଇ ହିଁ ଆରମ୍ଭ ହେବ । ଆପଣ ପ୍ରସ୍ତୁତ ହୋଇଯାଆନ୍ତୁ ।" ବଡ଼ ଯୁବକ କମଳାକୁ କହିଲା ।

କମଳା ଉତ୍ତର ଦେବା ପୂର୍ବରୁ ବାହାରେ ଗୋଳମାଳ ଆରମ୍ଭ ହୋଇଗଲା । ଲୋକେ ପାଟି କରୁଥିଲେ "ହଲ୍ ଘରେ ନିଆଁ ଲାଗିଯାଇଛି ।"

'ହଲ୍'—ଶବ୍ଦ ଶୁଣୁ ଶୁଣୁ ଫୁଲମାଳାର ମୁଖ୍ୟ ନିର୍ଦ୍ଦେଶକ ଓ ତାର ସହକର୍ମୀ ସେ ଘରୁ ବାହାରକୁ ଚାଲିଗଲେ ଏବଂ ଘରର କବାଟ ପବନ ଧକ୍କାରେ ବନ୍ଦ ହୋଇଗଲା ।

କମଳା ବିବ୍ରତ ହୋଇପଡ଼ିଲା, ଜଲଦି ଜଲଦି ଯାଇ କବାଟକୁ ଧକ୍କା ମାରିବାକୁ ଚେଷ୍ଟାକଲା; କିନ୍ତୁ କବାଟ ଖୋଲିଲା ନାହିଁ । "ବାପ୍‌ରେ, କବାଟ ଖୋଲୁନାହିଁ ହୋ ।" କମଳା କମ୍ପିତ ସ୍ୱରରେ କହିଲା ।

"ମୁଁ ଖୋଲିଦେଉଛି ।" ସେ ପ୍ରବଳ ଚେଷ୍ଟା କରି ମଧ୍ୟ କବାଟ ଖୋଲି ପାରିଲା ନାହିଁ ।

ବାହାରେ ଜ୍ୱାଳାମୟ ସର୍ପର ଫାଟିଯାଇଥିବା ଜିଭ ପରି ନିଆଁର ଶିଖା ଡେଇଁ ଉଠୁଛି । ଲୋକମାନଙ୍କର ବ୍ୟାକୁଳ କ୍ରନ୍ଦନ ସହ ଜଳୁଥିବା କାଠର ଶବ୍ଦ ତାଳ ମିଳାଉଛି ।

"ବାବୁ, କବାଟ ଖୋଲ" କହି ବଡ଼ ବ୍ୟାକୁଳ ହୋଇ ପାଟିକରି କମଳା ଜୋରରେ କବାଟ ବାଡ଼ଉଛି । ତାର ନେଡ଼ି ଛିଣ୍ଡି ରକ୍ତ ବହିଯାଉଛି କବାଟ ଉପରଦେଇ ।

ସବୁଜ ରଙ୍ଗର ଆଲୁଅରେ ସେ ରକ୍ତ କଜ୍ୱଳଲଗା ଆଖିରୁ ଲୁହ ପରି ଦିଶୁଛି ।

"ତୁମେ ଡର ନାହିଁ କମଳା !" ସେ ସାନ୍ତ୍ୱନା ଦେଉଥିଲା ।

"କଣ କହୁଛ ମ ତମେ ? ମୁଁ ଡରିବି ନାହିଁ ? ହାୟରେ ଭଗବାନ ! ଶୀଘ୍ର ଭାବ, ଆମେ କଣ କରିବା ? ନ ହେଲେ ଆମେ ମରିଯିବା, ଜଳିପୋଡ଼ି ମରିଯିବା···ସେ ଝରକା ଖୋଲିଦିଅ···ଯଦି ଆମେ ମରିଯାଉ ତେବେ ବଞ୍ଚୁ···" ସେ ଏକଦମ ଅଟକିଗଲା, ଯେପରି କୌଣସି ପିଶାଚକୁ ଦେଖୁଛି ।

ସେଆଡ଼େ ସେ କଥା କହୁଥିଲା ଓ ଇଆଡ଼େ ସେ ଝରକା ଖୋଲିଦେଇ "ଭଗବାନ !" କହି ଆଖି ବନ୍ଦ କରିଦେଲା ।

ଝରକା ଖୋଲିବାମାତ୍ରେ ନିଆଁର ଶିଖା ମେଘ ପରି ଘର ଭିତରକୁ ମାଡ଼ିଆସିଲା । ସେହି ଶିଖାରେ ତାର କୃତ୍ରିମ ବାଳ, ଭ୍ରୂଲତା, ନଖ ଓ ଲ୍ପିଷ୍ଟିକ୍‌ରେ ନିଆଁ ଲାଗିଗଲା ।

"କମଳା" କହି ସେ କମଳା ଆଡ଼କୁ ଭୁଲିପଡ଼ିଲା । ଦେହ-ମୁହଁରେ ଝାଳର ବିନ୍ଦୁ ନିଆଁର ନାଲି ରଙ୍ଗରେ ରକ୍ତବିନ୍ଦୁ ପରି ଦିଶୁଥାଏ ।

ବଞ୍ଚିବାର ଆଶା ଏକବାରେ ଛାଡ଼ିଦେଇ ଭୀଷଣ ଚିତ୍କାର କରି ସେ ଦୌଡ଼ିବାକୁ ଲାଗିଲା ।

"ଆରେ ରୁହ ଟିକେ !" କହି ସେ ମଧ୍ୟ ତା ପଛରେ ଦୌଡ଼ିଗଲା ।

ସେ ଦୁହେଁ ବର୍ଷାକ୍ତ ଅନ୍ଧକାର ମଧ୍ୟରେ ଦୌଡ଼ୁଛନ୍ତି; କିନ୍ତୁ ହଜାର ହଜାର ଜିହ୍ୱା ମେଲାଇ ନିଆଁର ଶିଖା ତାଙ୍କ ପଛେ ଦୌଡ଼ୁଛି ।

ଭୁଷି ପରି ଗୋଡ଼, ପାଦରେ ଫୁଟିଯାଉଥିବା କଣ୍ଟା—ବର୍ଷାକ୍ତ ଅନ୍ଧକାର—ନିଆଁର ବର୍ଷା—ଝାଅଟା ଜଳିଯାଇଥିବା ଲୋକେ ଏବଂ ପଛରେ ଜୀବନ ଓ ମରଣ ମଧ୍ୟରେ ସନ୍ଦିଗ୍ଧ ଅବସ୍ଥାରେ ପଡ଼ିଥିବା ସେ ସ୍ତ୍ରୀ—

ସେ ଅଟକିଗଲା, ଆଗକୁ ଦୌଡ଼ି ନ ପାରି ସେଇଠି ଅଟକିଗଲା ।

ତାକୁ ଜଣାଗଲା ସେ ଯେପରି କିଛି ଦୁଃସ୍ୱପ୍ନ ଦେଖୁଛି—ଯେପରି ସେ ମରିଯାଇଛି—ତାକୁ ପୋଡି ଦିଆଯାଉଛି —ଏବଂ ମରିବା ପରେ ସେ ସ୍ୱପ୍ନ ଦେଖୁଛି ।

ଏହା ତ ସ୍ୱପ୍ନ ନୁହେଁ, ଫାଟିଯାଇଥିବା ପାଦରୁ ବାହାରୁଥିବା ରକ୍ତ ତ ମିଥ୍ୟା ନୁହେଁ ।

ସବୁ କିଛି ସତ, ସଂପୂର୍ଣ୍ଣ ଭାବେ ସତ !

ଆଖି ବୁଜି ପଡ଼ିରହିଲାରୁ ଫେରେ ତାଙ୍କୁ ମେଘ ପରି 'ସରସର' ଶବ୍ଦ ପାଖରୁ ଶୁଣାଯିବାରୁ ସେ ପୁଣି ଦୌଡ଼ିବାକୁ ଲାଗିଲା ।

ପାଦତଳେ କିଛି ନରମ ଜିନିଷ—ଅନ୍ଧାରରେ ଗଛ ପଛରେ ସେ ସବୁଜ-ସବୁଜ ଆଖି କାହାର ?

ଜଙ୍ଗଲରେ ଅନ୍ଧକାରରେ—ବିଷାକ୍ତ ସାପ ମଧ୍ୟରେ ସେ ପାଗଳ ବାଦଲ ପରି ତାଙ୍କ ପଛରେ ଦୌଡ଼ୁଛି ।

କମଳା ନିଶ୍ୱାସ ନେଇପାରୁନାହିଁ । "ମତେ ଜାଳିଦିଅ, କିନ୍ତୁ ମୁଁ ଆଉ ଆଗକୁ ଦୌଡ଼ିପାରିବି ନାହିଁ ।" କହି ସେ ଗୋଟିଏ ସରୁ ଚଟାଣ ଉପରେ ପଡ଼ିଗଲା ।

ନିଦରେ ଦୌଡ଼ୁଥିବା କମଳା ପଲଙ୍କ ସାଙ୍ଗରେ ଧକ୍କା ଖାଇ ବିଚ୍ଛୁ ଉପରେ ପଡ଼ିଗଲା । ଉଠିକରି ଆଖି ଖୋଲିଲାରୁ ପିଲା ଜାଗାରେ ତାଙ୍କୁ କୌଣସି ପ୍ରେତ ପରି ଦେଖାଗଲା । ପିଲାର ନିଶ୍ୱାସ ଚାଲୁନାହିଁ । ଆଖି ତଳିପଡ଼ିଛି ଓ ଦେଖିବା ଶକ୍ତି କମିଯାଇଛି ।

ବିଚ୍ଛୁ, ମୋ ଗେହ୍ଲା ପୁଅ ! କଣ ହେଲା ରେ ପୁଅ ? କିଛି କହୁନୁ କାହିଁକି ?" ହଲାଇ ହଲାଇ ସେ କହିଲା ।

ବିଚ୍ଛୁ 'ଅମ୍ମା !' କହି ଡାକିବାର ଚେଷ୍ଟାକଲା । କିନ୍ତୁ ଖୋଲିଥିବା ଓଠ ପୁଣି ବନ୍ଦ ହୋଇଗଲା; ମୁହଁରୁ କଥା ବାହାରିଲା ନାହିଁ । 'ଅମ୍ମା'—ଆସ୍ତେ ଗଳାରେ କହିଥିଲା; ସେ ତାଙ୍କୁ ଶୁଣାଯାଇ ନ ଥିଲା । ଶୁଣିବାକୁ ବ୍ୟାକୁଳ ତାର ଅନ୍ତରାତ୍ମା ଥରିଉଠୁଛି ।

ସେଦିନ ଏବଂ ତାର ପୂର୍ବଦିନ ବିଚ୍ଛୁର ଦେହ ଖରାପ ଥିଲା । କିନ୍ତୁ ଏଡିକରେ ବିଷ ବର୍ଷିଲା ପରି ସେହି ଅନ୍ଧାର ରାତି ମାଡ଼ିଆସିବାରୁ ଜଣାନାହିଁ କେଉଁ କଳାସାପ ତାକୁ ଦଂଶିଲା ? କୋଉ ମହାମାରି ଜାଲ ବିସ୍ତାର କଲା ?

"କଣ ହେଲା ବିଚ୍ଛୁ ? କହୁନା—କେମିତି ଅଛୁ, ପୁଅ !—ଥରେ କହି ଦେ ମୁଁ ଠିକ୍ ଅଛି, ଥରେ କହୁନା—କହ ପୁଅ ! ମୋ ସୁନା ବିଚ୍ଛୁ ! ଥରେ କହ—ଜୀବନସାରା ମୁଁ ଏଇଠି ରହିବି—ଆଉ ତତେ ଛାଡ଼ି କୁଆଡ଼େ ଯିବି ନାହିଁ, ପୁଅ ! ତୁ ମୋ ଗୋଡ଼ ଧରି ଅଳି କରିଥିଲୁ କି ଆଜି ମୁଁ ତୋରି ପାଖରେ ରହିବି । ତେବେ ବି ମୁଁ ଚାଲିଗଲି । ଦୋଷ ହୋଇଯାଇଛି, ପୁଅ ! ଦୋଷ ହୋଇଯାଇଛି···

"କିନ୍ତୁ ତତେ ଜଣାନାହିଁ ପୁଅ, ମୁଁ କାହିଁକି ଯାଇଥିଲି—ତୁ ତ ଶ୍ରେଷ୍ଠ ଅଛୁ··· ତତେ ଜଣାନାହିଁ—ମୁଁ ନିଜ ପାଇଁ ଯାଇନାହିଁ, ପୁଅ !—ମୁଁ ତ କେବେଠାରୁ ମରିସାରିଛି ।

"ମୁଁ ତୋ ପାଇଁ ଯାଇଥିଲି – ବାଧ୍ୟ ହୋଇ ଯାଇଥିଲି—ଆଉ ଯିବି ନାହିଁ, ପୁଅ ! ସବୁବେଳେ ତୋ ପାଖରେ ରହିବି—ପୁଅ ! ଥରେ କହ, ମୁଁ ଭଲ ଅଛି—ଏମିତି

ତୋ ହାତ ଧରି ରହୁଥିବି—ଏହିପରି ମରିଯିବି—ଥରେ କହିଲୁ ପୁଅ...'' ପାଗଳ ପରି କମଳା ପାଟି କରୁଥିଲା ।

କିନ୍ତୁ ବଙ୍କୁ ଆଖିରୁ ସେହି ବକ୍ରତ ଦୃଷ୍ଟାଣି ଯାଇନାହିଁ ।

ବର୍ତ୍ତମାନ ସେ ରିକ୍ସାରେ ଯାଉଛି —କୋଳରେ ଅତି କଷ୍ଟରେ ନିଶ୍ୱାସ ନେଉଥିବା ପିଲା ବାହାରକୁ ବାହାରିପଡ଼ୁଥିବା ଅନ୍ତବୁଳୁଲା ପରି ନଜ୍ରେଜ ହୋଇପଡ଼ୁଛି ।

''ପ୍ରଭୁ ! ଏହି ଯାତା କଣ ସେହି ଆଡ଼କୁ ?'' ରିକ୍ସାର ଜଞ୍ଜିର ଛିଡ଼ିଲା ପରି ଶବ୍ଦ ହେଲା ।

''ଗତ ବର୍ଷ ଏହିପରି ତାକୁ...''ରିକ୍ସାବାଲା ଚିକ୍କଣ କଳା ପିଠିରେ ଚନ୍ଦ୍ରକିରଣ ଝଲସୁଛି ।

ବସା ଭିତରେ ପାଗ ଜାଳକଙ୍କ ହୋଇ ବସିଲା ପରି ସେ ବସିଛି ।

''ଫେରେ ସେଠି ଔଷଧ ପାଇଁ...''

ବସା ପାଖରେ ସେଗୁ ଦେଖିଲା ପାଗ ପରି ସେ ରକ୍ତହାରେ ଥରି ଥରି କମ୍ପିଉଠିଲା ।

''ପ୍ରଭୁ ! ଏହି ନଆଁର ସମୁଦ୍ରରେ ମୁଁ ଆଗକୁ ପହଁରି ପାରିବ ନାହିଁ । ଏଇ ଛୁଞ୍ଚି ପରି ତୀକ୍ଷ୍ଣ ଚଟାଣ ଉପରକୁ ମୁଁ ଆଉ ଚଢ଼ିପାରିବି ନାହିଁ । ତମେ ଶୃଙ୍ଖ ନ ମୋତେ ମାରିଦିଅ; ମାରିକରି ଖଣ୍ଡ ଖଣ୍ଡ କରିଦିଅ, ଗୋଟି ଗୋଟି କରି ସବୁ ନାଡ଼ି ଛିଣ୍ଡାଇଦିଅ । ଗୃଦ୍ଧ ପରି ଆସ୍ତେ ଆସ୍ତେ ମତେ ଖାଇନଅ, ମତେ ମାରିଦିଅ । ମୋ ପାଇଁ ଏହି ଜୀବନ ହିଁ ଚିରନ୍ତନ ମୃତ୍ୟୁ ଏବଂ ମୃତ୍ୟୁ ହବ ଚିରନ୍ତନ ଆଶୀର୍ବାଦ...'' ଏହିପରି ସେ ମରଣ ପାଇଁ ପ୍ରାର୍ଥନା କରୁଛି । କିନ୍ତୁ ମୃତ୍ୟୁ ତାର ପ୍ରାର୍ଥନା ଶୁଣିଲା ନାହିଁ ।

ରାତି ଦଶଟା ପଇଁତିରିଶି—
ନର୍ସ ସବୋତା ଶୋଇଛି ।
ତା ସାଙ୍ଗରେ ସିଂହାଚଳମ୍ ମଧ୍ୟ ଶୋଇଛି ।
''ମା ସାନ୍ତାଣି ! ବାବୁ !''
ମା'ଙ୍କର କି ବାବୁଙ୍କର ନିଦ ଭାଙ୍ଗିଲା ନାହିଁ ।
''ମା' !''
ମା ଉଠିଲେ ନାହିଁ ।
''ଭାଇ !''
ମା ଗୋଟିଏ ଆଖି ଖୋଲିଲେ ।
''ମା' ସାନ୍ତାଣି !''
ଭାଇ ଅନ୍ୟ ଆଖି ଖୋଲିଲେ ।
''ମା ସାନ୍ତାଣି ! ଭାଇ !''

ଭାଇ ଓ ମା ଦୁହେଁ ଆଖି ବନ୍ଦ କରିଦେଲେ ।

ତାଙ୍କୁ ଉଠିବାକୁ ପାଞ୍ଚମିନଟ୍ ଲାଗିଲା ଓ ଆଉ ପାଞ୍ଚମିନଟ୍ ଲାଗିଲା କମଳାକୁ କଥା ବୁଝାଇବାକୁ ।

"କେବେଠାରୁ ଆରମ୍ଭ ହେଲା ?"

"ବେଶି ଦିନ ହୋଇନାହିଁ । କାଲିଠୁ ସେ ଟିକେ ଦୁର୍ବଳ ହୋଇଯାଇଥିଲା । ବାସ୍, ଆଜି ଦେହ ଟିକେ ଉଷୁମ୍ ଜଣାଗଲା । ରାତିରେ ସବୁ ଦିନ ପରି ଶୋଇପଡ଼ିଲା, ଏତିକିରେ ସେ ଯାଦୁକର ପରି ବେମାରି ଆରମ୍ଭ ହୋଇଗଲା ।

ନର୍ସ କମଳାଆଡ଼େ ବଡ଼ ଧ୍ୟାନପୂର୍ବକ ଚାହିଁଲା, ତା ଦେହରେ ତ ରକ୍ତ ବି ମାଂସ ନାହିଁ । ତାର ଚେହେରା ପ୍ରାୟ ପାଗଳ ହେଲା ପରି ହୋଇଛି । ଏପରି ଲାଗୁଛି ଯେପରି ଭଗବାନ ତାକୁ ଏ ଚେହେରା ହସିବାକୁ ନୁହେଁ, କାନ୍ଦିବାକୁ ଦେଇଛନ୍ତି ।

ଯଦି ତାଠାରୁ କୌଣସି ଭୂମିକାର ଅଭିନୟ କରାଯାଏ ତ କେବଳ ଦାସୀର ଭୂମିକା ପାଇଁ ଉପଯୁକ୍ତ ଥିଲା ।

ତାର ଆକୃତ ବାସ୍ତବ ରୂପରେ ପରିଣତ ଦୁଃସ୍ୱପ୍ନ ପରି ଥିଲା ।

"ଆଉ କୋଉଠିକି ନେଇ ଯାଇଥାନ୍ତୁ ତ ଭଲ ହୋଇଥାନ୍ତା ।"

"ଆଉ କୋଉଠିକି ନେଇଥାନ୍ତି— ଶ୍ମଶାନ ଛଡ଼ା ।" କମଳା କିଛି ନ କହି ଛିଡ଼ା ହୋଇରହିଲା ।

"...ସିଂହାଚଳମ୍ ! ..."ଫିଲ୍ମର ହିରୋଇନ୍ ପରି ନର୍ସ ଡାକିଲା । ସିଂହାଚଳମ୍ର ନିଦ ଭାଙ୍ଗିଲା ନାହିଁ । ସେଇଠୁ 'ଭିଲ୍ୟନ'ପରି ସ୍ୱରରେ ଡାକିଲା; ତେବେ ବି ସେ ଉଠିଲା ନାହିଁ । ବାଘୁଣୀ ପରି ଗର୍ଜିବାରୁ ସେ ଉଠିଲା ।

"ଡିଉଟି ଡାକ୍ତରଙ୍କୁ ଡାକିଆଣ୍ ।"

ସିଂହାଚଳମ୍ ଚାଲିଗଲା ।

"ମା ! ଟିକେ ଜଲଦି..."

"ମୁଁ କଣ କରିପାରିବି ? ମୁଁ ତ ନର୍ସ । ଡାକ୍ତର...ଡାକ୍ତର ଆସିବା ଦର୍କାର ।"

ଡାକ୍ତର ଆସିଲେ ନାହିଁ ।

"ଡିଉଟି ରୁମ୍ରେ ନାହାନ୍ତି ।" ସିଂହାଚଳମ୍ କହିଲା ।

"କାହିଁକି ନାହାନ୍ତି ? ଏ ଚିଠି ନେଇ ଯା ।" ଚିଠିରୁ ଡିଉଟି ରୁମ୍ରେ ଡାକ୍ତରର ସୃଷ୍ଟି ହେଲା ନାହିଁ ।

"ସିନେମା ଦେଖି ଚାଲିଯାଇଛନ୍ତି ।" ସିଦ୍ଧାଚଳମ୍ ଫେରିଆସି କହିଲା ।

"ଭଉଣି ! ପିଲାଟାର କଣ ହେଉଛି ମନେ ହେଉଛି ।"

"ସେ ତ ସେଇପରି ହୁଏ—ଧର୍ଯ୍ୟ ଧର—ନେଇଯା, ସିନେମା ଘରକୁ ଏ ଚିଠି ନେଇଯା—ତୁ ନୁହେଁ—ସିଦ୍ଧାଚଳମ୍, ତୁ ।"

ଡାକ୍ତର ସିନେମା ଦେଖିବାକୁ ଯାଇ ସେଠି ଫାଷ୍ଟ ଇସ୍ଯୁର ଗୋଟିଏ ପୁରୁଣା ଚଢ଼େଇ

ସାଙ୍ଗେ ଭେଟ ହେଲା । ଡାକ୍ତରଙ୍କୁ ଦେଖି ସେ ଚଉକିରେ ତାଙ୍କ କାନ୍ଧରେ ବସିପଡ଼ିଲା ।

ଚଢ଼େଇଟିକୁ ନେଇ ଡାକ୍ତର ମନ୍ଦିରୁ ଚାଲିଗଲା । ସେ କଥା କେବଳ ତାଙ୍କୁଇ ଜଣାଥିଲା ।

ଦେଢ଼ଘଣ୍ଟା ପରେ ସିହ୍ମାଚଲମ୍ ଆସି କହିଲା—"ସିନେମା ହଲ୍‌ରେ ବି ନାହାନ୍ତି ଓ ଘରେ ମଧ୍ୟ ନାହାନ୍ତି ।"

"କିଏ ଡିଉଟି ଡାକ୍ତର ଅଛୁ ?"

"ମୈଥିଲୀ ବାବୁ ଅଛନ୍ତି ।"

"ସବୁ ଜାଗା ଖୋଜିବୁ, ଲାଇବ୍ରେରୀରେ ଥିବେ ତ ନେଇ ଆସିବୁ ।" ଲାଇବ୍ରେରୀରୁ ମୈଥିଲୀ ବାବୁ ଆସିଲେ ନାହିଁ । ଗୋଟାଏ ବେଳକୁ ରେଜିଷ୍ଟ୍ରୀ ବାବୁ ପହଞ୍ଚିଗଲେ ।

ସେ ଖଦଡ଼ ପ୍ୟାଣ୍ଟ ଓ କୁର୍ତ୍ତା ପିନ୍ଧିଛନ୍ତି । ତାଙ୍କର ଚେହେରାରେ ସୌଜନ୍ୟ, ଦୟା ଓ ପ୍ରଭାବର ଆଭା ଫୁଟିଉଠୁଛି । ନିଜ ବୟସଠାରୁ ପାଞ୍ଚ ବର୍ଷ ଅଧିକ ଦେଖାଯାଉଛନ୍ତି । ତାଙ୍କ ନାକ କପାଳ ରେଖାଗୁଡ଼ିକ ଏବେଠାରୁ ଗଭୀର ହୋଇଗଲାଣି ।

ତାଙ୍କର ଆଖି ଓ ନାକ ବାହାଣପକ୍ଷୀଙ୍କ ପରି ଦିଶୁଛି, ରଙ୍ଗ ମଧ୍ୟ ସଫା, ଲମ୍ବା ଶରୀର, ବାଳ କଳା ଅଛି । ସେ ସୁନ୍ଦର ବ୍ୟକ୍ତି ମଧ୍ୟରେ ଗଣାଯାଇ ପାରନ୍ତି । ତାଙ୍କର ମୁଖଭଙ୍ଗୀରେ ଏକ ପ୍ରକାରର ଗରିମା ଅଛି ।

ତାଙ୍କର ଚଷମା ବିଦେଶୀ ।

ଯୋଡ଼ା ମଧ୍ୟ ଦାମିକା ।

ତେବେ ବି ତାଙ୍କ ଚେହେରାରେ ଭଲ 'ମଣିଷବାଲା' ବୋର୍ଡ଼ ଲେଖାହୋଇଥିଲା ପରି ଦିଶୁଛି । ତାଙ୍କୁ ଅଫିସରର ଚୌକିରେ ବସିବାର ଦେଖି ମଧ୍ୟ କେହି ତାଙ୍କ ପାଖକୁ ଯିବାକୁ ସଙ୍କୋଚ କରିବେ ନାହିଁ । ସେ ଯେତେ ବଡ଼ କାର୍‌ରେ ବସିଥାନ୍ତୁ ନା କାହିଁକି ତାଙ୍କୁ ସମୟ ପଚାରିବାକୁ କେହି ଡରିବେ ନାହିଁ । ସେ ବୃନ୍ଦେ କେତେବେଳେ ବି ରାସ୍ତାରେ ଛିଡ଼ା ହୋଇଥିଲେ କୌଣସି ଭିକାରି ତାଙ୍କୁ ପଇସା ମାଗିବାକୁ ପଛେଇବ ନାହିଁ । ଯେକୌଣସି ସ୍ତ୍ରୀଲୋକ ତାଙ୍କୁ ଦେଖିଲେ, ମୋର ଏପରି ଗୋଟିଏ ଭାଇ ଥାଆନ୍ତା କି—ଭାବିବ ।

"ସେ କେବେ ମିଛ କହିବେ ନାହିଁ । କେବେ କୌଣସି ଭୁଲ କାମ କରିବେ ନାହିଁ । କେହି ଯଦି ତାଙ୍କର ସାହାଯ୍ୟ ଲୋଡ଼ନ୍ତି ତ ସେ କେବେ ମନା କରିବେ ନାହିଁ ।" ତାଙ୍କର ଚେହେରା ଦେଖିଲାବାଲାଙ୍କର ଏଇଆ ମନେହୁଏ ।

ସେ 'ଓ୍ୱାର୍ଡ଼'ରେ ପହଞ୍ଚିବାମାତ୍ରେ କମଳା ବସିଥିବାର ଦେଖିଲେ ।

ପତିର ମୁହଁକୁ ନ ଦେଖିବାକୁ ଚାହୁଁଥିବା ବୋହୂ ପରି ହାତରେ ମୁହଁ ଲୁଚାଇ ବସିଛି ।

ଯଦି ଭୂ ମରିଯାଉ ତ ତୋ ସ୍ତ୍ରୀର ଅବସ୍ଥା ବୋଧହୁଏ ଏହିପରି ହେବ; ଏହିପରି ଆଣ୍ଠେଇ ହଥାଉଥିବା ଭଳି ଚେହେରା ଥିଲା ତାର ।

ତାର ବୟସ ତେଇଶି ବର୍ଷ ଖଣ୍ଡେ ହେବ; କିନ୍ତୁ ତା ଚେହେରା ଶହେ ବର୍ଷ ପରି ଦିଶୁଛି । ସେ ଯେଉଁ ଉଡ଼ାରେ କିଆ ହୋଇଥିବା ଶାଢ଼ି ପିନ୍ଧିଛି; ସେ ଏପର୍ଯ୍ୟନ୍ତ ମଇଳା ହୋଇନାହିଁ ।

ଡାକ୍ତରଙ୍କୁ ଦେଖି ସେ ଲଜ୍ଜାଭାବରେ ମୁଣ୍ଡ ପୋତି ଛିଡ଼ା ହୋଇଗଲା, ଯେପରି ସେ କୌଣସି ଅନୁଚିତ କାର୍ଯ୍ୟ କରିଛି । ଏହାପରେ ଲଜ୍ଜା ଅପେକ୍ଷା ଭୟ ଅଧିକ ପ୍ରକଟ କଲା ପରି ଛିଡ଼ାହୋଇ ରହିଲା ।

ପିଲାଦିନର ପରିବେଶ ଯୋଗୁ କୌଣସି ସମ୍ମାନ୍ତ ବ୍ୟକ୍ତି ଘରଲୁ ବାହାଘରରେ ଯାଇ ନିଜ ଭୁଲ୍ ଉପରେ ପସ୍ତାଇଲା ପରି ଖେଦ-ସୂଚକଭାବ ନେଇ ସେ ଛିଡ଼ାହୋଇଥାଏ । ବେଞ୍ଚ୍ ଉପରେ ଲୁଗା ତଳେ ରଖାହୋଇଥିବା ପିଲାଟି ଗ୍ରେଟ ଥଳିଟିଏ ପରି ପଡ଼ିଛି ।

ତା ପାଖରେ ଛିଡ଼ା ହୋଇଥିବା କମଳା ଗ୍ରେଟ ଥଳିଟି ପାଖରେ ବଡ଼ ଥଳିଟିଏ ପରି ଦିଶୁଛି ।

ରୋଗୀର ନାଡ଼ ଦେଖିବ ମାତ୍ରେ ଡାକ୍ତର ରେଗ୍‌ଗୀ ନର୍ସ ସୱେଲାଙ୍କୁ ଗାଳିଦେଲେ ଯେ ସେ ଏପର୍ଯ୍ୟନ୍ତ 'ଥିଏଟର' କାହିଁକି ପ୍ରସ୍ତୁତ କରି ରଖିନାହିଁ ! "ମନିଷ ତ ସମସ୍ତେ ସମାନ, ଏହି କଥା ତମେମାନେ କେବେ ବୁଝିବ ? ଯଦି ବର୍ତ୍ତମାନ କିଛି ଅଘଟଣ ଘଟିଲା ତ କିଏ ଦାୟୀ ହେବ ?" କହି ସେ ପାଟି କରି ଉଠିଲେ ।

ସାଙ୍ଗେ ସାଙ୍ଗେ ସେ ରୋଗୀଙ୍କୁ ନେଇ 'ଥିଏଟର'ର ପାଖବାଲା କୋଠରିକୁ ଚାଲିଗଲେ ।

ଯେପରି ବନ୍ଦ ହୋଇଯାଇଥିବା ଲଢ଼େଇ ପୁଣି ଆରମ୍ଭ ହୋଇଯାଇଛି, ସାରା 'ଥିଏଟର' ଜାଗିଉଠିଲା । 'ଥିଏଟର'ରେ ବିଜୁଳିବତି ବର୍ଷାରେ ଧୋଇହୋଇଥିବା ତାରା ପରି ପ୍ରକାଶିତ ହୋଇଉଠିଲା ।

କମଳାର ଆଖିରେ ଆଶା ଓ ନିରାଶା ଲୁଚକାଳି ଖେଳିବାକୁ ଲାଗିଲେ ।

"ଗତ ବର୍ଷ—ଏହି ଡାକ୍ତରଖାନାରେ, ଠିକ ଏହି ସମୟରେ—ଏହିପରି ଡାକ୍ତର···"

ବଡ଼ ଘରେ କାନ୍ଦିବା ଠିକ୍ ନୁହେଁ, ଯେପରି ସେ ଏହି କଥା ଜାଣିଛି, ସେହିପାରି ନିଷ୍ଠାପର ଭାବରେ ସେ ତାର ଅଶ୍ରୁକୁ ଆଖିରେ ଅଟକାଇବାର ଚେଷ୍ଟା କରୁଛି । ନାକରେ ଗୁଞ୍ଜିରଖିଥିବା ତାର ନାଲି ଶାଢ଼ିର କାନି ଯେପରି ନାକରୁ ବହୁଥିବା ରକ୍ତକୁ ଅଟକାଇଲା ରୁମାଲ ଭଳି ଦିଶୁଛି । ଦଶ ମିନଟ୍ ହୋଇଗଲା ।

କାନ୍ଧ ଉପରେ 'ଷ୍ଟେଥସ୍କୋପ୍, ହାତରେ ନୋଟ-ଖାତା ଓ ଆଖିରେ ବ୍ୟସ୍ତତାର ଭାବ ନେଇ ରେଗ୍‌ଗୀ କୋଠରିରୁ ବାହାରକୁ ଆସିଲେ ।

କମଳା ପାଦେ ଆଗକୁ ବଢ଼ିଯାଇ "ବାବୁ, କିପରି" କହି ଅଟକି ଗଲା; "ଅଛି" ତା ପାଟିରୁ ବାହାରି ପାରିଲା ନାହିଁ ।

"ଚିନ୍ତାର କିଛି କାରଣ ନାହିଁ ।" ରେଗ୍‌ଗୀ କହିଲେ । ସେ ଭାବିଲେ ବୋଧହୁଏ ସେ ସ୍ତ୍ରୀଲୋକଟି ତାର ବ୍ୟସ୍ତତାକୁ ଭୁଲ୍ ବୁଝିଲା···ଏବଂ ସେ କୌଣସି ଖରାପ ଖବର ଶୁଣାଇବାକୁ ଛଟପଟ ହେଉଛନ୍ତି ବୋଲି ମନେକଲେ ।

"ଭଉଣୀ ! ଏହି ଔଷଧଗୁଡ଼ିକ ସାମନା ଦୋକାନରୁ···" ମରିପଡ଼ିଥିବା ପିଲା

ପାଇଁ 'ଫିକସ୍' ମାଗିବାବାଲା ହରିଶ୍ଚନ୍ଦ୍ରଙ୍କ ପରି ତାଙ୍କ ଗଳାରେ କଠୋରତା ନଥିଲା ।

"ବାବୁ ! ମତେ କ୍ଷମା କରିଦିଅ, ତେବେ ବି ମୋ ପାଖରେ ପଇସା ପାଇବେ ନାହିଁ ।" ଏହି ଥିଲା ସେହି "ବାବୁ !" କହିବାର ଉଦ୍ଦେଶ୍ୟ ।

"କିଛି କଥା ନାହିଁ ଭଉଣୀ । ଭୁଲ୍ ମୋର, ଆପଣଙ୍କୁ ପଚାରିବାର ନ ଥିଲା । ମୁଁ ଭାବିଲି, ଷ୍ଟକରୁ ମଗାଇବାକୁ ଡେରି ହବ ।" ଡାକ୍ତର ଏହି କଥା ଏପରି ଢଙ୍ଗରେ କହିଲେ ଯେପରି ସେ ଭଗବାନଙ୍କ ଆଗରେ ଛିଡ଼ା ହୋଇ ଶପଥ ନେଉଛନ୍ତି କି ଆଉ କେବେ ଏପରି ଅନୁଚିତ କାର୍ଯ୍ୟ କରିବେ ନାହିଁ ।

ସିହ୍ମାଚଲମ ଡାକ୍ତରଙ୍କର କହିବା ଅନୁସାରେ ଔଷଧ ଆଣିବାକୁ ଦୌଡ଼ିଗଲା ।

ରୋଗୀ କମଳାକୁ ତୀକ୍ଷ୍ଣ ନଜରରେ ଦେଖୁଛନ୍ତି, ତେବେ ବି କମଳା ଆଖିରେ କିଛି ଆପତ୍ତିଜନକ ଭାବ ନାହିଁ ।

"ଭଉଣୀ ! ଯଦି ତମେ ଖରାପ ଭାବିବ ନାହିଁ..."

"କହନ୍ତୁ — ବାବୁ !" କହିଲା ପରି ସେ ଚାହିଁଲା ।

"ଆଚ୍ଛା...ଏହି...ଏହି ପୁଅର ବାପ..." ଆଉ କିଛି ସେ କହିପାରିଲେ ନାହିଁ ।

"ଜଳିଯାଇଛି" ସେ ଭିତରେ ଭିତରେ ପସ୍ତାଉଥିଲା ଯେ 'ମରିଯାଇଛି' କାହିଁକି କହିଲା ନାହିଁ ।

"ଆଚ୍ଛା, ଆଇ ଯ୍ୟାମ ସରି ! ଏକ୍ସଟ୍ରିମଲି ସରି ଭଉଣୀ !" ଫେରେ ସେ କାଳେ ଇଂରାଜୀ ଜାଣି ନଥିବ ଭାବି ପସ୍ତାଇବାକୁ ଲାଗିଲେ ଓ ଏହି କଥା ଖିଆଲ ରଖିବା ଉଚିତ ଭାବିଲେ ।

"ତେବେ ତୁମେ... ତୁମର..."

"ରେକର୍ଡ଼ ନାହିଁ..." କେବେ ନାହିଁଥିଲା ।

ବର୍ତ୍ତମାନ ତ ସେ ନାଁକରର ଫୁଲ୍ ଅଟେ !

ମରଦର ନାଁ ଭୁଲିଗଲା ପରି ତୁଲାଇ କଟେଇ ।

"I am sorry" ରୋଗୀ କହିଲେ ନାହିଁ । କିନ୍ତୁ ସେ ଭାବିଲେ ଯେ ତାକୁ ପ୍ରଶ୍ନ ପଚାରିବା ଉଚିତ ହୋଇନାହିଁ

କିନ୍ତୁ ଯେତେବେଳେ କମଳା ତାର ପେଶା କଥା କହିଦେଲା, ତାର ମନ ହାଲୁକା ହୋଇଗଲା । ମନେ ହେଲା, ସେ ତା ଭାଇକୁ ତାର ଦୁଃଖ ଜଣାଇଦେଇଛି ।

ତା ପରେ ସମସ୍ତ ଦିନେ ଜଲଦି ବିତିଗଲା, କମଳାର ମଧ୍ୟ ।

ସିଂହାଚଲମ୍ ଔଷଧ ନେଇ ଆସିଲେ ।

"ଗ୍ରେଭ୍ !"

ଥିଏଟର ପ୍ରସ୍ତୁତ ହୋଇଗଲା ।

"ଭଗବାନ୍ !"

'ଅପରେସନ୍'ର ପୋଷାକ ପିନ୍ଧି ରୋଗୀ ଅନ୍ତ୍ୟସାକ୍ଷ୍ୟଦାତ୍ରୀ ପରି ସେ ଘରୁ

ବାହାରକୁ ଆସିଲେ ।

"ମୋ ପୁଅର ଜୀବନ ବଞ୍ଚେଇ ଦିଅ ବାବୁ" ମୌନ ପ୍ରାର୍ଥନା ଷ୍ଟ୍ରେଚରରେ ପୁଅକୁ ଅପରେସନ୍ ଥିଏଟ୍ରର ଭିତରକୁ ନେଇଗଲେ । "ମତେ ନେଇ ଯାଅ, ଭଗବାନ !"

ଅପରେସନ୍ ଆରମ୍ଭ କରିବା ପୂର୍ବରୁ ନର୍ସ ପୁଅର ନାଡ଼ି ଦେଖି 'ଡାକ୍ତର' କହି ଚମକି ଉଠିଲା । —ଯେପରି ସେ ପିଲା ଜାଗାରେ କୌଣସି ପ୍ରେତ ଦେଖୁଛି ।

"ଷ୍ଟପ୍" ଯଦି ତୁମେ କାମ କରି ଜାଣିନ ତ ବାହାରକୁ ଚାଲି ଯା ।" ରେଡ୍ଡୀ ଚିଡ଼ି କରି କହିଲେ ।

ଫାର୍ଷ୍ଟ ଇନ୍‌ସିସନ୍— ଗଳା ଉପରେ ପ୍ରଥମ ଛୁରି—ଯେପରି ବହିମାନଙ୍କରେ ଲେଖା ଅଛି—ସେହିପରି ହେଲା ।

ମସ୍ତିଷ୍କର ସୌଜନ୍ୟ ଉପରେ ଫେର୍ ନୂଆ ଆସ୍ଥା ହେଲାପରି, କିଛି ଦିନ ଯାଏ ସେହି ଆସ୍ଥାଠାରୁ ଦୂରେଇଯିବା ପାଇଁ ପଡ଼ାଇଲା ପରି ବଡ଼ ସାହସ ଓ ଧୈର୍ଯ୍ୟ ସହ କମଳା ସେହି ବେଞ୍ଚ ଉପରେ ବସିରହିଲା ।

ଟୁଲଗୁଡ଼ିକ ଉପରେ, ଗ୍ଲେଟ ପିଲାଙ୍କ ଗାଡ଼ି ପରି ତା ଆଖି ଆଗରେ ଦୁଇଟି ଅକ୍‌ସିଜେନ ସିଲିଣ୍ଡର ଥିଏଟରରେ ପହଞ୍ଚିଗଲା ।

"ମୋ ପଣ୍ଡ·· ନାଡବାବାଲା · ଶସ୍ତା ରକମର ··· ସ୍ତ୍ରୀ ଲୋକର ପିଲା ପାଇଁ ମଧ୍ୟ ଭଗବାନ ଅଛନ୍ତି ।"

ଦାମୀ ମଦବୋତଲ ପରି ଦେଖାଯାଉଥିବା 'ବ୍ଲଡ ପ୍ଲାଜ୍‌ମା'ର ବୋତଲଗୁଡ଼ିକ ନେଇ ଥିଏଟରରେ ପହଞ୍ଚିଗଲା ଅନ୍ୟ ଗୋଟିଏ ନର୍ସ ।

ଏତେ ଲୋକ...ନର୍ସ...ଡାକ୍ତର···ଔଷଧ···ଦନ୍ତିମାନ ଯାହା କିଛି ହଉ... ଭଗବାନ ! କାହିଁକି ଏପରି ଖରାପ ଭାବନା ମନରେ ଆସୁଛି ?··· ଈଶ୍ୱର ଅଛନ୍ତି ।

ଅପରେସନ ଶେଷ ହୋଇଗଲା । ଡାକ୍ତର ରେଡ୍ଡୀ ଅପରେସନର ପୋଷାକ ନ ବଦଳାଇ ବାହାରକୁ ବାହାରି ସିଧା କମଳା ପାଖକୁ ଯାଇ ବଡ଼ ଆନ୍ତରିକତା ସହ ତା କାନ୍ଧରେ ହାତ ରଖିଲେ ।

"ତୁମର ସୌଭାଗ୍ୟ ପୋଡ଼ି ହୋଇଯାଇଛି ।" ନିଜର ଝିଅକୁ ଏହି ଖବର ଶୁଣାଇବା ପାଇଁ ବାଧ । ବାପ ପରି ସେ ଭିତରେ ଭିତରେ ବିଦାରି ହୋଇଯାଉଛନ୍ତି ।

"ଥାଇ ହାଉ ଡନ୍ ମାଇ ବେଷ୍ଟ । କିନ୍ତୁ କିଛି ଲାଭ ହେଲା ନାହିଁ ।"

ତା ପରେ ରେଡ୍ଡୀ ନିଜେ ଶବ‌ସାର ବ୍ୟବସ୍ଥା କରି ଓ ସିଂହାଚଳମକୁ ମଧ୍ୟ ସାଙ୍ଗରେ ଦେଇ ମା' ପୁଅକୁ ପଠାଇ ଦେଇଥିଲେ ।

ଯଦି ସେ ବାବୁ ଏତେ ଦୟା ନ ଦେଖାଇଥାନ୍ତେ—ତେବେ ତା ପାଖରେ ଯେଉଁ ଦୁଇ ଟଙ୍କା ଥିଲା, ସେ ଶବ‌ସା ପାଇଁ ଖର୍ଚ୍ଚ ହୋଇଯାଇଥାନ୍ତା ।

ଏହି ସୁନାର କଢ଼ିକୁ
ଏହି ମାଣିକର ଖଣିକୁ

ଯେଉଁ ହାତରେ ସେ ଲାଳନ-ପାଳନ କରିଥିଲା ସେହି ହାତରେ ତାକୁ ମାଟିରେ ପୋତିବାକୁ ହବ ! ଭଗବାନ୍ !

"ଆପଣଙ୍କ ପରି ବଡ଼ଲୋକଙ୍କ ମଧ୍ୟରେ ଯଦି ଆପଣଙ୍କ ପରି ଗୋଟିଏ ବି ଲୋକ ଥାଏ ତେବେ ଆପଣଙ୍କ ପାଦଗ୍ରସ୍ଥରେ ମୁଁ ମୋର ଜୀବନ ବିତାଇଦିଅନ୍ତି ।" ମନେ ମନେ ଡାକ୍ତରଙ୍କର ଶୁଭ କାମନା କରି ସେ ପିଲାକୁ ହାତରେ ଧରି ଛୁଡ଼ାହୋଇଗଲା ।

ମରିଯାଇଥିବା 'ଲେଶା'ଙ୍କୁ ହାତରେ ଧରି କାନ୍ଦୁଥିବା 'ମେରି' ପରି ସେ ସ୍ତ୍ରୀଲୋକ !

"ଯାଉଛି, ବାବୁ" କୃତଜ୍ଞତାଭରା ହୃଦୟରେ ସେ କିଛି କହିପାରିଲା ନାହିଁ ।

"ହେଇ ଦେଖ ଲଞ୍ଚ ତ ଏଇ ଆସିଲା, ବାଘ କହୁଥିବା ଏଇ ଦୋଅଣି-ଗୁଣିର ସମ୍ବାଦପତ୍ରବାଲା ଅଟନ୍ତି—ଯଦି ପ୍ରକୃତରେ ବାଘ ଦେଖିବେ ତ କଣ ଚୁପ୍‌ହୋଇ ବସିବେ ! ଯଦି ରେଗ୍‌ଗୀ ମତେ ବଞ୍ଚେଇ ଦେଇ ନ ଥାନ୍ତା, ତେବେ ଏମାନେ ଏତେ-ବେଳକୁ ମତେ ଦାନ୍ତରେ ଛୁଡ଼ା କରି ଦେଇଥାନ୍ତେ !" ମୈଥିୁ କହିଲା ।

"ସେଥିରେ କଣ ଅଛି ?" ନିଜ 'ଟେରିଉଲ' ପ୍ୟାଣ୍ଟରେ ପଡ଼ିଯାଇଥିବା 'ଚପ୍‌ସ'କୁ ବାଁ ହାତର ଅଙ୍ଗୁଳିଦ୍ୱାରା ହଟାଉ ହଟାଉ ରେଗ୍‌ଗୀ କହିଲେ ।

"ତେବେ ଏ ପାର୍ଟି କେଉଁ ଉପଲକ୍ଷେ ?"

"ରେଗ୍‌ଗୀ ଉପଲକ୍ଷରେ – ଏ ମିଲିଆନ୍ ଥାଙ୍କସ୍ ଫର ଦ ପି. ଏମ."—ମୈଥିୁ କୃତଜ୍ଞତା ସହ କହିଲା ।

"ମାନେ ?" କଣ୍ଟ୍ରାକ୍‌ଟର କିଛି ବୁଝି ପାରୁ ନ ଥିଲା ।

"ପି. ଏମ୍.—ମାନେ ପୋଷ୍ଟ ମର୍ଟମ୍ !"

"ମାନେ ?" କଣ୍ଟ୍ରାକ୍‌ଟର ଆହୁରି ଆଶ୍ଚର୍ଯ୍ୟ ହେଲା ।

"ମାନେ, ସେ ହତଭାଗ୍ୟ ପିଲା ବେଞ୍ଚ ଉପରେ ହିଁ ଶେଷ ହୋଇଯାଇଥିଲା !"

# ମରୀଚିକା

ପାହାଡ଼ର ମଝି ଚଟାଣ ଉପରୁ ପାଣି ଉଚ୍ଛୁଳି ଉଚ୍ଛୁଳି ତଳକୁ ବହିଯାଉଛି । ସେ ପାହାଡ଼ ମଧ୍ୟ ବେଶ୍ ଉଚ୍ଚା । ସେହି ଜଳଧାରା ପାଖରେ ଛିଡ଼ାହୋଇ ମୁଣ୍ଡ ଉଠାଇ ଅନେଇ ଦେଖାଯାଏ ତ ସବୁଜ ବୃକ୍ଷଲତାରେ ଭରା ପାହାଡ଼ ଅତ୍ୟନ୍ତ ସୁନ୍ଦର ଦେଖାଯାଏ । ଏପରି ଲାଗେ ଯେପରିକି ସେ ସାରା ଆକାଶକୁ ଘୋଡ଼ାଇ କରି ରହିଛି । ତାର ଶିଖର କାହିଁ କେତେ ଦୂରରେ । ଲାଗୁଛି, ସେଯାଏ କେହି ପହଞ୍ଚି ପାରିବ କି ନାହିଁ ।

ପ୍ରତିଦିନ ମିଲା ସେହି ଜଳପ୍ରପାତ ପାଖରେ ବସେ—ପାଣିରେ ପାଦ ବୁଡ଼ାଇ ହଲାଉଥାଏ । ପାଣି ଛିଟିକି ଆସି କେବେ କେବେ ମୁଣ୍ଡ ଉପରେ ପଡ଼ିଲେ ସେହି ଶୀତଳ ଜଳର ସ୍ପର୍ଶରେ ମିଲାର ଶରୀରରେ ପୁଲକ ଜାଗିଉଠେ । ସେ ଆନନ୍ଦ-ବିଭୋର ହୋଇପଡ଼େ ।

ପାଣିର ସେହି ଧାରା କାହିଁ କେଉଁ ପାହାଡ଼ ଶିଖରରୁ ବହିଆସୁଛି । ସେଇ ଚଟାଣଯାଏ ଗୋଟେ ନାଳ ପରି ବହିଯାଇ ସେଠି ଚଟାଣରେ ବାଜି ଉଚ୍ଛୁଳି କରି ତଳେ ପଡ଼ୁଛି । କେବେ କେବେ ଉପରର ସେହି ଚଟାଣ ପାଖରେ ଯାଇ ନଳାପରି ବହୁଥିବା ସେହି ଜଳଧାରା ପାଖରେ ବସିଯାଏ, ସେଇଠି ଶୋଇପଡ଼େ । ଅଳ୍ପ ସମୟ ପାଇଁ ସେ ବଡ଼ ଆଶାରେ ପାହାଡ଼ର ଶୃଙ୍ଗ ଆଡ଼କୁ ଚାହେଁ । ସେ ଭାବେ, ଯଦି ମୁଁ ସେତେ ଦୂର ଚଢ଼ିପାରନ୍ତି ସେଠି ଯାଇ ପହଞ୍ଚିପାରନ୍ତି ତ କେଡ଼େ ଭଲ ହୁଅନ୍ତା । କିନ୍ତୁ ଏକୁଲା ଚଢ଼ିବାର ସାହସ କରିପାରେ ନାହିଁ । ଖାଲି ଏମିତି ଆଶା କରି ସେ ଦେଖୁଥାଏ । ତାର ଏପରି ଗୋଟିଏ ଇଚ୍ଛା ଯାହା କି କେବେ ପୂରଣ ହୋଇପାରେ ନାହିଁ । କହନ୍ତି, ସେ ପାହାଡ଼ ଉପରେ କେହି ମହାତ୍ମା ରହନ୍ତି । ମିଲା ତାଙ୍କୁ କେବେହେଲେ ଦେଖିପାରିନାହିଁ ନା ସେ ବି କେବେହେଲେ ତଳକୁ ଆସିନାହାନ୍ତି । ଉପରଯାଏ କେହି ପହଞ୍ଚି ପାରିନାହାନ୍ତି । ପ୍ରତିଦିନ ରାତିରେ ପାହାଡ଼ ଉପରେ ଦୀପ ଜଳିଲା ପରି ଦେଖାଯାଏ । ଅନେକ ବେଳଯାଏ ଧପ୍ ଧପ୍ ହୋଇ ଜଳୁଥାଏ । ଏଇଥିପାଇଁ ଲୋକେ କହନ୍ତି, ସେଠି କୌଣସି ଯୋଗୀ ରହନ୍ତି ।

ସେହି ପାହାଡ଼ର ପାଦଦେଶରେ ମିଲାର କୁଟୀର । ସେଥିରେ ମିଲା ଏବଂ ତାର ଆଈମା' ବ୍ୟତୀତ କେହି ନ ଥାନ୍ତି । ପାହାଡ଼ ପଛରେ କିଛି ଦୂରରେ ଗୋଟିଏ ଛୋଟ ଗାଁ ଅଛି । ଯେତେବେଳେ ମିଲାର ମା' ଜୀବିତ ଥିଲେ ମିଲାର ଆଈମା ସେଇଠି ରହୁଥିଲେ । ଆଈମା' କେବେ କେବେ କହନ୍ତି—"ଝିଅ ! ଯେତେବେଳେ ତୋ ମା' ତୋ ବୟସର ହୋଇଥିଲା ସେତେବେଳେ ଆମେ ସେଇଠି ରହୁଥିଲୁ । ତୋ ମା'

ପ୍ରତିଦିନ ଏହି ଜଳଧାର ପାଖକୁ ଆସୁଥିଲା; ପଶୁମାନଙ୍କୁ ଚରାଉ ଚରାଉ ଘୁରୁଥିଲେ । ଦିନେ ଏଠି କାହା ସହିତ ତାର ଭେଟ ହୋଇଗଲା । ତାର ଚିନ୍ତା ଯାହାକୁ ଲାଗି ରହିଲା । ସେ ମଧ୍ୟ ଫେରେ ଆସିବାର ପ୍ରତିଶ୍ରୁତି ଦେଇଥିଲା; କିନ୍ତୁ ସେ ଆସିଲା ନାହିଁ । ତତେ ଜନ୍ମଦେଇ ତୋ ମା' ବେମାର ହୋଇ ମରିଗଲା । ସେହି ଆଗରେ ଯେଉଁ ଆମ୍ବଗଛ ଦେଖୁଛୁ ସେଇଠି ତାର ଅନ୍ତ୍ୟେଷ୍ଟି କ୍ରିୟା ହୋଇଥିଲା । ତୋ ମା' ଚାହୁଁଥିଲା ଆମେ ସବୁ ଦିନ ପାଇଁ ସେ ଜଳଧାର ପାଖରେ ରହୁ । ସେ ଆମ୍ବଗଛ ମୁଁ ହିଁ ଲଗାଇଥିଲି । ତାକୁ ଦେଖିଲେ ମୋର ମନେ ହୁଏ ମୁଁ ତୋର ମା'କୁ ଦେଖୁଛି । ସେଥିରେ ବଉଳ ଆସିଲେ ତୋ ମା'ର ହସ ମୋର ମନେ ପଡ଼େ । ସେଥିପାଇଁ ମୁଁ ଗାଁ ଛାଡ଼ି ଏଠି ଆସି ରହିଲି ।" ମା'ର ସାରା ଜୀବନ ଛବି ପରି ତାକୁ ଦିଶିଗଲା । ସେହି ଆମ୍ବଗଛକୁ ଚାହିଁଲେ ତାକୁ ବି ଲାଗିଲା ତା ମା'କୁ ଦେଖିଲା ପରି ।

ଆଇମା' ପାଖରେ ଯୋଡ଼ାଏ ମଇଁଷି ଓ କେତୋଟା ଛେଳି ବ୍ୟତୀତ ଆଉ କିଛି ସମ୍ପତ୍ତି ନାହିଁ । ସେଗୁଡ଼ିକୁ ଦେଖିବା-ଶୁଣିବା ଭାର ତାଙ୍କର; କିନ୍ତୁ ତାଙ୍କୁ ଖୁଆଇବା ପିଆଇବା କିଛି କଷ୍ଟକର କାମ ନୁହେଁ । ସେମାନେ ନିଜେ ନିଜେ ପାହାଡ଼ ଉପରେ ଚରିବୁଲନ୍ତି; ପୁଣି ସନ୍ଧ୍ୟାବେଳକୁ ଆପେ ଆପେ ଘରକୁ ଫେରିଆସନ୍ତି । ସେମାନଙ୍କ ପାଇଁ ଚିନ୍ତା କରିବା କିଛି ଦର୍କାର ପଡ଼େ ନାହିଁ । ସେ ନିଜେ ବଡ଼ ଆରାମରେ କେତେବେଳେ ପାଣି ପାଖରେ କେତେବେଳେ ଗଛଗୁଡ଼ିରେ ବୁଲୁଥାଏ । ଯେଉଁଠି କେହି ସାଥୀ ମିଳନ୍ତି ନାହିଁ, ସେଠି ଗଛର ଫୁଲ, ପଶୁପକ୍ଷୀ ତାର ସାଥୀ ହୁଅନ୍ତି । ପତ୍ରର ମର୍ମରଧ୍ୱନି, ପକ୍ଷୀଙ୍କର କାକଳି ସେ ଶୁଣୁଥାଏ । ଯେତେବେଳେ ପକ୍ଷୀ-ଦଳ ଏକାଠି ହୋଇ ଗୋଟାଏ ଜାଗାରୁ ଅନ୍ୟ ଜାଗାକୁ, ଗୋଟିଏ ଡାଳରୁ ଅନ୍ୟ ଡାଳକୁ, କେତେବେଳେ ଏକା, କେତେବେଳେ ଦଳ ହୋଇ ଉଡ଼ୁଥାଆନ୍ତି ସେ ନିଜେ ଅନ୍ୟ କୌଣସି ଦୁନିଆରେ ଥିଲା ପରି ତାର ମନେ ହୁଏ । ସର୍ବଦା କିଛି ନୂତନତା, କିଛି ଆଶ୍ଚର୍ଯ୍ୟତା ସେ ଅନୁଭବ କରେ । ଗତି-ବାଧା କିଛି ଅଭାବ ନାହିଁ । ଶୂନ୍ୟତା କେବେ ଅନୁଭବ କରେ ନାହିଁ ।

ପାହାଡ଼ କଡ଼ରେ କିଛି ଉଞ୍ଚା ଜାଗା ଅଛି, ସେଠି ଦୁଇଟି କୁଡ଼ିଆ ଅଛି । ଗୋଟିକରେ କୋକିଳା ଏବଂ ଗଣପତି ରହନ୍ତି । ଯେବେ କେହି ବିଦେଶୀ ପାହାଡ଼ ଦେଖିବା ପାଇଁ ଆସନ୍ତି ତ ସେଇଠି ଦିନେଖଣ୍ଡେ ରହିଯାଆନ୍ତି । କୋକିଳା ସେମାନଙ୍କୁ ରାନ୍ଧିବାଢ଼ି ଖୁଆଏ, ଗଣପତି ତାଙ୍କୁ ପାହାଡ଼ ବୁଲାଇ ଦେଖାଏ । କୋକିଳା ଆଇମା'କୁ ସାହାଯ୍ୟ କରେ । ଖାଇବେଳେ ଦୁହେଁ ପରସ୍ପର ଭିତରେ ଗପସପ କରନ୍ତି । ତଳ କୁଡ଼ିଆରୁ ଆଇମା' ଜୋରରେ ପାଟି କରି କିଛି କହେ ଆଉ ଉପର କୁଡ଼ିଆରୁ କୋକିଳା ତାର ଉତ୍ତର ଦିଏ । ପ୍ରାୟ ପଶୁମାନଙ୍କ ବିଷୟରେ ବା ମେଘ ବିଷୟରେ ନହେଲେ ଝରୁଥିବା ପତ୍ରଗୁଡ଼ିକ ବିଷୟରେ କଥାବାର୍ତ୍ତା ହୁଅନ୍ତି । କେବେ କେବେ ସେ ଦୁହେଁ ଏକାଠି ହୋଇ ପାଖରେ ଥିବା ଗାଁକୁ ଯାଆନ୍ତି । ସେଠି ଲୋକଙ୍କର ଭଲମନ୍ଦ ପଚାରି କିଛି ଜିନିଷ କିଣା-

କଣି କରି ସନ୍ଧ୍ୟାକୁ ଘରକୁ ଫେରିଆସନ୍ତି ।

ପାହାଡ଼ କଡ଼ରେ ଛିଡ଼ା ହୋଇ କରିକୁ ଚାହିଁଲେ ଗୋଟିଏ ଘାଟି ଦେଖାଯାଏ । ଦୁଇ ପାଖରେ ସବୁଜ ବୃକ୍ଷଲତାଭରି ଉଚ୍ଚ ଉଚ୍ଚ ପାହାଡ଼; ମଝିରେ ସରୁ ରାସ୍ତା ଧଳା ସାପଟିଏ ବଙ୍କେଇ-ତଙ୍କେଇ ଚାଲିଲା ପରି ଦେଖାଯାଏ । ସେ ରାସ୍ତା ତଳାଇ ପର୍ଯ୍ୟନ୍ତ ଆସି ଶେଷ ହୋଇଯାଏ । ଦୂରରୁ ଆସୁଥିବା ଗାଡ଼ି ଇତ୍ୟାଦି ସେଇଠି ଆସି ଅଟକିଯାଆନ୍ତି । ତାଠାରୁ ଉପରକୁ କିଏ ଯିବାକୁ ଚାହିଁଲେ ତାକୁ ଚାଲିକରି ପାହାଡ଼ି ରାସ୍ତାଦେଇ ଯିବାକୁ ପଡ଼ୁଥିଲା ।

ଦିନେ ଖରାବେଳେ ମାଳା ଜଳପ୍ରପାତ ପାଖରେ ଘାସ ଉପରେ ଶୋଇଥିଲା । ନିଦ ଭାଙ୍ଗିଲା ବେଳକୁ ସନ୍ଧ୍ୟା ହୋଇଆସୁଛି । ସନ୍ଧ୍ୟାର ଅରୁଣିମା ପାଣିରେ ଖେଳି ଯାଇଥିଲା । ଗଛପତ୍ର ମଝିରେ ଟିକେ ଟିକେ ଖରା ଚମକୁଥିଲା । ଅଳସ ଭାଙ୍ଗି ମାଳା ଏପାଖ ସେପାଖ ଅନାଇ ଦେଖିଲା ପୋଖରୀ ସେପଟେ କିଏ ଜଣେ ବସିଛି, ଘାସ ଖଣ୍ଡେ ଖଣ୍ଡେ ନେଇ ଖେଳୁଛି, ମାଳା ଆଡ଼କୁ କ୍ଷୀଣ ଦୃଷ୍ଟିରେ ଚାହିଁଛି । ମାଳା ଚମକି ପଡ଼ିଲା । ଜଣାନାହିଁ ସେ କିଏ, ନୂଆ ଚେହେରା ଦିଶୁଛି, ଆଗରୁ କେବେ ଦେଖିନାହିଁ । କେଜାଣି କେତେବେଳୁ ଆସିଛି । ହୋଇପାରେ, ଯେତେବେଳେ ସେ ଶୋଇ ପଡ଼ିଥିଲା । ସେତିକି ବେଳୁ ବସିଛି ! ଜଣାନାହିଁ କେତେବେଳୁ ତା ଆଡ଼କୁ ଏହିପରି ଅନାଇ ରହିଛି ! ଲଜ୍ଜାରେ ସେ ସଙ୍କୁଚିତ ହୋଇ ଉଠିଲା । ସେ ଚାହୁଁଥିଲା ନିଜର ଖୋଲିଲା ପଡ଼ିଥିବା ତାର ଚେହେରାକୁ କୋଉଠି ଲୁଚାଇଦବାକୁ । କାନ ମଧ୍ୟ ବିଶେଷ ବଡ଼ ନୁହେଁ । ସେ ଗୋରା ହୋଇ ବହୁତ ସୁନ୍ଦର ଦେଖିବାକୁ । ତାର ଲୁଗାପଟା ମଧ୍ୟ ମଲ୍ଲୀଫୁଲ ପରି ସଫାସୁତୁରା ଓ ଧଳା । ମାଳାର ମୁହଁ ଶୁଖିଗଲା ।

ସେ ପାହାଡ଼ ଇଲାକାରେ ଏତେ ସଫା-ସୁତୁରା ଲୋକ ପ୍ରାୟ ଦେଖାଯାଆନ୍ତି ନାହିଁ । ଏପରି ଧୂଆ ହୋଇଥିବା ଲୁଗା ମଧ୍ୟ କେହି ପିନ୍ଧନ୍ତି ନାହିଁ । ମାଳାକୁ ଯେ ଲୋକ କେଉଁ ଦେବଲୋକରୁ ଆସିଥିଲା ପରି ମନେ ହେଲା । ସେ ଆଶ୍ଚର୍ଯ୍ୟ ହୋଇ ତାର ଆଡ଼କୁ ଅନାଇ ରହିଲା । ପାଣି କୂଳେ କୂଳେ ଦୁଇଟି ଧଳା ଗୁଣ୍ଡୁଚିମୁଷା ଏପାଖ ସେପାଖ ଦୌଡ଼ୁଛନ୍ତି । ଗଛଡାଳ ଉପରୁ ଧଳା ଚଢ଼େଇଟିଏ ଫୁର୍ କରି ଉଡ଼ିଗଲା । ମାଳା ପ୍ରକୃତିସ୍ଥ ହୋଇ ବାସ୍ତବତାକୁ ବୋଧକଲାରୁ ପାହାଡ଼ରୁ ଓହ୍ଲାଇ ନିଜ କୁଟୀର ଆଡ଼କୁ ଦୌଡ଼ିଗଲା । ଆଈମା' ପାଖରେ ପହଞ୍ଚି କହିଲା ସେ କେହି ନୂଆ ଲୋକ ଜଣେ ଆସିଛି । ଆଈମା' କହିଲେ—"ହଁ, ମୁଁ ଜାଣିଛି । ଖରାବେଳେ ଆସିଛି । ଉପରେ ଥିବା କୁଡ଼ିଆରେ ରହୁଛି ।" କୋକିଳା କହିଲା "ସେ କାଲିକି ଏଇଠି ରହିବ ।" ମାଳାର ମୁହଁ ପ୍ରସ୍ଫୁଟିତ ହୋଇଉଠିଲା; କାଲି ସାରା ଦିନ ସେ ତା ସାଥିରେ ରହିବ । ଦିନସାରା ସେ ତାକୁ ଦେଖିପାରିବ; ତା ସହିତ କଥାବାର୍ତ୍ତା ହୋଇ ପାରିବ । ସେ ପାହାଡ଼ରେ ଯେତିକି ତାର ମନ-ପସନ୍ଦ ଜାଗା ଅଛି ସେସବୁକୁ ସେ ତାକୁ ଦେଖାଇପାରିବ । ସେ ପାହାଡ଼ରେ ଯେତେକ ଗଛବୃକ୍ଷ ଅଛି ସେସବୁର ନା ଜାଣିଛି । ସେ କିନ୍ତୁ ଜାଣି ନଥିବ । ମାଳା

ସବୁର ନାଁ ବତାଇଦେଲେ ସେ ଆଶ୍ଚର୍ଯ୍ୟ ହୋଇଯିବ । ଏହିସବୁ କଳ୍ପନାରେ ସେ ହଜିଗଲା । ସାଧାରଣତଃ ଗଛଲତା, ପକ୍ଷୀ ଝରଣା, ହ୍ରଦ ଏ ସବୁ ବ୍ୟତୀତ ତାର ଆଉ ସାଥୀ କେହି ନ ଥିଲେ । ସେ ଦିନ ସେହି ପୁରୁଷର କଳ୍ପନାମାନେ ଯେ ପ୍ରସନ୍ନ ହୋଇଉଠିଲା । ସେହି ଗୋଟିଏ କ୍ଷଣ ମଧ୍ୟରେ ତା ମନ ତା ପ୍ରତି ଏତେ ନଇଁଗଲା ଯେ ତାର ମନେ ହେଲା ଯେ ତାର ତା ସଙ୍ଗେ ଜନ୍ମ-ଜନ୍ମାନ୍ତରର ସମ୍ବନ୍ଧ ଅଛି । କାଲିର ପ୍ରତୀକ୍ଷାରେ ସେ ଆଜି ଶୋଇପଡ଼ିଲା ।

ସକାଳୁ ଉଠୁ ଉଠୁ ସେ ସେ ହ୍ରଦ ପାଖକୁ ଦୌଡ଼ିଗଲା । ପାଣିରେ ମୁହଁ ଧୋଇ-ନେଲା । ଓଦା ହାତରେ ବାଳ ସଜାଡ଼ି ଖୋଷା କରନେଲା । ଜୀବନରେ ପ୍ରଥମ ଥର ପାଇଁ ତାର ତା ନିଜ ସୌନ୍ଦର୍ଯ୍ୟ ଉପରେ ସନ୍ଦେହ ହେଲା । ନଇଁପଡ଼ି ପାଣିରେ ତାର ନିଜର ପ୍ରତିବିମ୍ବ ଦେଖିଲା । ସେଥିରେ ନିରାଶା ହେଲା ତାର । ସେ ନିଜଠେଇଁ କିଛି ସୌନ୍ଦର୍ଯ୍ୟ ଦେଖିପାରିଲା ନାହିଁ । ଦେହର ରଙ୍ଗ କଳା, ଆଖି ଭିତରକୁ ପଶିଯାଇଛି । ବାଳକୁ ସଜାଡ଼ିବାକୁ ବହୁତ ଚେଷ୍ଟା କଲା; କିନ୍ତୁ ସେ ଝାମ୍ପୁରି ହୋଇ ରହିଛି । ଏ ପର୍ଯ୍ୟନ୍ତ ସେ ତାର ରୂପରେଖ ପ୍ରତି ଧ୍ୟାନ ଦେଇ ନ ଥିଲା । ବର୍ତ୍ତମାନ ସେ ରୂପ ତାର ପସନ୍ଦ ଆସିଲା ନାହିଁ । ଦୌଡ଼ିକରି ସେ ଘରକୁ ଗଲା । ପେଟରାରେ ସବୁଠୁଁ ତଳେ ରଖାହୋଇଥିବା ରଙ୍ଗୀନ ଶାଢ଼ି କାଢ଼ି ପିନ୍ଧିଲା । ତେବେ ଯାଇ ତା ମନରେ ଟିକେ ଆଶ୍ୱାସନା ଆସିଲା । କଳା ଶାଢ଼ିରେ ନାଲି ନାଲି ଛିଟ ତାକୁ ବହୁତ ଭଲ ଲାଗିଲା ।

ଦିନ କେତେ ଗଡ଼ିଗଲା ପରେ ସେ ପୁରୁଷ ଜଳପ୍ରପାତ ପାଖକୁ ଆସିଲା । ତାର ଦୁଇ ହାତରେ ଧଳା ଫୁଲର ଗୁଚ୍ଛ, ଜଣାପଡ଼ୁଛି । ପାହାଡ଼ ଉପରେ ବୁଲିବୁଲି-ବେଳେ ଏକାଠି କରିଛି । ମାଲା ତା ଆଡ଼କୁ ଅନାଇ ହସିଦେଲା । ସେ ମଧ୍ୟ ହସିଲା । ଆଜି ସେ ନୂଆ ଲୋକ ନୁହେଁ, କେତେ ଦିନର ପରିଚିତ ମନେ ହେଉଛି । ମାଲା ହିଁ ଆଗ କଥା କହିଲା—"କଣ ପାହାଡ଼ ଦେଖିବାକୁ ଆସିଛନ୍ତି ?" ସେ କହିଲା—'ହିଁ' । ମାଲା ଉତ୍ସାହିତ ହୋଇ ପୁଣି କହିଲା—"ମୋର ନାମ ମାଲା । ଆମେ ଏଇଠି ରହୁ । ମୁଁ ଏ ପାହାଡ଼ର ଅନ୍ଧିସନ୍ଧି ଜାଣିଛି । ମୁଁ ଆପଣଙ୍କୁ ସବୁ ଦେଖାଇ ଦେଇପାରିବି ।" ସେ ଆଗ୍ରହ ପ୍ରକାଶ କଲା ନାହିଁ । ବଡ଼ ନିର୍ଲିପ୍ତ ଭାବରେ କହିଲା—"କାଲି ମୁଁ ବହୁତ କିଛି ଦେଖିଛି । ଗଣପତି ମୋ ସାଥିରେ ଥିଲା ।" ପାଣି ପାଖରେ ଘାସ ଉପରେ ଗୋଡ଼ ଲମ୍ବାଇ ସେ ବସିପଡ଼ିଲା । ତା ହାତରେ ଯେଉଁ ଫୁଲ ଥିଲା ତାକୁ କେତେବେଳେ ଅଲଗା ଅଲଗା କରୁଥାଏ, କେତେବେଳେ ଯୋଡ଼ି ଯୋଡ଼ି କରି ଧରି ଖେଳୁଥାଏ ।

ମାଲା ତା ପାଖରେ ହିଁ ବସିଛି । ତା ମୁଣ୍ଡରେ କେତେ ପ୍ରଶ୍ନ ଉଠୁଛି ଯାହା ସେ ତାକୁ ପଚାରିବାକୁ ଚାହୁଁଛି । ପ୍ରଥମେ ତାର ନାଁ ପଚାରିଲା ।

"ମୈତ୍ରେୟ" ସେ ଜବାବ ଦେଲା । ତାକୁ ସେ ନାଁ ଅଦ୍ଭୁତ ଲାଗିଲା । ମନେ ମନେ 'ମୈତ୍ରେୟ, ମୈତ୍ରେୟ' ବାରମ୍ବାର ଘୋଷିବାକୁ ଲାଗିଲା । ତେବେ ଫେର୍ ସେଇ ନାଁ ତାକୁ ଭଲ ଲାଗିଲା । ପୁଣି ତା ଗାଁ କୋଉଠି ପଚାରିଲା । ସେ କଣ ଗୋଟାଏ ନାଁ

କହିଲା; ତାକୁ ଜଣାନାହିଁ ସେ ଗାଁ କୋଉଠି । ସେଇ ପାହାଡ଼ ଗୁଡ଼ା ଯେ ବାହାରକୁ ଯାଇନାହିଁ । ସେ ଭାବିଲା ବୋଧହୁଏ ସେ ଗାଁ ବହୁତ ଦୂରରେ ହୋଇଥିବ । କରି ଆଡ଼କୁ ମୋଡ଼ ଚାହିଁଲେ ଘାଟିପଥରେ ଅଙ୍କା-ବଙ୍କା ଧଳା ରାସ୍ତା ଦେଖାଗଲା, ସେ ଭାବିଲା, ବୋଧହୁଏ ଏହି ରାସ୍ତାଦେଇ ଗଲେ ତାର ଗାଁ ପଡ଼ିବ । ଘାଟି ଆଡ଼େ ନିର୍ଦ୍ଦେଶ କରି ସେ ଯୁବକକୁ ପଚାରିଲା—"ଆପଣ ଏହି ରାସ୍ତାଦେଇ ଆସିଲେ ?" ସେ କହିଲା—"ହଁ ।" ସେ ଫେର ପଚାରିଲା—"ଆପଣଙ୍କ ଗାଁ କଣ ଏଠୁ ବହୁତ ଦୂରରେ ?" ସେ ହସି ଦେଇ କହିଲା—"ହଁ, ଦୂର ତ ।" ଏହା ପରେ କଣ ପଚାରିବା ଉଚିତ ତାକୁ ଜଣା ନଥିଲା । ସେ ବ୍ୟକ୍ତି ନଈପଡ଼ା ପାଣିରେ ହାତ ଭିଜି ଖେଳିବାକୁ ଲାଗିଲା । ଯେଉଁ ଫୁଲ ହାତରେ ଥିଲା, ସେଗୁଡ଼ିକ ସେ ଗୋଟି ଗୋଟି କରି ପାଣିରେ ପକାଉଥାଏ । ମାଲା ଝୁଙ୍କିପଡ଼ି ପାଣିରେ ହାତ ପୂରାଇ ପଡ଼ୁଥିବା ଫୁଲ ଆଡ଼େ ହାତ ବଢ଼ାଇ ଗୋଟିଏ ଗୁଚ୍ଛା ଧରିନେଲା । ଫୁଲଗୁଚ୍ଛ ହାତରେ ପାଇ ସେ ଏତେ ଆନନ୍ଦିତ ହେଲା ଯେପରି କେଉଁ ଅପୂର୍ବ ବସ୍ତୁ ତା ହାତରେ ପଡ଼ିଯାଇଛୁ । ଖୁସି ହୋଇ ସିଏ ଯୁବକ ଆଡ଼କୁ ଚାହିଁଲା । ଯୁବକ ଏ କଥାର ଖିଆଲ କଲା ନାହିଁ । ଗୁଣୁଗୁଣୁ ହୋଇ ଗୀତ ଗାଇ ସେ ହାତଗୋଡ଼ ପାଣିରେ ହଲାଇ ମନକୁ ମନ ପାଣିରେ ଖେଳୁଥାଏ । ତାର ବଡ଼ କୌତୂହଳ ହେଲା । ଗୀତ ତାର ବହୁତ ପସନ୍ଦ ଥିଲା । ଆଈମା' ଯେଉଁ ଗୀତ ଶିଖାଇଥିଲା ସେ ସବୁବେଳେ ଏକା ଏକା ଗାଉଥାଏ । ତାକୁ ଆଉ କୌଣସି ଗୀତ ଜଣାନାହିଁ । ସେ ଯୁବକକୁ ପଚାରିଲା—"ଆପଣ ଗୀତ ଗାଇପାରନ୍ତି ?" ସେ ହସି କରି କହିଲା—"ମୁଁ ଗୀତ ଗାଇ ଜାଣେନାହିଁ । ଗୀତ ଲେଖେ; ଗାଏ ନାହିଁ ।" ଏ ଉତ୍ତରରୁ ସେ କିଛି ବୁଝିପାରିଲା ନାହିଁ । ସେ ଯୁବକର ଗୀତ ଶୁଣିବାକୁ ମାଲାର ବହୁତ ଇଚ୍ଛା ହେଲା । ସେ ରହିପାରିଲା ନାହିଁ, ଯୁବକକୁ ବାରମ୍ବାର ଗୀତ ଗାଇବାକୁ ଅନୁରୋଧ କଲା । ସେ ତା କଥାରେ ଧ୍ୟାନ ଦେଲା ନାହିଁ, ଜବାବ ମଧ୍ୟ ଦେଲା ନାହିଁ । ଆସ୍ତେ ଆସ୍ତେ ଗାଉଥିବା ଗୀତ ମଧ୍ୟ ବନ୍ଦ କରିଦେଲା । ମାଲା ନିରାଶ ହୋଇଗଲା । କିଛି ସମୟ ପରେ ସେ ପଚାରିଲା—"ପାହାଡ଼ର ସେ ଶୃଙ୍ଗ ଉପରକୁ କେହି କେବେ ପହଞ୍ଚିଛି ?" ମାଲାର ପୁଣି ଆଗ୍ରହ ଜନ୍ମିଲା । ସେ କୌତୂହଳପୂର୍ଣ୍ଣ ସ୍ୱରରେ କହିଲା—"ନାହିଁ, ବହୁତ ଦିନ ହେଲା ମୁଁ ଜାକେ ଯିବାକୁ ଚାହୁଁଛି; କିନ୍ତୁ ଏକଲା ଯିବାକୁ ଡର ମାଡ଼ୁଛି । ଲୋକେ କୁହନ୍ତି ସେ ସେଠି କେହି ଯୋଗୀ ରହନ୍ତି ବୋଲି; ବାସ୍ତବରେ ସେଠି ଯୋଗୀ ରହନ୍ତି କି ନାହିଁ, କେହି ଜାଣନ୍ତି ନାହିଁ ।"

ଏଥର ଯୁବକ କୌତୂହଳ ପ୍ରକାଶ କଲା ।

"ଆଜି ମୁଁ ଉପର ପର୍ଯ୍ୟନ୍ତ ଯିବି" ଜୋର୍ ଦେଇ କହିଲା । ମାଲା ବଡ଼ ଉତ୍ସାହରେ କହିଲା—"ମୁଁ ମଧ୍ୟ ସାଙ୍ଗରେ ଯିବି ।" ସେ ଭାବିଲା, ଏଡ଼େ ଉଚ୍ଚ ପାହାଡ଼ ଉପରକୁ ଏହି ଯୁବକ ସାଙ୍ଗରେ କଥାବାର୍ତ୍ତା ହୋଇ ଚଢ଼ିବାରେ ବହୁତ ଆନନ୍ଦ ଆସିବ । କିନ୍ତୁ ସେ ଜବାବ ଦେଲା ନାହିଁ । ସେ 'ହଁ', କି 'ନାଁ' କିଛି କହିଲା ନାହିଁ । ଜଳଧାରର ପାଖେ

ପାଖେ ବୁଢ଼େଇ ଉପରକୁ ଚଢ଼ିବା ଆରମ୍ଭ କଲେ । ଗୁଣ୍ଡା ପରି, ଅଧୀର ହୋଇ, ସେ ପଛେ ପଛେ ଚାଲିଥାଏ; କିନ୍ତୁ ସିଏ ପଛକୁ ଫେରି ଚାହିଁଲା ମଧ୍ୟ ନାହିଁ । ସେ ଜଲଦି ଜଲଦି ଉପରକୁ ଚଢ଼ି ଯାଉଥାଏ; ମାଲା ଧୀରେ ଧୀରେ ପଛରେ ଚାଲିଥାଏ ।

ସେ ତା ସାଙ୍ଗରେ ଚାଲିପାରିଲା ନାହିଁ । କିଛି ସମୟ ପରେ ସେ ଆଖିଆଗରୁ ଅଦୃଶ୍ୟ ହୋଇଗଲା । ମାଲା ନିରାଶ ହୋଇପଡ଼ିଲା । ତାର ନିଃଶ୍ୱାସ ରୁଦ୍ଧ ହୋଇଗଲା । ସେ କାନ୍ଦିପକାଇଲା ଓ ସେଇଠି ବସିପଡ଼ିଲା । ବସି ବସି ସେ ଭାବିଲା—ସିଏ ସେ ଯୁବକ ସହିତ ଉପରକୁ ଚଢ଼ିବାକୁ ଚାହୁଁଛି; କିନ୍ତୁ ସେ ଯୁବକ ଚାହୁଁ ନାହିଁ ଯେ ତା ସାଥିରେ ଆସୁ । ପାହାଡ଼ର ଶିଖର ଦେଖିବା ଇଚ୍ଛା ଆଉ ଏବେ ତାର ପୂରା ହୋଇ ପାରିବ ନାହିଁ । ତାର ବହୁତ ମନଦୁଃଖ ହେଲା । ତାକୁ ସାରା ପାହାଡ଼ ଶୂନ୍ୟ ଲାଗିଲା । କୋଉଠୁ ତାର ଗୀତର ସ୍ୱର ଶୁଭୁଛି, ସେ ଚମକି ପଡ଼ିଲା । ଖୁସିରେ ଆତ୍ମହରା ହୋଇ-ପଡ଼ିଲା । ଗୀତର ସୁର ତାକୁ ଶୁଣାଯାଉଛି; କିନ୍ତୁ ଗୀତର ଶବ୍ଦ ସ୍ପଷ୍ଟ ହେଉନାହିଁ । ବୋଧହୁଏ ସେ ସେହି ଗୀତ ଲେଖିଛି । ସେ ଭାବିବାକୁ ଲାଗିଲା ଏହାର ମାନେ କଣ ହୋଇପାରେ । ମନ ତାର ଫେରେ ଉଦାସ ହୋଇଗଲା । ଅଳ୍ପ ସମୟ ପରେ ସେ ତଳକୁ ଓହ୍ଲାଇ ଆସି ଘରକୁ ଚାଲିଗଲା ।

ଦ୍ୱିପ୍ରହରରେ ପୁଣି ସିଏ ସେ ଯୁବକକୁ ଦେଖିଲା । ଜଳଧାର ପାଖରେ ଯେ ଯୁବକକୁ ଦେଖୁଦେଖୁ ସିଏ ସବୁ ଦୁଃଖ ଭୁଲିଗଲା । ବଡ଼ ଉତ୍ସୁକ ହୋଇ ପଚାରିଲା—"କଣ ଆପଣ ଉପରଯାଏ ଯାଇ ଆସିଲେ ? ଯୋଗୀକୁ ଦେଖିପାରିଲେ ? ସେ ଆପଣଙ୍କୁ କଥା କହିଲେ ?" ସକାଳ ପରି ଯୁବକ ନିସ୍ତେଜ ଭାବରେ ଜବାବ୍ ଦେଲା—"ନାହିଁ, ମୁଁ ଉପରଯାଏ ଯାଇପାରିଲି ନାହିଁ, ଅଳ୍ପ ଦୂର ଯାଇ ଫେରିଆସିଲି ।" ସେ ପୁଣି ହତାଶ ହୋଇଗଲା । ଅନ୍ୟମନସ୍କ ହୋଇ ଘାଟି ଆଡ଼େ ଚାହିଁଲା । ତାର ମନ ଦବିଗଲା ସେ ରାସ୍ତା ଦେଖୁ ଦେଖୁ । "ଆଜି ଚାଲିଯିବେ ?" ସେ ବଡ଼ କରୁଣ କଣ୍ଠରେ ପଚାରିଲା ।

"ହଁ, ବର୍ତ୍ତମାନ ଅଳ୍ପ ସମୟ ମଧ୍ୟରେ ବାହାରିବି ।" ଯୁବକ ଉତ୍ତର ଦେଲା । ମାଲାର ଚେହେରା ଝାଉଁଳି ପଡ଼ିଲା । ସେ ଥରେ ସେହି ଘାଟିରାସ୍ତାରେ ଯାଇଥିଲା । ସେ ରାସ୍ତାରେ ସେ ବହୁତ ଦୂର ଯିବାକୁ ଚାହୁଁଥିଲା । ଅଳ୍ପ ବାଟରେ ଗୋଟିଏ ପୋଖରୀରେ ପାଣି ଚକମକ ହେଉଛି ଦେଖି ସେ ପାଣି ପାଖକୁ ଯିବାକୁ ଚାହୁଁଥିଲା; କିନ୍ତୁ ସାହସ ହେଲା ନାହିଁ । ଭୟ ଏବଂ ସଙ୍କୋଚରେ ସେ ଗୋଟାଏ ପାଦ ବି ଆଗକୁ ଯାଇ ପାରିଲା ନାହିଁ ଏବଂ ସେଇଠୁ ଫେରିଆସିଲା । ହଠାତ୍ ତାର ସେହି ଘଟଣା ମନେ ପଡ଼ିଗଲା । ସେ କହିଲା—"ସେ ରାସ୍ତାରେ ଅଳ୍ପ ଦୂରରେ ଗୋଟିଏ ବଡ଼ ପୋଖରୀ ଅଛି ନା ? ସେଥିରେ ପାଣି ବହୁତ ଚମକୁଥାଏ । ସେ ହସିପକାଇଲା ଓ କହିଲା—"ପୋଖରୀ ନାହିଁ, କିଛି ନାହିଁ ।" ମାଲାର ବିଶ୍ୱାସ ହେଲା ନାହିଁ । ତା'ର ସନ୍ଦେହ ପ୍ରକାଶ କରି କହିଲା—"ଥରେ ମୁଁ ସେହି ରାସ୍ତାରେ ଯାଇଥିଲି । ଦୂରରେ ଚମକୁଥିବା

ପାଣି ଖୁବ ସୁନ୍ଦର ଦିଶୁଥିଲା । ଏକଲା ଥିବାରୁ ମୁଁ ପାଖଯାଏ ଯାଇପାରିଲି ନାହିଁ ।"
ଏହା ଶୁଣି ଯୁବକ କହିଲା—"ଖରାରେ ଏହିପରି ହିଁ ଦେଖାଯାଏ । ଆମେ ଯେତିକି
ଯେତିକି ପାଖକୁ ଯାଉ, ସେ ସେତିକି ସେତିକି ଦୂରକୁ ଚାଲିଯାଏ ।" ମାଳାର ମନ
ଉଦାସ ହୋଇଗଲା—"ପାଣିରେ ଭରିଥିବା ପରି ଦେଖାଯାଏ; କିନ୍ତୁ ପାଣି ନଥାଏ"
ଏ କଥା ତାକୁ କିଛି ଠିକ୍ ଜଣାଗଲା ନାହିଁ, ତାର ଏହି ଝାଉଁଳି ପଡ଼ିଥିବା ଜୀବନ ପରି
ଲାଗିଲା ।

କିଛି ସମୟପରେ ଗଣପତି ଆସିଗଲା । ତା ହାତରେ ବଡ଼ ଥଳିଟିଏ । ଯୁବକ ଆଡ଼େ
ଚାହିଁ ଗଣପତି କହିଲା, "ସନ୍ଧ୍ୟା ପୂର୍ବରୁ ଆପଣ ଏଠୁ ବାହାରିବା ଦରକାର । ଚାଲନ୍ତୁ, ମୁଁ
ଆପଣଙ୍କୁ କିଛି ବାଟ ଆଗେଇଦେଇ ଆସୁଛି ।" ଏହା କହି ସେ କୂଦ ଉପରୁ ତଳକୁ
ଯିବାକୁ ଲାଗିଲା । ସେ ଯୁବକ ଅଳସ ଭଙ୍ଗି ଉଠି ଛିଡ଼ାହେଲା । ମାଳା ଆଡ଼େ ଚାହିଁ
ଟିକେ ହସି ଦେଇ ଗଣପତି ପଛେ ପଛେ ଚାଲିଲା । ମାଳା ତାକୁ ଦେଖିବାକୁ ସେଇଠି
ଛିଡ଼ା ହୋଇପଡ଼ିଲା । ତାର ମନ ଖାଲି ଖାଲି ଲାଗୁଛି । ସେ ଯୁବକ ଯେତିକି ଦୂରକୁ
ଯାଉଥାଏ ତାର ମନ ସେତିକି ଉଦାସ ହୋଇଯାଉଥାଏ । ସେ ଥରେ ବି ପଛକୁ
ଫେରି ଚାହିଁଲା ନାହିଁ କି ଇଙ୍ଗିତ ଥରେ ହେଲେ ତାର ଦୃଷ୍ଟି ତା ଉପରୁ ହଟାଇଲା
ନାହିଁ । କିଛି ସମୟ ପରେ ସେ ଆଉ ଦେଖାଗଲା ନାହିଁ । ମାଳା ହତାଶ ହୋଇ ମୁଣ୍ଡ
ତଳକୁ ପୋତିଦେଲା । ଅନ୍ଧାର ଘୋଟିଯିବା ପର୍ଯ୍ୟନ୍ତ ସେ ସେଇଠି ବସିରହିଲା ।
ଆଲୋକ ଅନ୍ଧକାରର ଏ ଅଭିନୟରେ ସାରା ପଙ୍କତି ଭୟାବହ ଲାଗୁଛି । ସକାଳେ ଯୁବକ
ଗାଇଥିବା ସେ ଗୀତ ତା କାନରେ ଗୁଞ୍ଜରି ଉଠୁଛି । ସେ ଗୀତର ଶବ୍ଦ, ସେ ଶବ୍ଦ-
ଗୁଡ଼ିକର ମାନେ ସେ କିଛି ବୁଝିପାରୁନାହିଁ । ବିନା ଶବ୍ଦରେ ଗୀତ, ବିନା ପାଣିରେ
ପୋଖରୀ, ବିନା ସ୍ନେହରେ ମନ—ଏସବୁ ତାକୁ ଉଦାସ କରିଦଉଛି । ହୋଇପାରେ
ସେ ଫେରି କେବେ ଫେରିଆସିବ ନାହିଁ । ମାଳା କିନ୍ତୁ ତାକୁ ତ କେବେ ହେଲେ
ଭୁଲିପାରିବ ନାହିଁ । ଏହି ଯାତନା ବୋଧହୁଏ କେବେହେଲେ ଦୂର ହୋଇ
ପାରିବ ନାହିଁ । ଗୋଟାଏ କ୍ଷଣରେ ଆସି ପରକ୍ଷଣରେ ବିଦାହୋଇଯିବା ଲୋକପ୍ରତି
ଏ ମମତା କାହିଁକି ? ସେ ତାର ଏହି ବ୍ୟଥାକୁ ବ୍ୟକ୍ତ କରିପାରିଲା ନାହିଁ । ଅନ୍ଧାରରେ
ସେ ସେଠି ବସିରହି ପାରିଲା ନାହିଁ । ସେ ଘରକୁ ଚାଲିଗଲା ।

ଆଈମା' ଦୀପ ଜଳାଉଥିଲା । ମାଳା ତା ପାଖରେ ଯାଇ ବସିଲା । ସେ ଉଦାସୀନ
ହୋଇ ଆଈମା' ଆଡ଼େ ଚାହିଁରହିଲା । ତା ମନରେ ଗୋଟିଏ ଭାବନା ଜାଗିଲା—କିଛି
ଦିନ ପରେ ସେ ବି ଆଈମା ପରି ହୋଇଯିବ, ବାଳ ଧଳା ହୋଇଯିବ, ମୁହଁରେ
ଭାଙ୍ଗ ପଡ଼ିଯିବ, ହାତ ଥରିବାକୁ ଲାଗିବ । କଣ ସେତେବେଳେ ବି ସେ ସେହି ଯୁବକ-
କଥା ଚିନ୍ତା କରୁଥିବ ? ତାର ସୁନ୍ଦର ଚେହେରା ତା ଆଖିରେ ନାଚୁଥିବ ? ସେ ଡରି
ଗଲା, ଆଈମା'କୁ କୁଣ୍ଢାଇ ପକେଇଲା । କଇଁକଇଁ ହୋଇ କାନ୍ଦପକାଇଲା । ବେଦନାର
ବେଗ କୌଣସି ପ୍ରକାରେ ଦବାଇ ପାରିଲା ନାହିଁ । ତାର ମନେହେଲା ଏହି ବ୍ୟଥା

କେତେ କଳ୍ପଧର ତାର ଆସ୍ୱାରେ ଲୁଚିରହିଥିଲା; ବର୍ତ୍ତମାନ ବାହାର ପଡ଼ୁଛି । ଆଇମା' ସ୍ନେହରେ ତା ମୁଣ୍ଡ ଆଉଁସି ଆଉଁସି କହିଲେ—''କଣ ଝିଅ, କଣ ହେଲା ?'' ଆଇମା'ର ଆଙ୍ଗୁଳିସ୍ପର୍ଶରେ ତାର ମମତା ଝରୁଥିଲା ଓ ନୀଳାର ମନକୁ ତାହା ପ୍ଳାବିତ କରିଦେଉଥିଲା । ଏହି ଆତ୍ମୀୟତାରେ ନୀଳା ନିଜକୁ ଟିକେ ସମ୍ଭାଳି ନେଲା । ବଡ଼ ସ୍ନେହରେ ସେ ଆଇମାକୁ କହିଲା—''ଆଇମା' ତୁ ମା' ପାଇଁ ଆମ୍ବଗଛ ଲଗାଇଥିଲୁ ନା ! ମୁଁ ଯିବା ପରେ ସେ ପାହାଡ଼ ଉପରେ ଧଳା ଫୁଲର ଗଛ ଲଗାଇଦବୁ । ସବୁବେଳେ ସେଠାରେ ଧଳା ଫୁଲ ଫୁଟିବ । ଯେ ପର୍ଯ୍ୟନ୍ତ ଫୁଲ ଫୁଟୁଥିବ, ସେ ପର୍ଯ୍ୟନ୍ତ ମୁଁ ମଧ ରହିବି ।'' ଆଇମା'ର ମନ ଥରଉଠିଲା । ସେ ଭାବିଲା—''କଣ ମୁଁ ଏଇଠି ସବୁବେଳେ ଏମିତି ବସିଥିବି ?'' ତେବେ ସେ କିଛି କହିଲା ନାହିଁ ।

ନୀଳା ଲୁହ ପୋଛିନେଲା । ଆଇମା' ନୀଳାକୁ ଖାଇବା ପାଇଁ କହିଲେ । ନୀଳା କହିଲା —'ନାହିଁ' । ଆଇମା'ର ଦୁଇ ହାତକୁ ନେଇ ବଡ଼ ସ୍ନେହରେ ନିଜ ଗଳାରେ ପକାଇଦେଲା । ତା ଆଖିକୁ ନିଦ ମାଡ଼ିଆସିଲା । କ୍ଷଣକରେ ସେ ଶୋଇ ପଡ଼ିଲା ।

ସକାଳୁ ଉଠି ସେ ଆମ୍ବଗଛ ପାଖରେ ଯାଇ ବସିପଡ଼ିଲା । ଗଛଡ଼ାଳରୁ ଶୁଆ ଡାକୁଛି । ପ୍ରେମର ଭାରରେ ନୀଳାର ମୁଣ୍ଡ ତଳକୁ ପୋଢହୋଇଗଲା—ତାର ଯେପରି କୌଣସି ଦୋଷ ହୋଇଯାଇଛି ।

# ନୋ ରୁମ୍

ଗ୍ରହଣ, ଶୁଖାଇବା ପାଇଁ ବିଛାଯାଇଥିବା ସୁଜ ପରି ନୁହେଁ । ସମ୍ଭବତ କିଛି ଅଦ୍ଭୁତ ଢଙ୍ଗର—ଶଶୁରଘର ପରି ।

"ରୁମ୍ ଦର୍କାର ।"

"ଜଣିକିଆ ନା ଦୁଇଜଣିଆ ?"

ଉଚିତ ସମୟରେ ଉତ୍ତର ନ ପାଇ ମୁଣ୍ଡ ଉଠାଇ ଦେଖିଲା ଏକଆଖିଆ ମୁନ୍‌ସୀ ।

ତାର ଝାପ୍‌ସା ନଜରରେ ନୃକରାଜୁର ବେଶଭୂଷା 'ହନିମୁନ୍'ରେ ଯାଉଥିବା ବର ପରି ଦିଶିଲା ନାହିଁ; ପାଖରେ ଛିଡ଼ା ହୋଇଥିବା ଗାଁର ଝିଅ କୁମାରୀ କନ୍ୟା ପରି ଲାଗିଲା । ଆର ଆଖିଟିରେ ଝରଆଡ଼କୁ ଚାହିଁଲେ ମଧ୍ୟ କୋଉଠି ତାଙ୍କ ସାଙ୍ଗରେ ଥିବା ପରି ବାକ୍‌ସ, ବିଛଣା ଏପରିକି ହାତ-ବ୍ୟାଗ ଖଣ୍ଡେ ବି ଦିଶିଲା ନାହିଁ ।

ସେଥିପାଇଁ କହିଲା,

"ନାହିଁ ।"

"କେଣ ନାହିଁ ?"

"ରୁମ୍ ନାହିଁ ।"

ଅନ୍ତଃପୁରର ତର ଖବ ଶ୍ରେଷ୍ଠ ଘରର ବାହାଦୁର ପୁରୁଷକୁ ଭିତରକୁ ଯିବା ପାଇଁ ପ୍ରତିବନ୍ଧକ ସୃଷ୍ଟି କରୁଥିବା ରଜାଙ୍କର ଶଳାକୁ ସ୍ମରଣ କରାଇଦଉଛି—ଏହି ମୁନ୍‌ସୀ ।

ନୃକରାଜୁ ବୁଝିପାରୁନାହିଁ ସେ କେଉଁ ଗୁପ୍ତ କଥା ଖୋଲିଦବାକୁ ଯାଉଛି । କ୍ଷଣକ ପାଇଁ ସେ କାବା ହୋଇ ସେଇଠି ଛିଡ଼ାହୋଇ ରହିଲା । ଟିକେ ସମୟ ପରେ "ମନ୍ଦିରେ ଇଏ ପାଷଣ୍ଡ କିଏ ରେକଲବାଲା ?" ଏହି ଖିଆଲ ଆସିବାମାତ୍ରେ ସେ ରାଗିଗଲା ।

କିନ୍ତୁ ଏଥିଭିତରେ ମୁନ୍‌ସୀର ଧ୍ୟାନ ଟେବୁଲ୍ ଉପରେ ଝୁଙ୍କି ପଡ଼ି ଅଙ୍କ ଯୋଡ଼ିବାରେ କେନ୍ଦ୍ରିତ ହୋଇଯାଇଥିଲା । ନୃକରାଜୁ ଯେତେବେଳେ ଦେଖିଲା ଯେ ତାର ଶୁଷ୍କ ଆଖିରୁ ବାହାରୁଥିବା ତୀକ୍ଷ୍ଣ ଦୃଷ୍ଟି ମୁନ୍‌ସୀର ଚେଳଚକ୍‌କଣ ମୁଣ୍ଡ ଉପରଦେଇ ଖସି-ଯାଉଛି ସେ ତା ପାଖରେ ବସିଥିବା ଦେବୁଡ଼ୁ ଉପରେ ଦୃଷ୍ଟି ପକାଇଲା ।

ଦେବୁଡ଼ୁ ଆଖିରେ ଏହି ଦୃଷ୍ଟିକୁ କାଟିଲା ପରି କୌଣସି ତୀକ୍ଷ୍ଣତା ସେ ଦେଖିଲା ନାହିଁ । ସେ ପିନ୍ଧିଥିବା ଖାକି ପୋଷାକ ତାରି ପରି ଛିଣ୍ଡା-ପୁରୁଣା ଜଣାପଡ଼ୁଛି । ତାର କାମ ବୁଢ଼ା । ବଳଦ ଧରି ଓଦାଳିଆ ପଡ଼ିଛି ଯେପରି ଜୀବନଯାକ ହଳକୁଆଁଳିର ଚିହ୍ନ ଲୁଚାଇବାର ଚେଷ୍ଟା କରୁଛି । ମୁନ୍‌ସୀ ଉପରେ ଯେଉଁ କ୍ରୋଧ ଆସିଥିଲା, ତାହା ଦେବୁଡ଼ୁ ଉପରେ ବଦଳି ବଦଳି ଘୃଣାରେ ପରିଣତ ହେଲା ।

'ଟକ୍ ଟକ୍ ଟକ୍' କରି ସିଡ଼ି ଉପରେ ଯୋତାଶବ୍ଦ ହେଲା ଓ ନୃକରାଜୁ ବାହାର

ରାସ୍ତା ଧରିଲା । ତା ସଙ୍ଗେ ତାର ଅମ୍ମଡୁ ମଧ୍ୟ ତାର ଗୋଇ ପରି ପଛେ ପଛେ ଚାଲିଗଲା ।

"ହେଉ, ଟୋକା ନୂଆ ଢଙ୍ଗ ଶିଖିଛି ।"

ମୁନ୍‌ସୀ କାହା ବିଷୁୟରେ କହିବାକୁ ଚାହୁଁଥିଲେ ସେ ଗଳ୍ପ ଯାଉଯାଉ ଆରମ୍ଭ କରିଦିଏ । ଦେବୁଡୁ‌ଙ୍କୁ ଡର ମାଡେ କାଳେ ସେ ଫେରିଆସି ମାରିବାକୁ ଦୌଡ଼ିବ ।

"ସେ ଟୋକା କିଏ ହୋଇଥିବ ?"

ଦେବୁଡୁ‌ଙ୍କୁ ଜଣା ତ ନାହିଁ, ତେବେ ମୁନ୍‌ସୀ ପ୍ରଶ୍ନ କଲେ କିଛି ନା କିଛି ଉତ୍ତର ଦବାର ଅଭ୍ୟାସ ତାର ହୋଇଗଲାଣି ।

"ସେ ଟୋକା କିଏ, ମୁଁ କହିପାରିବି ନାହିଁ । କିନ୍ତୁ ତା ସହିତ ଯେଉଁ ଝିଅ ଅଛି, ସେ ତ ତା'ର ସ୍ତ୍ରୀ ।"

"ତୁ ସେମାନଙ୍କୁ ଜାଣିଛୁ ?"

"ମୁଁ ଚିହ୍ନି ନାହିଁ; କିନ୍ତୁ ସେ ଝିଅ ବେକରେ ମଙ୍ଗଳ-ସୂତ୍ର ଅଛି । ସେଇଥିପାଇଁ ମୁଁ କହିଲି ।" ଟିକେ ଅଟକେଇ ଅଟକେଇ କହିଲା ।

"ମଙ୍ଗଳ-ସୂତ୍ର ତ ସବୁ ସ୍ତ୍ରୀଲୋକଙ୍କ ଗଳାରେ ଥାଏ । କିନ୍ତୁ ତା ଗଳାରେ ବନ୍ଧା ହୋଇଥିବା ମଙ୍ଗଳ-ସୂତ୍ରରେ କିଏ ତାକୁ ବାନ୍ଧିଛି—ଏ କଥା କଣ ଲେଖା ହୋଇଛି ?"

"ତୁମେ ଯେଉଁ ମଙ୍ଗଳ-ସୂତ୍ର ପିନ୍ଧାଇଥିଲ, ସେଥିରେ କଣ ଲେଖା ହୋଇଥିଲା ?" ଦେବୁଡୁ‌ର ଅନ୍ତରଦେବତା ପଚାରିବାକୁ ଚାହୁଁଥିଲା; କିନ୍ତୁ ମୁହଁରେ କିଛି ନ କହି ସେ କାନ୍ଧ ଉପରେ ତଉଲିଆ ପକାଇ ଚାଲିଗଲା ।

ଦେବୁଡୁ ଯେତେବେଳେ ସିଡ଼ିରେ ଓହ୍ଲାଇ ବାହାରକୁ ଖାଇବାକୁ ଗଲା ସେତେବେଳକୁ ସିନେମାର ପ୍ରଥମ ଖେଳ ଶେଷ ହୋଇସାରିଥିଲା । ପ୍ରଥମ ଖେଳ ଦେଖି ଫେରୁଥିବା ଓ ଦ୍ୱିତୀୟ ଖେଳ ଦେଖିବାକୁ ଆସୁଥିବା ଲୋକଙ୍କ ରିକ୍‌ସା, ମଟରଗାଡ଼ି ଓ ବସ୍‌ରେ ରାସ୍ତା ବେଶ୍ ଗହଳି ଥିଲା । ସାମନାରେ ଥିବା ପାନଦୋକାନରେ ଲୋକ ପୋକ ପରି ଏକାଠି ହୋଇଛନ୍ତି । କଳା ଗୋଇ ପରି ଏକତ୍ରିତ ଲୋକ ଏବଂ ଶୁଭ୍ର ଜ୍ୟୋତ୍ସ୍ନାଠାରୁ ଆହୁରି ଧଳା ବିଜୁଳୀଆଲୁଅ—ସେ ଟୋକା-ଟୋକୀ ମଧ୍ୟ ସେଇଠି ଅଛନ୍ତି । ସେଠି ଏକତ୍ରିତ ହୋଇଥିବା ଭିଡ଼କୁ ଆଶ୍ଚର୍ଯ୍ୟ ହୋଇ ଦେଖୁଛି—ଅମ୍ମଡୁ । ନୁକରାଜୁର ଦୃଷ୍ଟି ଅବିକା ମଧ୍ୟ ସେହି 'ଲଜିଙ୍ଗ-ହାଉସ୍' ଆଡ଼କୁ ଯାଉଛି । ଦେବୁଡୁ‌ର ସେମାନଙ୍କ ପ୍ରତି ଦୟା ଆସିଲା ।

ଦେବୁଡୁ ଯେତେବେଳେ ଭୋଜନ ସାରି, ଡୁରୁଟ୍ ଲଗାଇ, କାଖରେ ଚାଦର ଓ ମୁଣ୍ଡରେ ତଉଲିଆ ପକାଇ ନିଜ କୁଡ଼ିଆ ଆଡ଼କୁ ବାହାରିଲା, ତାର ଦେଢ଼ଘଣ୍ଟା ଆଗରୁ ଜୋଷ୍ନା ବିସ୍ତୃତ ହୋଇ ପଡ଼ିଛି । ଦେବୁଡୁ ଚାରିଆଡ଼କୁ ଦୃଷ୍ଟି ପକାଇ ଅନ୍ଦାଜ କଲା କି ସାଢ଼େ ଦଶଟା ବାଜିଥିବ ।

ସେ ବର୍ଷସାରା ଦିନରେ ତିନଥର ଯେତେବେଳେ ବି ସେ ବାହାରକୁ ବାହାରେ ସେ

ସେତେବେଳେ ସମସ୍ୟାର ଅନ୍ଦାଜ ଲଗାଏ ଏବଂ ଯେଉଁଠି ଘଣ୍ଟା ଦେଖେ ସେଠି ନିଜ ଅନ୍ଦାଜଟା ଠିକ୍ କି ନୁହେଁ ଦେଖିନିଏ । ପ୍ରାୟ ତାର ଅନୁମାନ ଠିକ୍ ହିଁ ହୋଇଥାଏ ।'

କୈଲାଶ ପର୍ବତ ତଳେ ଝଟକୁଥିବା ସହରକୁ ଥରେ ଦେଖି ତାର ଅନୁମାନକୁ ଆହୁରି ଥରେ ପରୀକ୍ଷା କରିଦେଲା । ସେ ପର୍ବତ ଗାର ଉତ୍ତର ଦିଗରେ ଅଛି । ତା ଉପରେ କେତେଗୁଡ଼ିଏ କୁଡ଼ିଆ ଆଗରେ କୋଠି ପରେ କୋଠି ତିଆରି ହୋଇଛି । ଆଗକୁ ଆଉ କିଛି ଜନବସତି ନାହିଁ । ସେପାଖରେ ପଶ୍ଚିମ ଦିଗକୁ ପ୍ରାୟ ମାଇଲିଏ ଦୂରରେ ଗୋଟିଏ ବହୁତ ବଡ଼ କାରଖାନା ଏବଂ ତା ସାଙ୍ଗରେ ଶ୍ରେଷ୍ଠ ବସତିଟିଏ । କାରଖାନାରୁ ସହର ଆଡ଼କୁ ଏବଂ ସେଠି ପଶ୍ଚିମ ଓ ଉତ୍ତର ମଝିରେ ଥିବା ରେଳ ଜଙ୍କସନ୍ ଆଡ଼େ ଯାଉଥିବା ଅଙ୍କାବଙ୍କା ସଡ଼କ ଉପରେ ଦୁଇଟି ଲରି—ଗୋଟିଏ ଷ୍ଟେସନ ଆଡ଼କୁ ଓ ଅନ୍ୟଟି ସହର ଆଡ଼କୁ - ଗୋଟିଏ ଅନ୍ୟଠାରୁ କେତେବେଳେ ଦୂରଛଡ଼ା ହୋଇ କେତେବେଳେ ପାଖାପାଖି ହୋଇ ପ୍ରତିଯୋଗିତା କରି ଦୌଡ଼ୁଛନ୍ତି । ଘରମାନଙ୍କରେ କୋଉଠି ବତି ଦିଶୁନାହିଁ । ସହର ଅନ୍ଧକାରମୟ ଟିକିଲି ଓ ପ୍ରକାଶର ଧଡ଼ି ପରି ଦିଶୁଛି ।

ଧୀରେ ଧୀରେ ପାଦ ପକାଇ ଯେତେବେଳେ ଦେବୁଡ଼ୁ 'ଲଜିଙ୍ଗ ହାଉସ୍'ରେ ପହଞ୍ଚିବ ସେତେବେଳକୁ ଏଗାରଟା, ଏଗାରଟା ବାଜି ପନ୍ଦର ମିନିଟ ହୋଇଯାଇଥିବ ।

ଚାଲିକରି ଯାଉ ଯାଉ ଦେବୁଡ଼ୁଙ୍କୁ ଆଗରେ ଆସୁଥିବା ଗୋଟିଏ ଯୋଡ଼ି ଦେଖାଗଲେ । ଦେବୁଡ଼ୁ ଅନୁମାନ କଲା ସେମାନେ ବୋଧହୁଏ ଦକ୍ଷିଣ ପଟେ ଥିବା ସିନେମା ହଲ୍ ଆଡ଼ୁ ଆସୁଛନ୍ତି । ସ୍ତ୍ରୀ ହାତରେ ଗୋଟିଏ ଶ୍ରେଷ୍ଠ ଛୁଆ ଓ ପୁରୁଷ କାନ୍ଧରେ ତିନି ବର୍ଷର ଶ୍ରେଷ୍ଠ ପୁଅଟିଏ । ସେ ସ୍ତ୍ରୀ ବାରମ୍ବାର ହାସ୍ୟ-ପ୍ରସଙ୍ଗ ସ୍ମରଣ କରି ସେଗୁଡ଼ିକ ବହୁତ ଉତ୍ସାହ ସହିତ ବର୍ଣ୍ଣନା କରୁଛି । ଗୋଟାଏ ଆଡ଼େ ଜଲଦି ଜଲଦି ଚାଲିବାର କ୍ଲାନ୍ତି ଏବଂ ଅନ୍ୟ ଆଡ଼େ ଉଚ୍ଛୁଳ ଉଚ୍ଛୁଳ କରି କଥା କୁହାଉଥିବା ଉତ୍ସାହ—ଏ ଦୁଇଟି ମଝିରେ ସେ ସ୍ତ୍ରୀଲୋକଟି ବହୁତ ହଇରାଣ ହୋଇଗଲା ପରି ମନେ ହେଉଥିଲା ।

"ଜାଣି ନାହିଁ, ସେ ଟୋକା ଓ ଟୋକୀ କୁଆଡ଼େ ଚାଲିଗଲେ ?" ଦେବୁଡ଼ୁର ଚିନ୍ତା ହେଲା ।

ହୋଇପାରେ ଅନ୍ୟ କୌଣସି ଲଜିଙ୍ଗ୍-ହାଉସ୍‌ରେ ଜାଗା ମିଳିଯାଇଥିବ । ନ ମିଳିଥିବ ତ, ଯଦି ସେମାନେ ଏହି ସହରର ଲୋକ ହୋଇଥିବେ ତ ନିଶ୍ଚୟ 'ହୋ' ଦେଖି ଶଯ୍ୟାରେ ବସିଯିବେ । ଯଦି ବାହାରୁ ଆସିଥିବେ ତ ବଡ଼ଜୋର ଦୁହେଁ କୌଣସି ଧର୍ମଶାଳାର ଚଉତରା ଉପରେ ଗୋଟିଏ ରାତି କାଟିନେଇଥିବେ ।

ଫେରେ ଦେବୁଡ଼ୁ ଭାବିଲା, 'ଆଜିକାଲିକା ଟୋକା, ଆମ ପରି ପୁରୁଣା-କାଳିଆ ଲୋକଙ୍କ ପରି ତ ଅକର୍ମଣ୍ୟ ନୁହନ୍ତି ।'

ଦେବୁଡ଼ୁ ଆଜିକାଲିକା ପିଲାଙ୍କ ଠେଇଁ ଫୁର୍ତ୍ତିବାଜ ଓ ଜୀଇଁବାରେ ଉତ୍ସାହ ଦେଖି ଖୁସି ହୋଇଯାଏ । ସପ୍ତାହଯାକ କୌଣସି ତେଲ ଇଞ୍ଜିନ୍‌ରେ କାମ କରି ମଧ୍ୟ, କୋଉଠି

ମୂଲିଆ କାମ କରୁଥିଲେ ମଧ୍ୟ, ରବିବାରକୁ ସେମାନେ ମଇଳା ଲୁଗା ଉତାରି, ସଫା-ସୁତୁରା, ଧୂଆହୋଇ ଇସ୍ତ୍ରୀ କରାହୋଇଥିବା ଲୁଗାପଟା ପିନ୍ଧିନିଅନ୍ତି । ସେଦିନ ସେମାନେ କୌଣସି ମାରଓ୍ୱାଡ଼ିର ପିଲା ବା ରଜାପୁଅ ଭଳି ଲାଗନ୍ତି । ଦିନସାରା କ୍ଲବ୍‌ରେ ଗପ-ସପ, ଖେଳାଖେଳି କରି ସନ୍ଧ୍ୟା ହେଉ ହେଉ 'ଫିଲମ୍' ଦୁନିଆଁରେ ମାତି-ଯାଆନ୍ତି । ଦୁଇଅଣିଆ, ଚାରିଅଣିଆ ଟିକଟ ନ ମିଳିଲେ ସାଙ୍ଗେ ସାଙ୍ଗେ କହିଦିଅନ୍ତି 'ତା ଉପରବାଲା ଟିକଟ ଦେଇଦିଅ' ଯେପରି କି କାଲି ପାଇଁ ତାର କୌଣସି ଚିନ୍ତା ହିଁ ନାହିଁ ।

ପୋତରାଜୁ କଥା ଏବେ ସେ ବୁଝିପାରୁଛି । ମୂଲିଆ ପଇସା ଜମାଇ କୋଠା ତିଆରି କରିବ, ଏ କଥା କେବେ ହେଲାପରି କଥା ନୁହେଁ । କଥାରେ ଅଛି —ତନ୍ତୀ ସହସ୍ର ଲୁଗା ବୁଣେ, ତେବେ ବି ତାର ସ୍ତ୍ରୀ ଚିରାଲୁଗା ପିନ୍ଧି ବୁଲେ । କେଉଟ ଧରେ ମାଛ, ଖାଏ କଙ୍କଡ଼ା । ସେଥିପାଇଁ ଯାହା କିଛି ମିଳୁଛି ସେଥିରେ ଫୁର୍ତ୍ତି କରିବା ହିଁ ଭଲ । ଏହା ସବୁ ଜାଣି ମଧ୍ୟ ତା'ପରି ଲୋକ ଏପରି କରିପାରନ୍ତି ନାହିଁ । ପୋତରାଜୁ ପରି ଟୋକାମାନେ ହିଁ କରିପାରନ୍ତି, ତାଙ୍କର ଗୁଡ଼ିଏ ଦମ୍ଭ ଅଛି ।

ପୋତରାଜୁ ଅବିକା ଦେବୁଡ୍ଡୁ ଯୋଉଠି କାମ କରୁଛି, ସେହି 'ଲଜିଙ୍ଗ-ହାଉସ୍' ତିଆରିକରିବାଲା ମିସ୍ତ୍ରୀମାନଙ୍କ ଭିତରୁ ଜଣେ ।

ଖାଲି ନାଆଁକୁ ସବୁଠୁଁ ବୁଢ଼ା ମିସ୍ତ୍ରୀକୁ ବଡ଼ ମିସ୍ତ୍ରୀ କୁହାଯାଏ; କିନ୍ତୁ କାମ ଠିକ୍ ରୂପେ କରାଇବା ଆଉ ହୁକୁମ ଜାରି କରି ସବୁ ନିରୀକ୍ଷଣ କରିବାର ସମସ୍ତ ଭାର ପୋତରାଜୁ ସମ୍ଭାଳି ନିଏ ।

ପୂରା ତିରିଶି ବର୍ଷର ମଧ୍ୟ ହୋଇ ନାହିଁ, ତେବେ ବି ସେ ନିଜେ କାମ କରିବାରେ ଯେତିକି ସୁଦକ୍ଷ, ଅନ୍ୟଠାରୁ କାମ କରାଇବାରେ ମଧ୍ୟ ସେତିକି ଧୁରନ୍ଧର । ସୁଯୋଗ ମିଳିଲେ ମୂଲିଆମାନଙ୍କୁ ହାଡ଼ଭଙ୍ଗା ପରିଶ୍ରମରେ ଲଗାଇ ଦିଏ, ଆଉ ଦରକାର ପଡ଼ିଲେ ତାଙ୍କ ପାଇଁ ଆଗୁଆ ହୋଇ ତାଙ୍କର ସବୁ କଥା ସମର୍ଥନ କରେ । ବଡ଼ ମିସ୍ତ୍ରୀ କଣ, କନ୍‌ଟ୍ରାକ୍‌ଟର ମଧ୍ୟ ତାକୁ ଡରୁଥିଲେ, ସେ କାହାରିକୁ ଡରେ ନାହିଁ । ଅସଲରେ ତାର ମତ ଥିଲା—ଏ ଟୋକାଗୁଡ଼ାକୁ ଆମେ କାହିଁକି ଡରିବୁ । ଟିକେ ଭାବିଲେ ଦେଖି, ଏମାନେ ଆମ ପେଟ ଭରୁଛନ୍ତି ନା ଆମେ ତାଙ୍କର ନିଦ ବଢ଼ାଉଛୁ ? ଏହି କୋଠିଟି ଦେଖ । ଆମେ, ତମେ ଏବଂ ଏହି କୁକୁର ଛୁଆ, କନ୍‌ଟ୍ରାକ୍‌ଟର—ସମସ୍ତେ ମିଶି ବନାଉଛୁ । ଯେତେବେଳେ କୋଠି ତିଆରି ହୋଇଯିବ ସେତେବେଳେ ଆମକୁ କଣ ମିଳିବ, ତମକୁ କଣ ମିଳିବ ? କନ୍‌ଟ୍ରାକ୍‌ଟରକୁ ଏତେଗୁଡ଼ାଏ ପଇସା ମିଳିବ ତ କହିଲ, କାହାର କାହାଠି ବେଶି ଦରକାର ?

ଆମ ତୁମ ପରି ମୂଲିଆ ଅଛନ୍ତି ତ କନ୍‌ଟ୍ରାକ୍‌ଟର ମଧ୍ୟ ଅଛନ୍ତି । ଯଦି ସେମାନେ ନଥାନ୍ତେ ତେବେ ମଧ୍ୟ ଯେଉଁ ଗଧମାନଙ୍କର କାମ ଦରକାର ତାଙ୍କୁ ଆମପରି ଯେଉଁମାନେ କାମ ଜାଣନ୍ତି ଏବଂ ଖାଲବୁହା ପରିଶ୍ରମ କରି କାମ କରିପାରିବେ ତାଙ୍କ ପାଖକୁ

ଆସିବାକୁ ପଡ଼ିବ ।

ସେଇଥିପାଇଁ ସେ କୁକୁରଛୁଆ ଆମକୁ ଡରିବ !

ଖାଲି ଏଇୟା ନୁହେଁ, ପୋଡରିଜ୍‌ଙ୍କର ସବୁ କଥା ଏହିପରି ଢଙ୍ଗରେ ହୁଏ ।

କିନ୍ତୁ ତାର ମାଲିକ ତାଠାରୁ ବେଶୀ ଦୁନିଆଁକୁ ଚିହ୍ନିଛି । ସେ ତାର ଖବର ରଖି ବର୍ତ୍ତମାନ ତା ପଛରେ ଗୋଟିଏ ଲୋକ ରଖାଇଦେଇଛି । ଚାହା ମାଗିଲେ ଚାହା, ଜଳଖିଆ ମାଗିଲେ ଜଳଖିଆ, ସିଗାରେଟ୍ ଟାଣିବାର ହେଲେ ସାଙ୍ଗେ ସାଙ୍ଗେ ସିଗାରେଟ୍ ଆଣିଦିଏ । ଯେତେବେଳେ ସେ ନିକେ ଆସେ, ଶ୍ରେଷ୍ଠ ବଡ଼ ସମସ୍ତଙ୍କ ସାମନାରେ ତାର ଏବଂ ତାର କାରିଗରିର ପ୍ରଶଂସା କରେ । ଥରେ କୋଠିର ସେଶନ୍ ଦାମର ହିସାବ ତିଆରି କରୁ କରୁ ସେ ଖାଇବା ପିଇବା ମଧ୍ୟ ଭୁଲିଗଲା । ପୋଡରିଜ୍‌ଙ୍କର ଗୋଟିଏ ରକ୍ଷିତା ଅଛି, ସେ ବଡ଼ ଚାଲାଖ । ଥରେ ସେ କହିଲା—"ଆଚ୍ଛା ମିସ୍ତ୍ରୀ, ତୁମେ କହିଲ ତୁମକୁ ଏ ଚାହା, ଜଳଖିଆ, ସିଗାରେଟ—ଏ ସବୁ କିପରି ମିଳୁଛି ! କଣ ତୁମେ ଜାଣିଛ ?"

"ଏହି ଚାହା, ଜଳଖିଆ ପାଇଁ କଣ ମୁଁ ଏ ସମସ୍ତ କାମ କରୁଛି ? ଏପରି ଭାବିବା ଲୋକମାନେ ଯେପରି ପାଗଳ, ତୁ ମଧ୍ୟ ସେମିତି ଅପଦାର୍ଥ ଓ ବୋକା ସ୍ତ୍ରୀ ଅଛୁ ।" କହି ସେ ସିଗାରେଟ୍ ଲଗାଇ ତା ଉପରକୁ ଧୂଆଁ ଛାଡ଼ିଲା ।

ମିସ୍ତ୍ରୀର ସେ ମଜୁରି ଠିକଣା କରେ, ସେହି ମଜୁରି ଅନୁସାରେ ମୁଁ କାମ ଦେଖାଇପାରେ । ମୁଁ ଚାହିଁଲେ ତାଠାରୁ ବି ବଢ଼ିଆ କାମ କରିପାରିବି । ବାସ୍ତବରେ ମୋ କାମର ଦର କଷି ମୋତେ ପଇସା ଦେଲାବାଲା ଗଧ କେହି ନାହାନ୍ତି । ତେବେ ମୁଁ କଣ କରିବି—ନିଜ କାରିଗରିକୁ ଲୁଚାଇ ବି ଦେଇପାରେ; କିନ୍ତୁ କାଲି ଯେଉଁ କୁକୁର ଏହି କୋଠାକୁ ଦେଖିବେ ସେମାନେ ତାର କୃପଣତା କଥା ଜାଣିବେ ନାହିଁ, ମୋ'ର କାରିଗରି ସ୍ପଷ୍ଟ ହୋଇ ଦେଖାଯିବ ।

କାମ କରିବା ଏବଂ କରାଇଲାବାଲାଙ୍କ ମଧ୍ୟରେ ଏହି ପ୍ରଭେଦ ।

ଏହି କୋଠା ଅଛି ନା । କାଲି ଯାକୁ ଲିଜ୍ରାଙ୍ଗ କରି ଭଡ଼ା ଦେବେ । ଯଦି ତୁମେ କୁହ ଯେ ମୁଁ ସମସ୍ତଙ୍କଠାରୁ ଆଠଅଣା ଅଧିକ ପଇସା ଦେବି ରାତିକ ପାଇଁ ଏଠି ଶୋଇବାକୁ ଦିଅ, ତ ନିଜର ଓଜନ ଯେତେ, ସେତେ ପଇସା ଦେଲେ ମଧ୍ୟ ସେ ପର୍ଯ୍ୟନ୍ତ ତୁମେ ମଜୁରି ଲାଗିଛ ସେ ପର୍ଯ୍ୟନ୍ତ ସେ ଭିତରେ ଗୋଡ଼ ରଖିବାକୁ ଦେବେ ନାହିଁ ।

ସେ ନିଜ କଳଙ୍କ ତୁମଠୁଁ ଲୁଚାଇ ରଖିପାରେ; କିନ୍ତୁ ତୁମେ ତାଠୁଁ ନିଜ କଳଙ୍କ ଲୁଚାଇ ରଖିପାରିବ ନାହିଁ । କାମ କଲାବାଲାଙ୍କର ଏହି ଅସୁବିଧା ।

ଏହିପରି ଭଳିକୁ ଝାଳ କରି ପୋଡରିଜ୍‌ଙ୍କୁ କାମ ଜଲଦି ପୂରା କରିଦେଲା ।

କଣ୍ଟ୍ରାକ୍ଟରକୁ ଘଉଡ଼ାଇ, ମିସ୍ତ୍ରୀମାନଙ୍କୁ ବୁଝାଇସୁଝାଇ ବାରମ୍ବାର ତାଙ୍କ କାମର ପ୍ରଶଂସା କରି, ଦିନରାତି ତେଲ ଜଳାଇ ହାଡ଼ଭଙ୍ଗା ପରିଶ୍ରମ କଲା । ବସନ୍ତ ଋତୁ ବେଳକୁ ପୂରା ହୋଇପାରିବ କି ନାହିଁ, ସନ୍ଦେହ ଥିଲା । କିନ୍ତୁ ସାରା ଘର

ସଂକ୍ରାନ୍ତି ଭିତରେ ତିଆରି କରିଦେଲା; ଖୋଲାଇ ମଧ୍ୟ ଦେଲା ।

. ଏପରି ସେପରି କାମ ନୁହେଁ, ସନ୍ଧ୍ୟାକରେ ଏହି କୋଠାରି ପ୍ରଶଂସା ହେଲା ।

ମୋଜାଇକ୍ ଫେଶିବ କଣ, ବାର୍ନିଶ ରଙ୍ଗକରା କାନ୍ଥ କଣ, ଏନାମେଲ୍ କୋଟିଙ୍ଗ କଣ, ରଙ୍ଗୀନ କାନ୍ଥ କଣ, ଶଙ୍ଖମର୍ମର ମୂର୍ତ୍ତି କଣ, କୁଣ୍ଡରେ ନାନା ଫୁଲର ଗଛ, ଗଡ୍‌ରେଜ୍ ଆସବାବ, ଗ୍ଲେକ ଟେବୁଲ ଇତ୍ୟାଦି, ପୋରଶେଲେନ୍ କୁଣ୍ଡ, ରଙ୍ଗ-ବେରଙ୍ଗ ଆଲୁଅ, ଗ୍ରୁଡ ଉପରେ ବଗିଗ୍ର—ଏହି ଅଦ୍‌ଭୁତ ଜାକଜମକ ରହିଲା କିଛି ଦିନଯାଏ ।

ପରେ ସବୁ ପଡ଼ାରେ ଗୋଟିଏ ଲେଖା 'ଲ଼ଜଙ୍ଗ' ଛଡ଼ା ହୋଇଗଲା । ଅଳ୍ପ ଦିନ ହେବ ମାଲିକ ମରିଯିବାରୁ ମୁନ୍‌ସୀ ହାତରେ ସବୁ ଦେଖାଦେଖି କରିବା ଭାର ଓ ବନ୍ଦୋବସ୍ତ କରିବା ଭାର ତା ଶଳା ଉପରେ ପଡ଼ିଲା । ତେବେ ବି ପୁରୁଣା ମହକ କିପରି ଛାଡ଼ିବ ? ବ୍ୟବସାୟ ଏକଦମ୍ ମାନ୍ଦା ପଡ଼ିଲା ନାହିଁ ।

ଦେବୁଡ଼ୁର୍ ଭାବନା ପୁଣି ସେହି ଦୁଇଜଣଙ୍କ ଆଡ଼କୁ ଗଲା । ବେପାର ଏପର୍ଯ୍ୟନ୍ତ ଚାଲୁଛି ନା, ସେଇଥି ପାଇଁ ମୁନ୍‌ସୀ ଏତେ ତୋଡ଼ ଦେଖାଉଛି । ବାଂଗ୍ର ସେ ଟୋକା, ଯେତେ ପାରିଥିଲା ସେତେ ସଜ ହୋଇ ଆସିଥିଲା । କଳା ପେଣ୍ଟ, ତାଠାରୁ ଅଧିକ କଳା ରଙ୍ଗର ଯୋତା, ଧଳା ଟେରିଲିନ୍ ସାର୍ଟ, ସାର୍ଟ ଉପରେ ଘଡ଼ି ବି ପିନ୍ଧିଛି । ମୁଣ୍ଡ ବି ବଡ଼ କାଇଦାରେ କୁଣ୍ଡାଇଛି । ବେଶଭୂଷାରେ କିଛି ଅଭାବ ନ ଥିଲା, କିନ୍ତୁ ଅଭାବ କେଉଁଠି ଥିବ ଦୁଇଟାରୁ ଗୋଟିଏ ଆଖି ଠିକ୍ ଥାଇ ମଧ୍ୟ ମୁନ୍‌ସୀ ମିନିଟିକ ଭିତରେ ତାର ଖବର ଜାଣିଯାଇଥିଲା ।

ସାଙ୍ଗରେ ସେ ଝିଅ ବି ସତ୍ୟଯୁଗର ଝିଅ ମନେ ହେଉଛି । ବହୁତ ହେଲେ ତାର ବୟସ ଷୋହଳ କି ସତର ହବ । କିନ୍ତୁ ଶାଢ଼ି, ବ୍ଲାଉଜ, ମୁଣ୍ଡର ବାନ୍ଧ, ଗହଣା ସେଥିରୁ କିଛି ବି ଏ ଯୁଗର ପରି ମନେ ହଉ ନାହିଁ ।

ସେ ବୋଧହୁଏ କେବେହେଲେ ଏପରି ଢଙ୍ଗରଙ୍ଗର ପୋଷାକ ପିନ୍ଧି ନ ଥିବ । ଦେବୁଡ଼ୁର୍ ମନେ ପଡ଼ିଲା, ପେଦମ୍ମୀ ଓ ଅପ୍‌ପାୟମ୍ମା ବାହାଘରବେଳେ ଆଉ ଶାଶୁ-ଘରକୁ ଗଲାବେଳେ ଏହିପରି ସାଜୁଥିଲେ ।

ପେଦମ୍ମୀ ତ ଜଣା ନାହିଁ କାହା ଉପରେ ଏବେ ଶାସନ ଚଳାଉଥିବ । ଅପ୍‌ପାୟମ୍ମା ତ ଏ ଦୁନିଆଁରେ ନାହିଁ ।

ଆଖିଆଗରୁ ଅନ୍ତର ହୋଇଯାଇଥିବା ଏହି ଦୁଇଜଣଙ୍କ କଥା ଦେବୁଡ଼ୁର ମନେ ପଡ଼ିବାରୁ ତାର ମନ ଭାଙ୍ଗିପଡ଼ିଲା ଯେପରି ଦୁଇଆଙ୍ଗୁ କେହି ଲୁହାର ହାତରେ ତାକୁ ଦବାଇଧରିଛି ।

ଜଣାନାହିଁ, ଆମେ କେଉଁ ଘଡ଼ିରେ ଜନ୍ମ ନେଇଥିଲୁ, ନିଜ ଘର ଛାଡ଼ି ଅନ୍ୟ ଘରକୁ ଆସିଥିବା ସ୍ତ୍ରୀଲୋକଙ୍କୁ ଆମେ ଭଲେ ହେଲେ ସୁଖ, ଆରାମ ଦେବାରେ ଅସମର୍ଥ । ଅପଦାର୍ଥ ଆମେମାନେ । ଅପ୍‌ପାୟମ୍ମାକୁ ସେ ମଧ୍ୟ ବେଶ୍ କଷ୍ଟ ଦେଇଥିଲା ।

ପିଲାଦିନେ କିଛି ତ ଅଜାଣତରେ ଆଉ କିଛି ଗର୍ବରେ ସେ କଥା-କଥାକରେ ତାଙ୍କୁ ମାରେ—'ହଁ' କହିଲେ ଗାଳି, 'ନାହିଁ' କହିଲେ ଗାଳି, ଛୁଡ଼ା ହେଲେ ବିରକ୍ତ। ବସିଲେ ତ ଆହୁରି ବିରକ୍ତ ହୋଇଯାଉଥିଲା।

କିଛି ବଡ଼ ହୋଇସିବାରୁ ଘରେ ଖର୍ଚ୍ଚ ବଢ଼ିଗଲା। ଆମଦାନୀ କମ୍। ଗୃଶ ପଇସା ଅର୍ଜନ କରି ପିଇବାରେ ଉଡ଼ାଇ ଦେଉଥିଲା। କେତେବେଳେ ଆତ୍ମୀୟ-ସ୍ୱଜନ, କୁଣିଆ କେତେବେଳେ ରାସ୍ତାରେ ଝଗଡ଼ା, କେବେ ଆଉ କେଉଁ ବିପଦ, କେବେ ସେ ନିଜେ ବେମାର, କେବେ ଖୁସି, କେବେ ଦୁଃଖ, କେବେ ପୂଜା, କେବେ ପାର୍ବଣ—ସବୁ ସହ୍ୟ କରୁଥିବା ସେ ବଗୃଶଙ୍କୁ ହାତରେ ଯାହା ପଡ଼ିଗଲା, ଉଠାଇ ମାରିବାକୁ ଦୌଡ଼ୁଥିଲା।

ବୁଢ଼ାବୁଢ଼ୀମାନେ ମଝିରେ ବାଧା ନ ଦେଉଥିଲେ ତ ସେ ତା ହାତରେ ମାଡ଼ ଖାଇ ଖାଇ କୋଉ ଦିନୁ ଶେଷ ହୋଇଯାଇ ସାରନ୍ତାଣି।

ପରେ, ବହୁତ ଦିନ ପରେ ସେ ବଦଳିଗଲା— କେବେ ତାର ପରିବର୍ତ୍ତନ ହେଲା, କାହିଁକି ହେଲା, ତାହା ସେ ଜାଣିନାହିଁ।

ମା ବାପା ବର୍ଷକ ଅନ୍ତରରେ ଚାଲିଗଲେ। ତାଙ୍କର ମରିବା ଆଗରୁ ସେ ଥରେ ବେମାର ପଡ଼ିଥିଲା। ତା ପର ବର୍ଷ ଲୋକେ କହିଲେ ସେଦ୍ଧମୀ କୂଅରେ ପଡ଼ି ମରିଗଲା। ଶାଶୁଘର ଲୋକ ଓ କେତେକ ଶତ୍ରୁ ପ୍ରଚାର କଲେ ଯେ ତାକୁ କେହି ଶିଖାଇ କରି ନେଇଯାଇଛି। ତା ପରେ ଅପ୍‌ପାସ୍ୱମ୍ମା ମଧ୍ୟ ବେମାର ପଡ଼ିଗଲା। ଏହା ସବୁ ଗୃଶ ପାଞ୍ଚ ବର୍ଷ ମଧ୍ୟରେ ହୋଇଗଲା।

ଏହି ସବୁ ଘଟଣା ପରେ ବେଶି ରାଗିଗଲେ ସେ କେବେ ଗାଳି ନିଶ୍ଚୟ ଦିଏ; କିନ୍ତୁ ହାତ ଉଠାଏ ନାହିଁ।

ଯେତେବେଳେ ତାକୁ ପଇଁତିରିଶି ବର୍ଷ ହୋଇଗଲା ଓ ସ୍ତ୍ରୀକୁ ତ୍ରିଶି ପାରହୋଇ ଯାଇଥିଲା ସେତେବେଳେ ଯାହା ଅଳ୍ପ-ବହୁତ ଆରାମ ମିଳିଥିଲା, ଜୀବନ ସାରା ମିଳିଥିବା ଆରାମ ତାର ବାସ୍ ସେତିକି ଥିଲା।

ସେ ମଧ୍ୟ ଅପୂର୍ଣ୍ଣ ଇଚ୍ଛା ଥିଲା।

ଦ୍ୱିତୀୟ ଥର ବେମାର ପଡ଼ିବା ଓ ମରିବା ଆଗରୁ ଥରେ ମାତ୍ର ସହବାସରେ ମିଳି-ଥିଲେ। କାର୍ଯ୍ୟକ୍ରମ ଶେଷ ହେବାପରେ ଅପ୍‌ପାସ୍ୱମ୍ମା କହିଲା, "ମୋର ଗୋଟିଏ ଇଚ୍ଛା ଅଛି, ଯଦି ସେଇଟି ପୂର୍ଣ୍ଣ ହୋଇଯାଏ ତ ମରିଗଲେ ମଧ୍ୟ କିଛି କ୍ଷତି ନାହିଁ।" ଏ କଥା ସେ ନିଜକୁ ନିଜେ ଥରି ଥରି କହିଲା। କୁଡ଼ିଆରେ ସେ ପାଖରେ ଛୋଟ ଦୀପ ଧିକ-ଧିକ ହୋଇ ଜଳୁଥିଲା। ଏମିତି ତ ଛୋଟ ଦୀପଟିଏ। ସୁବିଧା ପାଇଁ ଅପ୍‌ପାସ୍ୱମ୍ମା ବତୀକୁ ଆହୁରି ଛୋଟ କରିଦେଇଥିଲା। ସେଥିପାଇଁ ଦେବୁଡ଼୍ଡୁ ତାର ମୁହଁ ଦେଖି ପାରିଲା ନାହିଁ। ତାର ଆଖି ତ ଝଟକୁଥିଲା।

"କଣ କଲେ !" କହି ଦେବୁଡ଼୍ଡୁ କର ନେଉଟାଇଲା ତ ତଳେ ରଖାହୋଇଥିବା

ବାସନର ଶବ୍ଦ ହେଲା ।

ଏପରି ସମୟରେ ଟିକେ ବି ଶବ୍ଦ ହେଲେ ଅପ୍ପାସ୍ୱାମୀ ବହୁତ ଡରିଯାଏ । ଝଟ୍‌କରି ଉଠିପଡ଼ି କନ୍ଥା ପରଦା କଣାବାଟେ ସେ ଧାର ପାଖକୁ ଚାହିଁ ଦେଖିଲା । ଭାଗ୍ୟକୁ କେହି ଛୁଆ ଉଠିନାହାନ୍ତି ।

"କାଲି କହିବି !" କହି ସେ ଚାଲିଗଲା ।

ବାଳ ଅଲଗା ହୋଇଯାଇଛି, କିନ୍ତୁ ଜୁଡ଼ା ଖୋଲିନାହିଁ । ଝାଳରେ ବୁଡ଼ିଯାଇଥିଲେ ମଧ୍ୟ ଲଲାଟର ସିନ୍ଦୂରଟୋପା ନେସି ହୋଇନାହିଁ । ମୁହଁ ପୋଛିବାରୁ କଜ୍ଜଳଗାର ଅବଶ୍ୟ ନେସି ହୋଇଯାଇଛି ।

କାନକୁ ଓଠରେ ଧରି ସେ କ୍ଲାଉଜ ପିନ୍ଧୁଥିଲା ତ ଦେବୁଡ଼ୁ ତାର ବାଁ ହାତ ଧରି ନିଜ ଆଡ଼କୁ ଟାଣିଆଣିଲା । "ଛାଡ଼ ମ" କହି ସେ ଧଡ଼ାସ୍ କରି ତଳେ ପଡ଼ିଗଲା । ସେ ମାନିଲା ତ ନାହିଁ, କିନ୍ତୁ ଅଣ୍ଟାରେ ନିଶ୍ଚୟ ଆଘାତ ହୋଇଥିଲା ।

ଆଉ କିଛି ସମୟ ବାରମ୍ବାର ପଚାରିବାରୁ "ବାହାରକୁ ଚାଲ, କହୁଛି" କହି ସେ ତା କୋଳରୁ ଉଠି ବାହାରକୁ ଚାଲିଗଲା ।

ସେ ଦିନର ଚନ୍ଦ୍ରମା ଆଜି ପରି ସୁନ୍ଦର ନ ଥିଲା । ଚାରିଆଡ଼େ ଦୁନିଆଁଟା ନିଦ୍ରାରେ ନିସ୍ତବ୍ଧ ଥିଲା ।

କୁଡ଼ିଆରେ ଯାପର ବଡ଼ ତେଜ, କାମ ଚଳାଇବା ପାଇଁ ବନ୍ଧାହୋଇଥିବା ପରଦା ଫରଦା ହଟାଇ ଅପ୍ପାସ୍ୱାମୀ ଦେବୁଡ଼ୁ ପାଇଁ ବାହାରେ ଏବଂ ନିଜ ପାଇଁ ଭିତରେ ବିଛଣା ପାରିଦେଲା । ପିଲାଙ୍କ ଉପରେ ଘୋଡ଼ାହୋଇଥିବା କନ୍ଥା ଓ ଚାଦରକୁ ସଜାଡ଼ି ଘୋଡ଼ାଇ ଦେଇ, କବାଟ ପାଖରେ ଆରାମରେ ବସିଗଲା ।

ତାଙ୍କର ଘର କରିବାର କୋଡ଼ିଏ ବର୍ଷ ହୋଇଗଲାଣି । ମା ବାପା ଜଣକ ପରେ ଜଣେ ଚାଲିଗଲେଣି । ବୁଢ଼ା ବାପ ଯେଉଁ କୋଣରେ ବିଛଣା ବିଛେଇ ଶୋଉଥିଲା, ଏବେ ସେ ଖାଲି ହୋଇଯାଇଛି । ସେ ପିଢ଼ା ପାଖ କୋଣ ଠିକ୍ ଗୋଟିଏ ପଲଙ୍କ ପାଇଁ ଯଥେଷ୍ଟ ହେବ । କିନ୍ତୁ ବାପର ଖଟ ବାପ ସାଙ୍ଗରେ ହିଁ ଗଲା । ବର୍ତ୍ତମାନ ଦେବୁଡ଼ୁ ତଳେ ଶୁଏ ।

ତେବେ କି ଅଖା ଧଡ଼ଣା ଉପରେ ଏକଲା ଗୋଡ଼ହାତ ମେଲି ଶାଢ଼ିକୁ ଚାଦର କରି ଘୋଡ଼ାଇ ହୋଇ ଦେବୁଡ଼ୁ ଆରାମରେ ଶୁଏ ତ ତା ମୁଣ୍ଡ ପାଖରେ କବାଟକୁ ଠେସା ଦେଇ ଅପ୍ପାସ୍ୱାମୀ ବସି ଖବର ଶୁଣାଉଥାଏ । ଶୁଣି ଶୁଣି ମିଠା ନିଦର ଲହରୀରେ ଦେବୁଡ଼ୁର ମନ ଖୁସିରେ ଭସିଯାଉଥିଲା । ତାକୁ ଲାଗୁଛି, ଜୀବନରେ ଆଉ କଣ ଦରକାର; କିନ୍ତୁ ଏତେ ଆରାମବାଲା ଦିନ ତା ଜୀବନରେ କେବେ କେବେ ହିଁ ଆସେ ।

ଅପ୍ପାସ୍ୱାମୀ ଚୁଲପୋକଙ୍କ ଦାଉରେ ପିଠି କୁଣ୍ଡାଉ କୁଣ୍ଡାଉ ଦେବୁଡ଼ୁ କହିଲା, "ଅଟକା କହିଦେ ।" ଆଉ ସେ ତା ଆଡ଼କୁ ନଇଁପଡ଼ିଲା ।

କିଛି ସମୟ ଚୁଲପୋକ ହଇରାଣ କରୁଥିବା ବାହାନାରେ ହସି ହସି ବାଆଁରେଇ

ହୋଇ ମନକୁ ଭୁଲାଇବା ପାଇଁ ବାହାନା ଖୋଜେ, ଶେଷରେ ସେ ଉଦାସ ହୋଇ କହିଲା···

"ଗୋଟିଏ ରାତି କ୍ଷଣକ ପାଇଁ ମଧ୍ୟ ଅଲଗା ନ ହୋଇ ବିଛଣାରେ ତୁମ ପାଖରେ ଶୋଇବାକୁ ମନ ହେଉଛି ।"

ଅଧା କଥା ଦେବୁଡ଼ୁ ମନ ଦେଇ ଶୁଣିଥିଲା, ବାକି ଅଧିକ ସେ ଆପେ ଆପେ ବୁଝିପାରିଥିଲା । ଯେତେବେଳେ ଏ କଥା ହେଉଥିଲା ତାର ସାରା ଶରୀରରେ ବିଜୁଳି ପରି ଉତ୍ସାହ ଖେଳିଗଲା ଓ ତା ଆଖିଆଗରେ କେତେ ରଙ୍ଗୀନ ଛବି ନାଚଉଠିଲା ।"

ଯେବେଠୁଁ ଅପ୍‌ପାୟୁମ୍ମା ଦେବୁଡ଼ୁ ଘରକୁ ଆସିଛି ସେବେଠୁ ସେମାନେ ଗୋଟିଏ ବଖରା ଥିବା କୁଡ଼ିଆଟିରେ ରହୁଥିଲେ । ପ୍ରଥମ ଦିନ ରାତିରେ ସେହି ନୂତନତା ପରେ ତାଙ୍କୁ ଆଉ ଜଣା ବି ନଥିଲା ନିରୋଳାରେ ରହିବାଟା କଣ ।

ମୂଳରୁ ମୂଳରୁ ଭାଇଭଉଣୀ ସବୁ ମିଶାଇ ସେମାନେ ଦଶ ଜଣ ଏହି ଘରେ ରହୁଥିଲେ । ତାପରେ ଏମାନଙ୍କ ସମସ୍ତଙ୍କର ପିଲା ମିଶି ଆଉ ଦଶ ଜଣ ହୋଇଗଲେ ।

ସେ ଛୋଟ କୁଡ଼ିଆଟିରେ ତିନି ଚାରି ଯୋଡ଼ି ପାଲା କରି ଯେକୌଣସିମତେ କାମ ଚଳାଇ ନଉଥିଲେ । ଏପରି ବି ଦିନ ଥିଲା ଯେତେବେଳେ ଲୋକ ଉପରେ ଲୋକ ଖଟର ତଳେ ଉପରେ ଓ ପାଖରେ ବିଛଣା ବିଛାଇ ଶୋଉଥିଲେ; କାରଣ ଘରେ ସବୁବେଳେ କାହାର ନା କାହାର ଜନ୍ମ, କାହାର ବେମାରି ଓ କିଛି ନ ହେଲେ ପିଲାଙ୍କର ଗୋଳମାଳ ବରାବର ଲାଗିରହୁଥିଲା ।

ଏପରି ବହୁତ ଦିନ ଓ ରାତି ବିତିଛି ଯେତେବେଳେ ଆଖପାଖରେ ଭୟଙ୍କର ବେମାରି ବ୍ୟାପିଥାଏ, ଘରେ ତଳେ ଉପରେ ସବୁ ଜାଗାରେ ପାଣି ଓ କାଦୁଅ, ଅଳିଆ ଜମା ହୋଇଯାଇଥାଏ, କୋଉଠି ଟିକେ ବସିବାକୁ ମଧ୍ୟ ଜାଗା ନ ଥାଏ ଆଉ ବଦଳାଇବାକୁ ଅନ୍ୟ ଲୁଗା ଖଣ୍ଡିଏ ବି ନଥାଏ ।

ଦେହରେ ଲୁଗାର ଖିଆଲ୍ ନ କରି ଶୁଅନ୍ତି ଏବଂ ମଝିରେ ଉଠି ଅନେକ ସମୟ ପର୍ଯ୍ୟନ୍ତ ଚଆଁଇ ରହି ଦୀପ ଲଗାଇ ଆବଶ୍ୟକ ଥିଲେ ଏକଦମ୍ କାମଦାମ ସାରି—ତାଟି ପରଦା ପଛରେ, ପାଇଖାନା ଆଢୁଆଳରେ ଖଟ ପାଖରେ ଡରି ଡରି ଥରି ଥରି, କୌଣସି ଅପର ଲୋକ ସାଙ୍ଗେ ଝଗଡ଼ା କାମ କଲା ପରି—ସମସ୍ତ ଘୃଣାକୁ ହଜମ କରି—ଅପୂର୍ଣ୍ଣ ଆନନ୍ଦ ଓ ଅପୂର୍ଣ୍ଣ ଆଶା ସାଙ୍ଗେ ଗୁରୁପୋକ ଓ ମଶାଙ୍କ ଦାଉ ସହି—ପିଲାଙ୍କର ଆବର୍ଜନା ଓ ବଡ଼ମାନଙ୍କର ଅଶାନ୍ତିକୁ ଖାତିର ନ କରି—ଦୁର୍ଗନ୍ଧ ମଧ୍ୟରେ ଏତେ ଦିନ ତାଙ୍କର ଜୀବନ-ଯାତ୍ରା ଚାଲିଆସିଛି ।

ଦେବୁଡ଼ୁ କେବେ ଧ୍ୟାନ ମଧ୍ୟ ଦେଇ ନ ଥିଲା କି ଯେତେହେଲେ ଅପ୍‌ପାୟୁମ୍ମାର ବି ଗୋଟାଏ ମନ ଥାଇପାରେ, ଆଶା ଥାଇପାରେ ।

ତିଆରି ହେଉଥିବା କୋଠାଗୁଡ଼ିକ ଆଗରେ ଛିଡ଼ାହୋଇ ଅପ୍‌ପାୟୁମ୍ମା ଦେଖୁଥାଏ । ବଡ଼ ବଡ଼ କୋଠା ଦେଖି ସେ ଭାବେ—ଦେଖ କେତେ ବଡ଼ ଘର ଏସବୁ । ଥରେ କୌଣସି ବଡ଼ କୋଠାର ସଫେଇରେ କରିବାକୁ ଯାଇଥିଲା ତ ଦଶ ପନ୍ଦର ଦିନଧରି

ସେହି କଥା ବର୍ଣ୍ଣନା କରୁଥିଲା । ସେ ଘରର ଅନେକଗୁଡ଼ିଏ ବଖରା, ସେଗୁଡ଼ିକର ସାଜସଜ୍ଜା, ନରମ ମଖମଲ ଗାଦି, ବଡ଼ ସୁନ୍ଦର କାରୁକାର୍ଯ୍ୟକରା ସୋଫାସେଟ୍, ଏଗୁଡ଼ିକୁ ବ୍ୟବହାର କରୁଥିବା ସଫା-ସୁତୁରା ଲୋକମାନଙ୍କର ସେ ବାରମ୍ବାର ପ୍ରଶଂସା କରୁଥିଲା ।

ଆଉ କେତେବେଳେ କୌଣସି ବଡ଼ଘର ବିଷୟରେ କହୁ କହୁ କହୁଥିଲା, 'ଏତେ ବଡ଼ ଘରଟାରେ ଗୋଟିଏ ସ୍ତ୍ରୀଲୋକେ, ତାର ସ୍ୱାମୀ ଓ ଦୁଇଟି ପିଲା ବ୍ୟତୀତ ଆଉ କେହି ନାହାନ୍ତି !'

ଯେଉଁ କୋଠାଗୁଡ଼ିକରେ କେହି ରୁହନ୍ତି ନାହିଁ, ସବୁବେଳେ ତାଲା ପଡ଼ିଥାଏ, ସେ କୋଠାଗୁଡ଼ିକ ବିଷୟରେ ବୋଧହୁଏ କେବେ କିଛି କହୁନାହିଁ । ସେ ବୋଧହୁଏ ଭାବୁଥିବ କେବେ ଦୁଇଟି ବଖରା ଥାଇ ଗୋଟିଏ ଘର କରିପାରିଲେ ବହୁତ ବଡ଼ କଥା ହେବ । ସେ ଆଶା ସେ ଛାଡ଼ିଦେଇଥିବ । ବର୍ତ୍ତମାନ ତା ମନରେ କେବଳ ଏହି ଆକାଙ୍କ୍ଷା ଅଛି ।

ଦେବୁଡ଼ୁ ବଡ଼ ଦୟା ଓ ସମବେଦନା ସହ ତାର ଏ ଇଚ୍ଛା ପୂରଣ କରିବାର ଉପାୟ ଖୋଜିବାକୁ ଲାଗିଲା; କିନ୍ତୁ ବହୁତ ଭାବିଚିନ୍ତି, ଖୋଜି ସେ କିଛି ଉପାୟ ପାଇଲା ନାହିଁ । କିଛି ଦିନଯାଏ ସେ ଏହି ଆଶାରେ ରହିଲା ଯେ କୌଣସି ଦିନ ଏହାର ସୁଯୋଗ ମିଳିଯିବ । ଏତିକିରେ ଦିନେ ହଠାତ୍ ଅପ୍ପାୟମ୍ମା ଶେଷ ନିଶ୍ୱାସ ନେଲା । ସେ ସବୁ ଇଚ୍ଛା, ଆଶାକୁ ଭୁଜି ଦେଇଗଲା ।

ଦେବୁଡ଼ୁର ଆଖି ଓଦା ହେଉ ବା ନ ହେଉ, ସେ ଅପ୍ପାୟମ୍ମାର ସ୍ମୃତିରେ ଗୋଟିଏ ଦୀର୍ଘନିଶ୍ୱାସ ଛାଡ଼ିଥିଲା—"ଗରିବ ହେବା ଭଳି ଖରାପ ଜିନିଷ ଏ ଦୁନିଆରେ ଆଉ କିଛି ନାହିଁ ।" ଅପ୍ପାୟମ୍ମାକୁ ମନେ ପକାଇ ସେ ଭାବିଲା—"ଦାରିଦ୍ର୍ୟ ପରି ଖରାପ ଜିନିଷ ଏ ଦୁନିଆରେ ନାହିଁ ।"—ସେ ଦୁହିଁଙ୍କୁ ମନେ ପକାଇ ଭାବିଲା ।

ଚାଲି ଚାଲି ଦେବୁଡ଼ୁ ଏ ସମସ୍ତ ଭାବରେ ମେନ୍ ରୋଡ଼ ଉପରେ ପହଞ୍ଚି-ଯାଇଥିଲା ।

ରାସ୍ତାର ଦୁଇ ପାଖରେ ଥିବା ଘର ଖୁବ୍ ଖାଇପିଇ ଆରାମ କରୁଥିବା ଲୋକ ପରି ଦିଶୁଛନ୍ତି । ଜ୍ୟୋତ୍ସ୍ନା ଶୁଖାଇବା ପାଇଁ ବିଛା ହୋଇଥିବା ସୁନା ପରି ଦିଶୁଛି । ନିର୍ମଳ ନୀଳ ଗଗନରେ ଚନ୍ଦ୍ରମା ଉଜ୍ଜ୍ୱଳ ଓ ସ୍ନିଗ୍ଧ ଦିଶୁଛି ।

ସବୁ ଦିନ ପରି ସହରର ନୋଟିଂ ଥିଏଟର୍ ମଝିରେ ଥିବା ଛକ ଉପରେ ଜଳଖିଆ ଦୋକାନରେ ଲୋକ ଭିଡ଼ ହେଉଛନ୍ତି । ଏହି ଦୋକାନଗୁଡ଼ିକରେ ଜଳୁଥିବା ପେଟ୍ରୋମାକ୍ସ ଓ ବିଜୁଳି ଆଲୁଅରେ ଚନ୍ଦ୍ରମାର ଜ୍ୟୋତ୍ସ୍ନା ଫିକା ପଡ଼ିଯାଇଛି । ଏହି କୋଳାହଳ ମଧ୍ୟରେ ଲୋକେ ଗୁହ୍ୟା ପରି ଏପାଖ ସେପାଖ ଘୁରିବୁଲୁଛନ୍ତି । ଥକି-ଯାଇଥିବା ରିକ୍ସାବାଲାମାନେ ଇସ୍ପାତ୍ ସିଆଡ଼େ ବୁଲି ପୁଣି ଆସି ଧାଡ଼ି ଲଗାଇ ଛିଡ଼ା ହୋଇଯାଇଛନ୍ତି ଭଡ଼ା ମିଳିବା ପାଇଁ ।

ବହୁତ ସମସ୍ତ ଚେଷ୍ଟା କରି ଯେତେବେଳେ ନୁକରାଜୁକୁ କୋଉଠି କିଛି ଆଶା-ଭରସା ମିଳିଲା ନାହିଁ, ସେତେବେଳେ ସେ ଦକ୍ଷିଣ ଆଡ଼କୁ ଗଲା । ଚାଲିବା ଆଗରୁ କେଜାଣି କଣ ତା ମନରେ ବାସ୍ତି ଥିଲା; କିନ୍ତୁ ବାହାରିବା ପରେ ତା ମନରେ ଏହି ପୃଥିବୀ ଓ ମାନବଜଗତ ଉପରେ ଆକ୍ରୋଶର ଭାବନା ଭରିଯାଇଥିଲା ।

ଆଗରୁ ମଧ୍ୟ ଦୁଇଟି ଅବସ୍ଥାରେ ସେ ଏହିପରି ଅନୁଭବ କରିଥିଲା ।

ଥରେ ନେହେରୁଙ୍କର ଜନ୍ମଦିନ ଅବସରରେ ଖେଳାଖେଳିର ପ୍ରତିଯୋଗିତା ଆୟୋଜନ କରାଯାଇଥିଲା । ସେତେବେଳେ ସେ ସପ୍ତମ ଶ୍ରେଣୀରେ ପଢ଼ୁଥିଲା । ତାଙ୍କୁ ଚିତ୍ରକଳା ଶିଖାଇବା ଶିକ୍ଷକ ବଡ଼ ଭଲ ସ୍ୱଭାବର ଥିଲେ । ନୁକରାଜ୍ ଓ ଆଉ ଦୁଇଟି ଛାତ୍ରଙ୍କୁ ସେ ଚିତ୍ରକଳା ପ୍ରତିଯୋଗିତାକୁ ନେଇଯାଇଥିଲେ । ପ୍ରତିଯୋଗିତାରେ ଅଂଶ ନେବା ପାଇଁ ଯେଉଁ ଛାତ୍ର ଆସିଥିଲେ, ତାଙ୍କ ମଧ୍ୟରୁ ଅଧିକାଂଶ ଅଫିସରମାନଙ୍କର ପିଲା ଥିଲେ; ପଇସା ଥିବାବାଲାଙ୍କ ପିଲା । ନୁକରାଜ୍‌କୁ ଚିତ୍ରକଳାରେ ପ୍ରଥମ ପୁରସ୍କାର ମିଳିଥିଲା ।

ସମାରୋହ ଆରମ୍ଭ ହେବା ପୂର୍ବରୁ ପୁରସ୍କାର ପାଇବା ପିଲାମାନଙ୍କୁ ସାମନା ଧାଡ଼ିରେ ଛିଡ଼ାକରାଯାଇଥିଲା । ଟେରିଲିନ୍ କାମିଜ ମଝିରେ, ନାଇଲନ୍ ମୋଜାରେ ଲହୁଣି ପରି ଚିକ୍‌କଣ ରବର କଣ୍ଢେଇମାନଙ୍କ ମଝିରେ ସେ ମଇଳା ଗେଞ୍ଜି, କଳା 'ନିକର୍' ଆଉ ଫିକା ରଙ୍ଗର ତୋରିଆ ପୁରୁଣା କାମିଜ ପିନ୍ଧି ଛିଡ଼ାହୋଇଗଲା । ତାକୁ ନିଜେ ଲାଗୁଥିଲା ଯେପରି ସେ କୌଣସି ଦୃଷ୍ଟି-ଚିହ୍ନ ପରି ଦିଶୁଛି । ଲାଇନ୍ ଛାଡ଼ି ସେ ବାହାରକୁ ଚାଲିଯିବାକୁ ଚାହୁଁଥିଲା; କିନ୍ତୁ ମାଷ୍ଟର ସାହେବ ତାକୁ ଯିବାକୁ ଦେଲେନାହିଁ ।

ପୁରସ୍କାର ବିତରଣ ଆରମ୍ଭ ହୋଇଗଲା । ତାର ବର୍ତ୍ତମାନ ମନେ ନାହିଁ ସେ ଧନ ସମ୍ପତ୍ତି କିଏ ଥିଲେ; ଏତିକି ମନେ ଅଛି ଯେ ସେ କୌଣସି ବଡ଼ ମଣିଷ ଥିଲେ ।

ସେ ପୁରସ୍କାର ନବାବାଲା କେତେକ ପିଲାଙ୍କ ସାଙ୍ଗରେ ଫଟ ଉଠାଇବା ପାଇଁ ଛିଡ଼ା ହୋଇଥିଲେ ଓ ପୁରସ୍କାର ଦେବା ଆଗରୁ ଓ ନବା ପରେ ସେମାନଙ୍କ ସହିତ ହାତ ମିଳାଉଥିଲେ ।

ନୁକରାଜ୍‌ର ପାଳି ଆସିଲା । ସେ ମଞ୍ଚ ପାଖରେ ପହଞ୍ଚିବା ପୂର୍ବରୁ ଅଧ୍ୟକ୍ଷ ମହୋଦୟଙ୍କୁ କେହି ଜଣେ କିଛି ପଚାରୁଥିଲେ ଓ ସେ ତାଙ୍କୁ ଉତ୍ତର ଦେଉଥିଲେ । ପୁରସ୍କାର ହାତରେ ନେଇ ହସ ହସ ମୁହଁରେ ସେ ଅଧ୍ୟକ୍ଷଙ୍କ ଆଡ଼କୁ ଚାହିଁଲା, ତାଙ୍କର ଚେହେରା ହଠାତ୍ କିପରି ଅଦ୍ଭୁତ ହୋଇଯାଇଛି । ନୁକରାଜ୍ ଶେକ୍-ହ୍ୟାଣ୍ଡ କରିବାକୁ ବଢ଼ାଇଥିବା ହାତକୁ ପଛକୁ ହଟାଇବାକୁ ଲାଗିଲା, ଯେପରି ସେ କୌଣସି ଭୁଲ୍ କାମ କରିଛି । ଫେରେ ସାହସ କରି ଆଗକୁ ହାତ ବଢ଼ାଇଦେଲା । ଅଧ୍ୟକ୍ଷ ତାର ବଢ଼ନ୍ତତାକୁ ବଡ଼ ସହାନୁଭୂତି ସହ ବୁଝିପାରିଲା ଭଳି ଭଙ୍ଗୀରେ ଛିଡ଼ା ହୋଇ ଥାଆନ୍ତି । ନମସ୍କାର କରିବାକୁ ଶିକ୍ଷା ଦେଲା ଭଳି ଫେରେ ପ୍ରତିବଦଳରେ ମିଳିଥିବା ନମସ୍କାରକୁ ଈଷତ୍ ହସରେ ଜବାବ୍ ଦେଇ ଆଗକୁ ଥିବା ପୁରସ୍କାର ପାଇଁ ହାତ

ବଢ଼ାଇଲେ ।

ଦ୍ୱିତୀୟ ଥର କୌଣସି ମିତ୍ର ଘରେ ଏହିପରି ଘଟଣା ହେଲା ।

ସେ ଦିନେ ତାଙ୍କର ଫୁଟବଲ ଟିମ୍‌ର ଗୋଲକିପର୍‌ ଥିଲା ଏବଂ କ୍ୟାପଟେନ୍‌ କେହି ବ୍ରାହ୍ମଣ ପିଲା ଥିଲା । ଦିନେ ଖେଳ ସରିବା ପରେ ସେ ଦୁହେଁ ଗପସପ କରି ସାଙ୍ଗ ହୋଇ ଘର ଆଡ଼କୁ ଚାଲିଲେ । ବାହାର ଫାଟକ ପାଖରେ ଛିଡ଼ା ହୋଇ ସେ କିଛି କହୁଯାଉଥିଲା । ନୂକରାଜୁକୁ ବହୁତ ଶୋଷ କଲା । ପାଖରେ ଛିଡ଼ା ହୋଇଥିବା ତାର ସାନ ଭାଇକୁ ଡାକି ପିଇବା ପାଣି ଆଣିବାକୁ କହିଲା ।

କ୍ଷଣକ ପରେ ଘର ଭିତରୁ ତା ମା'ର ଗଳା ଶୁଣାଗଲା—"ପାଣି କାହା ପାଇଁ, ପୁଅ !" ପାଣି ନୂକରାଜୁ ପାଇଁ ଦରକାର ଏ କଥା ଶୁଣିଲାମାତ୍ରେ ସେ ପାଟି କରି କହିଲେ, "ସେ ଗିଲାସ ରଖିଦେଇ ଲୋଟାରେ ନେଇ ଯା ।"

ତାର ମିତ୍ର କଥା କହୁଯାଉଥିଲା । "ଫେରେ ଦେଖାହେବ" କହି ସେ ସେଠୁ ଚାଲିଗଲା । ପଛରୁ 'ପାଣି, ପାଣି' ବୋଲି ବହୁତ ଡାକିବାରୁ ମଧ୍ୟ ନୂକରାଜୁ ପଛକୁ ଫେରି ଚାହିଁଲା ବି ନାହିଁ ।

ପ୍ରଥମ ଘଟଣା ଯାହା ଅତି କମ୍‌ ବୟସରେ ହୋଇଥିଲା; ତା ଉପରେ ଏତେ ଗମ୍ଭୀର ଆଘାତ କରି ନଥିଲା । ଟିକେ ବଡ଼ ହେଲା ପରେ ଯେଉଁ ଦ୍ୱିତୀୟ ଘଟଣା ଘଟିଲା ତାର ବି ସେ ଏତେ ଖିଆଲ କରି ନ ଥିଲା । କିନ୍ତୁ ବର୍ତ୍ତମାନ ଯେଉଁ ଘଟଣା ଘଟିଲା ତାକୁ ଅନେକ ଚେଷ୍ଟା କରି ମଧ୍ୟ ହଜମ କରିପାରୁ ନ ଥିଲା ।

କୁଡ଼ିଆରେ ଜନ୍ମ ହୋଇଥିଲେ ମଧ୍ୟ ଖପ୍‌ପରି ଘର ଓ କୋଠାରେ ରହିଲାବାଲାଙ୍କ ସହ ନୂକରାଜୁର ପରିଚୟ ଓ ସମ୍ପର୍କ ବରାବର ଥିଲା । ପାଠପଢ଼ା ମଝିରେ ବନ୍ଦ ହୋଇଯାଇଥିଲା, ତେବେ ବି ସେ ଏହି ବର୍ଷ ନା ଏହାର ପରବର୍ଷ ମାଟ୍ରିକ୍‌ ପରୀକ୍ଷା ଦେବ । ତାର ମିତ୍ରମାନଙ୍କ ମଧ୍ୟରେ କ୍ଲବ୍‌ର ସଦସ୍ୟ ଏବଂ ସଭ୍ରସଙ୍ଗରୁ ସଜ୍ଜନ ବ୍ୟତୀତ ଭାବୀ ଗୁଣ୍ଡା, ସ୍ଥାନୀୟ ରାଜନୀତିଜ୍ଞ, ହୋଟେଲର ମାଲିକ ଓ ସିନେମା ମାଲିକଙ୍କ ପୁଅ ମଧ୍ୟ ଥିଲେ । ସେ ନିଜେ କୌଣସି ଫ୍ୟାକ୍ଟରୀରେ ଶ୍ରେଷ୍ଠ କିନ୍ତୁ ଭଲ କାମରେ ଅଛି ।

ସେ ସ୍ତ୍ରୀଲୋକମାନଙ୍କ ପ୍ରତି ବଡ଼ ଆଦରପୂର୍ଣ୍ଣ ଭାବ ରଖେ । ଭାରତମାତାଙ୍କ ନାଁ ଶୁଣିଲାକ୍ଷଣି ତାର ଶରୀର ପୁଲକିତ ହୋଇଉଠେ । ଗାନ୍ଧୀ ଓ ନେହରୁଙ୍କୁ ସେ ଦେବତୁଲ୍ୟ ମନେକରେ । ଜବାହରଲାଲ ନେହରୁ, ଜନ୍‌ କେନେଡି ଏବଂ ନିକିତା କ୍ରୁଶ୍ଚେଭଙ୍କର ଛଅ ହାତକୁ ତିନି ଯୋଡ଼ାରେ ଅଲଗା ଅଲଗା କରି ସଞ୍ଚାଳନ କରିବା ଦୃଶ୍ୟ ସେ କେବେହେଲେ ଭୁଲିପାରିବ ନାହିଁ ।

ନୂକରାଜୁ ଅତ୍ୟନ୍ତ ବନ୍ଧୁପ୍ରେମୀ ଅଟେ । ନିଜ ହାତ-ଖର୍ଚ୍ଚରୁ ସେ ତିନିଭାଗ ସିନେମା ପାଇଁ ଖର୍ଚ୍ଚ କରେ ।

ନୂକରାଜୁର ଏହିପରି ସ୍ୱଭାବ ଦେଖି ପାଖପଡ଼ଶା ଯେତେ ଖୁସି ହେଉଥିଲେ ସେତିକି ତା

ମା'ର ଭଗ୍ନ ହଉଥିଲା । ତାର ବାପା ଯେତେବେଳେ ତା'ର ବୟସର ହୋଇଥିଲେ ସେ ଖୁବ୍ ପିଉଥିଲେ । ପଚିଶ ବର୍ଷ ବୟସରେ ହିଁ ତାଙ୍କର ଦେହାନ୍ତ ହବାର ଏହା ପ୍ରଧାନ କାରଣ ଥିଲା । କିନ୍ତୁ ନୁକରାଜ୍ର ସିଆଡ଼େ ମୋଟେ ଧ୍ୟାନ ନାହିଁ ଦେଖି ତା ମା'କୁ କିଛି ଆଶ୍ଚର୍ଯ୍ୟ ପରି ଲାଗୁଥିଲା ।

ଏହି ସମୟରେ ପାକିସ୍ଥାନ ଭାରତକୁ ଆକ୍ରମଣ କଲା । ନୁକରାଜ୍ ପାଗଲ ପରି ହୋଇଗଲା । ଶ୍ରମଦାନ, ରକ୍ତଦାନ ଶେଷରେ ପ୍ରାଣଦାନ ଦେବାପାଇଁ ସେ ପ୍ରସ୍ତୁତ ହୋଇଗଲା ।

ମା' ବ୍ୟସ୍ତ ହୋଇପଡ଼ିଲା । ଦୁଃଖର ଅଶ୍ରୁ ପୋଛି ସେ ଜ୍ୟୁମ ଖାଇ କହିଲା ଆତ୍ମହତ୍ୟା କରିନେବି ବୋଲି । ଶେଷରେ ସେ 'ହୋମଗାର୍ଡରେ ଭର୍ତ୍ତି ହବା ପାଇଁ ମା'କୁ ରାଜି କରାଇଲା । ଏହା ପରେ ସେ ଭୁଉାସ୍ଥ ମାମୁଙ୍କୁ ଖବରଦେଇ ତାଙ୍କ ଝିଅ ସନ୍ୟାଲ୍ସ ସହି ତାର ବିବାହ ମଧ୍ୟ କରାଇଦେଲା ଏବଂ ଶାନ୍ତିରେ ନିଶ୍ୱାସ ମାରିଲା ।

ନୁକରାଜ୍ ପ୍ରଥମେ ଗାଉଁଲି ଝିଅକୁ ବିବାହ କରିବାକୁ ରାଜି ନଥିଲା; କିନ୍ତୁ ତାକୁ ଦେଖିବା ପରେ, ବିଶେଷ କରି ତାର ବିଶାଳ ନୟନକୁ ଦେଖି ସେ କିଛି କହିଲା ନାହିଁ । ବିବାହର ଛଅ ମାସ ପରେ ଝିଅ ଜ୍ଞାନପ୍ରାପ୍ତ ହେଲା; ତା ପରେ ଛଅ ମାସ ପର୍ଯ୍ୟନ୍ତ ସୁଆଣୀ ଘର ପାଇଁ ଅପେକ୍ଷା କରିବାକୁ ପଡ଼ିଲା ।

ଏଥିମଧ୍ୟରେ ପାକିସ୍ଥାନର ବିପଦ ଦୂର ହୋଇଗଲା । 'ଗୃହରକ୍ଷୀ' ହବା ପରେ ଦେଶପ୍ରେମ ସମ୍ବନ୍ଧରେ ତାର ମତ ବଦଳିଗଲା । ଏବେ ତ କାମକୁ ଯିବା, ଘରକୁ ଫେରିବା ଆଉ ଫୁରୁସତ ସମୟତକ ପତ୍ର-ପତ୍ରିକା ପଢ଼ିବା ଏହା ତାର ଧାରାବାହିକ ହୋଇଗଲା । ଏବେ କ୍ଲବ୍ ଯିବା ବି ବନ୍ଦ ହୋଇଗଲା । ରାତିବେଳା କେବେ 'ଟ୍ୟୁଟୋରିଏଲ' କଲେଜରେ ପଢ଼ିବାର ଯୋଜନା ତାର ପଇସା ଅଭାବରୁ ଯୋଜନା-ରୂପରେ ହିଁ ରହିଗଲା ।

ତିନି ମାସ ହେଲା ତାର ସୁଆଣୀ ହୋଇଯାଇଛି । ସେହି ଦିନ ରାତିରୁ—ସତ କହିବାକୁ ଗଲେ ତା ଆଗରୁ ମଧ୍ୟ—କେତେ ଦିନ କେତେ ରାତି ସେ ଗୋଟିଏ ସୁଖ-କଳ୍ପନାରେ ବିତେଇ ଦେଇଛି, ଏବଂ ତାହା ଥିଲା—ଅପ୍‌ସରା ହୋଟେଲର ଛଅମହଲା ଉପରେ ନ ହେଲେ କୌଣସି ସାଧାରଣ ଲଜିଙ୍ଗ ହାଉସ୍‌ରେ କରିବାଲା ଗୋଟିଏ ବଖରାରେ ହଉ ପଛେ—ଅମ୍ବିକ୍ସ ସହିତ ଗୋଟିଏ ରାତି ।

ସେଥିପାଇଁ ତିନି ମାସ ହେଲା ଛୋଟ-ମୋଟ କେତେକ ଆବଶ୍ୟକ ଇଚ୍ଛାକୁ ମଧ୍ୟ ତ୍ୟାଗ କରି ସେ ପଇସା ଜମାଇଛି । ତିନି ଦିନ ଯାଇ ଅମ୍ବିକୁ ବୁଝାଶୁଝା କରି ରାଜି କରାଇଛି । ଘରେ ଗୁରୁଜନମାନଙ୍କୁ କେତେ ପ୍ରକାର ମିଛ କଥା କହି ଗୋଟିଏ ରାତି ପାଇଁ ସେ ଦୁହିଁଙ୍କର ଅନୁପସ୍ଥିତିକୁ କ୍ଷମା କରିବା ପାଇଁ ମନେଇ ନେଲା । ଏତେ ସବୁ କଲା ପରେ ଫଳ ଏଇଆ ହେଲା ।

ଗାଁର ଶେଷ ସୀମାରେ ବରଗଛର ଛାଇତଳେ ଥିବା ମ୍ୟୁନିସିପାଲିଟି ଡାକ୍ତରଖାନା

ପାଖରେ ପଦ୍ମଶ୍ରୀଲକ୍ଷ୍ମୀ ନୁକରାଜୁର୍ ହୋସ୍ ଆସିଲା । ସେ ଚମକି ପଡ଼ି ପଛକୁ ଅନାଇଲା । ଅମ୍ମଡ଼ୁ ତାର ପାଖରେ ଅଛି ।

ଏପରି ସମୟରେ ଓ ଏପରି ଜାଗାରେ ସ୍ତ୍ରୀ-ପୁରୁଷଙ୍କୁ ଏକା ସାଙ୍ଗେ ଦେଖି ଯେ କୌଣସି ରିକ୍ସାବାଲା ଘଣ୍ଟି ବଜାଏ । ଆଗ ଘଣ୍ଟି ବଜାଇବାବାଲା ଉପରେ ରାଗି ମାଡ଼ିଲା; କିନ୍ତୁ ପରେ ବୁଝିଗଲା ଯେ ତାର କିଛି ଭୁଲ୍ ହୋଇନାହିଁ ଏବଂ ସେ ସେହି ରିକ୍ସାରେ ବସିପଡ଼ିଲା ।

ଅମ୍ମଡ଼ୁ ପାଖରେ ଲାଗିକରି ବସିବାରୁ ତାର ପୁରା ହୋସ ଆସିଗଲା । ପଛ ଆଡ଼କୁ ଆଉଜି କହିଲା, "ଭେଙ୍କଟେଶ୍ୱର ଟକିଜ୍‌କୁ ଚାଲ ।"

ଭେଙ୍କଟେଶ୍ୱର ଟକିଜ୍‌ରେ ଖାଲି ନୁହେଁ, କନକଦୁର୍ଗା ପାଲେସ୍‌ରେ ମଧ୍ୟ ହାଉସ୍-ଫୁଲ୍ ଅଛି । କ୍ଷଣକ ପାଇଁ ନୁକରାଜୁର୍ କ୍ରୋଧ ସୀମା ଅତିକ୍ରମ କରିଗଲା । କିନ୍ତୁ କ୍ରୋଧ କାହା ଉପରେ ? "ଭୋକ ଜଳୁଛି ?" ଅମ୍ମଡ଼ୁକୁ ପଚାରିଲା ।

ତାର କଥା ଶୁଣିବା ପାଇଁ ସାରା ଶରୀରରେ କାନ ଲଗାଇ, ତାର ଦୃଷ୍ଟି ପାଇବା ପାଇଁ ଦୁଇ କାନ ଆଖି କରି ଦେଖୁଥିବା ଅମ୍ମଡ଼ୁ ଆଜ୍ଞା କହି ପୁଣି ବୁଝାଇଲା—"ତମେ ଯଦି ଗୁହଁ ଖାଇନଅ ।"

ସେ ଝିଅ ଆଖିରେ ଯେଉଁ କରୁଣା ଥିଲା, ଆଉ ତା କଥାରେ ଓ ଆଖିରେ ଯେଉଁ ବ୍ୟଗ୍ରତା ଥିଲା ତାହା ନୁକରାଜୁର ହୃଦୟକୁ ବିଚଳିତ କରିପକାଇଲା ।

"ଚାଲ" କହି ଗ୍ୟାସ୍ ଆଲୁଅରେ ଚମକୁଥିବା 'ଓପନ-ଏୟାର' ହୋଟେଲଗୁଡ଼ିକ ଆଡ଼କୁ ଚାଲିଲେ ।

ଓଡ଼ିଶି ଶ୍ରୀକୃଷ୍ଣ ବିଳାସରେ, ହୋଇପାରିଲା ଯଦି ଏୟାର-କଣ୍ଡିସନ ଘରେ, ପଦ୍ମ-ପତ୍ରୀ ନଗରୋଳାରେ ବସି ଯାହା ଖାଇବାକୁ ମୁହଁ ଥିଲେ ତା ବର୍ତ୍ତମାନ ଏହିରୂପରେ ବଦଳିଗଲା—'କନକଦୁର୍ଗା ଟିଷ୍ଟାଲ୍'ରେ, ପଗୃ ନର୍ଦ୍ଦମା ପାଖରେ, ଟଳମଳ ହଉଥିବା 'ବେଞ୍ଚ୍' ଉପରେ—ପାଣିରେ ଭିଜିଥିବା, ଖରାରେ ଶୁଖିଥିବା, କଣା ହୋଇ-ଯାଇଥିବା, ଫଟା ପୁରୁଣା ଟେବୁଲ୍ ଯାହା ଉପରେ କି ପ୍ରଥମ ସୋ-ଫେରନ୍ତାଙ୍କ ଭିଡ଼ ଯୋଗୁ ପାଣି ଓ କାଦୁଅ ଏପର୍ଯ୍ୟନ୍ତ ଲାଗିରହିଛି, ତାର ଉପରେ ବଙ୍କା-ତଙ୍କା ଫଟା ପୁରୁଣା ପ୍ଲେଟ୍‌ରେ ସେମାନେ ବର୍ତ୍ତମାନ ଜଳଖିଆ ଖାଉଛନ୍ତି ।

ଅଳ୍ପ ଦୂରରେ ବାନ କପ୍ ଚାହାକୁ ଛଅଟା କପ୍‌ରେ ଢାଳି ପିଇଲାବାଲା ନାଲଠା ଲୋକଦଳେ ଏମାନଙ୍କୁ ଦେଖି ଠୋ-ଠୋ ହୋଇ ହସୁଛନ୍ତି । କୌଣସି ପ୍ରକାରେ ସେମାନଙ୍କ ସାଙ୍ଗେ ଝଗଡ଼ା କରି ସେଥିରୁ ଦୁଇ ତିନଟାଙ୍କୁ ଚଟକଣା ବସାଇବାକୁ ନୁକରାଜୁର ମନ ହଉଥିଲା ।

ପଇସା ଦେଇ ସାରି ସେମାନେ ବାହାରିଗଲେ । ଗଲାବେଳେ ଜାଣିଶୁଣି ନୁକରାଜୁ ସେ ଲୋକଗୁଡ଼ାଙ୍କ ପାଖଦେଇ ଗଲା । "ଆସନ୍ତୁ ଦେଖି, ବେକାରଗୁଡ଼ାକ··· ଗୋଟାଏ ଦୁଇଟା ଖତମ ହୋଇଯିବେ" ମନେ ମନେ ଭାବି ସେ ଆଗକୁ ଚାଲିଲା ।

କେଜାଣି କାହିଁକି ସେ ଲୋକଗୁଡ଼ାକ ସେ ଯୋଡ଼ିଙ୍କ ଧାରରେ ଲାଗିଲେ ନାହିଁ ।

ଚନ୍ଦ୍ରର ଜ୍ୟୋତ୍ସ୍ନା ସ୍ନିଗ୍ଧ ଓ ରୂପେଲି ଥିଲା । ସଡ଼କ ଦୁଇ ପାଖରେ ଘରେ ସବୁ ଶୋଇପଡ଼ିଛନ୍ତି । ସଡ଼କ ଉପରେ ନୁକରାଜ୍ଙ୍କୁ ପଛେ ପଛେ ଅସ୍ପଷ୍ଟ ଛାୟା ପରି ଚାଲିଛି ।

ଗୋଟାଏ ଜାଗାରେ କୌଣସି ଚଉତରା ଉପରେ ଲୋକ ଠେସି ହୋଇ ଶୋଇଛନ୍ତି । ଆଉ ଗୋଟାଏ ଜାଗାରେ ପେଭମେଣ୍ଟ ଉପରେ ଲୋକେ ଧାଡ଼ି ବାନ୍ଧି ଶୋଇଯାଇଛନ୍ତି । ସାମନା କୋଠିରେ ବର୍ତ୍ତମାନ ମଧ୍ୟ ଆଲୁଅ ଜଳୁଛି । ମୋଡ଼ ପାଖରେ ଭିକାରୀ ଭିକାରୁଣୀ ବସି କଥାବାର୍ତ୍ତା କରୁଥିଲେ—ବର୍ତ୍ତମାନ ଚୁପ୍ ହୋଇଗଲେ ।

"ଏମାନଙ୍କର କିଛି ଘରଦ୍ୱାର ନାହିଁ, କେଜାଣି କେମିତି ଖାଉଛନ୍ତି !"

"ସେମିତି, କୁକୁରଙ୍କ ପରି !"

ନୁକରାଜ୍ଙ୍କୁ ମନକୁ ମନ ଚମକି ପଡ଼ିଲା ।

ହଜାର ହଜାର ଲୋକ ଏହି ସହରରେ ଖାଉଁରହୁଛନ୍ତି—ଗଛ ତଳେ ସାରା ପରିବାର ନେଇ ରହୁଛନ୍ତି, କାରକୁ ସେଇଠି ଗେଟଖେଇ କରନ୍ତିଅନ୍ତି—ବର୍ଷା ହେଲେ ପାଖରେ ଥିବା ଚଉତରା ଉପରକୁ ଚାଲିଯାଆନ୍ତି, ହାଡ଼ଭଙ୍ଗା ଶୀତ ହଉ, ମୁଷଳ ଧାରା ବର୍ଷା ହଉ, ମୁଣ୍ଡଫଟା ଖରା ହଉ ବନା ଛାୟାରେ ଛଟପଟ ହେଉଥିବା ପ୍ରାଣୀ !...
"ଯା, ଯା, ଚାଲିଯା ! ଯା ଘର ! କହି ଲୋକେ କୁକୁର ପରି ଏମାନଙ୍କୁ ଘଉଡ଼େଇ ଦିଅନ୍ତି । କାଦୁଅରେ, ଅନ୍ଧାରରେ, ଅସନାରେ ଜୀଇଁବାବାଲା ପ୍ରାଣୀ ! ଘୋଡ଼େଇ ହବା ଚାଦର ଆଉ ପଡ଼ଶାଙ୍କର ତୀକ୍ଷ୍ଣ ଦୃଷ୍ଟିର ଭାରି ବ୍ୟତୀତ ଆଉ ଅନ୍ୟ କୌଣସି ସାହାର ନ ପାଇ ଅନ୍ଧକାରରେ ପାଳିହଉଥିବା ପରିବାର ।

ନୁକରାଜ୍ଙ୍କର ଦୟା ହେଲା ନାହିଁ, କ୍ରୋଧ ଆସିଲା । କୌଣସି ଫିଲ୍ମ୍‌ରେ କେତେକ ଲୋକ ହିଂସା, ଅତ୍ୟାଚାର ଓ ଦୁର୍ନୀତି ବିରୁଦ୍ଧରେ ବିଦ୍ରୋହ କରିବାର ସେ ଦେଖିଥିଲା । କିନ୍ତୁ ଏହି ଜଣେ ସର୍ବଦା ଏହିପରି ପଡ଼ିରହିବ । ଘୁଷୁରି କାଦୁଅରୁ ଦୂରେଇଯିବ କିପରି ? ମନେ ମନେ ନୁକରାଜ୍ଙ୍କୁ ଭାବିଲା ।

ତୀବ୍ର ଗତିରେ ସେ ରାସ୍ତାଦେଇ ଗୋଟିଏ ଲରି ଚାଲିଗଲା । ଗୋଟିଏ ଆଧୁନିକ କାର ଧୀରଗତିରେ ମୋଡ଼ ଉପରେ ଯାଉଛି । ସେଥିରେ ଧଳା ଶାଢ଼ି ଓ ନାଲି ବ୍ଲାଉଜ୍ ପିନ୍ଧି, ଗୋରା ହୋଇ ସ୍ତ୍ରୀଲୋକଟିଏ କୋଳରେ ହାତ ରଖି ବସିଛି । ତାର କଳା କଳା କେଶରେ ଧଳା ମୋତିର ମାଳା ପିନ୍ଧିଛି । ନିଶ୍ଚୟ ସେ 'ଲିଜ୍' ଆଡ଼କୁ ଯାଉଛି; ନ ହେଲେ ସେଇଠୁ ଆସୁଛି ।

ଦୂରରୁ ଦେଖିଲେ ଟନୋଟି ସିନେମା ହଲ ମଝିରେ ଗୋଟିଏ ବଡ଼ ଚୁଲ୍ଲିର ଚିମିନି ଝଙ୍କା ପରି ଦିଶେ । ନୁକରାଜ୍ଙ୍କୁ ସେ ଜାଗାରେ ପହଞ୍ଚିଲାବେଳକୁ ଚନ୍ଦ୍ରମା ଆକାଶ ମଝିରେ ପହଞ୍ଚି ସେଠୁ ଜ୍ୟୋତ୍ସ୍ନା ବରଷାଉଛି ।

ନୁକରାଜ୍ଙ୍କର ଏହା ନିଜର ଗାଁ ନ ହୋଇଥିଲେ ମଧ୍ୟ ସିନେମା ଥିଏଟର ତା ପାଇଁ ନୂଆ ନୁହେଁ । ସେ ଟନୋଟି ଥିଏଟରରେ ଲୋକଭିଡ଼ ସବୁବେଳେ ଥାଏ । ନିଜର

ମଇଳା ଲୁଗା ଆଡ଼େ ଏମାନେ ମୋଟେ ନଘା ହୁଅନ୍ତି ନାହିଁ । ନିଜ ଦେହରୁ ବହୁଥିବା ଝାଳର ଧାର ତାଙ୍କୁ ଜଣେ ନାହିଁ । ତାଙ୍କୁ କାମୁଡ଼ୁଥିବା ଛାରପୋକ ତାଙ୍କୁ ବ୍ୟସ୍ତ କରେ ନାହିଁ । ନିଶ୍ୱାସ ନେଲାବେଳକୁ ତା ସାଙ୍ଗେ ଯେଉଁ ଦୁର୍ଗନ୍ଧ ତାଙ୍କ ଭିତରକୁ ଯାଏ ସେଥିରେ ସେମାନେ ବିବ୍ରତ ହୋଇପଡ଼ନ୍ତି ନାହିଁ ।

ସାମନା ପରଦା ଉପରେ ବଡ଼ ବଡ଼ କୋଠା—ଯିଏ କି ସାମନାରେ ଦିଶୁଥିବା ଛବି ଭଳି ପୋଲ । ସେହି କୋଠାମାନଙ୍କରେ ସୁନ୍ଦରୀ ତନ୍ୱୀମାନଙ୍କର ହାବ-ଭାବ—ମେକ୍-ଅପ୍ ବ୍ୟତୀତ ଏଇ ତନ୍ୱୀମାନେ ନିଜ ସ୍ତ୍ରୀ ମାନଙ୍କ ବଡ଼ ଭଉଣୀ ବା ଆଈମା ଭଳି ଦିଶନ୍ତି, ସେମାନଙ୍କ ଅଧରରେ ମଧୁର ସଙ୍ଗୀତ—ସମସ୍ତେ ଜାଣନ୍ତି ଗାଇଲାବାଲୀ ସେମାନେ ନୁହନ୍ତି, ତେବେ ବି ଭ୍ରମ ହୋଇଥାଏ । ଅବାସ୍ତବ କଥା ଓ କାହାଣୀ ଏବଂ ମିଛ ମମତା—ପରଦା ଉପରେ ଦେଖାଉଥିବା ଏସବୁ ଜିନିଷ ମିଛ । ମିଛ ଜିନିଷକୁ ଏ ମିଛୁଆ ଲୋକମାନେ ଆହୁରି ଅଧିକ ମିଛ ଲଗାଇ ଦେଖାନ୍ତି ।

ଜନତା ପ୍ରକୃତ ଅନୁଭୂତିକୁ ପାଇପାରନ୍ତି ନାହିଁ । ପାଇବାର ଅଭିଳାଷ କଳ୍ପନା-ରୂପେ ମଧ୍ୟ ବଡ଼ ବିପଦସଙ୍କୁଳ ହୁଏ ।

ଏଇଥିପାଇଁ ଯେପରି ବଡ଼ ବଡ଼ ଲୋକମାନେ ମିଠା ମିଠା କଥାରେ ପିଲାଙ୍କ ମନ ଭୁଲାଇ ଦିଅନ୍ତି ଏବଂ ଅଧିକାଂଶ ଲୋକମାନେ ଜନତାକୁ ମିଥ୍ୟା ବଚନ ଦେଇ ଠକାନ୍ତି ଏବଂ ଜନତା ଠକିଯିବାକୁ ପ୍ରସ୍ତୁତ—ସେଥିପାଇଁ ଭୋଟ ମଧ୍ୟ ଦିଅନ୍ତି, ଦର୍କାର ପଡ଼ିଲେ କଳାବଜାର ଦରରେ । ତେବେ ଠକିବାବାଲାଙ୍କର ଦୋଷ କଅଣ ?

ଲୋକଙ୍କର ହୃଦୟ ନାହିଁ । ଯଦି ଥାଆନ୍ତା ତ ଏହା ଜାଣି ସୁଦ୍ଧା ଯେ ମିଛ-ମିଛୁଆ ପତି-ପତ୍ନୀ ମିଛ-ମିଛୁଆ ମିଳନରେ ପରସ୍ପର ପ୍ରତି ମିଛ ଚାହାଣୀରେ ଅନାଇ ରହନ୍ତି, ସେମାନଙ୍କୁ ଦେଖିବାବାଲା ଲୋକଙ୍କର ମନ କାହିଁକି ଲୋଭାଏ ଆଉ ସିଟି କାହିଁକି ବଜାନ୍ତି ?

ନୁକରାଜୁର କ୍ରୋଧ ଯେତେବେଳେ ଏହିଭଳି ଫିଲମ୍ ଦେଖିବାବାଲାଙ୍କ ଉପରେ, କଲାବାଲାଙ୍କ ଉପରେ, କରେଇଲାବାଲାଙ୍କ ଉପରେ ଏବଂ ତାକୁ ଦେଖାଇଲାବାଲାଙ୍କ ଉପରେ କ୍ରମଶଃ ବଦଳି ବଦଳି ବଢ଼ିଚାଲିଥିଲା, ଠିକ୍ ସେତିକିବେଳେ ସେ ଛକ ଉପରେ ପହଞ୍ଚିଗଲା ।

ଦେବୁଡ଼ୁ ମଧ୍ୟ ଠିକ୍ ସେତିକିବେଳେ ସେଇଠି ପହଞ୍ଚିଲା !

"କଣ ରେ ଝିଅ ? କୋଉଠୁ ଆସିଛୁ ?" ଦେବୁଡ଼ୁ ପଚାରିଲା । ନୁକରାଜୁ ଚେହେରା ଦେଖି ଦେବୁଡ଼ୁକୁ ସେ ଝିଅଟି ବେଶି ମେଲାପି ମନେ ହେଲା !

ଅମ୍ମଡ଼ୁ ଦେବୁଡ଼ୁକୁ ଚିହ୍ନି ପାରିଲା ନାହିଁ ।

"କିଏ ?" ଚମକିଲା ଆଖିରେ ସେ ପଚାରିଲା ।

"ତୁ···ତୁ କେଉଁ ଗାଁର ?"

ନୁକରାଜୁ ଆଡ଼କୁ ଦେଖିବାକୁ ଚେଷ୍ଟା କରି ମଧ୍ୟ ଦେବୁଡ଼ୁ ସେ ଆଡ଼େ ଚାହିଁଲା

ନାହିଁ । "ଆମ ଗାଁ ଅନକାପଲ୍ଲୀ" କହି ସେ ସନ୍ଦିଗ୍ଧ ହୋଇ ପଚାରିଲା "ଆପଣଙ୍କର ?"

ସେତେବେଳକୁ ନୁକରାଜୁ ସେ ଆଡ଼କୁ ଚାହିଁଲା । ସେ ହୋସ୍‌ରେ ତ ଥିଲା, ତେବେ ବି ଦେବୁଡ଼ୁକୁ ଚିହ୍ନିପାରିଲା ନାହିଁ ।

"ତମେମାନେ ସେ ଲଜିଙ୍ଗ୍‌କୁ ଆସିଥିଲ ନା ? ମୁଁ ସେଇଠି କାମ କରେ ।"

ତା ପରେ ନିଜ ଆଡ଼କୁ ଚାହିଁଥିବା ନୁକରାଜୁକୁ ସେ କହିବାକୁ ଚାହୁଁଥିଲା— "ଆପଣମାନଙ୍କୁ ଘର ମିଳି ନଥିବ ।" କିନ୍ତୁ ଅଭ୍ୟାସବଶତଃ କହିଲା— "ସେ ଝିଅ ତୁମର କଣ ହୁଏ ?"

ନୁକରାଜୁକୁ ସେ ପ୍ରଶ୍ନରେ ସ୍ନେହଭରା ଅଳି ଦିଶିଲା ନାହିଁ; ବରଂ କୌଣସି ସନ୍ଦେହ ଛପି ରହିଥିବା ପରି ଲାଗିଲା । ତା ପଛରେ ଏକଆଖିଆ ମୁନ୍‌ସୀର ମୁହଁରେ ନୁହେଁ, ଆଖିରେ ପଚାରାଯାଇଥିବା ସେ ପ୍ରଶ୍ନ କୋଟି କୋଟି କଣ୍ଠରେ ମୁଖରିତ ହେଲା ପରି ମନେ ହେଲା ।

"କଣ ରେ ଝିଅ..." ବାକ୍ୟ ପୂରା ବି ହୋଇ ନଥିଲା କି ଦେବୁଡ଼ୁର ଗାଲରେ ଠପ୍, ଠପ୍ ଶବ୍ଦ ହେଲା ।

"ରାଣ୍ଡୀପୁଅ, ମୋ ସ୍ତ୍ରୀ ସାଙ୍ଗରେ କଥା କହିବାର ତୋର କଣ ଦର୍କାର ପଡ଼ିଛି ବେ ?" କହୁ କହୁ ତାର ରୋଷ ଆହୁରି ବଢ଼ିଗଲା ।

"ଠପ୍ ଠପ୍, ଧପ୍ ଧାପ୍"—ଦେବୁଡ଼ୁର ଡାହାଣେ, ବାଏଁ କୋଉଠି ବାଜବ ଏ କଥା କିଛି ନ ଭାବି ନୁକରାଜୁ ନିଜ ବୁଟ୍ ଯୋଡାରେ ଦେବୁଡ଼ୁକୁ କଦର୍ଯ୍ୟ ଭାବରେ ମାରିଲା । ଦୂରରେ ଯାଇ ଧଡ଼ାସ୍ କରି ପଡ଼ିଯାଇଥିବା ସେ ଲୋକ ଉପରେ କ୍ରୁଦ୍ଧ ପଡ଼ିଲା । କାମିଜ ଧରି—

"ରାଣ୍ଡୀପୁଅ, କଣ ଭାବିଛୁ କି ତୁ, କଣ ଅଛି ତୋ ମୁଣ୍ଡରେ..." କହି ସେ ବେଦମ୍ ହୋଇପଡ଼ିଲା ।

କିଛି ସମୟ ତ ଦୋକାନୀ ଓ ରିକ୍‌ସାବାଲାଏ ଆଶ୍ଚର୍ଯ୍ୟ ହୋଇ ଚାହିଁରହିଲେ, ତାପରେ ସେମାନେ ଆସି ସେଠି ଏକାଠି ହୋଇଗଲେ ।

ସେ ଝିଅ ଭୟଗଲାରେ "ବାପ୍‌ରେ, ବାପ୍‌ରେ, ମୋର ସ୍ୱାମୀ ମାରିଦବ, ବୁଢ଼ା ମରିଯିବ" କହି ଥର ଥର ହୋଇ ଅଣ୍ଡରଗଲା ଓ କାନ୍ଦିପକାଇଲା ।

ଏଥିମଧ୍ୟରେ ସେଠିକି ଆସିଯାଇଥିବା ଲୋକମାନେ ବୁଢ଼ା ଦେବୁଡ଼ୁକୁ ଦୁର୍ବଳ ନୁକରାଜୁ କବଳରୁ ରକ୍ଷା କରିଦେଲେ ।

ନୁକରାଜୁର ସଜଡ଼ା ବାଳ ଝାମ୍ପୁରା ହୋଇଗଲା, କାମିଜ ଚିରିଗଲା, ଘଡ଼ି ହାତରୁ ଝୁଲି ପଡ଼ିଥିଲା । ସେ ନିଜକୁ ସମ୍ଭାଳୁ ସମ୍ଭାଳୁ ପାଟି କରୁଥିଲା—

"ରାଣ୍ଡୀପୁଅ, ମୁଁ ତୋର ରକ୍ତ ପିଇଯିବି, ତୋର ଜୀବନ ନେଇନେବି । ସ୍ତ୍ରୀଲୋକ ରାସ୍ତାରେ ଛିଡ଼ାହୋଇଛି ବୋଲି କଣ ରାଣ୍ଡୀ ହୋଇଯିବ ? ଯେଉଁମାନେ ତୋ 'ଲଜ୍'କୁ ଯାଉଛନ୍ତି ସେଇମାନେ ସମସ୍ତେ ରାଣ୍ଡୀ ହୋଇଥିବେ । ବଡ଼ଘରର ଲୋକ

ରଣ୍ଡୀକୁ ନିଜ ସାଙ୍ଗରେ ନେଇଯାଏ ତ ତେବେ ବି ସେ ଶଳା ମଣିଷ; ଆଉ ନିଜ ସ୍ୱାମୀ ସାଙ୍ଗରେ ଯାଉଥିଲେ ସେ ରଣ୍ଡୀ ହୋଇଗଲା ? ତୋର 'ଲଡ୍ଜ୍' ରଣ୍ଡୀମାନଙ୍କ ଲଡ୍ଜ୍ —ତତେ, ତୋର କଣା ମୁନସୀକୁ ଆଉ ତୋର ରଣ୍ଡୀ ଲଡ୍ଜର ମାଲିକକୁ ଏକାଥରେ ମୁଁ ଶେଷ କରିଦେବି ।”

ଯେଉଁ ଲୋକମାନେ ସେଠି ନୂକରାଜୁକୁ ଘେରି କରି ଛିଡ଼ା ହୋଇଥିଲେ ସେମାନଙ୍କୁ କୌଣସି କାରଣରୁ ଏହା ବିଶ୍ୱାସ ହୋଇଯାଇଥିବ କି ନୂକରାଜୁର କିଛି ଦୋଷ ନାହିଁ । ଓସ୍ତପହ ପରି ଅତି ଅଶ ଅପ୍ପଡୁ ଦୂରରୁ ପାଟି କରୁଥିଲା, “ଚାଲିଆସ, ମୋ କଥା ମାନି ଚାଲିଆସ । ସେ ବୁଢ଼ାଟା ସାଙ୍ଗରେ କଣ ଲଢ଼ୁଛୁ । ଚାଲ ଯିବା ଆମେ ଆମ ବାଟରେ !” ଅପ୍ପଡୁର ଏ କଥା ଶୁଣି ଲୋକମାନଙ୍କର ବିଶ୍ୱାସ ଆହୁରି ଦୃଢ଼ ହୋଇଗଲା ।

ସେଠି ଦେବୁଡୁର ପରିଚିତ କେହି ନଥିଲେ । ସ୍ୱା ଛଡ଼ା ଦେବୁଡୁ କୌଣସି କଥାର ଉତ୍ତର ଦେଉ ନଥିଲା । ଏହି ଦୁଇଟି କଥାରୁ ଲୋକେ ଏହା ଭାବିବାକୁ ବାଧ୍ୟ ହୋଇଥିବେ ଯେ ଦୋଷ ଦେବୁଡୁର ହୋଇଥିବ ।

“ଯା, ଛାଡ଼ ଭାଇ ! ଯାହା ହୋଇଗଲା ହୋଇଗଲା । ଏବେ ବୁଢ଼ାର ଅଧା ଜୀବନ ତ ତମେ ବାହାର କରିଦେଇଛ । ଏବେ ତମେ ତମ ବାଟରେ ଯାଅ ।” କେହି ଦରବୁଢ଼ା ଲୋକ କହିଲା ।

“ବୁଢ଼ା କିଏ ମ ? ସେ ତ ବେଶ୍ୟାଙ୍କ ପଛରେ ଲାଗିଥିବା 'ଖଚଡ଼, ଅଣବାପୁଅ ପୁଅ” କହି ନୂକରାଜୁ ଆହୁରି ଉତ୍ତେଜିତ ହୋଇଯାଉଥିଲା । ଏଥରକି ଅପ୍ପଡୁ ସାହସ ବାନ୍ଧି ତାର ହାତ ଧରିପକାଇଲା ।

ଏହି ସମୟରେ 'ଇଣ୍ଟରଭାଲ୍'ର ଘଣ୍ଟି ବାଜିବାରୁ ଚାରିଆଡ଼ୁ ଲୋକ ଛୁଟି ହୋଇଗଲେ । କ୍ଷଣକରେ ସେମାନେ ନିଜକୁ ବଡ଼ ରାସ୍ତା ଭିଡ଼ ଭିତରେ ପାଇଲେ ।

ଉନାଟାଯାକ ଥିଏଟରରେ ପାଞ୍ଚ-ଦଶ ମିନିଟ୍ ଅନ୍ତରରେ ଇଣ୍ଟରଭାଲ୍‌ର ଘଣ୍ଟି ପ୍ରାୟ ପାଖାପାଖି ଏକାସମୟରେ ବାଜେ । କେବେ କେବେ ଏଥିରେ ବି ତଫାତ୍ ହୁଏ ନାହିଁ ଏବଂ ଉନାଟାଯାକ ସିନେମା ଘରୁ ଲୋକ ବାହାରି ଦୋକାନମାନଙ୍କରେ ଭରି-ଯାଆନ୍ତି । ଏପରି ସମୟରେ ସୋଡ଼ାବୋତଲ ଖୋଲିବାର ଶବ୍ଦ, ଚାହାବାଲାର ଡାକ, ପୋକୋଡ଼ିବାଲାର ପ୍ରଚୁର ଚିରଆଡ଼ି ପାଟିତୁଣ୍ଡ ଆରମ୍ଭ ହୋଇଯାଏ । ଲୋକେ ଲଜ୍ଜା ଛାଡ଼ି ରାସ୍ତା ଖରାପ କରିଦିଅନ୍ତି ଏବଂ ଖାଇବା-ପିଇବାରେ ମାତ କେତେବେଳେ ନଗ୍ନ ଛବିଗୁଡ଼ିକ ଆଡ଼କୁ କେତେବେଳେ ମଣିଷମାନଙ୍କ ଆଡ଼କୁ ଲୋଭିଲା ଆଖିରେ ଚାହିଁ ରହନ୍ତି ଓ ନିଜେ ନିଜକୁ ଦେଖି ଅପ୍ରତିଭ ହୋଇପଡ଼ନ୍ତି ।

ଏହିପରି ସମୟରେ ଲୋକମାନଙ୍କ ଭିଡ଼ ସେପଟେ ଗୋଟିଏ ଚଉତରା ଉପରେ ବସି ଦେବୁଡୁର ମୁଣ୍ଡ ବୁଲଉଥିଲା, ଶରୀରରେ ରକ୍ତଚଳନ ବନ୍ଦ ହୋଇଯାଇଥିଲା

ଏବଂ ପ୍ରତ୍ୟେକ ଅଙ୍ଗରେ ଜଳାପୋଡ଼ା ହଉଥିଲା ।

ଯେତେବେଳେ ଭିଡ଼ ଜମିଗଲା ତ କେହି ଜଣେ ସୋଡ଼ା ବୋତଲେ ଆଣିଦେଲା । ସେ ତାକୁ ପିଇଦେଲା । ଆଉ କିଏ ଜଣେ ଛିଣ୍ଡି ହୋଇପଡ଼ିଥିବା ଲୁଗାପଟା ଆଣିଦେଲା ତ ସେ ପିନ୍ଧିନେଲା । ଏଇଥିପାଇଁ ବା ଅନ୍ୟ କୌଣସି କାରଣରୁ ମନରେ ଉଚ୍ଛୁଳି ଉଠୁଥିବା ଦୁଃଖକୁ ବଡ଼ କଷ୍ଟରେ ଚାପି ରଖି ପ୍ରହାର ଉପରେ ପ୍ରହାର ଓ ଦୁଃଖ ଉପରେ ଦୁଃଖ ସହିଥିବା ଶୁଖିଲା-ଭୁଖିଲା କାଠ ପରି ଶରୀରକୁ ଘୋଷାରି ଘୋଷାରି ସେ ଲଜିଙ୍ଗ ଆଡ଼କୁ ନେଇଗଲା ।

ଆରପାଖରେ ଭିଡ଼ଠାରୁ କିଛି ଦୂରରେ ଖାଲି ରିକ୍ସା ଦେଖି ଯୁବକ-ଯୁବତୀ ଯାଇ ସେଥିରେ ବସିଲେ । ଅଶ୍ରୁଜ୍ଜ୍ୱ ମନରେ ଫୁଲି ଫୁଲି କରି ଦୁଃଖର ଲହରୀ ଉଠୁଛି । ନୁକରାଜ୍ ତାକୁ ସାନ୍ତ୍ୱନା ଦେଉନାହିଁ । ଗୋଟିଏ ହାତରେ ତାକୁ ସମ୍ଭାଳି ଧରି ଆର ହାତରେ ରୁମାଲ ନେଇ ଫାଟିଥିବା ନିଜ ଓଠରୁ ରକ୍ତ ଥାପୁଛି । ଜହ୍ନ ଆଲୁଅରେ ରିକସା ଦୂରରୁ ଆହୁରି ଦୂର ହୋଇଯାଉଛି ।

# ହାତବାଲା-ଚୌକି

"ଆଚ୍ଛା ସେ ।" କେହି ଆଶ୍ଚର୍ଯ୍ୟ ହୋଇ କହିଲା ।

"ହଁ ସେହି ତ ।" ଅନ୍ୟ କେହି କହିଲା ।

"ହଁ ସେହି, ସେହି ତ ।" ଆଉ ଦୁଇଜଣ କହିଲେ ।

ବର୍ତ୍ତମାନ ଗାଁର ପୂର୍ବପଟେ ଥିବା ପୋଖରୀ କୂଳରେ ପୁରୁଣା ଓସ୍ତଗଛ ତଳେ ଛିଡ଼ାହୋଇଥିବା କାର୍‌ରୁ ଅଧିକାଂଶ ଆଭାରେ ଅଳଂକୃତ ଗୋଟିଏ ବଡ଼ ମଣିଷ ବିଷୟରେ ଲୋକେ ପରସ୍ପର ମଧ୍ୟରେ ଚର୍ଚ୍ଚା କରୁଛନ୍ତି । ସେଠି ଏକଜିତ ହୋଇଥିବା ଭିଡ଼ ମଧ୍ୟରୁ ଜଣେ କେହି କହିଲା—"ସେହି ହେଉଛନ୍ତି ଚେୟାରମ୍ୟାନ୍ ।" ଯେଉଁମାନେ ତାଙ୍କୁ ଆଗରୁ ଦେଖିନଥିଲେ, ସେମାନେ ତାଙ୍କୁ ଦେଖି ବହୁତ ଦିନ ପରେ ଦେଖିଲେ ଯେପରି ହୋଇଥାଏ, ସେହିପରି ସହଜ ପ୍ରସନ୍ନତା, ଗୌରବ ଓ ବିନମ୍ରତା ସହ ତାଙ୍କ ବିଷୟରେ ନିଜ ନିଜ ଭିତରେ ଚର୍ଚ୍ଚା କରିବାକୁ ଲାଗିଲେ ।

"ମଣିଷଟା ତ ବେଶ୍ ଭଲ ।" ଚେୟାରମ୍ୟାନଙ୍କର ହୃଷ୍ଟ-ପୁଷ୍ଟ, ବଳିଷ୍ଠ ଦେହକୁ କେହି ଜଣେ ପ୍ରଶଂସା କଲା ।

ଯେଉଁ କାର୍‌ରୁ ସେ ଓହ୍ଲାଇଲେ, ତା'ପରୁ ଅଧିକ ଧଳା ପୋଷାକରେ ଟାଇ ଲଗାଇ ଓହ୍ଲାଇଲେ ପଞ୍ଚାୟତ ବୋର୍ଡ଼ର ପ୍ରେସିଡେଣ୍ଟ । ସେ ଗାଁର କେତେକ ନାମଜାଦା ଲୋକ ଏବଂ ତାଙ୍କ ଆଶ୍ରୟରେ ଥିବା ଚାକରବାକରର ସମସ୍ତେ ସକାଳୁ ସେହି କାର୍‌ର ଅପେକ୍ଷାରେ ଛିଡ଼ାହୋଇଛନ୍ତି । ଶେଷରେ ଯେତେବେଳେ ଦିପହରକୁ ସେ କାର ପହଞ୍ଚିଗଲା ସେତେବେଳେ ସେମାନଙ୍କର ଖୁସିର ସୀମା ରହିଲା ନାହିଁ ।

ଚେୟାରମ୍ୟାନଙ୍କ ସାଙ୍ଗରେ ଆଉ କେତେକ କର୍ମକର୍ତ୍ତା ମଧ୍ୟ ଥିଲେ । ସେମାନେ କିଏ ଥିଲେ, ତାହା ଗାଁ ଲୋକଙ୍କୁ ଜଣା ନ ଥିଲା । କେହି କହିଲା—"କଲେକ୍ଟର ହୋଇଥିବେ ।" ଅନ୍ୟ କେହି କହିଲା, "ଛିଃ, କଲେକ୍ଟର କିପରି ?" ତ ଆଉ ଜଣେ କହିଲା, "ହୋଇଥିବେ ତହସିଲଦାର ।" ଏ କଥା ଖଣ୍ଡନ କରି କେହି କହିଲା—"ନାହିଁ, ନାହିଁ, ସେ ତହସିଲଦାର ନୁହନ୍ତି । ତହସିଲଦାରଙ୍କ ମୁଣ୍ଡରେ ଦାଗ ଅଛି । ଗତଥର ଯେଉଁ ରେଭେନ୍ୟୁ ଇନ୍‌ସପେକ୍ଟର ଆସିଥିଲେ ସେ ସେଇ ନା !" ଅନ୍ୟମାନଙ୍କୁ କାହାକୁ କିଛି ଜଣାଯାଉ ନଥିଲା । ସବୁ ଲୋକ ନିଜ ନିଜର ଅନୁମାନ ଲଗାଇଲେ ।

ସେ ଗାଁରେ ଗୋଟିଏ ମାତ୍ର ସ୍କୁଲର ଏକମାତ୍ର ଶିକ୍ଷକ ପ୍ରକାଶମ୍ କହିଲା ଯେ ସେ ଦାଗବାଲା ଜାଗାରେ ଏହି ଶ୍ରୀଆନାଙ୍କଆ ସେହି ଦିନ ପ୍ରଥମ କରି ଆସିଛି ଆଉ ସେ ଧଳା ପୋଷାକବାଲା ବି. ଡ଼ି. ଓ., ଏବଂ ତୃତୀୟ ହେଉଛି ସରପଞ୍ଚ ।

ସେମାନଙ୍କ ପଛରେ ଭିଡ଼ ଜମିଗଲା । ସବୁଠୁଁ ଆଗରେ ଧଳା ଲୁଗାବାଲାମାନେ,

ତାଙ୍କ ପଛରେ ମଇଳା ଓ ରଙ୍ଗିନ ଲୁଗାପଟା ପିନ୍ଧିଥିବା ଲୋକେ, ତାଙ୍କ ପଛରେ ଆଣ୍ଠୁ ପର୍ଯ୍ୟନ୍ତ ପିନ୍ଧିଥିବା ଲୋକେ, ତାଙ୍କ ପରେ ମୁଣ୍ଡରେ ପଗଡ଼ି ଭିଡ଼ି ଯାଉଥିବା କେତେକ ଲୋକ—ଏହିପରି ସବୁ ପ୍ରକାରର ଲୋକ ଏ ଭିଡ଼ରେ ଯାଉଥିଲେ । ପିଲାମାନେ କୌତୂହଳ ଦେଖାଇ ତାଙ୍କ ପଛେ ପଛେ ଯାଉଥିଲେ । ଏ ବୟସ୍କ ଲୋକମାନେ ଏହି ଆଶାରେ ସେ ଅଧିକାରୀମାନଙ୍କ ମୁହଁ ଦେଖିଦେଖି ଯାଉଥାନ୍ତି କି ଏତେ ବଡ଼ ବିପଦରୁ ଏହି ବାବୁମାନେ ଆମର ଉଦ୍ଧାର କିପରି ଭାବରେ କରିପାରିବେ ।

ହଜାରରୁ ଅଧିକ ଘର ଥିବା ଏହି ଗାଁରେ କାଲି ନିଆଁ ଲାଗି ଦୁର୍ଘଟଣା ହୋଇଥିଲା । ଅଧା ଘର ଜଳି ପାଉଁଶ ହୋଇଯାଇଛି । ଗାଁର ସଡ଼କ ଉପରେ ଅଧଜଳା କାନ୍ଥରୁ କଳା କଳା ପାଉଁଶର ପଟ୍ଟି ସାଙ୍ଗରେ ଅଧାକଟା, ଅଧାଜଳା ବାଉଁଶ ଓ କାଠ ଏବଂ ନିଆଁ ଲିଭାଇବା ଇଞ୍ଜିନଦ୍ୱାରା ଧ୍ୱସ୍ତ ହୋଇଥିବା କୋଠାବାଡ଼ି ବଡ଼ ବିକଟାଳ ଦେଖାଯାଉଛି ।

ରାମମୂର୍ତ୍ତି ଏହି ଭିଡ଼ରୁ କିଛି ଦୂରେଇ ହୋଇ ଯାଉଥିଲା । ସମସ୍ତଙ୍କ ସାଙ୍ଗରେ ମିଶିବା ପାଇଁ ତାର ମନ ହେଲା ନାହିଁ । ସମସ୍ତ ଦୃଶ୍ୟ ତାକୁ ଭାରାକ୍ରାନ୍ତ କରିପକାଇଥିଲା । ଆଗରେ ଯାଉଥିବା ଭିଡ଼ରେ ମିଶି ଚାଲୁଥିବା ଲୋକଙ୍କ ମୁଣ୍ଡ ମଝିରେ ଗୋଟିଏ ଚୌକିର ଗୋଡ଼ ଉପରକୁ ଟେକା ହୋଇଅଛି; ଆଉ କିଏ ସେ ଚୌକିକୁ ମୁଣ୍ଡରେ ଉଠାଇ ନେଇଯାଉଛି—କାଳେ ଚେୟାରମ୍ୟାନ୍ ସାହେବ୍ ସେଥିରେ ବସିବାକୁ ଚାହିଁବେ ! ଖାଲି କାନ୍ଥ ମଝିରେ ଶବମାନଙ୍କ ପାଇଁ କାନ୍ଦୁଥିବା ଲୋକଙ୍କୁ, ଅଗ୍ନି-ଜ୍ୱାଳାରେ ଲୀନ ହୋଇଯାଇଥିବା ପ୍ରାଣୀମାନଙ୍କ ପାଇଁ ଛଟପଟ ହେଉଥିବା ଦୀନଦୁଃଖୀମାନଙ୍କୁ—ସମସ୍ତଙ୍କୁ ସେ ଚୌକିର ଗୋଡ଼ ଦେଖାଯାଉଛି । ବାଲି ମଝିରେ ରଖା-ଯାଇଥିବା ନଜର ଛଡ଼ାଇବା ପାଇଁ ପ୍ରତିମା ଯେପରି ଲୋକଙ୍କ ଧ୍ୟାନ ନିଜ ଆଡ଼କୁ ଆକର୍ଷଣ କରିନିଏ, ସେହିପରି ଏହି ଚୌକି ଜିଲା ପରିଷଦର ଚେୟାରମ୍ୟାନ ଏବଂ ରେଭେନ୍ୟୁ ଅଫିସର, ତହସିଲ୍‌ଦାରଙ୍କୁ ବି ଉପେକ୍ଷା କରାଇ ସମସ୍ତଙ୍କ ଧ୍ୟାନ ନିଜ ଆଡ଼କୁ ଟାଣି ନେଉଛି ।

ଜ୍ୟେଷ୍ଠ ମାସ । ପୋଖରୀରେ ପାଣି ଶୁଖିଯାଇଛି । ପ୍ରକୃତି ତାର ଲେଲିହାନ ଜିହ୍ୱାକୁ ଚାରିଆଡ଼େ ମେଲାଇ ଦେଇଛି । ଏହି ଅବସ୍ଥାରେ ଏ ଘଟଣା ଘଟିଛି । ଏହି କାରଣରୁ ସାରା ଗାଁର ଲୋକେ ଶୁଖିଲା, ପୋଡ଼ା, କ୍ଲାନ୍ତମ୍ଳାନ ଦିଶୁଥିଲେ ।

ଯେଉଁ ଘରଗୁଡ଼ିକ ଜଳିଯାଇଥିଲା ସେ ଘରର ଲୋକ, ପ୍ରତ୍ୟେକ ଘରୁ ଜଣେ ଦୁଇଜଣ କରି—ପାଉଁଶ କାଢ଼ିବାରେ ବା ହଜିଯାଇଥିବା ଜିନିଷ ଖୋଜିବାରେ ଲାଗିଛନ୍ତି । ନିରାଶାରେ ଓଦା ହୋଇଯାଇଥିବା ଲୁହ ଯୋଗୁ ଦୁନିଆଁକୁ ଦେଖି ନ ପାରିବା ଆଖିରେ ସେମାନେ ଏକେବାରେ ନିସ୍ତବ୍ଧ ଦେଖାଯାଉଥିଲେ । ଏ ଆଘାତରେ ଆହତ ହୋଇ ସେ କିଛି କଥା ବି କହି ପାରୁନଥିଲେ ଓ ସ୍ତମ୍ଭିତ ନୟନରେ ନିରୁଦ୍ଦେଶ୍ୟ ଭାବରେ ଇଆଡ଼େ ସିଆଡ଼େ ଚାହୁଁଥିଲେ ।

ରାମମୂର୍ତ୍ତି ଭାବିଲା, ଯଦି ନିଆଁ ଲାଗି ଜଳ ଆସିବାରେ ଆଉ ପାଞ୍ଚ ମିନିଟ ବି ଡେରିକରି ଦେଇଥାନ୍ତା ତେବେ ତାର ଘର ମଧ୍ୟ ପାଉଁଶ ହୋଇଯାଇଥାନ୍ତା । ସେ ଆସିବା ପରେ ବି ଶହେ ଖଣ୍ଡେ ଘର ଜଳିଯାଇଛି । ଭଗବାନଙ୍କ କୃପାରୁ ବିପଦରୁ ରକ୍ଷା ପାଇଗଲା । ଯେତେବେଳେ ଅଗ୍ନିଶିଖା ଆଗକୁ ବଢ଼ିବାକୁ ଲାଗିଲା ଓ ନିଆଁ ଲିଭାଇବା ବାଲା ପାଣିରେ ପିଚକାରି ମାରି ନିଆଁ ଲିଭାଇବାକୁ ଲାଗିଲେ ସେତେବେଳେ ଗୋଟାଏ ଆଡ଼େ ହୃଦୟକୁ ଚିରଦେଲା ପରି କମ୍ପନ ଆଉ ଅନ୍ୟ ଆଡ଼େ ପୋଖରୀରେ ପାଣି ଦେଖି ହେଉଥିବା ସାନ୍ତ୍ୱନା ଏ ଦୁଇଟି ମଝିରେ ଆନ୍ଦୋଳିତ ମନରେ ରାମମୂର୍ତ୍ତି ଭଗବାନଙ୍କୁ ସ୍ମରଣ କରିଥିଲା । ଯେଉଁମାନେ ବଞ୍ଚିଗଲେ ସେମାନଙ୍କ ସହ ରାମମୂର୍ତ୍ତି ମଧ୍ୟ ସ୍ୱସ୍ତିର ନିଶ୍ୱାସ ମାରି କହିଲା—"ଭଗବାନ୍ ବଞ୍ଚାଇଦେଲେ ।"

ରାମମୂର୍ତ୍ତିର ମନ ବଡ଼ ବ୍ୟାକୁଳ ହୋଇପଡ଼ିଛି । ପାଞ୍ଚଶହ ଛଅଶହ ପରିବାର ଘଡ଼ିକରେ ଗୃହହୀନ ହୋଇଯାଇଛନ୍ତି । କୋଟିଏ ଚଳପରି ନିଆଁ ଘରଗୁଡ଼ିକ ଉପରେ ଆକ୍ରମଣ କଲା ଓ ଅବଶେଷରେ ହାଡ଼ଗୁଡ଼ିକ ଗଦାକରି ଲିଭିଗଲା ।

ଯେତେବେଳେ ରାମମୂର୍ତ୍ତି ଆଗରେ ଏହି ଟାଣ ଖରାରେ ପାଉଁଶ ଗୋଟାଉଥିବା ଲୋକମାନଙ୍କର ବିସ୍ମୟ ମୁଖଭଙ୍ଗୀ ଦେଖାଯାଉଥିଲା ସେ ବୁଝି ପାରୁନଥିଲା କି ତା'ର ଘରଟା ରକ୍ଷା ପାଇଯିବାଟା ସୌଭାଗ୍ୟ ନା ଦୁର୍ଭାଗ୍ୟ । ଦଶଜଣଙ୍କ ସାଙ୍ଗରେ ନରକକୁ ଯିବାରେ ମଧ୍ୟ ସ୍ୱର୍ଗ ପରି ସୁଖ ମିଳେ, ଯେତେବେଳେ କି ଏକା ସ୍ୱର୍ଗରେ ପହଞ୍ଚିବାରେ ନରକ-ଯାତନାଠାରୁ କମ୍ ପୀଡ଼ା ଅନୁଭବ ହୁଏନାହିଁ ।

ଗୋଟିଏ ଖପରିଲି ଘରେ ତିନୋଟି ପିଲା—ଦୁଇଟି ପୁଅ ଓ ଗୋଟିଏ ଝିଅ—ଦଶ, ତେର ଓ ଚୌଦ୍ଦ ବର୍ଷର—ଛାତ ପଡ଼ିଯିବାରୁ ପୋଡି ହୋଇ ମରିଯାଇଛନ୍ତି । ଅଗ୍ନି-ଶିଖା ଖପର ଘରକୁ ଜଳାଇ ପାରିବ ନାହିଁ, ଏହି ଭରସାରେ ସେ ପିଲାମାନେ ସେହି ଘର ଭିତରେ ଯାଇ ଲୁଚିରହିଥିଲେ । ଏତିକିବେଳେ ନିଆଁ ଘେରିଗଲା । ସେମାନେ ସେଠୁ ବାହାରି ପାରିଲେ ନାହିଁ ଆଉ କେହି ସେଠି ପହଞ୍ଚି ମଧ୍ୟ ପାରିଲେ ନାହିଁ । ଧୂଆଁରେ ଘେରି ହୋଇଯାଇଥିବାରୁ ସେ ପିଲାମାନେ ମରିଯାଇଥିବେ । ପରେ ଛାତରେ ନିଆଁ ଲାଗିଗଲା ଓ ତାହା ପଡ଼ିଗଲା । ସକାଳେ ହିଁ ସେ ପିଲାଙ୍କୁ ବାହାର କରାଯାଇ ପାରିଥିଲା । ଏହି ଭୀଷଣ ଅଗ୍ନିକାଣ୍ଡର ଗୋଟିଏ ଗୋଟିଏ କରୁଣ କାହାଣୀ ଶେଷ୍ଯାରମ୍ୟାନ ସାହେବଙ୍କୁ ଶୁଣାହେଉଥିଲା ।

ଏପଟେ ସେପଟେ ଉଚ୍ଚୁଳି ଉଚ୍ଚୁଳି କରି ଆସୁଥିବା ବେଦନାକୁ ପ୍ରକଟ କରୁଥିବା କ୍ରନ୍ଦନ ଶୁଣାଯାଉଛି । ସାଧାରଣତଃ କେତେକ ବାଙ୍କ ଯୋଗୁ ସେ ସଡ଼କ ପୁରାପୁରି ଦିଶୁ ନଥିଲା । କିନ୍ତୁ ବର୍ତ୍ତମାନ ଖାଲି ସେହି ସଡ଼କ କେବଳ ନୁହେଁ, ଏପାଖ ସେପାଖର ସଡ଼କଗୁଡ଼ିକ ମଧ୍ୟ ଅଧଜଳା କାନ୍ଥ ସାଙ୍ଗରେ ପରିଷ୍କାର ଭାବେ ଦିଶୁଛି । ଆଗରୁ ରାମମୂର୍ତ୍ତି ଘରୁ ଅନାଇଲେ ବଡ଼ କଷ୍ଟରେ ପଚିଶିଟା ଘର ପର୍ଯ୍ୟନ୍ତ ଗାଁ ଦେଖା ଯାଉଥିଲା; କିନ୍ତୁ ଏବେ ସବୁ ଘର ସଡ଼କ ଉପରକୁ ଆସିଯାଇଛି, ଯେପରି କାଳିମ

କରାଯାଉଥିବା ଜିନିଷପତ୍ର ବାହାରକୁ କଢ଼ାଯାଏ । କେତେକ ଗଛ ଜଳିଯାଇଛି ଓ ଆଉ କେତେ ଆକାଶକୁ ଗୁହିଁ ନିଜର ଅସୀମ ବେଦନାକୁ ଭିତରେ ଗୁପିରଖି ଠିଆ ହୋଇଛନ୍ତି ।

"ବଉଷ ପରେ କାର୍ଯ୍ୟବ୍ୟସ୍ତ ରହିବା ଉଦ୍ଦେଶ୍ୟରେ ଲୋକେ ଶସ୍ୟ ସବୁ ସଫା କରି ରଖିଦେଇ ଥିଲେ । ସେଠି ଦେଖନ୍ତୁ ନିଆଁରେ ପୋଡ଼ି ହୋଇଯାଇଥିବା ଗୁଉଳ ଉପରେ ପାଣି ପଡ଼ିଯାଇଥିବାରୁ ସିଝି ସିଝି କରି ସେ କପରି ହୋଇଯାଇଛି; ଏକଦମ ଛତୁ ହୋଇଯାଇଛି ।" ପ୍ରେସିଡେଣ୍ଟ ବୁଝାଉଥିଲେ ।

ସତ କଥା, ଗୃଉଳ ବେଶି ସିଝିଯିବାରୁ ସେଥିରୁ ବାହାରୁଥିବା କଟୁ ଗନ୍ଧ ଗୁରିଆଡ଼େ ବ୍ୟାପିଯାଇଛି ।

ସେଠି ସମସ୍ତଙ୍କ ସାଙ୍ଗରେ ଗୁଲୁଥିବା ଜଣେ ଇଂସର୍ଟବାଲା ଭାବୁଥିଲା – ବର୍ତ୍ତମାନ ଏ ଦେଶ ସୁଧୁରିବାର କୌଣସି ଲକ୍ଷଣ ନାହିଁ । ଏ ଘରଗୁଡ଼ିକ ଏତେ ଲଗି ଲଗି ହବା କଣ ଦର୍କାର ? ଏସବୁ ସମ୍ପତ୍ତି ଏପରି ଭାବରେ ଘରେ ପକାଇରଖିବା କଣ ଉଚିତ ? ପଚଶି ହଜାର ଟଙ୍କାର ନୋଟ ଜଳିଯିବାରୁ କାହାର ହୃତ୍‌ପିଣ୍ଡ ବନ୍ଦ ହୋଇଗଲା ଓ ସେ ମରିଗଲା । ଏପରି କଣ ହେବା ଦର୍କାର ? ବ୍ୟାଙ୍କ୍‌ରେ ଜମା କରି-ଦେଇଥିଲେ କେତେ ଭଲ ହୋଇ ନ ଥାନ୍ତା ? ଏ ପଇସା କେତେ କାମ ଦେଇ ପାରିଥାନ୍ତା । ନିଜ ପାଇଁ ଆବଶ୍ୟକ ଶସ୍ୟ ରଖି ବାକି ବିକି କରିଦେଇଥିଲେ କେତେ ସୁବିଧା ହୋଇଥାନ୍ତା ? ବଳଦ ଭଲ ସୂନା ଜଣ୍ଟର ଦେକରେ ନ ପକାଇ ଏମାନେ ନିଜର ସ୍ୱାସ୍ଥ୍ୟ ଓ ଜ୍ଞାନ-ବିଜ୍ଞାନର ପ୍ରସାରଆଡ଼େ ଅଧିକ ଧ୍ୟାନ ଦିଅନ୍ତେ ତ ଦେଶର କେତେ ବିକାଶ ହୁଅନ୍ତା ? ହୋଇପାରେ, ତାର ଏ ସମସ୍ତ ପ୍ରଶ୍ନ ତାର ଅଜ୍ଞତାର ହିଁ ପରିଚାୟକ । ବୋଧହୁଏ ଏହି ସବୁ ସମସ୍ୟାର ସମାଧାନ ସେ ନିଜେଇ ବୁଝିପାରୁନାହିଁ । କିନ୍ତୁ ସେଇ ଗୀନଦୁଃଖୀମାନଙ୍କର ଦରିଦ୍ରଗ୍ରସ୍ତତା ଏବଂ ମୂର୍ଖତା ଦେଖି ତାର ମନରେ ଯେଉଁ ଦୁଃଖ ଉତ୍ପନ୍ନ ହେଲା ତାହା ଏହି ପ୍ରଶ୍ନରୂପରେ ତାର ଅନ୍ତରକୁ ବିଚଳିତ କରିପକାଉଥିଲା ।

ଆଗ୍ରମରେ ବସି ମନଫୁଲାଣିଆ କଥାବାର୍ତ୍ତାରେ ମନ ଭୁଲାଉଥିବା ଏହି ଫୁଲପରି କୋମଳ ଝିଅମାନେ ଭୋକରେ ଛଟପଟ ହେଉଥିବା ଆଖିରେ ଟୋକେଇ ଉଠାଇ ମୁଣ୍ଡରେ ଭଙ୍ଗା ପୋଡ଼ା ଗୋଡ଼ି-ପଥର ଉଠାଇ ନେଇଯାଉଛନ୍ତି । ବୋଧହୁଏ ଗାଧୋଇ ନଥିବେ । ଖାଇବାକୁ ମନ ହେଉ ନଥିବ । ଏହି ଦୁର୍ଘଟଣା ଲୋକଙ୍କ ମନରେ ବଞ୍ଚିରହିଥିବା କ୍ଷୀଣ ଆଶା ଓ ସାହାସକୁ ଶେଷ କରିଦେଇଥିବ । ଗାଁଟାସାରା ପୁରୁଣା ମଇଳା ଛବି ପରି ଦିଶୁଛି ।

"ବ୍‌.ଚୁ, ଏଠି ପଶୁମାନଙ୍କର ଗୁହାଳ ଥିଲା । ଏଥିରେ ଦୁଇଟି ବଳଦ ଥିଲେ; ଜଳି ଯାଇଛନ୍ତି । ଗୃଶଶହ ଟଙ୍କାରେ କଥାବାର୍ତ୍ତା ଗୁଲିଥିଲା – କାଲି ପରିଦିନ ! ଦେଲିନାହିଁ ମୁଁ । ବଳଦ ବି ବଢ଼ିଆ ବଳଦ ଥିଲେ ।"

ଚେୟାରମ୍ୟାନ୍‌ଙ୍କ ପାଖରେ ଜଣେ ଶ୍ରେଷ୍ଠ ନେତା କହୁଥିଲେ –

"ସେ ଘରେ ତିରିଶି ବର୍ଷର ସ୍ତ୍ରୀଲୋକଟିଏ ଜଳିଗଲା । ବିଧବାର ଦୁଇଟି ପିଲା ମଧ୍ୟ ଅଛନ୍ତି । ବାପା ମଧ୍ୟ ନାହିଁ ।" ଆତୁର ବର୍ଣ୍ଣନା କରିବା ଉଦ୍ଦେଶ୍ୟରେ ପୁଣି କହିଲା— "ଘରେ ପଇସା ରଖିଥିଲା, ସେଇଥିପାଇଁ ଭିତରକୁ ଗଲା ଚାଲିଗଲା, ପଇସା ତାକୁ ମଧ୍ୟ ଜଳାଇ ଦେଲା । ପ୍ରଥମେ ତ ଅଗ୍ନିଶିଖା ଏତେ ତେଜ ନଥିଲା, ପବନ ହେବାରୁ ଜୋର ହୋଇଗଲା ଓ ତାକୁ ଘେରିଯାଇଥିବ ।"

କେତେ ଦସ୍ତାବିସ୍ତ ପରିଚିତ ଥିଲା, ତାହା ସେଠାରେ ସମସ୍ତେ ବୁଝିପାରୁଥିଲେ । ତାହାଙ୍କୁ କିଛି କହିବାର ଆବଶ୍ୟକତା ନଥିଲା । ଆଖିସାମନାରେ ପରିଷ୍କାର ଭାବେ ଝରୁଥିବା ଦୁଃଖୀ ଲୁହ ବୁହାଇ ନିଜର କରୁଣ କାହାଣୀ ନିଜେ ଶୁଣାଇଦେଉଛି ।

ଗାଁରେ ନିଆଁ ତ କାଲି ଲାଗିଥିଲା; କିନ୍ତୁ ସହରରୁ ଅଫିସରମାନଙ୍କୁ ଆସିବାକୁ ବେଳ ଆଜି ମିଳିଲା । ଗଜରାଜଙ୍କୁ ରକ୍ଷା କରିବା ପାଇଁ ବୈକୁଣ୍ଠରୁ ଚାଲିଆସିଥିବା ଭଗବାନ ବିଷ୍ଣୁଙ୍କ ଭଳି ଚେୟାରମ୍ୟାନ ସାହେବ ବିନା କିଛି ପ୍ରସାଧନରେ ଯେମିତି ଥିଲେ ସେମିତି ଚାଲିଆସିଛନ୍ତି । ତାଙ୍କ ଆଗରେ ହିରୋସୀମା, ନାଗାସାକୀ ପରି ଏ ସଡ଼କ ଦେଖାଯାଉଛି ।

ରାମମୂର୍ତ୍ତିର ଦୃଷ୍ଟି ସେହି ଚୌକି ଉପରେ ଅଛି । ଚେୟାରମ୍ୟାନ ସାହେବ କୋଉଠି ବସିଲେ ନାହିଁ । ଚୌକି ତଳକୁ ଆସିଲା ନାହିଁ; ଉପରେ ଉପରେ ମୁଣ୍ଡରେ ବୁହା ହୋଇ ଯାଉଛି ।

ଦୁଇ ବର୍ଷ ତଳର କଥା । ଦିନେ ଏମିତି ଇନ୍‌ସପେକ୍ଟର ରାମମୂର୍ତ୍ତି ଘରକୁ ଆସିଥିଲେ । ତାଙ୍କୁ ବସାଇବା ପାଇଁ ଆଉ କିଛି ନ ପାଇ ରାମମୂର୍ତ୍ତି ଟେକିଇ ବିସ୍ତାର ଦେଇଥିଲା । ତା ଉପରେ ଗଦି ପକାଇ ଦେଇଥିଲା । କିନ୍ତୁ ଇନ୍‌ସପେକ୍ଟର ସାହେବଙ୍କର ପ୍ୟାଣ୍ଟର ଭାଙ୍ଗ ଖରାପ ହୋଇଯିବାର ଭୟ ଥିଲା; ସେଥିପାଇଁ ସେ ବସିଲେଇ ନାହିଁ । ସାମନା ଚବୁତରା ଉପରେ ଗୋଟିଏ ଚୌକି ଦେଖି ସେ ସେଇଠି ଯାଇ ବସିପଡ଼ିଲେ । ସେହି ଦିନ ରାମମୂର୍ତ୍ତି ଚୌକିର ମର୍ଯ୍ୟାଦା ବୁଝିଥିଲା । ଗାଁକୁ ବହୁତ ଲୋକ ଆସନ୍ତି ଯାଆନ୍ତି; ତାଙ୍କର ଆଦର କରିବା ଦରକାର । ସେଥିପାଇଁ ଘରେ ଗୋଟିଏ ଚୌକି ଥିବା ଅତ୍ୟନ୍ତ ଆବଶ୍ୟକ । ଘରର ମାନ ରଖିବାକୁ ଚୌକି ଆବଶ୍ୟକ । ସେ ତା ଝିଅ ପାଇଁ ଗହଣା କାହିଁକି ଗଢ଼ାଉଛି ? ଲୋକଙ୍କ ଆଗରେ ନିଜର ବଡ଼ପଣ ଦେଖାଇ ସମାଜରେ ସମ୍ମାନ ପାଇବା ପାଇଁ । ଆଜି ତା ଘରେ ଚୌକି ନାହିଁ, ସେଇଥିପାଇଁ ଇନ୍‌ସ୍‌ପେକ୍ଟର ସାହେବ ସାମନାବାଲା ପ୍ରକାଶମର ଚବୁତରା ଉପରେ ହାତ ଥିବା ଚୌକିରେ ଯାଇ ବସିପଡ଼ିଲେ । ରାମମୂର୍ତ୍ତିକୁ ସେଠିକି ଯିବାକୁ ପଡ଼ିଲା; ଯାଇ ହାତ ମଳିମଳି ଛିଡ଼ା ହେବାକୁ ପଡ଼ିଲା । ତା ଉପରେ ସମସ୍ତଙ୍କର ନଜର ପଡ଼ିଲା । ଶତକଡ଼ା ଚାରି ସୁଧ ଯୋଜନାରେ ତାର ଭାଗ ପାଞ୍ଚଶହ କୁହାହେଲା । ଅତି କମ୍‌ରେ ପାଞ୍ଚଶହ ତ ଦେବାକୁ ପଡ଼ିବ, ନ ହେଲେ ସୁଧ ହିସାବରେ କୋଡ଼ିଏ ଟଙ୍କା ଦେବାକୁ ପଡ଼ିବ । ଏ ହିସାବ ତା ମୁଣ୍ଡରେ ପଶିଲା ନାହିଁ । ସରକାରୀ ହୁକୁମର ଦ୍ୱାହି

ଦିଆଗଲା । ସମସ୍ତଙ୍କଠାରୁ ପଇସା ଅସୂଲ କରାଗଲା । ରାମମୂର୍ତ୍ତିଙ୍କୁ ମଧ୍ୟ ଦବାକୁ ପଡ଼ିଲା । ସେଦିନ ଏ ଘଟଣା ହେଲା । ଯଦି ଇନ୍‌ସପେକ୍ଟର ସାହେବ ତା ଘରେ ବସିଯାଇଥାନ୍ତେ, ସମସ୍ତେ ତା ଘରେ ଆସି ଚଉତରା ଉପରେ ଛିଡ଼ା ହୋଇଥାନ୍ତେ ।

ପନ୍ଦର ଦିନ ଭିତରେ ସହରରୁ ଚୌକି ଅଣାଗଲା, ହାତଥିବା ଚୌକି । ରାମମୂର୍ତ୍ତି ଏହି ପ୍ରତୀକ୍ଷାରେ ଥିଲା କି କେହି ବଡ଼ ବଡ଼ ଲୋକ, ଅଧିକାରୀ ଲୋକ ଆସିଯାଆନ୍ତୁ । ଆସିଲେ ତ, କିନ୍ତୁ ରାମମୂର୍ତ୍ତି ଘରକୁ ନୁହେଁ । ଥରେ ସେ ଗାରେ ମଣ୍ଡଳବିକାଶ କାର୍ଯ୍ୟାଳୟ ତରଫରୁ ଗ୍ରାମନାୟକଙ୍କର ପ୍ରଶିକ୍ଷଣ ଶିବିର ଆୟୋଜନ କରାଯାଇଥିଲା । ସେଇ ସଂକ୍ରାନ୍ତରେ ଏ ଚୌକି ସେଠିକି ନେଇଗଲେ । ରାମମୂର୍ତ୍ତିଙ୍କୁ ଚୌକି ମଗା ହେଉ ହେଉ ସେ ଖୁସିରେ ଦେଇଦେଲା; କିନ୍ତୁ କିଛି ସମୟ ପରେ ତା ମନରେ ଭାବନା ପଶିଗଲା କାଳେ କେହି ଈର୍ଷାକରି ଯଦି ତାକୁ ଭାଙ୍ଗି ଦିଏ । ସେଥିପାଇଁ ଚିନ୍ତା ହେଲା । କିନ୍ତୁ ଭଗବାନଙ୍କ କୃପାରୁ ସେ ଚୌକି ଭଲରେ ଭଲରେ ଘରେ ପହଞ୍ଚିଗଲା ।

ତା ପରେ କେହି ଯୋଗ୍ୟ ବ୍ୟକ୍ତିଙ୍କର ଯିବା-ଆସିବା ହୋଇନାହିଁ । ସେଥିପାଇଁ ରାମମୂର୍ତ୍ତି ଦୁଇ ଦୁଆରମୁହଁ ମଝିରେ ଚୌକି ପକାଇ ନିଜେ ବସିବାର ଅଭ୍ୟାସ କରି ନେଇଛି । ଯେତେବେଳେ ସିଏ ଚୌକି ଉପରେ ବସିଥାଏ ନିଜକୁ ବଡ଼ ମନେକରେ । ଘରର ଚାକର-ଚାକରାଣୀ ଓ ନିଜର ସ୍ତ୍ରୀ ଉପରେ ଆଦେଶ ମଧ୍ୟ ଚଳାଉଥିଲା । ଚୌକିରେ ହିଁ ସେ ଏପରି ବଡ଼ପଣିଆ ଅନୁଭବ କରିଥିଲା । ଚୌକି ପାଇଁ ହିଁ କଲେକ୍‌ଟରର ଅଧିକାର ଚାଲୁଅଛି, ଚୌକି ପାଇଁ ହିଁ ଲୋକେ ପ୍ରେସିଡେଣ୍ଟଙ୍କ କଥା ମାନୁଛନ୍ତି ।

କେବେ କେବେ ଉତ୍ସାହରେ ସେ ନିଜ ପତ୍ନୀକୁ ଜବରଦସ୍ତି ଚୌକି ଉପରେ ବସାଉଥିଲା । ସେ ବହୁତ ଲାଜ କରୁଥିଲା । ଏତେ ଲାଜ ମାଡ଼ୁଥିଲା ତାକୁ ଯେ, ସେ ମଝିରେ ଉଠି ପଳାଉଥିଲା । "ଲଛମୀ ! ଚୌକିରେ ବସିବା ପାଇଁ ଯୋଗ୍ୟତା ଥିବା ଦର୍କାର" କହି ସେ ନିଜ ସ୍ତ୍ରୀ ଉପରେ ଯୋଗ୍ୟତାର ଯେଉଁ ଟିପ୍ପଣୀ କରୁଥିଲା, ସେଥିରେ ତାର ସ୍ତ୍ରୀ ବଡ଼ ଗର୍ବ ଅନୁଭବ କରୁଥିଲା । ପ୍ରକୃତରେ ଏହି ଗର୍ବର ଭାବନାଠାରୁ ଅଧିକ ଆଉ କଣ ଯୋଗ୍ୟତା ହୋଇପାରେ ? ସେଥିପାଇଁ ସେ ଆହୁରି ଲାଜ, କରି କହୁଥିଲା—"ଚୌକି ଉପରେ ବସିବା ଓ ଗୃହକର୍ମ କରିବା ପୁରୁଷମାନଙ୍କୁ ଶୋଭା ପାଏ; ସ୍ତ୍ରୀଲୋକମାନଙ୍କୁ ନୁହେଁ ।"

ଚୌକିର ପ୍ରାୟ ଏହି ପ୍ରୟୋଜନ ଥିଲା । ରାମମୂର୍ତ୍ତି ଘରକୁ ଆଉ କେହି ଆସି ନ ଥିଲେ । ସେ ଚୌକିରେ କେହି ବସି ବି ନଥିଲେ ।

ବର୍ଷକ ଆଗରୁ ତାର ମା-ବାପା ମରିଗଲେ । କିଛି ସୁଧ ଓ ଜମାଥିବା ପଇସା ସହିତ କିଛି ସମ୍ପତ୍ତି ମିଳିଗଲା । କରଜ ବା ଆଉ କୌଣସି ପ୍ରକାରର ହଇରାଣ ହବାକୁ ନ ଥିଲା । ବିଲବାଡ଼ି କାମ ଦେଖିବା ଏବଂ ଫୁରୁସତବେଳେ ଦୁଇବର୍ଷର ପୁରୁଣା, ତେବେ

ବି ନୂଆ ପର ଲାଗୁଥିବା ସ୍ତ୍ରୀ ସାଙ୍ଗେ ଆନନ୍ଦରେ କାଳ କଟାଇବା—ବାସ୍, ଏହି ଥିଲା ରାମମୂର୍ତ୍ତିର ରୁଟିନ୍‌ବନ୍ଧା କାମ । ତାସ୍ ଖେଳିବା ବା ଇଆଡ଼େ ସିଆଡ଼େ ଯାଇ କଳିଆ-ଗୋଳ କରିବା ଆଦି କୌଣସି ଦୁର୍ଗୁଣ ତାଠାରେ ନଥିଲା । ତାର ପତ୍ନୀ ଏ ବିଷୟରେ ବଡ଼ ଖୁସି ଥିଲା । ଯେତେବେଳେ ସେ ତା ବାପଘରକୁ ଯାଏ, ତା ମା'କୁ ନିଶ୍ଚୟ ଏ ବିଷୟରେ କହେ ।

ସେ ଚୌକିର ଆଜି ପୁଣି ଦରକାର ପଡ଼ିଲା ।

ଜଣାଯାଉଛି, ଚେୟାରମ୍ୟାନ ସାହେବ କୋଉଠି ଅଟକିଲେ ନାହିଁ, ସେଥିପାଇଁ ଚୌକି ମଧ୍ୟ ମୁଣ୍ଡ ଉପରୁ ଓହ୍ଲାଉନି ନାହିଁ । ତାକୁ ମୁଣ୍ଡରେ ବୋହିଥିବାଲୋକର ହାତ କଣ ହୋଇଯାଉଥିବ, ଏପରି ବି କିଛି ଜଣାପଡ଼ୁ ନାହିଁ । ସେ ବରାବର ଭିଡ଼ମଝିରୁ ପରିଷ୍କାରଭାବେ ଦିଶୁଛି । ସଡ଼କ ସବୁଗୁଡ଼ିକ ପରିଷ୍କାର ଭାବେ ଦେଖାଯାଉଛି । ଅଧା ଗାଁ ସ୍ପଷ୍ଟଭାବେ ଦିଶୁଛି । ଦକ୍ଷିଣପଟରେ ସଡ଼କ କିଛି ଗଡ଼ାଣିଆ ଅଛି । ଏଥିପାଇଁ ଛିଡ଼ା ହୋଇଥିବା କାନ୍ଥ ଉପରୁ କଳା କଳା ମୁଣ୍ଡରେ ପଗଡ଼ିମାନଙ୍କର ରଙ୍ଗ ଛିଟିକେ ଛିଟିକେ ଦେଖାଯାଉଛି । କିନ୍ତୁ ସେ ଚୌକି ତ ପେଟେଇ ହୋଇ ପଡ଼ିଥିବା ପଶ୍ଚିମ ପଟ ପରିଷ୍କାରଭାବେ ଦେଖାଯାଉଛି ।

ରାମମୂର୍ତ୍ତିର ମନ ଭାଙ୍ଗିଗଲା । କେତେବେଳୁ ସେ ଅନାଇ ରହିଛି; କିନ୍ତୁ ଚେୟାରମ୍ୟାନ ବସିବା ନାଁ-ଗନ୍ଧ ଧରୁନାହାନ୍ତି । ସେ ଲୋକଟି ବରାବର କେତେବେଳୁ ଚୌକି ମୁଣ୍ଡାଇ ଜାଗା ଜାଗା ଘୂରିବୁଲୁଛି । ଯଦି ବସିବାର ନାହିଁ ତେବେ ଚୌକିଟା ସାଙ୍ଗରେ ନେଇ ବୁଲିବା କଣ ଦରକାର ? 'ବର୍ତ୍ତମାନ ଆବଶ୍ୟକ ନାହିଁ' -- ବାସ୍, ଏତିକି କହିଦେଲେ ତ ହଇରାଣ ହବାକୁ ପଡ଼ନ୍ତା ନାହିଁ । ଛିଃ, ପ୍ରକୃତରେ ଚୌକିଟା ମାଗୁ ମାଗୁ ସେ ଦେଇ ଭୁଲ କରିଛି । ଯେ କୌଣସି ଜିନିଷ ବାରମ୍ବାର ମାଗିବା ପରେ ଦବାକଥା । ତେବେ ଯାଇ ସେ ଜିନିଷର ମୂଲ୍ୟ ବୁଝାଯିବ ଓ ମାଗିନେବାବାଲା ବି ତାର ମୂଲ୍ୟ ବୁଝିପାରିବ । ଦବାବାଲାର ମଧ୍ୟ ମନ ଖୁସି ହେବ । ଦୁଇ ଘଣ୍ଟା ମହୁମାଛିର କାମୁଡ଼ା ନ ଖାଇଲେ ମହୁର ପ୍ରକୃତ ସ୍ୱାଦୁ ଜଣାପଡ଼େ ନାହିଁ । କିନ୍ତୁ ରାମମୂର୍ତ୍ତି ଏପରି କିଛି ନ ଥିଲା । ଚେୟାରମ୍ୟାନ୍ ସାହେବ ଆସୁଛନ୍ତି ବୋଲି ଚୌକି ମାଗୁମାଗୁ ଦେଇଦେଇଥିଲା । ବର୍ତ୍ତମାନ ତ ଦଶ ଲୋକଙ୍କ ଆଗରେ ତାର ବେଇଜ୍ଜତି ହେଉଛି ।

ପ୍ରାୟ ଅଧଘଣ୍ଟା ପର୍ଯ୍ୟନ୍ତ ବୁଲିବାପରେ ଅବଶେଷରେ ପୂର୍ବ ପଟେ ଥିବା ପୋଖରୀ ପାଖ ଗଡ଼ାଣି ହୋଇ ଲୋକମାନେ ଓସ୍ତଗଛ ପାଖରେ ଆସି ପହଞ୍ଚିଗଲେ । ଚୌକିବାଲା ଚୌକି ଓହ୍ଲାଇଲା । ବୋଧହୁଏ ସେ ଲମ୍ବା ନିଃଶ୍ୱାସ ନେଇଥିବ । ଏତିକିବେଳେ ପ୍ରେସିଡେଣ୍ଟ୍, ନାଯୁଡ଼ୁ, ପ୍ରକାଶମ୍ ଓ ଅନ୍ୟ ଲୋକମାନେ ଚେୟାରମ୍ୟାନଙ୍କୁ ନିମନ୍ତ୍ରଣ କରି ନେଇଗଲେ । ବହୁତ ଦିନ ପରେ ଆସିଥିବା ଚେୟାରମ୍ୟାନଙ୍କୁ ଉଚିତ ଆଦର-ସତ୍କାର ନ କରି କିପରି ଛାଡ଼ିଦେବେ ? ସ୍ତ୍ରୀ ଛଡ଼ା ସବୁଦା କିଛି ନା କିଛି

କାମ ଛ ପଡ଼ୁଥାଏ । ଏତେ ବଡ଼ ଅଧିକାରୀଙ୍କର ସମ୍ମାନ କରିବା ଅତ୍ୟନ୍ତ ଆବଶ୍ୟକ । ବର୍ତ୍ତମାନ ସମସ୍ତ ଭିଡ଼ ସେହି ଓସ୍ତଗଛ ମୂଳେ ଅଟକିଗଲା । ଗାଁର ନେତାମାନେ ଓ ଚେୟାରମ୍ୟାନ ନିମନ୍ତ୍ରଣ ଖାଇବାକୁ ଚାଲିଗଲେ ।

"ସାରା ଗାଁ ଜଳିକରି ଶୂନ୍ୟ ହୋଇଯାଇଛି, ଗାଁବାଲା ଲୋକ-ଶୋଷରେ ଛଟପଟ ହେଉଛନ୍ତି—ଏପରି ସମୟରେ ଏମାନଙ୍କର ଭୋଜି କରିବାକୁ ମନ ହେଲା କିପରି ?" ରାମମୂର୍ତ୍ତି ମନେମନେ ଭାବିଲା । ସାରା ଜନତା ଗୁହିଁବସିଛି କି ଅଧିକାରୀ ଲୋକମାନେ ଆସି ସେମାନଙ୍କୁ ସାହାଯ୍ୟ କରିବେ । ଲୋକେ କହନ୍ତି ଯେ ଚେୟାରମ୍ୟାନ ସାହେବ ନିର୍ବାଚନରେ ଲକ୍ଷେ ଟଙ୍କା ଖର୍ଚ୍ଚ କରିଥିଲେ । ଏପରି ଲୋକ ଏହି ଗାଁରେ ପାଦ ପକାଇଛି ଯେତେବେଳେ ଗ୍ରାମବାସୀମାନଙ୍କର ଜୀବନ ଅବଶ୍ୟ ସୁଧୁରିଯିବ । ଏହାଛଡ଼ା ଏହି ଚେୟାରମ୍ୟାନ ସାହେବଙ୍କର ସଜ୍ଜନତା ଓ ଉଦାରତା ବିଷୟରେ ଲୋକମାନେ ବହୁତ ଚର୍ଚ୍ଚା କରୁଛନ୍ତି । ପଦପ୍ରାପ୍ତି କରିବାର ବର୍ତ୍ତମାନ ବର୍ଷେ ବି ପୂରି ନାହିଁ; କିନ୍ତୁ ଶାସନ ଚଳାଇବାର ରଙ୍ଗ-ଢଙ୍ଗ ଅତ୍ୟନ୍ତ ଉତ୍ସାହଜନକ ହୋଇଛି । ଏଇଥିପାଇଁ ବିଚାରା ଗ୍ରାମବାସୀମାନେ ବଡ଼ ଆଶାରେ ପ୍ରତୀକ୍ଷା କରି ରହିଛନ୍ତି ଯେ ନିମନ୍ତ୍ରଣରୁ ଫେରିଲେ ସେ କଣ କହିବେ, କଣ ଦେବେ ।

ରାମମୂର୍ତ୍ତି ଦେଖିଲା—

ଓସ୍ତଗଛ ଗ୍ରୁଆରେ ଚୌକି ଅଛି । କେହି, ତା ଉପରେ ଧ୍ୟାନ ଦେଇନାହାନ୍ତି । କାହାର ନିମନ୍ତ୍ରଣରେ ଗଲା ଆଉ ସେଠି କେହି ମୋ ମୁହଁକୁ ଗୁହିଁଲେ ପର୍ଯ୍ୟନ୍ତ ନାହିଁ—ଏହି ସେ ଚୌକିର ଅବସ୍ଥା ଥିଲା ।

ଓସ୍ତଗଛ ତଳେ ଠିଆହୋଇଥିବା କାର୍‌କୁ ପାର କରି ବସ୍ତା ଲଦା ହୋଇଥିବା ଗୋଟିଏ ବଳଦ ଗାଡ଼ି ଆସି ଠିକ୍ ରାମମୂର୍ତ୍ତି ଘର ସାମନାରେ ଛିଡ଼ା ହୋଇଗଲା ।

ରାମମୂର୍ତ୍ତି ଗାଡ଼ିବାଲାକୁ ପଚାରିଲା, "କଣ ଭଯ୍ୟେ ?"

"ଠିକାଦାର ସାହେବ ଚାଉଳ ପଠାଇଛନ୍ତି । ବାବୁ କହିଲେ, ସେ ପଛରେ ସାଇକଲ୍‌ରେ ଆସୁଛନ୍ତି ।"

ପ୍ରେସିଡେଣ୍ଟଙ୍କର ଗଳା, କାହାର ହସ, କାହାର ହାଲୁଟି ଆଉ କାହାର ଗଲାଖଙ୍କାରିଲା ପରି କାଶ, କାହାର ଯୋତାର ମଚ୍‌ମଚ୍, ଆଉ କାହାର ଛିଙ୍କ— ବାହାରେ ରାମମୂର୍ତ୍ତି ଶୁଣୁଥିଲା ।

"ଗାଡ଼ି ଖରାରେ କାହିଁକି ଛିଡ଼ା କରିଛ ? ସେ ନିମ୍ବଗଛ ଛାଇକୁ ନେଇଯାଅ ! ବଳଦ ବି ବିଶ୍ରାମ ନେବେ ।" ରାମମୂର୍ତ୍ତି କହିଲା ।

ଚେୟାରମ୍ୟାନ ସାହେବ ନିଜ ଦଳସହ ସେପାଖରୁ ଆସୁଥିଲେ ଏବଂ ଏପାଖରୁ ବଳଦଗାଡ଼ି ଯାଉଥିଲା । ବଳଦଗାଡ଼ି ଦେଖି ଫେରେ ଲୋକମାନେ ପଚାରିଲେ । କଥା ଶୁଣି କେତେ ଲୋକ ଖୁସି ହେଲେ; ଆଉ କେତେ ଲୋକ ଆଶ୍ଚର୍ଯ୍ୟ ହେଲେ ।

ଓସ୍ତଗଛ ଛାଇରେ—

ଗୋଟାଏ ପଟେ କାର୍—

ଆଉ ପଟେ ଚୌକି—

ବନ୍ଦହୋଇଯିବା ପୂର୍ବରୁ ଆଶ୍ୱାସନାଭରା ବାକ୍ୟ—ଏତକିବେଳେ ପ୍ରେସିଡେଣ୍ଟଙ୍କର ଫ୍ରେଣ୍ଡ ଭାଇ—ଯିଏ ଗୃହର ଅନ୍ୱେଷଣରେ ଅଛି—ଦସ୍ତଖତ କରାଇବା ପାଇଁ ଆସି ଛିଡ଼ାହୋଇଗଲା । ଦସ୍ତଖତ କରିବା ପାଇଁ, ଆବେଦନପତ୍ର ତଳେ ରଖିବା ପାଇଁ ସେଠି କିଛି ଜିନିଷ ନ ଥିଲା । ସେଥିପାଇଁ ପାଖରେ ପଡ଼ିଥିବା ଚୌକି ଉପରେ ଡାହାଣ ପାଦ ରଖି ଆଉ ଜଂଘ ଉପରେ ଆବେଦନପତ୍ର ରଖି ଚେୟାର୍‌ମ୍ୟାନ ସାହେବ ଯେଉଁଠି ଦର୍କାର ଥିଲା ସେଠି ଦସ୍ତଖତ କରିଦେଲେ । ତାପରେ ନିଜର ଏହି ଉପକାର ଉପରେ ସେ ନିଜେ ହିଁ ସନ୍ତୁଷ୍ଟ ହୋଇ ହସିଦେଲେ ଓ ପୁଅଟିର ମୁହଁରେ ମଧ୍ୟ ପ୍ରସନ୍ନତାର ଚିହ୍ନ ଦେଖିକରି କାର୍‌ର ପଛପାଖ ସିଟ୍‌ରେ ଯାଇ ବସିପଡ଼ିଲେ ।

ବାକି ଲୋକ ବି ଯାଇ କାର୍‌ରେ ବସିଲେ ।

ଇଞ୍ଜିନ ଷ୍ଟାର୍ଟ ହେଲା, ହର୍ଣ୍ଣ ବାଜିଲା, ଗାଡ଼ି ଯାଉଛି; ବାସ୍, ଚାଲିଗଲା ।

"ତେବେ ପୁଣି କଣ ହେଲା ? ପଇସା ପଠାଇଦେବେ ?" କେହି ପଚାରିଲା ।

"ହଁ ଭାଇ, ବର୍ତ୍ତମାନ ତ ଅନୁମାନ କରିବାକୁ ଆସିଛନ୍ତି । ଦେଖି ତ ନେଲେ । ସେଠିକି ଯାଇ ସବୁ କାମ ପୂରାକରି ପଠାଇଦେବେ ।" ସବୁ କିଛି ଜାଣିଛି ବୋଲି ଦେଖାଇଲାବାଲା କେହି କହିଲା ।

"ଚେୟାରମ୍ୟାନ କିଛି ଦେବେ ନାହିଁ ?' କିଏ ଜଣେ ପଚାରିଲା ।

"ତାଙ୍କ ପାଖରେ ବି ପଇସା ଅଛି ?"

"ନହେଲେ ସରକାରଙ୍କ ପଇସା ଦବା ପାଇଁ ସେ ଏତେ ବାଟ କାହିଁକି ଆସିଲେ ? ଏ ଉଦ୍ବେଳନ୍ଦାର କଣ ଯଥେଷ୍ଟ ନୁହଁ ଦେଖିକରି ଯିବା ପାଇଁ ?" ଅଉ ଜଣେ କେହି ପଚାରିଲା ।

"ନିର୍ବାଚନ ପାଇଁ ତ ଏମାନେ ଲକ୍ଷ ଲକ୍ଷ ଟଙ୍କା ଉଡ଼ାଇଦଉଛନ୍ତି; କିନ୍ତୁ ଦାନ-ଧର୍ମ ପାଇଁ ଗୋଟିଏ ପଇସା ଦଅନ୍ତି ନାହିଁ । ଏମାନଙ୍କଠୁ କିଛି ଆଶା କରିବା ନିରର୍ଥକ । ସବୁ ନିଜ ନିଜ ଭାଗ୍ୟ । ଯଦି ସେ ଦଅନ୍ତି ତେବେ ବି କଣ ଆମ ପେଟ ପୂରିବ ? ଦୁନିଆରେ ଦାନ-ଧର୍ମର ଭାବନା ଥିଲେ ଆଉ କଣ ଦର୍କାର ? ମାସକୁ ଚାରି ଥର ବର୍ଷା ହବ ! ଏଇଟା ତ କଳିଯୁଗ, ପୁଅ, କଳିଯୁଗ ! ସେଇଆ ସମସ୍ତେ ଭୁଲିଛନ୍ତି । ଏ କଥା ମନେ ରଖିବୁ । ଯେଉଁ ଜିନିଷ ଆମ ଆଗରେ ଅଛି, ସେହି ଆମର ହାତ ନାହିଁ । ନ ହେଲେ ଅଗ୍ନିଦେବତାଙ୍କର ଆମ ଉପରେ ଏତେ ରାଗ କାହିଁକି ହେଲା ? ଏତେଗୁଡ଼ାଏ ଘର କାହିଁକି ଜାଳିଦେଲେ ? ଆଗରେ ଥିବା ଜିନିଷ ଭଗବାନ୍ ଉଡ଼େଇ ନେଇ ଗଲେ । ଫେରେ କିଏ ଦବ, ଆଉ କୋଉଠୁ ଦବ ।" ନିରାଶାରେ ଭରିଯାଇଥିବା କଣ୍ଠରେ କେହି ବୁଢ଼ା ଲୋକ କହିଲା ।

ଚେୟାରମ୍ୟାନଙ୍କୁ ବଡ଼ ଅସଭ୍ୟ ଗାଳି ଦେଇ କିଏ ଜଣେ କହିଲା—"ଏମାନେ

ଆମର ଜୀବନ ଖାଇଯାଉଛନ୍ତି, ଆମକୁ ସାହାଯ୍ୟ କଣ କରିବେ ? ଆଜି କଥା ଦେଖ, ଏହି ନିମନ୍ତ୍ରଣ ପାଇଁ ମତେ ଛବିଶି ଟଙ୍କା ଦେବାକୁ ପଡ଼ୁଛି ।" ଏତେ ପଇସା ଖର୍ଚ୍ଚ ହୋଇ-ଯାଇଥିବାରୁ ସେ ଦୁଃଖୀ ଜଣାପଡ଼ୁଥିଲା ।

ଯେ ପର୍ଯ୍ୟନ୍ତ ଅଧିକାଂଶ ଲୋକଙ୍କ ସାଙ୍ଗରେ ଅଛନ୍ତି ସେ ପର୍ଯ୍ୟନ୍ତ ତାଙ୍କୁ ଖୁସାମଦ୍ କରିବା ଆଉ ତାଙ୍କ ପଛରେ ଜନତାକୁ ଖୁସାମଦ୍ କରିବାର କଳାରେ ବିଶାରଦ ହୋଇଛନ୍ତି ସେହି ପ୍ରେସିଡେଣ୍ଟ । ପ୍ରେସିଡେଣ୍ଟ କହିଲେ, "ଯଦି ସେ ଛବିଶି ଟଙ୍କା ଥାନ୍ତା ତ ଦଶ ଠେଲା କାଠ ମିଳିଯାଇଥାନ୍ତା ଏବଂ ଦଶଟା ଭଙ୍ଗାଘର ମରାମତି ହୋଇଯାଇଥାନ୍ତା । କିନ୍ତୁ ଏ ସବୁ ତ ଶିଷ୍ଟାଚାର । ଯଦି ଏହା ନ କରିଥାନ୍ତୁ…" ଏହି ଶବ୍ଦଦ୍ୱାରା ସେ ଜନତାକୁ ସମବେଦନା ଜଣାଇଲେ । ତାଙ୍କର ଘର ପୋଡ଼ିଯାଇ ନ ଥିଲା, ସେଥିପାଇଁ ସେ ଅତି କମ୍‌ରେ ଏତକ କହିବା ପାଇଁ ସାହସ ବାନ୍ଧିପାରିଲେ ।

ଗ୍ରାମମୂର୍ତ୍ତିଙ୍କୁ ଏ କଥା ଶୁଣାଯାଉ ନ ଥିଲା । ତା ଘରୁ ସେ ଓସ୍ତଗଛ କୋଡ଼ିଏ ପଚାଶି ଗଜ ଦୂରରେ ଅଛି । ସମସ୍ତେ ସେଠୁ ଚାଲିଗଲେ; କିନ୍ତୁ ସେ ଚୌକି ପରିତ୍ୟକ୍ତ ଶବକୁ ଦେହ ପରି ସେଇଠି ଉପେକ୍ଷିତ ହୋଇ ପଡ଼ିରହିଲା ।

ସେ ଚୌକି ଯେତେବେଳେ ଗ୍ରାମମୂର୍ତ୍ତି ପାଖରେ ଥିଲା ସେସମୟରେ ସେ ଯେତେ ଆନନ୍ଦ, ଯେତେ ସନ୍ତୋଷ ଓ ଗର୍ବ ଅନୁଭବ କରୁଥିଲା, ବର୍ତ୍ତମାନ ତାହା ଲେଶମାତ୍ର ନାହିଁ । ଆଲୁଅରେ ଚକ୍‌ମକ୍ ହେଉଥିବା ରଙ୍ଗଗୁଡ଼ିକ ଓ ପ୍ରକୃତିର ସୌନ୍ଦର୍ଯ୍ୟ ଅନ୍ଧକାରରେ ଯେପରି ଫିକା ପଡ଼ିଯାଏ, ସେହିପରି ଫିକା ପଡ଼ିଯାଇଥିଲା ଗ୍ରାମମୂର୍ତ୍ତିର ଚେତନାର ଆଖି । ବାହାରୁ ମାଡ଼ ଖାଇ ଆସିଥିବା ପୁଅକୁ ଘରେ ଆହୁରି ମାଡ଼ ଦେଉଥିବା ବାପ ପରି ତାର ମନ ହୋଇଯାଇଥିଲା । ଯେତେବେଳେ କୌଣସି ଅଭିମାନୀ ବ୍ୟକ୍ତି ସମାଜରେ ଅପମାନିତ ହୋଇଯାଏ ସେତେବେଳେ ସେ ତାଠାରୁ ମରିଯିବା ଅଧିକ ଭଲ ମନେ କରେ । ସେହିପରି ଗ୍ରାମମୂର୍ତ୍ତି ଭାବିଲା, ଏ ଚୌକି ନିଆଁରେ ପୋଡ଼ି-ଜଳିଯାଇଥିଲେ ଭଲ ହୋଇଥାନ୍ତା ! ଘର ପଛକେ ତା ସାଙ୍ଗରେ ଜଳିଯାଇଥାନ୍ତା ।

ବର୍ତ୍ତମାନ ସେ ଚୌକି କୋଉଠୁ ଆଣିଥିବା ଗାଦି ପରି, ପରିଶ୍ରମ କରି ପ୍ରାପ୍ତ କରିଥିବା ପଦବୀ ପରି, ଯଶପ୍ରାପ୍ତି କଲା ପରି ବା ଆତ୍ମାର ଆଖି ପରି ଦେଖାଗଲା ନାହିଁ । ବର୍ତ୍ତମାନ ତ ସେ ନିଷ୍ଠୁର ଅଧିକାର, ଅଜ୍ଞାନହେତୁ ପ୍ରାପ୍ତ କରିଥିବା ଅହଂକାର ଓ ସଙ୍କୀର୍ଣ୍ଣ ସ୍ୱାର୍ଥରୁ ପ୍ରାପ୍ତ ମାଦକତା ଏବଂ ଲାଳସାର ମୂର୍ତ୍ତି ମନେ ହେଉଥିଲା ।

ସେ ଭାବିଲା, ଏ ଚୌକିକୁ ଘରକୁ ନବାକଥା ନୁହେଁ । ଯଦି ଆପେ ଆପେ ପହଞ୍ଚିଗଲା ତ ତାକୁ ଭାଙ୍ଗିଭୁଙ୍ଗି ଚୁଲିରେ ଜାଳିଦବାର ନିଷ୍ପତ୍ତି କରିନେଇଥିଲା । ଏଥିରେ ତାର ବିଗ୍ରହଧାରୀ ଆହୁରି କଠୋର ହୋଇଉଠିଲା । ବର୍ତ୍ତମାନ ସେ ଆଉ ବାହାରେ ଛିଡ଼ା ହୋଇପାରିଲା ନାହିଁ ।

ସେ ଭିତରେ ପହଞ୍ଚିଲାରୁ ତାକୁ ଦେଖି ତାର ପତ୍ନୀ ପଚାରିଲା—"ତମେ ଏତେ ଉଦାସ କାହିଁକି ହୋଇଛ ?" ସର୍ବଦା ନିର୍ମଳ, ପ୍ରସନ୍ନ ଓ ସୁନ୍ଦର ଦିଶୁଥିବା ଚେହେରା

ତାର ଏକଦମ୍ ବଦଳିଯାଇଛି, ଏ କଥା ସେ ବୁଝିପାରୁଥିଲା । ସେଥିପାଇଁ ସେ ଟିକେ ଡରିଗଲା ମଧ୍ୟ । କୌଣସି ଭୂତ, ପ୍ରେତ ବା ଅସୁରର ଆଶ୍ରୟ ପାଇ ପାଇ ବହୁତ ଲୋକଙ୍କ ଠେଇଁ ଖାରୁଡାର ଭାବନା ସୃଷ୍ଟି ହୋଇଯାଏ । ସ୍ୱାମୀଙ୍କଠାରେ ଏହି ପରିବର୍ତ୍ତନ ଦେଖି ସେ କଚ୍ଛୁଟା ଆଶ୍ଚର୍ଯ୍ୟ ହୋଇଗଲା ।

ଗ୍ରାମମୂର୍ତ୍ତି ତା ମନର ବ୍ୟଥାକୁ ଭାଷା ଦେଇପାରିଲା ନାହିଁ । ତା ମୁହଁରୁ କଥା ବି ବାହାରୁନଥିଲା ।

ସେଦିନ ସନ୍ଧ୍ୟାକୁ କେହି ସେ ଚୌକିକୁ ତଉତର ଉପରେ ରଖିଦେଇ କହିଲା—"ହେଇ ନିଅନ୍ତୁ, ଆପଣଙ୍କ ଚୌକି।" ବାହାର ଦୁନିଆ ଆଡ଼କୁ ମୋଟେ ଧ୍ୟାନ ନ ଦେଇ ସେ ଚୌକିକୁ ନେଇ ତଉତର ଉପରେ ଫୋପାଡ଼ିଦେଲା । ଚୌକି ଭାଙ୍ଗିଲା ନାହିଁ । ପୁଣି ଦୁଇଗୁଣ ରାଗ, ଆବେଶ ଓ ଆକ୍ରୋଶରେ ଉତ୍ତେଜିତ ହୋଇ ସିଏ ଚୌକିକୁ ତଳେ କଚାଡ଼ି ଦେଲା । ତେବେ ବି ସେ ଭାଙ୍ଗିଲା ନାହିଁ । ସେ ଅପମାନରେ ଲଜ୍ଜିତ ହୋଇଗଲା । ତୃତୀୟ ଥର ସେ ଆହୁରି ଜୋରରେ କଚାଡ଼ି ଦେଲା । ଏଥରକ ସେଥିରୁ ଖଣ୍ଡେ ଭାଙ୍ଗିଯାଇ ତାର ପାଦରେ ବାଜିଲା, ଭାରି କାଟିଲା । ଫେରେ ଶବ୍ଦ ଶୁଣି ସେଷେଇ ଘରୁ ତାର ପତ୍ନୀ ଭାବିଲା ଘରେ କୋଉଠି କଣ ହେଉଛି । ବାହାରକୁ ବାହାରି ସେ ଦେଖେ ସେ ଗୋଟିଏ ପାଖରେ ତାର ପତି ହତ୍ୟାକାରୀ ପରି ଛିଡ଼ାହୋଇଅଛି ଓ ଆରପାଖରେ ଚୌକି ଭାଙ୍ଗିକରି ପଡ଼ିଛି । କିନ୍ତୁ ତାର ଆକୃତି ତ ଅଛି—ସେ ଆକୃତି ମଧ୍ୟ ପ୍ରଥମ ସନ୍ଧ୍ୟାର ଛାଇ ପରି ଧୀରେ ଧୀରେ ବଢ଼ି ଅନ୍ଧକାରର ରୂପ ଧାରଣ କଲା ।

ସବୁ ଖଣ୍ଡଗୁଡ଼ିକ ଏକାଠି କରି ସେଗୁଡ଼ିକ ଚୁଲିରେ ପକାଇଦେଲା ।

ତାର ଏ ବିଗୃତକୁ ଆମେ କେବଳ ପଶ୍ଚାତ୍ତାପ ବୋଲି କହିପାରିବା ନାହିଁ; ବରଂ ପଶ୍ଚାତ୍ତାପଭରା ବ୍ୟଥା କହିବା ଉଚିତ । ସେ ବ୍ୟଥାକୁ ଠିକ୍ ଭାବରେ ବୁଝିବାକୁ ହେଲେ ସେ ଦିନ ତା ଉପରେ ଯାହା ଯାହା ବିତିଯାଇଥିଲା ସେସବୁ ଘଟଣାଗୁଡ଼ିକୁ ଭିନ୍ନ ଭିନ୍ନ କରି ବିଶ୍ଳେଷଣ କରିବାକୁ ହେବ ।

ଯେଉଁ ଆଘାତ ପାଇଛି, ତାହା ଧୀରେ ଧୀରେ ଠିକ୍ ହୋଇଯିବ । ସମୟର ଅଞ୍ଜନ ସବୁ କିଛି ଠିକ୍ କରିଦିଏ ।

କିଛି ଦିନ ପରେ ଗ୍ରାମମୂର୍ତ୍ତି ନିଜକୁ ଗୋଟିଏ ପ୍ରଶ୍ନ ପଚାରିଲା—"ସେ ଦିନ ମୋର ଉତ୍ତେଜନାର ଚୌକି ଭାଙ୍ଗିବା ସହିତ କଣ ସମ୍ବନ୍ଧ ଥିଲା ? ଯଦି ଅଧିକାରୀମାନଙ୍କ ଉପରେ ତାର ରାଗ ହେଲା ତେବେ ବିଚାରା ଚୌକି କଣ ଦୋଷ କରିଥିଲା ?" ଯେତେବେଳେ ଅଧିକାରୀମାନଙ୍କୁ କିଛି କହିବାକୁ ସାହସ ହୁଏନାହିଁ, ସେତେବେଳେ ଛୋଟ ଲୋକଙ୍କ ଉପରେ ନିଜର ଶକ୍ତିକୁ ପ୍ରଦର୍ଶିତ କରିବା ଅତି ସାଧାରଣ କଥା । ସେତେବେଳେ ସେ ବୁଝିପାରିଲା ଯେ ବଡ଼ମଣିଷମାନଙ୍କର ଭୁଲ୍‌ର ପରିଣାମ ସାନମାନଙ୍କୁ କାହିଁକି ଭୋଗିବାକୁ ପଡ଼େ ।

ନାଟକର ରଙ୍ଗମଞ୍ଚରେ ନୂଆ ଅଭିନେତା ଭଳି ଚୌକିର ମନ ବୋଲି କିଛି ନଥାଏ । ମଣିଷମାନଙ୍କର ଥାଏ; କିନ୍ତୁ ସେ ମନରେ ବିବେକ, ସହିଷ୍ଣୁତା ବା କ୍ଷମା ପରି ଗୁଣ ନ ଥାଏ ।

ଚୌକି ନିର୍ଜୀବ ଥିଲା । ସେ ମଧ୍ୟ ତାକୁ ନିର୍ଜୀବ ହିଁ ଭାବିଲା ।

କିନ୍ତୁ ସତରେ କି ଚୌକି କାନ୍ଦୁଛି—ତାର ସେହିପରି କିଛି ମନେ ହେଉଛି ।

ଟ୍ରେକର ସନ୍ଧାନରେ

ସେ ଚାଲିଗଲେ ।

ମୁଁ ଦୀର୍ଘ ନିଃଶ୍ୱାସ ଛାଡ଼ିଲି, ହୃଦୟ ଭାରି ହୋଇ ଆସିଲା । ଆଖିରେ ଲୁହ ଭରିଗଲା । ପଥର ପରି ଫାଟକ ପାଖରେ ଛିଡ଼ାହୋଇ ରହିଲି । ଗଲାବେଳେ ଯାହା ସେ କହିଥିଲେ, ସେହି କଥା ମୋ କାନରେ ବାଜୁଛି ।

"ମା ତତେ ଡାକୁଛି ।" ବିଷ୍ଟୁ ଆସି କହିଲା ।

ମୁଁ ଲୁହ ପୋଛୁଥିବା ଦେଖି ସେ ପଚାରିଲା—

"କଣ ତୁ କାନ୍ଦୁଛୁ ?"

ଜୀବନରେ ହସ ମୁଁ କେବେ ଦେଖିନାହିଁ । ମୁଁ ମୋର ପିତାଙ୍କୁ ଜାଣେ ନା । ମୁଁ ମୋ ମା' କୋଳରେ ମଧ୍ୟ କେବେ ଆଶ୍ରମ ପାଇନାହିଁ । ସେମାନେ କେମିତିଆ ଥିଲେ ତା ମଧ୍ୟ ମୁଁ ଜାଣେ ନାହିଁ ।

କେବେ କେବେ ମୁଁ ଭାବେ—ଯିଏ ଦେବୀ ପରି ମା'ର ମମତା ଦେଖିଥିବ ଓ ଦେବତା ପରି ବାପର ଆଦର ପାଇଥିବ, ସେ ହିଁ ଜୀବନରେ କେବେ ହସିପାରେ । ମୋ ଭାଗ୍ୟରେ ତ ତାହା ଲେଖା ନାହିଁ ।

ବଡ଼ଭାଇ ଅଛନ୍ତି—କିନ୍ତୁ ସେ କେବେ ମତେ ହସିବାର ସୁଯୋଗ ଦେଇ ନାହାନ୍ତି । ଭାଉଜ ଅଛନ୍ତି, କିନ୍ତୁ ସେ ମା' ହୋଇପାରିଲେ ନାହିଁ; ହୋଇ ମଧ୍ୟ ପାରିବେ ନାହିଁ । ଏହି ଦୁହିଁଙ୍କ ପାଖରେ ମୁଁ ପ୍ରତିପାଳିତ ହୋଇଛି ।

ମୋର ପ୍ରତିପାଳନ କରିବାର ଭାଇ, ସମାଜର ବହୁତ ଆଦରଣୀୟ ଥିଲେ । ଭାଉଜଙ୍କୁ ମଧ୍ୟ ଅନେକ ଲୋକ ସମ୍ମାନ ସହ ଦେଖୁଥିଲେ । ସେ ଦୁହେଁ ସଂସାରକୁ ଠକିବାରେ ଚତୁର । ହୃଦୟରେ ସ୍ନେହର ଅଭାବ ଥାଇ ମଧ୍ୟ ବାହାରେ ସ୍ନେହ ଦେଖାଇବାରେ ସେ ପଟୁ ଥିଲେ ।

ମୋର ଅନେକ କଥା ମନେ ଅଛି । ଭାଇ ପାଖରେ ଭଉଣୀ ମଧ୍ୟ ରହୁଥିଲା, ବଡ଼ ଦୀନ-ହୀନ ଅବସ୍ଥାରେ ରହୁଥିଲା । ମୁଁ ତ ପୁରୁଷ ଲୋକ । ସହନଶୀଳ ଥିଲି, ସେଥିପାଇଁ ଆଦରର ଅଭାବ ଥିଲେ ମଧ୍ୟ ତାଙ୍କର ଆଶ୍ରାରେ ରହୁଥିଲି ।

ଭଉଣୀ ପରେ ଆମ ମା' ଆଉ ଚାରୋଟି ପିଲା ଜନ୍ମ ଦେଇଥିଲା । ସେମାନେ ସମସ୍ତେ ଭାଗ୍ୟଶାଳୀ ଥିଲେ, ସେଥିପାଇଁ ଅନ୍ୟଲୋକରେ ପହଞ୍ଚିଗଲେ । ସମସ୍ତଙ୍କ ପରେ ମୁଁ ଜନ୍ମ ହେଲି ଓ ଜନ୍ମ ହେଉ ହେଉ ମା'କୁ ଏବଂ ଅଳ୍ପ ଦିନ ପରେ ବାପକୁ ମୁହିଁ ଦୁନିଆଁରୁ ବିଦାକଲି । ସେଥିପାଇଁ ଭାଇ ସାହେବ୍ ମୋ ଉପରେ ଅସନ୍ତୁଷ୍ଟ ।

କିନ୍ତୁ ଭଉଣୀକୁ ମଧ୍ୟ ସିଏ ଏପରି ଘୃଣାଚକ୍ଷୁରେ କାହିଁକି ଦେଖୁଥିଲେ, ମୁଁ ବୁଝି

ପାରୁ ନ ଥିଲି ।

ଯେଉଁ ଲୋକକୁ ସେ ଭଲ ପାଉଥିଲା, ତାକୁ ବାହା ହେବାର ଇଚ୍ଛା ନିର୍ଭୀକ ଭାବରେ ପ୍ରକାଶ କରିବା ହିଁ ତାର ଦୋଷ ଥିଲା । ମୋର ଆଖିଆଗରେ ଭାଇ ସାହେବ ଭଉଣୀକୁ ଛଣ୍ଡିଆ ମାରି ବାହାର କରିଦେଲେ ଓ କବାଟ ବନ୍ଦ କରିଦେଲେ । ମୁଁ ଅଧୈର୍ଯ୍ୟ ହେଉଥିଲି ବୋଲି ମୋ ମୁହଁ ବନ୍ଦ କରାଇ ମତେ ଭିତରକୁ ଘୋଷାରି ନେଇଗଲେ ।

ମୋର ମୁହଁ ସବୁବେଳେ ବନ୍ଦ ରହୁଥିଲା । ମୋର ଆଶା-ଆକାଂକ୍ଷାକୁ ସର୍ବଦା ଦଳି-ଦିଆଯାଉଥିଲା । ମୁଁ ଏକବାରେ ବେକାର ଓ ଅକର୍ମଣ୍ୟ ଅଟେ; ନ ହେଲେ ଭଉଣୀର ଏ ଘୋର ଅପମାନ ଦେଖି ମୁଁ ଚୁପ୍ ହୋଇ କେମିତି ରହିପାରିଲି !

ଯେବେଠୁ ମୋ ଭଉଣୀ ଏହି ନର୍କରୁ ତ୍ରାହି ପାଇ ବାହାରକୁ ଚାଲିଗଲା, ମୋର ଦାୟିତ୍ୱର ବୋଝ ଦୁଇଗୁଣ ହୋଇଗଲା । ଘରର ସମସ୍ତ କାମ ମତେ ଏକଲା କରିବାକୁ ପଡ଼ୁଥିଲା । ଭାଉଜ ସବୁବେଳେ ବେମାର ଥିଲେ । ଭାଇ ସାହେବ ଭାଉଜଙ୍କୁ ତାଙ୍କର ପ୍ରାଣ ବୋଲି ଭାବୁଥିଲେ । ଯେଉଁ ଦିନ ଭାଉଜଙ୍କର ମୁଣ୍ଡ ବିନ୍ଧୁଥିଲା, ସେ ଦିନ ମତେ ନିଶ୍ୱାସ ମାରିବାକୁ ବି ସମୟ ମିଳୁ ନ ଥିଲା । ଔଷଧ ଆଣିବାକୁ ଯିବା, ଭାଇ ସାହେବଙ୍କୁ ଅଫିସ୍ ପଠାଇ ଏବଂ ତାର ଘଣ୍ଟାକ ପୂର୍ବରୁ ଆଉ କେତେକ କାମରେ ଲାଗିରହିବାକୁ ପଡ଼ୁଥିଲା ।

ଭାଇ ଓ ଭାଉଜ ଦୁହେଁ ମତେ ହତଭାଗା ଭାବୁଥିଲେ ଏବଂ ମୋ ହାତର ରନ୍ଧା ଖାଦ୍ୟ ମଧ୍ୟ ତାଙ୍କୁ ସେହିପରି ଶୁଖିଲା ଲାଗୁଥିଲା । କିନ୍ତୁ ମାସର କୋଡ଼ିଏ ଦିନ ମୋର ହାତର ଖାଦ୍ୟକୁ ତାଙ୍କୁ ଭରସା କରିବାକୁ ପଡ଼ୁଥିଲା । ସେ ଦିନକର ଖାଇବା ରାନ୍ଧି ମୁଁ ନିଜେ ଅଳ୍ପ ଦି'ଟା ଖାଇଦେଇ ସ୍କୁଲ୍ ଚାଲିଯାଉଥିଲି । ସ୍କୁଲରୁ ଆସୁ ଆସୁ ପୁଣି ସେହି ଧମକ, ଆଦେଶ ଓ ଗାଳି ।

ମୋର ଆଶାଗୁଡ଼ିକର ହତ୍ୟା କଲାବାଲା ଏ ଦୁହେଁ ମୋର ଅଧମରା ଜୀବନ ପାଇଁ ଦାୟୀ ।

ପଢ଼ି-ଲେଖିକରି ନିଜର ଭବିଷ୍ୟତ୍ ସୁଧାରିବା ପାଇଁ ବ୍ୟାକୁଳ ଥାଇ ମୁଁ ନିଜେ କିପରି ନିଜକୁ ମାରିପାରିଥାନ୍ତି । ଏହା ପ୍ରକୃତ କଥା ଯେ ପରିସ୍ଥିତିଗୁଡ଼ିକ ସାଙ୍ଗରେ ନିଜକୁ ଖାପ ନ ଖୁଆଇପାରି ମୁଁ ପଢାରେ ଆବଶ୍ୟକମତେ ଧ୍ୟାନ ଦେଇ ପାରୁନଥିଲି । ଏହି ପରିସ୍ଥିତିଗୁଡ଼ିକର ଅସଲ କାରଣ କିଏ ଥିଲା ? ବଡ଼ଭାଇ ଏ କଥା ଉପରେ ମୋଟେ ଧ୍ୟାନ ଦେଲେ ନାହିଁ । ମୁଁ ପରୀକ୍ଷାରେ ସଫଳ ହୋଇପାରିଲି ନାହିଁ, ଏଇଥା କହି ସେ ମୋର ପଢ଼ାପଢ଼ି ବନ୍ଦ କରିଦେଲେ । ହାଇସ୍କୁଲର ପଢ଼ା ବନ୍ଦ ହେବା ସଙ୍ଗେ ସଙ୍ଗେ ମୋର ଭବିଷ୍ୟତ୍ ସ୍ୱପ୍ନ, ଆକାଂକ୍ଷା ଓ ଆଶାରୂପୀ ମାନବ ମରିଗଲା ।

ପୁଣି ସ୍କୁଲ୍ ଖୋଲିବା ପର୍ଯ୍ୟନ୍ତ ମୁଁ ମୁହଁ ଖୋଲି କିଛି କହି ନାହିଁ । ଭାଇ-ଭାଉଜଙ୍କର ଆକ୍ରୋଶଭରା କଥା ଶୁଣିଯାଉଥାଏ । ତାଙ୍କର ତୀର ପରି ତୀକ୍ଷ୍ଣ ବାକ୍ୟ-

ଗୁଡ଼ିକୁ ମୁଁ ମୋ ହୃଦୟରେ ଲୁଚାଇ ନେଲି; କିନ୍ତୁ ସ୍କୁଲ୍ ଖୋଲିବାର ଦିନକ ଆଗରୁ ମୋର ଅଭିଳାଷ ଓଣ୍ଠିରେ ଆସି ଅଟକିଗଲା । ମୁଁ ପଚାରିଲି—

"ଭାଇ, ମୁଁ ପଢ଼ିବାକୁ ଚାହୁଁଛି ।"

ଭାଇ ସାହେବ ରାଗିକରି ନିଆଁ ବାଣ ହୋଇଗଲେ ।

"ଏହିପରି ପ୍ରତ୍ୟେକ ବର୍ଷ ଫେଲ୍ ହେଉଥିବୁ ତ ତୋର ପାଳନ-ପୋଷଣ କରିବାକୁ ଆମ ପାଖରେ ସୁନାର ପଞ୍ଜୁରି ତ ନାହିଁ । ଏ ଘରର ଝିଅ ତ ଆମକୁ ଯୋଉ ଉଦ୍ଧାର କରିପକାଉଛି । ତୁ ତାଠାରୁ ବଳିପଡ଼ିବାକୁ ଯାଉଛୁ !" ଭାଉଜ ଖଟ ଉପରେ ବସି କହିଉଠିଲେ ।

ସେତେବେଳେ ମୁଁ ଅବଶ୍ୟ ବିରକ୍ତ ହୋଇଯାଇଥିଲି । ଭାଇ ମଧ୍ୟ ମୋ ଉପରେ ଅଭିଯୋଗ ଲଗାଇଥିଲେ ଯେ ମୁଁ ବଡ଼ ବେଖାତିର ଭାବରେ କଥାବାର୍ତ୍ତା କରୁଛି । ମୁଁ କେବଳ ଏତିକି କହିଥିଲି—

"ପରୀକ୍ଷାରେ ମୁଁ କାହିଁକି ଉତ୍ତୀର୍ଣ୍ଣ ହୋଇପାରିଲି ନାହିଁ ? ଏ ଘରର କାମ କରିବା ଯୋଗୁ ଏବଂ ତମମାନଙ୍କର ଚାକର ହେବା ହେତୁ ।"

ଭାଇ ମତେ ମାରିଲେ । ଭାଉଜ କାନ୍ଦିପକାଇଲେ —ଏଥିପାଇଁ ନୁହେଁ ଯେ ଭାଇ ମତେ ପିଟିଥିଲେ; ବରଂ ଏଇଥିପାଇଁ ଯେ ମୁଁ ମୁହଁ ଖୋଲି କିଛି କଥା ଶୁଣାଇ ଦେଲି । ଜଳିଳି ଉଠୁଥିବା ଦୁଃଖ, ଆକ୍ରୋଶ ଓ ନିରାଶାକୁ ମୋ ମନରେ ଲୁଚାଇ ରଖିଲି ।

ସେଦିନଠୁ ମୋର ଚଳିବା ଆହୁରି କଷ୍ଟକର ହୋଇଉଠିଲା । ମୋର ଅବସ୍ଥା ଆହୁରି ଦୟନୀୟ ହୋଇପଡ଼ିଲା । କଥା-କଥାକରେ ଉପହାସ ଶୁଣିବାକୁ ପଡ଼ୁଥିଲା । ମୁଁ ଭାବିଲି ଏଠାଠାରୁ ଭିକ ମାଗି ଖାଇବା ଭଲ; ରାତି ବେଳା ରିକ୍ସା ଚଳାଇ, ଦିନରେ ପଢ଼ାଯାଇପାରେ । ବହୁତ ଏପରି ଭାବିଲି, କିନ୍ତୁ କରିପାରିଲି ନାହିଁ କିଛି ।

ଦିନେ ଭାଉଜଙ୍କ କଥାରେ ପଡ଼ି ଭାଇ ସାହେବ କହିଲେ—ଏହିପରି ଝିଙ୍କ୍ ମାରି ଘରେ କେତେ ଦିନ ବସିରହିବୁ ? କୋଉଠି କିଛି କାମ ଖୋଜୁନୁ ?"

କାମ ! ମତେ କି କାମ ମିଳିବ ? କିଏ ଦବ ? ମୁଁ କଲେକ୍ଟର ହବାକୁ ଚାହୁଁ ନ ଥିଲି, କି ପଙ୍ଖାତଳେ ବସି ଦଶ ଜଣଙ୍କ ଉପରେ ହୁକୁମ ଚଳାଇବାର ଆଶା ବି ରଖି ନ ଥିଲି—କୌଣସି ସାଧାରଣ ଚାକିରି କରିବାକୁ ଚାହୁଁଥିଲି; ଭାଇଙ୍କ ପରି ରହିବାକୁ ଚାହୁଁଥିଲି ।

କିନ୍ତୁ ସେ ସବୁ ଏହି ପରିସ୍ଥିତିରେ ସ୍ୱପ୍ନ ହୋଇ ରହିଗଲା । ଭାଇ ସାହେବ ତ ଅତି ସହଜରେ କହିଦେଇଥିଲେ ଯେ କୋଉଠି କିଛି କାମ ଖୋଜୁନୁ ? କିନ୍ତୁ ତାଙ୍କୁ ଜଣା ମଧ୍ୟ ଥିଲା ଯେ ମୁଁ ଚାକିରି ଖୋଜିବା ଯୋଗ୍ୟ ମଧ୍ୟ ନ ଥିଲି ।

ଯମଦୂତ ପରି ଭୟଙ୍କର ଦେଖାଯାଉଥିବା ସମୟ ମୋ ପାଇଁ ଅଟକି ରହିବ ନାହିଁ । ଅନେକ ଦିନ ଅପେକ୍ଷା କରିବା ପରେ ଭଗବାନ୍ ମୋର ପ୍ରାର୍ଥନା ଶୁଣିଲେ

ହାଇଦ୍ରାବାଦରୁ ଚିଠି ଆସିଲା । ଏହି ଚିଠିର, ଭାଇଙ୍କୁ ସାହାଡ଼ ପରି ଭରସା ହୋଇ ମାମୁଙ୍କଠାରୁ ଆସିଥିବା ଏହି ଚିଠିଟି ମୋତେ ଶହ ଶହ ହାତୀର ବଳ ଆଣିଦେଲା ।

ସେ ଲେଖିଥିଲେ ଯେ ସେହି ସହରରେ ସିଏ କୋଉଠି-ନା-କୋଉଠି ମତେ ଗୁକରି ହୋଇବା ଭାର ନେଲେ ବୋଲି । ଭାଇସାହେବଙ୍କୁ ଆଦେଶ ଦେଇଥିଲେ ସେ ଯେପରି ମତେ ସାଙ୍ଗେ ସାଙ୍ଗେ ତାଙ୍କ ପାଖକୁ ପଠାଇ ଦିଅନ୍ତି । ସେ ସମୟରେ ମୋର ସ୍ୱପ୍ନରୂପୀ ମଣିଷ, ଯିଏ ଆଗରୁ ମରିସାରିଥିଲା କ୍ଷଣକ ପାଇଁ ଜୀଇଁ ଉଠିଲା । ଫେରେ କଣ ଥିଲା—ଅନନ୍ତ ଓ ବହୁଭଙ୍ଗୀ ସ୍ୱପ୍ନ ଆରମ୍ଭ ହୋଇଗଲା ।

ବର୍ତ୍ତମାନ ମତେ ଗୁକରି ମିଳିଯାଇଛି, କାମ କରିବା ସାଙ୍ଗେ ସାଙ୍ଗେ ଉଚ୍ଚ ଅଧ୍ୟୟନ କରିବାର କେତେ ସୁଯୋଗ ମିଳୁଛି ଓ ପଢ଼ି-ଲେଖିକରି ବଡ଼ ହୋଇ ମୁଁ ମୋ ନିଜ ଆଖି ଆଗରେ ଛିଡ଼ା ହୋଇଯାଇଛି ।

ଧଳା ସାର୍ଟ, ଧଳା ପ୍ୟାଣ୍ଟ, ବାଁ ହାତରେ ସୁନ୍ଦର ଘଣ୍ଟା, କଳା-କଳା କୁଞ୍ଚୁକୁଞ୍ଚିଆ ବାଳରେ ଟେଣ, ବାଳରୁ ବାହାରୁଥିବା ଦାମୀ ତେଲର ସୁଗନ୍ଧକର ମହକ ମନକୁ ଆନନ୍ଦିତ କରିଦେଉଛି । ରାସ୍ତାରେ ଭାଇ ସାହେବଙ୍କଠାରୁ ବଳି ଆଗରେ ଚାଲୁଛି ଏବଂ ହାତରେ ମୋର ଅଫିସର ଫାଇଲ୍ ମତେ ସାହାଯ୍ୟ ଦେଲା ପରି ରହିଛି । ଅଚାନକ ଜାଗାରେ ମୁଁ ହଠାତ୍ ଅଟକିଯାଇଛି । କିଏ ? କିଏ ସେ ?

ଭଉଣୀ ?

ଭଉଣୀ କଥା ମନେ ପଡ଼ୁ ପଡ଼ୁ ମୋର ସ୍ୱପ୍ନ ଭାଙ୍ଗିଗଲା । ଗୁକରି ମିଳିବା ପରେ ଭଉଣୀକୁ ଖୋଜି ବାହାର କରି ସେହି ତପସ୍ୱିନୀର ପାଦତଳେ କ୍ଷମା ମାଗିବା ଉଚିତ । ମୁଁ ଜୀବିତ ଅଛି ଭଉଣୀ, ମୁଁ ତୋ ସାଙ୍ଗରେ ଅଛି । ମୁଁ ପିଲାଦିନେ ଯେତେବେଳେ ଅକର୍ମଣ୍ୟ ଓ ନିର୍ବୋଧ ଥିଲି ସେତେବେଳେ ମୋର ନିଜକମାପଣ ଯୋଗୁରୁ ତତେ ଘର ଛାଡ଼ିବାକୁ ହୋଇଥିଲା, ତତେ ତଡ଼ା ଦିଆହୋଇଥିଲା । ବର୍ତ୍ତମାନ ମୁଁ ସବୁ ଦିଗରୁ ବଡ଼ ହୋଇଗଲିଣି । ମାମୁଙ୍କ ଦୟାରୁ ମତେ ଗୁକରି ମଧ୍ୟ ମିଳିଯାଇଛି ! ବର୍ତ୍ତମାନ ମୁଁ ମୋ ନିଜ ଗୋଡ଼ରେ ଛିଡ଼ାହୋଇଛି; ଖୁବ୍ ପାଠ ପଢ଼ି ଉଚ୍ଚ ଦେଉରେ ମେରୁ ପର୍ବତ ପରି ତୋ ପାଖରେ ଛିଡ଼ା ହୋଇଅଛି । କଣ ତୁ ମତେ ଚିହ୍ନିପାରିଲୁ ନାହିଁ ? ମୁଁ ତୋର ସାନ ଭାଇ ଚିନ୍ତୀ ଅଟେ ।

ହୃଦୟ ଫାଟିଯାଉଥିଲା । ମାମୁଙ୍କ ଚିଠିକୁ ମୁଁ ମୋ ଗ୍ରନ୍ଥରେ ଲଗାଇ ଜାକି-ଧରିଲି । ଏହି ଚିଠି ମୋର ସୌଭାଗ୍ୟ ଆଣି ଆସିଛି । ଏତିକିବେଳେ ଭାଇ ସାହେବ ଆସିଗଲେ—

"ଆରେ, ଇଏଁ କେମିତିଆ ମୁହାଁଇ ଲଗାଇଛୁ, ଭାଇ । ଦିନ ଦି' ପହରରେ ସପନ ଦେଖୁଛୁ ? ଯଦି ଏଠି ହଇରାଣ ହଉଛୁ ବୋଲି ଭାବୁଚୁ ତେବେ ସେଠିକାର ଅବସ୍ଥା ବି ଟିକେ ଦେଖିଆ ।" ଧମକାଇ କରି କହିଲେ !

ଭାଇ ଓ ଭାଉଜ ମୋଠାରୁ ନିହି ପାଇ ଖୁସି ହୋଇଥିବେ । ଗୋଲାମର

ବୋକାମୀକୁ ସମସ୍ତେ ସହିପାରନ୍ତି । କିନ୍ତୁ ନିଜର ଅଧିକାର, କର୍ତ୍ତବ୍ୟ ଏବଂ ଆଇନ-କାନୁନ୍ କଥା କହୁଥିବାଲା ଲୋକମାନଙ୍କୁ କୌଣସି ମାଲିକ ସହ୍ୟ କରି ପାରିବ ନାହିଁ । ସେଥିପାଇଁ ସେ ଦୁହେଁ ଖୁସି ହୋଇଥିବେ । ରେଳଗାଡ଼ିରେ ଚଢ଼ିବା ବେଳେ ମଧ୍ୟ ଭାଇଙ୍କ ଆଖିରେ ଆତ୍ମୀୟତାର ଝଲକ ଲେଶମାତ୍ର ଦେଖାଦେଇ ନ ଥିଲା ।

ମୁଁ ହାଇଦ୍ରାବାଦରେ ପହଞ୍ଚିଗଲି । ଅମରାବତୀ ଭଳି ସୁନ୍ଦର ଭବନରେ ପାଦ ପକାଇବାକୁ ମତେ ଡର ମାଡ଼ୁଥାଏ । ଏତେ ଅବସ୍ଥାପନ୍ନ ଓ ଟେଣ୍ଟ ଖ୍ୟାତିସମ୍ପନ୍ନ ମାମୁଙ୍କ ଆଶ୍ରୟରେ ମୋର ଆଚାର-ବ୍ୟବହାର କିପରି ହେବା ଉଚିତ, ଏହାହିଁ ମୁଁ ଭାବୁଥିଲି ।

ମାମୁ ଦେବତା ପରି ଲୋକ । ମତେ ଡରିକରି ଥରହର ହେଉଥିବା ଦେଖି ସେ ହସିଦେଇ କହିଲେ—"ଏ ଘର ତ ତୋର ।" ତାଙ୍କର ହସରୁ ଏହି ଭାବ ସ୍ପଷ୍ଟରୂପେ ଝଲସି ଉଠୁଥିଲା ଯେ ମୁଁ ସେହି ଘରର ଗୋଟିଏ ଅଙ୍ଗ ହୋଇଯାଇଛି ।

ମାଇଁ ମୋ ସାଙ୍ଗରେ ବେଶି କଥାବାର୍ତ୍ତା କରୁ ନ ଥିଲେ । କିନ୍ତୁ ଟେଣ୍ଟ ଭାଇ ଓ ସୁଗୁଣମ୍ମା ମୋ ସାଥିରେ ମିଳିମିଶି ରହୁଥିଲେ । ବେଣୁଭାଇ ଡାକ୍ତରୀ ପଢ଼ି ସାରିଥିଲେ ଏବଂ ସୁଗୁଣମ୍ମା କଲେଜରେ ପଢ଼ୁଥିଲା ।

ସେ ଦୁହେଁ ଦେଖିବାକୁ କେଡ଼େ ପରି ସୁନ୍ଦର । ତାଙ୍କର ଦେହ ବର୍ଦ୍ଧିତ ନରମ ଓ ମନ ବଡ଼ ମୂଲ୍ୟବାନ ଜଣାପଡ଼ୁଥିଲା । ତାଙ୍କ ଆଗରେ ମୋର ଅବସ୍ଥା କଣ ? ତେବେ ବି ତାଙ୍କର ସ୍ନେହ ଆଦର ମନେ ଏହା ସବୁ ଭୁଲାଇଦେଲା । ଏହି ବାତାବରଣ ମଧ୍ୟରେ ଆତ୍ମବଳର କଥା କହୁଥିବା ସେହି ଅଦୃଶ୍ୟ ଶକ୍ତିଗୁଡ଼ିକୁ ସ୍ମରଣ କରି ହଜାର ଦେବତାଙ୍କୁ ମୁଁ ହାତଯୋଡ଼ି ପ୍ରଣାମ କରୁଥିଲି ।

ହାଇଦ୍ରାବାଦ ଆସିବାର ଦୁଇ ମାସ ବିତିଗଲା ।

ମାମୁ ଆଠ ପ୍ରହର କିଛି-ନା-କିଛି କାମରେ ବ୍ୟସ୍ତ ରହନ୍ତି । ନିଜେ ନିଜେ ତାଙ୍କ ପାଖକୁ ଯାଇ ଚାକିରି ବିଷୟରେ କଥା ଉଠାଇବା ପାଇଁ ମୋର ସାହାସ ହେଉ ନ ଥିଲା ।

ଦିନେ ବେଣୁଭାଇ କହିଲେ —

"ତୁ କଫି ବହୁତ ଭଲ ତିଆରି କରୁଛୁ ।"

ମତେ ଲାଜ ମାଡ଼ିଲା ।

"ପ୍ରକୃତରେ · ···ରୋଷେଇ କାମ ଏତେ ଭଲଭାବରେ ଶିଖିବା ପାଇଁ କେତେ ସମୟ ଲାଗିଛି ? କିଏ ତତେ ଶିଖାଇଛି ? ପରଦିନ ତୁ ଯେଉଁ ବାଇଗଣ ତର୍କାରି ରାନ୍ଧି-ଥିଲୁ, ସେ ତ ଏକଦମ୍ ଲଭଲି ହୋଇଥିଲା । ମୁଁ ତତେ କହିବି ବୋଲି ବାରମ୍ବାର ଭାବୁଥିଲି, କି ଭୁଲିଯାଉଥିଲି । ପ୍ରକୃତରେ ମୋ ମା' ମଧ୍ୟ ଏପରି ତର୍କାରି କରି ପାରିବ ନାହିଁ ।" ମୋ ଆଖିକୁ ଚାହିଁ ସେ କହିଲେ ।

"ଭାଇ ସାହେବଙ୍କ ଘରେ ମୁଁ ସବୁବେଳେ ରାନ୍ଧୁଥିଲି । କିନ୍ତୁ ସିଏ କେବେହେଲେ ମୋର ପ୍ରଶଂସା କରି ନ ଥିଲେ ।"

"ସ୍ବାଦ କି ଜିନିଷ ତାଙ୍କୁ କଣ ଜଣାଅଛି ?"

ବେଣ୍ଟ ଭାଇ ମତେ ସ୍ବର୍ଗକୁ ନେଇକରିଅଛନ୍ତି; ସୁବିଧା ପାଇ ମୁଁ ମଧ୍ୟ ମୋ କଥା କହିଦେଲି ।

"ମାମୁ ମୋତେ ଏପର୍ଯ୍ୟନ୍ତ କୌଣସି ସ୍ବର୍ଗରେ ଲଗାଇ ଦେଲେ ନାହିଁ, ଅନ୍ତ କମ୍‌ରେ ତମେ ଯଦି ମୋ କଥା ଟିକେ ତାଙ୍କ କାନରେ ପକାଇ ଦିଅନ୍ତ ତ ବଡ଼ ଉପକାର ହୁଅନ୍ତା । ମୁଁ ନିଜେ ତାଙ୍କୁ କହିବାକୁ ଚାହୁଁଥିଲି; କିନ୍ତୁ ଡର ମାଡ଼ୁଛି ।"

ବେଣ୍ଟ ଭାଇ ଠୋ-ଠୋ ହୋଇ ହସିଲେ ।

"ଆରେ, ଡର କଣ ପାଇଁ ? ସେ ତ କିଛି ବାଘ, ସିଂହ ତ ନୁହନ୍ତି ଯେ ତତେ ଖାଇଯିବେ ? ହଉ ଭଲ କଥା, ମୁଁ ବୁଝିବି ।"

ମୁଁ ଫେରିଲାବେଳେ ସୁଗୁଣକ୍କା ଘରୁ କଲକଲ ହୋଇ ହସ ଶୁଭୁଥିଲା । ଖବର ମିଳିଲା ଯେ ସୁଗୁଣକ୍କାର ଦୁଇଜଣ ସାଙ୍ଗ ତା ସହିତ କଥାବାର୍ତ୍ତା ହଉଥିଲେ । ମୁଁ ଆରାମରେ ଷ୍ଟୋଭ ଜଳେଇ ଘରଆଡ଼କୁ ଯାଉଥିଲି, ଏତିକିବେଳେ ସୁଗୁଣକ୍କା ଡାକିଲା । ଏତେଗୁଡ଼ାଏ ଝିଅଙ୍କ ମଝିକୁ ସେ ଘରକୁ ଯିବାକୁ ମତେ ସଙ୍କୋଚ ଲାଗୁଥିଲା ।

"ଏହି ଆମର ରାଜା ନଳ । ବର୍ତ୍ତମାନ ତମେ ଯେଉଁ କଫିର ପ୍ରଶଂସା କରୁଥିଲ, ତାକୁ ଏଇ ମହାଶୟ ତିଆରି କରିଥିଲେ । ଏ ଆମର ମାମୁପୁଅ ଭାଇ । ପଢ଼ାରେ ଓ ବୟସରେ ଶ୍ରେଷ୍ଠ । ନ ହେଲେ ତ ମୁଁ ଏହାଙ୍କର ପତ୍ନୀ ହବାକୁ ତିଆର ହୋଇ ଯାଆନ୍ତି । ଆଜି ଦୁହେଁ ମୋର ସାଙ୍ଗ ।" ସୁଗୁଣକ୍କା ମଜା କରି କହିଲା ।

ଦୁଇଜଣଯାକ ସାଙ୍ଗ ଖିଲ୍ ଖିଲ୍ ହୋଇ ହସିଉଠିଲେ । ମୁଁ ଘର ଭିତରୁ ବାହାରି ଆସିଲି । ସୁଗୁଣକ୍କାର କଥା ଏବେ ମଧ୍ୟ ମୋ କାନରେ ବାଜୁଛି—"ବୟସରେ ଓ ପଢ଼ାରେ" ମୁଁ ଶ୍ରେଷ୍ଠ । ବାସ୍, ଆଉ କୌଣସି କଥାରେ ନୁହେଁ । ବାସ୍, ଏହି ଯଥେଷ୍ଟ । ସୁଗୁଣକ୍କା ମନରେ ମୋ ପ୍ରତି କୌଣସି ସ୍ଥାନ ଭାବନା ନାହିଁ । ଏଠାରେ ମୋ ଭିତରେ ଜୀବନ ପୂରାଇଲା ପରି ଲୋକ ଅଛନ୍ତି ।

ତାପରଦିନ ବେଣ୍ଟଭାଇଙ୍କର ଜନ୍ମଦିନ—ବଡ଼ ଆଡ଼ମ୍ବର ସହକାରେ ପାଳନ କରାଗଲା । ସେଦିନ ସକାଳୁ ମୁଁ କାମରେ ବ୍ୟସ୍ତ ରହିଲି, ନିଶ୍ବାସ ମାରିବାକୁ ବି ବେଳ ନଥିଲା ।

ସନ୍ଧ୍ୟାବେଳକୁ ବେଣ୍ଟଭାଇଙ୍କର ସବୁ ସାଙ୍ଗମାନେ ଆସିଲେ, ସେଥିରୁ ଅଧାଅଧି ପ୍ରାୟ ଝିଅ ଥିଲେ । ମୁଁ ଯାହା ସବୁ ଖାଇବା ଜିନିଷ ତିଆରି କରିଥିଲି, ସେ ସବୁ ତାଙ୍କ ଆଗରେ ରଖିଲି । ସେମାନଙ୍କର ଜାକଜମକ ମଧ୍ୟରେ ଯିବା-ଆସିବାର ସୁଯୋଗ ପାଇ କେଜାଣି କାହିଁକି ଭିତରେ ଭିତରେ ମତେ ଭାରି ଖୁସି ଲାଗୁଥିଲା । ସାରା ଘର ଦେଖିବାକୁ ବଡ଼ ସୁନ୍ଦର ହୋଇଥିଲା । ସେଠିକି ଆସିଥିବା ଲୋକଙ୍କର କଥାବାର୍ତ୍ତା ଓ ହସରେ ଗୋଟିଏ ନୂତନ ଉତ୍ସାହ ମୁଁ ପାଇଲି ।

ଚଷମା ପିନ୍ଧି କିଏ ଜଣେ ବେଣ୍ଟ ଭାଇଙ୍କୁ ମୋ ବିଷୟରେ କିଛି କହୁଥିଲା—

"ଆଚ୍ଛା, ବେଣ୍ଣୁ ! ତୁମର ନାୟୁଡ଼ୁ କୁଆଡ଼େ ଗଲା କି ? ଇଏ୍ତ ଗୋଟିଏ ନୂଆ ଟୋକା ରଖିଛ ଜଣାପଡ଼ୁଛି ।"

"ସେ ତ ରୁଷିକରି ନିଜ ଗାଁକୁ ପଳାଇଛି । ୟାକୁ ଆମେ ଆମ ଗାଁରୁ ଡକାଇଛୁ" ବେଣ୍ଣୁଭାଇ ଜବାବ ଦେଲେ ।

"ଗୁଡ୍, କିଛି କଥା ନାହିଁ, ଇଏ୍ତ ତ ତା'ଠାରୁ ଭଲ ।"

ଚଷମାବାଲାର ପ୍ରଶଂସାରେ ମୁଁ ଖୁସି ତ ହେଲି ନାହିଁ; କିନ୍ତୁ ବେଣ୍ଣୁଭାଇ ସମସ୍ତଙ୍କ ଆଗରେ ମୋ ବିଷୟରେ ଏପରି କଥାବାର୍ତ୍ତା ହବାରୁ ମୋର ବଡ଼ ଦୁଃଖ ହେଲା । ତେବେ କଣ ମୁଁ ଏମାନଙ୍କ ଘରେ ଚାକିରି କାମ କରିବାକୁ ଆସିଛି ? ଚଟ୍‌କରି ସେଠୁ ଚାଲିଯାଇ ଗୋଟାଏ କଣରେ ଲୁହ ପୋଛିଲି । କାନ୍ଧ ଉପରେ କାହାର ହାତର ସ୍ପର୍ଶ ପାଇ ମୁଁ ଚମକି ପଡ଼ିଲି ।

ଭାସ୍କରମ୍ ମହାଶୟ ।

ଭାସ୍କରମ୍ ବେଣ୍ଣୁ ଭାଇଙ୍କର ସାଙ୍ଗ । ଦୁଇ ଜଣ ସାଙ୍ଗ ହୋଇ ପଢ଼ିଥିଲେ । ଅନେକ ସମୟରେ ସେ ଏଠାକୁ ଯିବା-ଆସିବା କରନ୍ତି । ଯେତେବେଳେ ଆସନ୍ତି ମୋ ସାଙ୍ଗରେ ନିଶ୍ଚୟ କଥାବାର୍ତ୍ତା କରନ୍ତି । ବର୍ତ୍ତମାନ ସେ ମୋ ସହିତ ଖାଲି କଥାବାର୍ତ୍ତା କରିବାକୁ ଆସିନାହାନ୍ତି; ବରଂ ମତେ ବୁଦ୍ଧି ଶିଖାଇବାକୁ ଆସିଛନ୍ତି । ଏ କଥା ସେ ନିଜେ ମତେ କହିଲେ ।

"ମୁଁ ଜାଣିଥିଲି ତୋର ଏହିପରି ଦଶା ହବ । ବଡ଼ଘର ଲୋକମାନଙ୍କ ଆଗରେ ତୁ କୀଟ ହୋଇଯାଉଛୁ । ବାସ୍ତବରେ ତୁ ଏଠାକୁ ଆସି ଭୁଲ୍ କରିଛୁ । ଆଜି ଏଠି ତୋର ଯେଉଁ ଅପମାନ କରାଗଲା, ସେଥିପାଇଁ ଖରାପ ଭାବିବୁ ନାହିଁ । ଏପରି ଅବସ୍ଥାରେ ଧୈର୍ଯ୍ୟ ସହି କାମ କରିବାକୁ ପଡ଼ିବ । ଏଇଠି ରହି ନିଜର ଭଲ ପାଇଁ ଚେଷ୍ଟା କରୁଥା । ଯଦି ତୋର କୌଣସି ପ୍ରକାରର ସାହାଯ୍ୟ ଦର୍କାର ତ ମୋ ପାଖକୁ ଆସିବୁ, କୁଣ୍ଠା-ବୋଧ କରିବୁ ନାହିଁ ।"

ଏଇ କଥା ଦୁଇ ପଦ କହି ସେ ଚାଲିଗଲେ ।

ମୋର ଦୁଃଖର ସୀମା ରହିଲା ନାହିଁ । ସେହି ଦିନ ରାତିରେ ସାହସ କରି ମାମୁଙ୍କୁ ପଚାରିଲି—"ମୋର ଚାକିରି ଦର୍କାର ।"

ସେ ମୋ ଆଡ଼କୁ ବଡ଼ ଆଶ୍ଚର୍ଯ୍ୟ ହୋଇ ଚାହିଁ କହିଲେ—"ଚାକିରି ନାହିଁ ବୋଲି ତୋର କଣ କିଛି ଅଭାବ ହଉଛି, କହିଲୁ ?"

"ଅଭାବ କଥା ମୁଁ କହୁନାହିଁ । ମୁଁ ଚାକିରି ବିଷୟରେ କହୁଥିଲି । ଚାକିରି ପାଇଁ ମୁଁ ଏଠିକି ଆସିଥିଲି ।"

"ଠିକ୍ ଅଛି, ସୁଅ ! ଲୋକମାନେ ଚାକିରି କାହିଁକି କରନ୍ତି ? ପେଟ ପୋଷିବାକୁ ତ ? ସତକଥା କି ନୁହେଁ ? ତେବେ ଏତେ ବ୍ୟସ୍ତ ହେଉଛୁ କାହିଁକି ? ଏଇଠି ରହି ଆମ ସାଙ୍ଗରେ, ଆମେ ସବୁ ଯାହା ଖାଉଛୁ, ସେଇୟା ତୁ ବି ଖାଆ । ବାସ୍, ଆଉ କଣ

ଦର୍କାର ?"

ମାମୁଙ୍କ କଥାରେ ଯେଉଁ ସଙ୍କେତ ଥିଲା ତାହା ମୁଁ ବୁଝିପାରିଲି । ମୁଁ ନାଚାର ହୋଇପଡ଼ିଲି । ତାଙ୍କୁ କଣ କହିବି, ମୁଁ ବୁଝିପାରୁ ନଥିଲି ।

"ଏତିକ ଟିକେ କଥା ପାଇଁ ମୋର ଭାଇଙ୍କ ଘର ଛାଡ଼ି ଏଠିକି ଆସିବାର କଣ ଦର୍କାର ଥିଲା ? ପେଟ ତ ସେଠି ମଧ୍ୟ ମୋର ଭରୁଥିଲା । କିନ୍ତୁ ମାମୁ, ମୋର ଉଦ୍ଦେଶ୍ୟ ଏହା ନ ଥିଲା ଯେ ମୁଁ ଆପଣମାନଙ୍କର ଗୋଲାମି କରୁଥିବି । ମୋର ମଧ୍ୟ କେତେ ସ୍ୱପ୍ନ ରହିଛି, ସେଇଗୁଡ଼ିକୁ ନେଇ ମୁଁ ବଞ୍ଚିରହିଛି । ମତେ ଯିବାକୁ ଦିଅ ମାମୁ, ମତେ ଯିବାକୁ ଦିଅ ।"

ମାମୁଙ୍କର ରାଗ ଚଢ଼ିଗଲା ।

"ଗ୍ରେଟ୍-ବଡ଼ କିଛି ବିଚାର ନ କରି ତୁ କଣଗୁଡ଼ାଏ ବକୁଛୁ ? ସେଦିନ ତୋ ଭଉଣୀ ମଧ୍ୟ ଏହିପରି ଭୁଲ୍ କରି ମୁଣ୍ଡକୁ ବିପଦ ଟାଣିନେଲା । ତାର ପତି ମରଣାପନ୍ନ । ବର୍ତ୍ତମାନ ପଇସା ଦରକାର, ଔଷଧ ଦରକାର, ଇତ୍ୟାଦି ଇତ୍ୟାଦି ଲକ୍ଷେ କଥା ଲେଖୁଛି । ସେଦିନ ମୁଁ ତା ଆଖିରେ ମୁଁ-ପରି ଦିଶୁ ନଥିଲି; ତା ଭାଇ ମଧ୍ୟ ଦିଶୁନଥିଲା । ଆଜି ଆମର ସାହାଯ୍ୟ ଦର୍କାର । ହେଇ ନେ, ଏଇ ଚିଠି ପଢ଼ି ଦେଖେ । ସେ କିପରି ଅବସ୍ଥା ଭୋଗୁଛି ବୁଝିପାରିବୁ ଓ ତୋର ଅକଲ ଆସିବ । ନହେଲେ ତୁ ମଧ୍ୟ ତାରି ବାଟରେ ଯାଇ ତୋର ଜୀବନ ଧ୍ୱଂସ କରିବୁ । ଯା···ଜାଲି ଏତିକାବେଳକୁ କଣ ଠିକ୍ କଲୁ ମତେ ଜଣାଇଦବୁ ।"

ଛଳ, କପଟ, ଠକାମି, ଅନ୍ୟାୟ ।

ମୋର ସିଦ୍ଧାନ୍ତ ଏଥିଭିତରେ ମାମୁ ଜାଣିଯାଇଥିବେ ।

ଏଠି ମୋର ଭଉଣୀଙ୍କ ଅବସ୍ଥା ଦେଖିଲେ ହୃଦୟ ଫାଟିଯାଉଛି । ଖଟରେ ତାଙ୍କର ଦେହ ଲାଗିଯାଇଛି । ଦିନକୁ ଦିନ ତାଙ୍କର ଅବସ୍ଥା ଆହୁରି ଖରାପ ଆଡ଼କୁ ଯାଉଛି ।

ନାନୀ ଆଖିରେ ଅବିକା ଆଉ ସେହି ତେଜ ନାହିଁ, ତା କଥାରେ ଆଉ ସେ ଆନନ୍ଦ ଓ ଉତ୍ସାହ ନାହିଁ । ଏହି ପରିବର୍ତ୍ତନର କାରଣ ମୋର ଭିଣେଇଙ୍କର ବେମାରି । ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଆଠ ପ୍ରହର ତାଙ୍କୁ ଦେଖାଶୁଣା କରୁଥାଏ, ତା ସାଙ୍ଗରେ ଗ୍ରେଟ୍ଟୁର ପାଟିଗୋଳ ।

ଏହି ହଉଛି ମୋ ଭଉଣୀର ପରିବାର ।

ଯେବେଠୁଁ ମୁଁ ଏ ଘରେ ଗୋଡ଼ ଦେଲି, ମୁଁ ମାନୁଛି, ମୋର ଗୋଟାଏ କ୍ଷଣ ପାଇଁ ମଧ୍ୟ ଫୁରୁସତ୍ ନାହିଁ । ଘରେଷେଇ କାମ, ପିଲାକୁ ସମ୍ଭାଳିବା, ଔଷଧ-ପତ୍ର ବଜାରରୁ ଆଣିବା ଇତ୍ୟାଦି ସବୁ ଭାର ମୋ ଉପରେ ।

ଗୋଟିଏ କଥା ସତ ଯେ ଏପର୍ଯ୍ୟନ୍ତ ମୁଁ ଦୁଇଟି ଘରେ ଖଟିଛି । କାହାଟା ଅଭିମାନ ଛାଡ଼ିକରି, କାହା ଡରିକରି ଆଉ କାହା ମୋର ଅପୂର୍ଣ୍ଣ ଆକାଂକ୍ଷାଗୁଡ଼ିକୁ ପୂରଣ କରିବା ଲୋଭରେ । ସେ ଦୁଇଟି ଘରେ ମୁଁ ଗୃହକର ହିସାବରେ କାମ କରିଛି । କିନ୍ତୁ ଏଠିକାର

ଅବସ୍ଥା ଅଲଗା ।

ଏହା ତ ମୋର ପ୍ରାଣଠାରୁ ଅଧିକ ପ୍ରିୟ ଭଉଣୀର ଘର । ମୋର ସେବାରେ ମୋର ଭଣେଇ ସ୍ୱାସ୍ଥ୍ୟ ଲାଭ କରିବେ, ଏହି ଆଶାରେ ମୁଁ ମୋର ସର୍ବସ୍ୱ ତ୍ୟାଗ କରି-ପାରେ । ପଡ଼ାପଡ଼ିରେ ଉନ୍ମତ୍ତ କରି ବଡ଼ ଚାକିରି କରି ମୁଁ କାହାକୁ ଖୁସି କରି ପାରିବି ? ମୁଁ ମୋ ନିଜ ଭଉଣୀ ପାଇଁ ଯେତେ ସେବା କଲେ ମଧ୍ୟ ମୋର ରକ୍ତ ଅଣ୍ଡା ହୋଇପାରିବ ନାହିଁ, ସେଥିରେ ମୋର ଅଭିମାନ ଉପରେ ଆଘାତ ଲାଗିବ ନାହିଁ; ବରଂ ସେଥିରେ ମୋର ମନରେ ଏକ ଅପୂର୍ବ ସନ୍ତୋଷର ଭାବ ଜନ୍ମିବ । ମୋର ଦେଖା ପରି ଭଉଣୀର ଯେତେବେଳେ ମୋର ଆବଶ୍ୟକତା ଥିଲା, ସେତେବେଳେ ମୁଁ ତାର କିଛି କାମରେ ଆସିଥିଲି, ଏଇଥିରେ ଯେଉଁ ଖୁସି ସେ ସବୁଦିନ ପାଇଁ ରହିବ ।

କିନ୍ତୁ ଭାସ୍କରବାବୁ ଏହି ସବୁ କଥା ଏତେ ସରଳଭାବେ ବୁଝିପାରିଲେ ନାହିଁ । ସେ ମୋ ପ୍ରତି ତାଙ୍କର ଗଭୀର ବାତ୍ସଲ୍ୟ-ସ୍ନେହର ପରିଚୟ ତ ଦେଲେ; କିନ୍ତୁ ତାଙ୍କ କଥା ମୋ ହୃଦୟରେ କିପରି ତୀକ୍ଷ୍ଣ ପ୍ରହାର କରିଥିଲା, ସେକଥା ସେ କଳ୍ପନା କରି ପାରିଲେ ନାହିଁ ।

ଏହି ଗାଁରେ ତାଙ୍କ ସହିତ ଭେଟ ହେଲା । ଭଣେଇଙ୍କ ପାଇଁ ମୁଁ ବଜାରରୁ ଔଷଧ ଆଣୁଥିବାବେଳେ ସେ ମତେ ଦେଖିନେଲେ; ଶୀଘ୍ର ଶୀଘ୍ର ମୋ ପାଖକୁ ଆସି କହିଲେ —

"ତୁ ସେଠୁ ଆସିବା ପୂର୍ବରୁ ମତେ ତ ଜଣାଇ ଦେଇଥାନ୍ତୁ ।"

ମୁଁ ଚୁପ୍ ହୋଇ ରହିଲି ।

"ଆଚ୍ଛା ! ଏଠି କ'ଣ ଚାକିରି ମିଳିଛି ? ଭଉଣୀର ଘରେ ଗୋଲାମି ତ ?"

"ଡାକ୍ତର ସାହେବ !"

ମୁଁ ପାଟିକରି ଉଠିଲି । ମୋ ଆଖିକୁ ଦେଖି ସେ ସମ୍ଭାଳିଗଲେ । ପରେ ମୁଁ ଲଜ୍ଜିତ ହେଲି ।

"କ୍ଷମା କରନ୍ତୁ । ଆପଣ ଥରେ ମୋ ଭଣେଇଙ୍କୁ ଦେଖିନଅନ୍ତୁ । ଆମ ଘର ଏଇଠି ପାଖରେ । ଆପଣ ମୋର ଭଉଣୀକୁ ମଧ୍ୟ ଦେଖନ୍ତୁ । ସବୁ ଦେଖିସାରି ଯାହା ଇଚ୍ଛା କୁହନ୍ତୁ । ତେବେ ମୋର ଦୁଃଖ ହେବ ନାହିଁ । ଆସନ୍ତୁ, ଡାକ୍ତର ସାହେବ !"

ଆଉ କେହି ହୋଇଥିଲେ ମୁଁ ମୋର କଥା ଏପରି ବିସ୍ତାରିତଭାବେ କହି ପାରି ନ ଥାନ୍ତି ଓ କହିବାର ଦର୍କାର ମଧ୍ୟ ହୋଇ ନ ଥାନ୍ତା । ସେ ହୃଦୟବାନ୍ ସଜ୍ଜନ । ମୁଁ ଚାହୁଁ ନ ଥିଲି କି ସେ ଭଲ ଲୋକମାନଙ୍କୁ ଭୁଲ୍ ବୁଝନ୍ତୁ । ସେଥିପାଇଁ ମୁଁ ତାଙ୍କୁ ନିଜ ଘରକୁ ନେଇଆସିଲି ଏବଂ ପାଖରେ ବସାଇ ସବୁ କଥା ବୁଝାଇଦେଲି ।

ଜଣାନାହିଁ ସେ କ'ଣ ବୁଝିଲେ । ମତେ ତ କିଛି କହିଲେ ନାହିଁ । ଭଣେଇଙ୍କୁ ପରୀକ୍ଷା କଲେ । ଶ୍ରେଷ୍ଠ ପିଲାର ଗାଲକୁ ସ୍ନେହରେ ଟିକେ ଚିମୁଟି ଦେଇ ଏବଂ ହାତ ହଲାଇ ବାହାରକୁ ଆସିଲେ । ମୁଁ ତାଙ୍କ ପଛେ ପଛେ ଚାଲିଲି ।

"ତୁ କେତେ ଥର କହୁଛୁ ଯେ ତୁ ଆଗକୁ ଆହୁରି ପଢ଼ିବାକୁ ଚାହୁଁଛୁ । ତୋ ଉପରେ ଦାୟିତ୍ୱ ହେବାର ଅନେକ କାରଣ ଅଛି, ସେସବୁ ମୁଁ କହିପାରିବି ନାହିଁ । କିନ୍ତୁ ମୁଁ ତୋର ପଢ଼ିବାର ସବୁ ବନ୍ଦୋବସ୍ତ କରିବାର ଠିକଣା କରିନେଇଛି । ଏହି କଥା ମୁଁ ତତେ କହିବାକୁ ଯାଉଥିଲି, ଏଡ଼କବେଳେ ତୁ ଏଠିକି ଚାଲିଆସିଲୁ । ବର୍ତ୍ତମାନ···

ସେ ଆଉ କିଛି କହିବାକୁ ଯାଉଥିଲେ । ମୁଁ ମଝିରେ ହିଁ କହିଦେଲି—

"ନାହିଁ, ଡାକ୍ତର ସାହେବ ! ବର୍ତ୍ତମାନ ମୋର ସେ ଇଚ୍ଛା ନାହିଁ । ବର୍ତ୍ତମାନ ମୁଁ ମୋର ଭଉଣୀକୁ ସୁଖୀ ଦେଖିବାକୁ ଚାହେଁ । ମୋର ଭିଣୋଇଙ୍କର ଅବସ୍ଥା ଆପଣ ଦେଖିଛନ୍ତି । ଆପଣ ଯାହା କିଛି କରିପାରିବେ କରିଦିଅନ୍ତୁ ଓ ମୋର ଭିଣୋଇଙ୍କୁ ବଞ୍ଚାଇ ଦିଅନ୍ତୁ । ବାସ୍, ସେହି ଯଥେଷ୍ଟ, ଆଉ କିଛି ଚାହେଁ ନାହିଁ ।"

ମୋ ପିଠି ଆଉଁସିଦେଇ ସେ ଚାଲି ଚାଲି କହିଲେ—"ଏହି ପୃଥିବୀରେ କେତେକ ଅଭାଗା ଜନ୍ମ ହୁଅନ୍ତି । ସେମାନଙ୍କୁ ସୁଖୀ କରିବା କାହାର ପକ୍ଷରେ ସମ୍ଭବ ନୁହେଁ ।"

ତାଙ୍କର ଏ ଶେଷ କଥାପଦକ କାହାକୁ ଉଦ୍ଦେଶ୍ୟ କରି କହିଗଲେ ? ମୋର ଦୁର୍ଭାଗ୍ୟକୁ ସଙ୍କେତ କରି ? ନା ଭିଣୋଇଙ୍କର ଖରାପ ଅବସ୍ଥା ଉଦ୍ଦେଶ୍ୟରେ ?

ହେ ଭଗବାନ୍ ! କହିଦିଅ କ ତାଙ୍କର ସଙ୍କେତ ମୋର ଆଡ଼େ ଥିଲା । ମୁଁ ହତଭାଗ୍ୟ ଅଟେ । ମୁଁ ···

# କୋଠାଘର

“ଆୟେ ବରସାତ୍ ମେଁ……”

“ଆରେ ହତଭଗା—ତେଲୁଗୁ ଗୀତର ରେକର୍ଡ଼ ଲଗାଇ ଦେ’ରେ ଭାଇ !”

“ଆରେ, ତୁମେ ଚୁପ୍ ରୁହ ବାଲକ୍ଷ୍ମୀ…”

“ଚୁପ୍ ରହିବ କାପର ! ସବୁ ପଇସା ସେହି ରାଜୟାକୁ ଦେଇଆସିଛୁ । ତେଲୁଗୁ ଗୀତ ଲଗେଇଦିଅ ଭାଇ !”

ରାଜୟା ରେକର୍ଡ଼ ବଦଳାଇ ତେଲୁଗୁ ଗୀତ ଲଗେଇଲା—“ରାଧେ ଚଲ୍ କୃଷ୍ଣ ରାଧେ ଚଲ୍” ଗୀତ ବାଜୁଥିଲା ।

ଏଠାକୁ ଆସିବାର ମୋର ଗୋଟିଏ ସପ୍ତାହ ହୋଇଛି । ସନ୍ଧ୍ୟା ୬ଟା ହେବାକ୍ଷଣି ଏହି ରେକର୍ଡ଼ ସଙ୍ଗୀତ ଆରମ୍ଭ ହୋଇଯାଏ । ଆମ ଘର ସାମନାରେ ଗୋଟିଏ ଛପର ଘର ସମ୍ମୁଖରେ ମାଟିର ଛୋଟ ଛୋଟ ଚଉତରା । ଗୋବରରେ ଲିପିପୋଛି ସଫାସୁତୁରା ଅଗଣାରେ ଫଟା ପୁରୁଣା କମ୍ବଳ ବିଛାଇ ରାଜୟା ଗ୍ରାମଫୋନ୍‌ର ରେକର୍ଡ଼ ବଜାଉଛି । ବାଲକ୍ଷ୍ମୀ ମାଟି ଚଉତରା ଉପରେ ବସି ଚାଉଳରୁ ଗୋଡ଼ି, ଧାନ ବାଛିବାରେ ଲାଗିଛି । ସକାଳୁ ବନ୍ଧନରେ ପଡ଼ିଥିବା କୁକୁଡ଼ାମାନଙ୍କୁ ସନ୍ଧ୍ୟାବେଳକୁ ଛାଡ଼ିଦିଅନ୍ତି ଏବଂ ସେମାନେ ଆରାମରେ ଆଖପାଖରେ ବୁଲିବାକୁ ଲାଗନ୍ତି । ଗୋଟିଏ ସପ୍ତାହ ହେବ ମୁଁ ଏହି କାର୍ଯ୍ୟକ୍ରମ ଦେଖିଆସୁଛି । ମୋର ଅପା ତଳେ ରାନ୍ଧୁଛି । ସେତେବେଳେ ମୁଁ ଛାତଉପରକୁ ଯାଇ ଥଣ୍ଡା ପବନରେ ପଢ଼ିବାକୁ ଚେଷ୍ଟା କରୁଛି । ବହିର ଗୋଟିଏ ପୃଷ୍ଠା ଓଲଟାଇଛି କି ନାହିଁ ରାଜୟାର ବାରମ୍ବାର ଲଗାଯାଉଥିବା ରେକର୍ଡ “ଆୟେ ବରଷାତ୍” ବାଜୁଛି । ଯେତେ ଭଲ ଗୀତ ହେଉ ପଛେ, ତାକୁ କେତେ ଅଉ ଶୁଣାଯାଇପାରେ ?

ଏହି ପ୍ରକାର ରାଜୟାର ଲଗାହୋଇଥିବା ରେକର୍ଡ଼, ସେହି ରେକର୍ଡ଼ ସହିତ ତାଳ ଦେଉଥିବା କୁକୁଡ଼ାମାନଙ୍କ ସ୍ୱର ଏବଂ ଏହି ଦୁଇଜଣଙ୍କ ମଧ୍ୟରେ ବଡ଼ପାଟିରେ ଶୁଣାଯାଉଥିବା ବାଲକ୍ଷ୍ମୀର ଗାଲିଗୁଲଜ୍—ଏହି ସବୁ ଘଟଣା ନେଇ ମୋର ପଢ଼ାପଢ଼ି ବିଲ୍‌କୁଲ୍ ହୋଇ ପାରୁନଥିଲା । କେତେବେଳେ ରାଜୟାକୁ ଏବଂ କେତେବେଳେ ଅନ୍ୟ କାହାକୁ ଲକ୍ଷ୍ୟଦେଇ ବାଲକ୍ଷ୍ମୀ ଗାଳି ଦେଉଥିଲା ।

କୋଠାର ଛାତ ଉପରେ ଠିଆହେଲେ ଦୂର ବଜାରର ବଡ଼ ବଡ଼ କୋଠାମାନଙ୍କରୁ ଦୀପ ଆଲୁଅ ଦେଖାଯାଉଥିଲା । ଆମ କୋଠା ପାଖରେ ବଡ଼ ବଡ଼ ଚଟାଣ । ଗୋଟିଏ ଅନ୍ୟ ସହିତ ଲାଗି ଲାଗି, ତଥାପି ମଧ୍ୟ ଦୂରଛଡ଼ା ଦେଖାଯାଉଥିଲେ । ସେହି ଚଟାଣକୁ

ଦେଖିକରି ମୁଁ ଡରିଯାଉଥିଲି । ସେଥିରୁ କୌଣସି ଚଟାଣ ଯଦି ଏପଟ ସେପଟ ହୋଇଯିବ ତେବେ ଆମ ଘର ଉପରେ ପଡ଼ିଯିବ । ଲୋକ କୁହନ୍ତି, ପଚିଶ ବର୍ଷ ହେଲାଣି ଏହି ଚଟାଣ ଯେପରି ଥିଲା ସେପରିଭାବେ ଏଇଠି ପଡ଼ିରହିଛି । ଗୋଟିଏ ପଟେ ଏହି ଭୂତ ଭଳି ଚଟାଣ ଏବଂ ଅନ୍ୟପଟେ କାନକୁ ଫଟେଇଲା ଭଳି "ଆସ୍ତେ ବରଷାତ୍ରି ମେଁ..." ଗୀତର ସ୍ୱର—ଏଥିରେ ସୁଣି ପଢ଼ିବା କିପରି ହେବ ? ସେହି ପାହାଡ଼ର ପଛପଟେ ଲୁଚିଥିବା ସୂର୍ଯ୍ୟକୁ ମଧ୍ୟ ମୁଁ ଠିକ୍‌ଭାବେ ଦେଖିପାରୁ ନାହିଁ—ଏହି ଗାଲି-ଗୁଲଜ୍ ଏବଂ କୋଳାହଳ ମଧ୍ୟରେ ।

ଯେଉଁଦିନଠାରୁ ଭିଣୋଇଙ୍କର ହାଇଦ୍ରାବାଦ୍‌କୁ ବଦଳି ହେଲା ସେହି ଦିନଠାରୁ ସେ ମୋତେ ନିମନ୍ତ୍ରଣ ଉପରେ ନିମନ୍ତ୍ରଣ ପଠାଉଥିଲେ । ଛ' ମାସ ପର୍ଯ୍ୟନ୍ତ ନିମନ୍ତ୍ରଣ କରୁଥିଲେ ଓ ଶେଷରେ ଗଲା ଡିସେମ୍ବର ମାସରେ ମୁଁ ଆସିଲି । ତାଙ୍କ ଘର ହାଇଦ୍ରାବାଦ୍‌ର ଗୋଟିଏ ଛୋଟ ଗଳିରେ । କୋଠାଘର ଏବଂ ସେହି ଗଳିର ଶେଷ ଘର । ସେହି ସଂକୀର୍ଣ୍ଣ ଗଳିରେ ଏହି ଘରଟି ଟିକିଏ ବଡ଼ । ଆଖପାଖରେ ଛୋଟ ଛୋଟ ଗୃହଘର ହୋଇଥିଲେ ମଧ୍ୟ, ଆମର ଭଉଣୀଘର ଭିତର ପାଖରୁ ସୁବିଧାଜନକ ।

ଘରେ କୋଠରିର ସଫା କରିବା କାମ, ବାସନ ମାଜିବା, ଓଳାଇବା କାମ ସବୁ ଆଗ ଘରେ ରହୁଥିବା ରାଜମ୍ମା ଏବଂ ବାଲମ୍ମା କରିଦେଉଥିଲେ । ବାଲମ୍ମା ଭୋର ଚାରିଟାରୁ ଉଠି ବାହାରର ଅଗଣାକୁ ଗୋବରରେ ଲିପିପୋଛି ଦର୍ପଣ ଭଳି ସଫାସୁତୁରା କରିଦେଉଥିଲା ଏବଂ ଚଉକ ପକାଇ ସଜାଇ ଦେଉଥିଲା । ରାଜମ୍ମା ପ୍ରତିଦିନ ସକାଳୁ ସବୁ ଘରକୁ ସଫା କରି ଧୀରେ ଧୀରେ ବଡ଼ ସାବଧାନତା ସହିତ ଝାଡ଼ୁ ଦେଉଥିଲା । ଏତେ ସ୍ନେହରେ ସେ ମାଟିକୁ ଝାଡ଼ୁ ଦ୍ୱାରା ସ୍ପର୍ଶ କରୁଥିଲା ଯେ ସେ ଝାଡ଼ୁ ଦେଲା ଭଳି ଜଣାଯାଉ ନଥିଲା । ଘରର ସଫେଇ କାମ କରି ମଧ୍ୟ ରାଜମ୍ମା ଏବଂ ବାଲମ୍ମା ମୋ ଭଉଣୀ ଏବଂ ଭିଣେଇଙ୍କ ଦୃଷ୍ଟିରେ ବଡ଼ ସମ୍ମାନପାତ୍ର ହେଉଥିଲେ । ଭଉଣୀ, ଭିଣୋଇ ତାଙ୍କୁ ମଧ୍ୟ ଡରୁଥିଲେ; ଏହି କଥା ଦିନେ ମତେ ସକାଳ ଘଟଣାରୁ ଜଣାପଡ଼ିଲା ।

ସକାଳୁ କଫି ପିଇସାରିବା ପରେ ମୁଁ କଣ୍ଟା ଏବଂ ହାତୁଡ଼ି ନେଇ ଗତକାଲି ପ୍ରଦର୍ଶନୀରୁ ଆଣିଥିବା ରବୀନ୍ଦ୍ରଙ୍କର ଫଟୋ ଡ୍ରଇଂରୁମ୍‌ର କାନ୍ଥରେ ଲଗାଉଥିଲି ଏବଂ ଭିଣୋଇଙ୍କୁ କହୁଥିଲି ଯେ ଏହା ଆପଣଙ୍କ ଘରର ସୌନ୍ଦର୍ଯ୍ୟ ବଢ଼ାଇବ । ଏହି ସମୟରେ କେଉଁଠୁ ଝଡ଼ ପରି ଆସି ରାଜମ୍ମା ଅଗଣାରେ ଠିଆହୋଇଗଲା ।

"ଆବାଜ କ'ଣ ହେଉଛି ଭଉଣି !" ମୋ ଆଡ଼କୁ କ୍ରୋଧାନ୍ୱିତ ହୋଇ ସେ ଦେଖି କହିଲା ।

"କିଛି ନାହିଁ ।" ତା ଆଡ଼କୁ ଧ୍ୟାନ ନ ଦେଇ ମୁଁ କହିଲି । ମୁଁ ଭାବିଲି, ଏ କିଏସେ ମତେ ପଚାରିଲାବାଲା ।

"ଏ କ'ଣ କରୁଛ, ଗୁଡ଼ ଗୁଡ଼ କାନ୍ଥକୁ ଖରାପ କରୁଛ ।" ଆଦେଶ ଦେବା ସ୍ୱରରେ କହିଲା ।

"ତୁମର କ'ଣ ଅଛି ? ଚାଲିଯାଅ ଏଠାରୁ ।" ମୁଁ ରାଗରେ କହିବାକୁ ଯାଉଥିଲି ଏହାରି ମଧ୍ୟରେ ରୋଷେଇଘରୁ ଶ୍ରାନ୍ତ ଭଉଣୀ ଏବଂ ଗାଧୁଆ ଘରୁ ସ୍ନାତ ଭିଣୋଇ ଦୌଡ଼ିଆସିଲେ—କିଛି ବିଭ୍ରାଟର ଆଭାସ ପାଇ ।

"କ'ଣ ହେଲା ?" ଭଉଣୀ ମତେ ପଚାରିଲା ।

"କିଛି ହୋଇନାହିଁ । ମୁଁ କାନ୍ଥରେ କଣ୍ଟା ପିଟୁଛି । ଏ କିଏମେ ମୋତେ ମନା କରିବାକୁ ?"

"ଦେଖନ୍ତୁ ଆଜ୍ଞା, ଭଉଣୀଙ୍କୁ ମୁଁ କହୁଛି କି କଣ୍ଟା ବାଡ଼ାଅ ନାହିଁ । କିନ୍ତୁ ସେ ମୋ କଥା ଶୁଣୁନାହାନ୍ତି । କୋଠା ଖରାପ ହୋଇଯିବ ବାବୁ !" ଭିଣୋଇଙ୍କୁ ରାଜମ୍ମା କହିଲା ।

"ମୁଁ କହିଦେଉଛି । ତମେ ଯାଅ, ରାଜମ୍ମା !" କହି ଭିଣୋଇ ମୋତେ ସେହିଦିନ କଣ୍ଟା ବାଡ଼େଇବାକୁ ବନ୍ଦ କରିଦେଲେ । ବହୁତ ଚିନ୍ତା କରି ମଧ୍ୟ ମୁଁ ବୁଝିପାରୁ ନ ଥିଲି ଯେ ଭଉଣୀ ଭିଣୋଇ ଦୁଇଜଣଯାକ ରାଜମ୍ମାର କଥାରେ ଏପରି ଗମ୍ଭୀରତା ସହିତ କାହିଁକି ଧ୍ୟାନ ଦେଉଛନ୍ତି । ଯଦି କାନ୍ଥରେ କଣ୍ଟା ପିଟାଯାଏ ତେବେ ଘରର ମାଲିକ ସହିତ ଝଗଡ଼ା ଲାଗିଯାଏ ଏବଂ ଭଡ଼ାଟିଆ ଡରିଯିବାର ଦେଖାଯାଏ । କିନ୍ତୁ ଚାକରକୁ ଏପରି ଡରିବା ମୁଁ କେଉଁଠାରେ ଦେଖିନାହିଁ ।

ଚତୁର୍ଥ ଦିନ ସନ୍ଧ୍ୟାବେଳେ ମୁଁ ଛାତ ଉପରେ ଠିଆ ହୋଇଥିଲି । ଭଉଣୀ ରୋଷେଇ କାମରେ ଲାଗିଥିଲି । ଭିଣୋଇ ଏପର୍ଯ୍ୟନ୍ତ ଅଫିସରୁ ଆସିନାହାନ୍ତି । ଆଗରେ ପ୍ରତିଦିନ ଦୃଶ୍ୟ ଦେଖାଯାଉଥିଲା । କିନ୍ତୁ ଗ୍ରାମୋଫୋନ୍ ଆବାଜ୍ ଶୁଣାଯାଉ ନ ଥିଲା । ରାଜମ୍ମା ଚୁରୁଟ୍ ଲଗାଇ ଚଉତରା ଉପରେ ବସିଥିଲା । ବାଲମ୍ମା ଫାଟକ ପାଖରେ ବସି କାହାକୁ ଗାଳି ଦେଉ ଦେଉ ମଝିରେ ମଝିରେ ଆଖିରୁ ଲୁହ ଗଡ଼ାଇ ଚୁଲି ସଫା କରୁଥିଲା ।

ଦୂରରୁ ଗଳିର ମୋଡ଼ରେ ଭିଣୋଇଙ୍କର ଟୋପି ମୋତେ ଦେଖାଗଲା । ତାଙ୍କୁ ହାତ ହଲେଇ ମୁଁ ଛାତର ବାଡ଼କୁ ଝୁଙ୍କି କରି ଠିଆହେଲି । ରାଜମ୍ମା ପିକା ଫୋପାଡ଼ି ଦେଇ ହାତଯୋଡ଼ି କରି ବଡ଼ ବିନମ୍ରତା ସହିତ ଠିଆହେଲା । ରାଜମ୍ମା ବହୁତ ଦୁର୍ବଳ ଅଟେ । କୌଣସି ବାଙ୍କ ଭଙ୍ଗ ସେ ପଞ୍ଜରରୁ ଉପର ଭଙ୍ଗ ଜଣାଯାଏ । ଲୁଗା ସବୁବେଳେ ଆଣ୍ଠୁ ଉପରକୁ ରହେ । ମୁଣ୍ଡ ଉପରେ ଧଡ଼ିବାଲା ପଗଡ଼ି ବାନ୍ଧି, ନୀଳରଙ୍ଗର କମିଜ୍ ପିନ୍ଧି ଠିଆହୋଇଛି—ରାଜମ୍ମା ।

ବାଲମ୍ମାର ଆବାଜ ଭଳି ତାର ଆକାର ମଧ୍ୟ ଲମ୍ବା ଚଉଡ଼ା । ଶ୍ୟାମଳବର୍ଣ୍ଣ ଏବଂ ମୋଟା-ସୋଟା ଗେଡ଼ା ସ୍ତ୍ରୀଲୋକଟିଏ । ଦଶହାତିଆ ଶାଢ଼ିକୁ ପଛରୁ କଷିକରି ପିନ୍ଧିଛି । ହାତରେ ଚକଚକିଆ ଚୁଡ଼ି ଏବଂ କପାଳରେ ଚାରିକୋଣିଆ ଆକାରର ସିନ୍ଦୂର ଟୋପା । ବୟସ ଚାଳିଶ ବର୍ଷରୁ ଉପରେ । ଶାଢ଼ିର କାନିକୁ ମୁଣ୍ଡ ଉପରେ ପକାଇ ଚୁଲି କୂଳକୁ ଫାଟକ ଉପରେ ଛାଡ଼ି ବାଲମ୍ମା ଆସି ଠିଆହେଲା ।

ଯେମିତି ଭିଣୋଇ ଫାଟକ ପାଖରେ ପହଞ୍ଚିଥିଲେ, ରାଜମ୍ମା ତାଙ୍କୁ ପଚାରିଲା—

"ବାବୁ, ପଇସା ତାଙ୍କର ବୁଝାଇଦେଲେ ?"

"ହଁ ରାଜୁ, ଦେଇଦେଲି ।"

"କେତେ ଦେଲେ ?" ରାଜୟା ପୁଣି ପଚାରିଲା ।

"ସବୁଦିନ ଭଳି ପୁରା ପଚାଶଟ ଟଙ୍କା ଦେଲି ।" କହୁ କହୁ ଭଣୋଇ ସିଡ଼ି ଉପରକୁ ଆସିଗଲେ ।

ରାଜୟା ପିକା ଲଗାଇ କୋଠାଆଡ଼କୁ ତୀକ୍ଷ୍ଣ ଦୃଷ୍ଟିରେ ଦେଖିବାକୁ ଲାଗିଲା । ପଛରୁ ବାଲମ୍ମା ଆରମ୍ଭ କଲା—"ପଇସା ମଧ୍ୟ ତା ପାଖକୁ ଯାଉଛି, କୋଠା ମଧ୍ୟ ତାର ହୋଇଯାଇଛି—ତୋ ସାଙ୍ଗରେ ଆସି ମୁଁ ନଷ୍ଟ ହୋଇଗଲି—ମୋର ସୁନା ମଧ୍ୟ ମାଟିରେ ମିଶିଗଲା ।" କହି ବାଲମ୍ମା ଜୋରରେ କାନ୍ଦିବାକୁ ଲାଗିଲା । କିଛି ସମୟ ପର୍ଯ୍ୟନ୍ତ ରାଜୟା ତାଙ୍କୁ ବୁଝାଇବାକୁ ଚେଷ୍ଟାକଲା ଏବଂ ପରେ ଦୁଇ ଚଟକଣା ଲଗାଇ ଦେଲା । ଏଥିରେ ବାଲମ୍ମା ଆହୁରି ଜୋରରେ କାନ୍ଦିବାକୁ ଲାଗିଲା ।

ଝାପ୍‌ସା ଚନ୍ଦ୍ରକିରଣ ଆମ କୋଠା ପାଖ ଚଟାଣରେ ବିଛାଡ଼ି ପଡ଼ିଥିଲା । ସେହି ଚଉତରା ଉପରେ ଗୋବର ଘସି ବଡ଼ ସୁନ୍ଦର ଦେଖାଯାଉଥିଲା । ସେହି ତରଳ ଚନ୍ଦ୍ରକିରଣରେ ଭଣୋଇ କୌଣସି ଚିନ୍ତାରେ ବୁଡ଼ିଯାଇ ଆକାଶ ଆଡ଼କୁ ଚାହିଁଥିଲେ । ଭଉଣୀ ଆସନ୍ତା ଦିନର ରୋଷେଇ ପାଇଁ ଶିମ୍ବରୁ ମଞ୍ଜି ବାହାର କରୁଥିଲା । ବାହାରେ କାନ୍ଦିବା ବନ୍ଦ ହୋଇଯାଇଥିଲା, ଏବଂ ପୁଣି "ଆପ୍‌ସେ ବର୍ଷାତ୍ ମେଁ......"ର ରେକର୍ଡ଼ ବାଜୁଥିଲା । ସେହି ଗୀତକୁ ଶୁଣିବାକ୍ଷଣି ମୋ ମନ ବିରକ୍ତ ହୋଇଉଠୁଥିଲା । ମୁଁ କହିଲି—

"ମୋ କଥା ମାନ ରାଜୟାକୁ ଆଉ ଦୁଇଟି ରେକର୍ଡ଼ କିଣି ଦିଅନ୍ତୁ ତ, ଅନ୍ତ କମ୍‌ରେ ଭେରାଇଟି ହେବ ।"

ଭଣୋଇ ମନେ ମନେ ହସିଉଠିଲେ । କିନ୍ତୁ କିଛି କହିଲେ ନାହିଁ ।

ରାଜୟା ପଇସା କଥା କ'ଣ କହୁଥିଲା ? ଭଣୋଇଙ୍କ ସହିତ କୌଣସି ପ୍ରକାରରେ କଥା କହିବା ପାଇଁ ମୁଁ ପଚାରିଲି ।

"ଆଜି ଦୁଇ ତାରିଖ । ମୁଁ ତ ଭୁଲିଯାଇଛି । ଆଜିର ତାରିଖ ମୋଠାରୁ ବେଶି ରାଜୟା ମନେରଖିଛି ।" ଭଉଣୀ ଭଣୋଇଙ୍କୁ କହିଲା ।

"କେଉଁ ରହସ୍ୟ ଏଥିରେ ଅଛି କି ? କ'ଣ ମୋତେ କହିବ ନାହିଁ ? ଭଣୋଇଙ୍କୁ ମୁଁ କହିଲି ।"

ରାଜୟା ଭଳି ରକ୍ତକୁ ପାଣି କରି କାମକରିବାଲାକୁ ଦୁଇ ତାରିଖ ମନେରହେ । ଆମ ଭଳି ବିଳାସରେ ବସି ଖାଇଲାବାଲାଙ୍କୁ ଯେପରି ଦୁଇ ସେହିପରି କୋଡ଼ିଏ । ଭଣୋଇ ଭଉଣୀଙ୍କୁ କହିଲେ ।

"ରକ୍ତକୁ ପାଣିକରି ପରିଶ୍ରମ ତ କରୁଛ, କିନ୍ତୁ ହାତକୁ କ'ଣ ଆସୁଛି ? ସବୁ ମାଟିରେ ମିଶିଗଲା । ବର୍ତ୍ତମାନ ଘର ବିଷୟରେ ଭାବିଲେ କ'ଣ ଲାଭ ଅଛି ?" ଶିମ୍ବମଞ୍ଜି

ଭାଷିଆରେ ରଖୁ ରଖୁ ଭଉଣୀ କହିଲା ।

"ଉପକାର ତ ନାହିଁ । କିନ୍ତୁ ଭାବନାଥ ସେ ଦଶ୍‌ବର୍ଷର ପୁଅ କେଉଁଠାରେ ହଜି-ଯାଇଛୁ ଏବଂ ତାର ଫେରିଆସିବାର କୌଣସି ଆଶା ନାହିଁ । ତଥାପି ମଧ୍ୟ ମା' ବାପା ତା ପାଇଁ ଆଖିରୁ ଲୁହ ଗଡ଼ାଇବା ଛାଡ଼ିଦେବେ ? ମା'ଙ୍କୁ ତ ଦୁଃଖ ହିଁ ହେବ । ବଡଲ ରାଜୟ୍ୟାର ଦୁଃଖ ସେଭଳି । ଜୀବନଠାରୁ ବଳି ସୁଖର ଘର ଅନ୍ୟର ହୋଇଗଲା; ତେବେ ଦୁଃଖ କିପରି ହେବ ନାହିଁ ? ମମତା ଏହିଭଳି ! ପ୍ରତି ମାସରେ ପାଞ୍ଚଶହ ଟଙ୍କା ପାଉଥିବା ତୁମ ପରି ଲୋକ ତାହାର ଯନ୍ତ୍ରଣା କିପରି ଅନୁଭବ କରିବ ?" ଭିଣୋଇ ଭଉଣୀଆଡ଼କୁ ଲକ୍ଷ୍ୟ କରି କହିଲେ ।

ଭଉଣୀକୁ ମୁଁ ପଚାରିଲି, "ବାସ୍ତବରେ କଥା କ'ଣ ?"

"ତାଙ୍କୁ ପଚାରି ନେ, ସବୁ କଥା ବୁଝାଇଦେବେ ।" ଭିଣୋଇ ଆରମ୍ଭ କଲେ—

ଏହି ଘସଡ଼ା ରେକର୍ଡ଼ ପଛରେ ପେଷିହୋଇ ଯାଉଥିବା ହୃଦୟ ଆମକୁ ଦେଖାଯାଉନାହିଁ । ବାସ୍ତବରେ ଅନ୍ୟର କଥା ବୁଝିପାରିବାର ଧୈର୍ଯ୍ୟ ଆମମାନଙ୍କଠାରେ ନାହିଁ । ରାଜୟ୍ୟା ଯେପରି ଝାଡ଼ୁଦେଇ ଗୃକର କରୁଛୁ ଏବଂ ବାଲମ୍ମା ସବୁବେଳେ ଗାଳିଦେଉଛୁ । ଆମେ ଯେଉଁ କୋଠାରେ ରହୁଛେ ତାହାର ବୁନିୟାଦରେ ସେହି ଦୁଇଜଣଙ୍କ ଜୀବନ ପେଷିହୋଇଯାଇଛୁ । ତାଙ୍କରି ଝାଳବନ୍ଦୁରେ ଏହି କୋଠାକାନ୍ଥ ଠିଆହୋଇଛୁ ।" ଭିଣୋଇ ବଡ଼ ଭାବପ୍ରବଣତା ସହିତ ବ୍ୟାକୁଳ ହୋଇ କହିଲେ—

"ତାଜମହଲ ତିଆରି ହେବା ପାଇଁ ମଧ୍ୟ ମଜୁରିଆମାନଙ୍କର ଆବଶ୍ୟକତା ପଡ଼ିଲା । ସେହି ନାମ ରାଜାମାନଙ୍କର ନ ଥିଲା । ଏହିପରି ଏହି ଘର ତୁମେ ଆମେ ତିଆରି କରିନାହୁଁ, ରାଜୟ୍ୟା ପରି ମୂଲିଆ ଲୋକମାନେ ଝାଳ ବୁହାଇ ତିଆରି କରିଥିବେ । ଶେଷରେ ଏପରି କେଉଁ କୋଠା ହେବ ଯାହାର ବୁନିୟାଦ ମୂଲିଆମାନଙ୍କ ଝାଳରେ ଆର୍ଦ୍ର ନ ହୋଇଛୁ ?" ମୁଁ ମୋର ତର୍କଶକ୍ତିକୁ ପ୍ରଦର୍ଶନ କରି ଏତିକି କହିଲି—

"ଯଦି ରାଜୟ୍ୟା ମଜୁରି ପାଇଁ ଏହି ଘର ତିଆରି କରିଥିବ ତେବେ କାହାକୁ ଏତେ ଦୁଃଖ ହେବ ନାହିଁ ଏବଂ ସେ ମଧ୍ୟ ମୋ ଖିଆଲରେ ଏତେ କାନ୍ଦନ୍ତା ନାହିଁ । ବାସ୍ତବରେ ଏହି କଥା ଯେ—ସେ କଠିନ ପରିଶ୍ରମ କରି ନିଜର କମେଇଥିବା ପଇସା ଏବଂ ଝାଳରେ ଏହି କୋଠା ତିଆରି କରିଥିଲା । ପ୍ରତ୍ୟେକ ଇଟା ସେ ନିଜ ହାତରେ ଯୋଡ଼ିଛୁ । ତୁମେ ବିଶ୍ୱାସ କର—ଦଶହଜାର ମୂଲ୍ୟବାଲା ଏହି ଘର ଏକବର୍ଷ ପୂର୍ବରୁ ରାଜୟ୍ୟାର ନିଜର ଥିଲା । ମାଲତୀ, ଆଜି ରାଜୟ୍ୟା ସମ୍ମୁଖରେ ଥିବା ଗୁଳଘରେ ରହୁଛୁ । ବର୍ତ୍ତମାନ ସେଇଟି ତାର ଏକମାତ୍ର ସମ୍ପତ୍ତି ।" ଭିଣୋଇ ଧୀରେ ଧୀରେ କହୁଥିଲେ ।

ମୋତେ ଆଶ୍ଚର୍ଯ୍ୟ ଲାଗିଲା । ଝାଡ଼ୁଦେବାବାଲା ଗୃକର ରାଜୟ୍ୟା ଏତେବଡ଼ ଘର କିପରି ତିଆରି କରିପାରିଲା ? ଯଦି ନିଜର ପରିଶ୍ରମରେ ତିଆରି କରିଛୁ ତେବେ ତାକୁ ହରାଇଦେଲା କିପରି ? ପୁଣି ରାଜୟ୍ୟା ଘରୁ ରେକର୍ଡ଼ର ଗୀତ—'ରାଦେ ଚେଲି ନିମ୍ମ ରାଦେ ଚେଲି'—ସେହି ତେଲୁଗୁ ଗୀତ ଶୁଣାଗଲା ।

ଭଣେଇ କହୁଯାଉଥିଲେ ।

"ରାଜସ୍ବାର ନିଜର ପରିବାର ଥିଲା । ମିସ୍ତ୍ରୀ କାମ କରୁଥିଲା । ବାଲମ୍ମାର ମଧ୍ୟ ସ୍ବାମୀ ଥିଲା । ବାଲମ୍ମା ଘରର ସାମନା ରାସ୍ତା ମରାମତି କରିବା ସମୟରେ ରାଜସ୍ବା ସହିତ ବାଲମ୍ମାର ପରିଚୟ ହୋଇଗଲା । ପରିଚୟ ସ୍ନେହରେ ପରିଣତ ହେଲା । ଶେଷରେ ବାଲମ୍ମା ପଚାଶଭରି ସୁନା ସହିତ ରାଜସ୍ବା ପାଖକୁ ଚାଲିଆସିଲା । ଦୁଇଜଣ ଦୁଇବର୍ଷ ପର୍ଯ୍ୟନ୍ତ ତିନି ଟଙ୍କା ମାସକୁ ଭଡ଼ାଦେଇ ଗୋଟିଏ ଛୋଟ ଚାଳଘରେ ରହିଲେ । ବାଲମ୍ମା ମଜୁରି ଖଟେ ଏବଂ ରାଜସ୍ବା ମିସ୍ତ୍ରୀକାମ କରୁଥିଲା । ଦୁଇଜଣଯାକ ନିଜ ଉପାର୍ଜନରୁ ଆଠଶହ ଟଙ୍କା ବଞ୍ଚାଇ ସଞ୍ଚୟ କରିଥିଲେ । ସେହି ଟଙ୍କାରୁ ପାଞ୍ଚଶହ ଟଙ୍କାରେ ଏହି ଘରର ଜମି କିଣିନେଲେ । ବାଲମ୍ମା ଗହଣା ବିକିବାରୁ ତିନିହଜାର ଟଙ୍କା ମିଳିଲା । ସେଥିରୁ ଦୁଆରବନ୍ଧ, କବାଟ, ଫାଟକ ଇତ୍ୟାଦି ପାଇଁ ଶୀଘ୍ର କାଠ, ଲୁହା, ଚୂନପଥର ଆଦି ଜିନିଷ ଆଣି ଘର ତିଆରି କରିବା ଆରମ୍ଭ କଲା ।

ପ୍ରତିଦିନ ରାତିରେ ରାଜସ୍ବା ଏବଂ ବାଲମ୍ମା ମୂଳଦୁଆ ପକାଇବା ପାଇଁ ଖୋଳିବା ଇତ୍ୟାଦି କାମ କରୁଥିଲେ । ଦିନସାରା କେଉଁଠାରେ କାମ କରୁଥିଲେ । ରାଜସ୍ବାକୁ ପଚିଶ ଟଙ୍କା ମାସକୁ ମିଳିଯାଉଥିଲା ଏବଂ ବାଲମ୍ମାକୁ ତିରିଶ ଟଙ୍କା । ଏଥିରୁ ସେମାନେ କୋଡ଼ିଏ ଟଙ୍କାରେ ଖାଇବା ପିଇବା ଖର୍ଚ୍ଚ ଚଳାଇ ବାକି ଷାଠିଏ ଟଙ୍କା ଘର ତିଆରିରେ ଲଗାଉଥିଲେ ।

ବାଲି ବ୍ୟବସାୟୀ ସହିତ ବନ୍ଧୁତା କରି ରାଜସ୍ବା ନିଜେ ଠେଲାଗାଡ଼ିରେ ବାଲି ବୋହିଆଣୁଥିଲା ଏବଂ ଏହିପରି ବୋହିବାର ଖର୍ଚ୍ଚ ପଇସା ବଞ୍ଚିଯାଉଥିଲା । ଆଠ-ଅଣା ବଞ୍ଚାଇବା ପାଇଁ ଅଧରାତି ସମୟରେ ରାଜସ୍ବା ଏବଂ ବାଲମ୍ମା ଦୁଇଜଣଯାକ ଗଳିର ସେ ମୁଣ୍ଡରୁ ପଥର ବୋହିଆଣୁଥିଲେ ।

ଏହିପରି ଅଧାଘର ତିଆରି ହୋଇଯାଇଥିଲା । ସେତିକି ବେଳକୁ ତାର ପଇସା ଶେଷ ହୋଇଗଲା । କାନ୍ଥ ଅଧା ଠିଆହୋଇଗଲା; ବର୍ତ୍ତମାନ ଲୁହା ଫାଟକ ଆଦି ଠିଆ-କରାଇବା କାମ ବାକି ଥିଲା । ଏଥିପାଇଁ ସେଠଙ୍କ ପାଖକୁ ଯାଇ କରଜ ଆଣିବାକୁ ହେଲା । ସବୁମାସରେ ବଞ୍ଚୁଥିବା ଷାଠିଏ ଟଙ୍କା ଘରେ ଲଗାଉଥିଲେ ଏବଂ ଯେଉଁ ପର୍ଯ୍ୟନ୍ତ ହୋଇପାରିବ ମଜୁରି ପଇସା ମଧ୍ୟ ବଞ୍ଚାଉଥିଲେ । ସେଥିରେ ମଧ୍ୟ ଗୋଟିଏ ବର୍ଷରେ ୪ ହଜାର କରଜ ସହିତ ଘରକାମ ସମ୍ପୂର୍ଣ୍ଣ ହୋଇଗଲା । ରୋଷେଇ ଘରେ ଗୋଟିଏ କଳ, ଗାଧୁଆ ଘରେ ଅନ୍ୟ କଳ, ପଛପଟରେ ଆଉ ଗୋଟିଏ ନଳା, ଶୋଇବା ପାଇଁ ଅଲଗା ଘର, ଆଗରେ ହଲ୍, ଭଣ୍ଡାର ଘର, ସବୁଘରେ ବଡ଼ ବଡ଼ ଆଲମାରି, ବିଜୁଳିର ବ୍ୟବସ୍ଥା—ସବୁ ସୁବ୍ୟବସ୍ଥା ସହିତ ଘର ତିଆରି ହୋଇ ସାରି-ଥିଲା । ଦୁଇମାସ ପର୍ଯ୍ୟନ୍ତ ରାଜସ୍ବା ଏବଂ ବାଲମ୍ମା କୌଣସି ତୃତୀୟ ବ୍ୟକ୍ତିର ସାହାଯ୍ୟ ନ ନେଇ ରାତିସାରା ପରିଶ୍ରମ କରି ଘରେ ଚୂନଦେଇ ରଙ୍ଗ ଦେଇ ଏବଂ ସଜେଇବା କାମ ମଧ୍ୟ ସମ୍ପୂର୍ଣ୍ଣ କରିଦେଲେ ।

ଯେତେବେଳେ ଘର ତିଆରି ସରିଲା ସେତେବେଳେ ତା ଉପରେ ଚାରି ହଜାର ଟଙ୍କା କରଜ ଥିଲା। କରଜ ମଧ୍ୟ ଘର ବନ୍ଧାଦେଇ ମିଳିଥିଲା। ସେଠ କରଜ ସୁଝିବା ପାଇଁ ଦୁଇଟି ପନ୍ଥା ଦେଇଥିଲେ। ଗୋଟିଏ ପଟେ ବଜାରର ଟଙ୍କାବାଲା ମାମୁଲି ସୁଧ ଥିଲା। ଏବଂ ଅନ୍ୟପଟେ କରଜ ଘର ବନ୍ଧାଦେଇ ସୁଧ ବହୁତ କମ୍ ଲଗାଯାଉଥିଲା। ଚାରି-ବର୍ଷ ମଧ୍ୟରେ ଚାରି ହଜାର ଟଙ୍କାରେ ଆଠଶହ ଟଙ୍କା ସୁଧ ଥିଲା। ଅର୍ଥାତ୍ ମୂଳଧନର ପାଞ୍ଚ ଭାଗରୁ ଗୋଟିଏ ଭାଗ।

ସବୁ ମିଶାଇ ଚାରିହଜାର ଆଠଶହ ଟଙ୍କା ଦେବାକୁ ଅଛି। ଏହାର ଉଦ୍ଦେଶ୍ୟ ଏହା ଥିଲା ଯେ ପ୍ରତ୍ୟେକ ଛ' ମାସରେ ରାଜମ୍ମାକୁ ଛ ଶହ ଟଙ୍କା ହିସାବରେ କରଜ ସୁଝିବାକୁ ପଡ଼ୁଥିଲା। ଅରେ ପରିଶୋଧ ନ କଲେ ତ ବନ୍ଧକ କବଜ ହୋଇଯିବ। ଦୁନିଆ ବିଷୟରେ କମ୍ ବୁଝିବାବାଲା ରାଜମ୍ମା,— କମ୍ ସୁଧ ପ୍ରସ୍ତାବକୁ ସ୍ୱୀକାର କରି-ଥିଲା। ସେ ଭାବିଲା ଯେତେବେଳେ ଏତେ ପରିଶ୍ରମରେ ଘର ତିଆରି କରିଛି ତେବେ ଛଅ ମାସ ଭିତରେ ଛ ଶହ ଟଙ୍କା କ'ଣ ଦେଇପାରିବ ନାହିଁ।

ରାଜମ୍ମା ୭୫ ଟଙ୍କାର ମାସକୁ ଘରଭଡ଼ା ହିସାବରେ ଘର ଭଡ଼ା ଦେଇଦେଲା। ଭଡ଼ାଟିଆ ଘରଭଡ଼ା ସେଠଜୀଙ୍କ ଅଫିସରେ ସିଧା ଜମା କରିଦେଉଥିଲେ। ଏହା ବ୍ୟତୀତ ଉପରର ଦେଢ଼ଶହ ଟଙ୍କା ବକ୍‌ସିସ୍ ପରିଶୋଧ ପାଇଁ ରାଜମ୍ମା ଏବଂ ବାଲକ୍ଷ୍ମା ଭୋକିଲା ରହି ପଇସାଏ ପଇସାଏ ବଞ୍ଚାଇ କୌଣସି ପ୍ରକାରେ ସେଠଜୀଙ୍କ କରଜ ପରିଶୋଧ କରିବାରେ ରହିଲେ। ଅତି କମ୍‌ରେ ଖାଇବା ଖର୍ଚ୍ଚ ଚଳାଇବା ପାଇଁ ବାଲକ୍ଷ୍ମା କୋଠାରେ ଝାଡ଼ୁ ଲଗାଇବା କାମ କରିବା ପାଇଁ ରାଜି ହୋଇଗଲା ଏବଂ ରାଜମ୍ମା ପାଖରେ ଥିବା ଗଳିର କୌଣସି ଘରେ ମାଲିକାମ କରୁଥିଲା। ଏହିପରି ପ୍ରତି ପଇସାର ହିସାବ ଯୋଡ଼ି ଘରର କରଜ ପରିଶୋଧ କରିବାରେ ଲାଗିଲେ।

ରାତି ଚାରିଟା ବେଳୁ ଉଠି ଖାଇବା ତିଆରି କରି କୋଠାପାଖ ଘରେ ଝାଡ଼ୁଦେଇ, ଖାଦ୍ୟ ଖାଇ, ମଧ୍ୟାହ୍ନ ପାଇଁ ଖାଇବା ସାଙ୍ଗରେ ନେଇ ଦୁଇଜଣଯାକ କାମ ଉପରକୁ ଯାଉଥିଲେ। ସନ୍ଧ୍ୟାବେଳକୁ ଘରକୁ ଆସିବାକ୍ଷଣି ରାଜମ୍ମା ବଗିଚାକୁ ଯାଉଥିଲା ଏବଂ ବାଲକ୍ଷ୍ମା କୋଠାଘରେ କାମ କରିବାରେ ଲାଗିଯାଉଥିଲା। କେଉଁଠୁ ଚୂନ ଛାଡ଼ିଗଲା ତ ପୁଣି ଚୂନ ଲଗାଇବା, କବାଟରେ ପିଲାଏ କିଛି ଲେଖିଦେଇଛନ୍ତି ତ ଓଦା କନାରେ ତାକୁ ପୋଛିଦେବା, ପଛପଟର ଛୋଟ ବଗିଚାରେ ଗଛ ଲଗାଇବା —ଏଭଳି କାମରେ ରାତି ନଅଟା ଅଥବା ଦଶଟା ପର୍ଯ୍ୟନ୍ତ ଦୁଇଜଣଯାକ ବ୍ୟସ୍ତ ରହୁଥିଲେ।

ପ୍ରଥମ ଦୁଇବର୍ଷ ସେଠଜୀଙ୍କ କରଜ ପରିଶୋଧ କରିବାରେ କୌଣସି କଷ୍ଟ ହେଲା ନାହିଁ। ପ୍ରଥମ କିସ୍ତିର ଛ' ଶହ ଟଙ୍କା ମଧ୍ୟ ପରିଶୋଧ କରିଦେଲା। ଆଉ ତିନିକିସ୍ତି ପରିଶୋଧ କରିଦେଇଥାଆନ୍ତେ ତ ଘର ତାଙ୍କର ହୋଇଯାଇଥାଆନ୍ତା। ତା ପରେ ଆରାମରେ ଦିନ କଟିଯିବ। ଏହିପରି ସେମାନେ ମିଥ୍ୟା କଳ୍ପନା ଦେଖିଲେ। ଦିନେ ସଡ଼କ ଖୋଳୁଥିବା କୌଣସି ମୂଲିଆ ପାଖରେ ରାଜମ୍ମା ଠିଆହୋଇଥିଲା। ଭୁଲରେ

ଲୁହାର କୋଦାଳ ରାଜନ୍ନାଙ୍କ ପାଦରେ ପଡ଼ିଗଲା ଓ ରାଜନ୍ନାର ପାଦ ଫୁଲିଗଲା । ବିଚରା ତିନିମାସ ପର୍ଯ୍ୟନ୍ତ ବେମାର ପଡ଼ିଲା । ରାଜନ୍ନାର ଔଷଧ ଏବଂ ଡାକ୍ତରୀ ସେବା-ଶୁଶ୍ରୂଷା ଆଦିର ବ୍ୟବସ୍ଥା କରିବା ପାଇଁ ବାଲମ୍ମାକୁ ମଧ୍ୟ କାମ ଛାଡ଼ିବାକୁ ହେଲା । ସେହି ସମୟରେ ଭଡ଼ାଟିଆ ଅନ୍ୟ ଆଡ଼େ କୁଆଡେ ବଦଳି ହୋଇ ଚାଲିଗଲେ । ଦୁଇମାସ ପର୍ଯ୍ୟନ୍ତ ଘର ଖାଲି ମଧ୍ୟ ପଡ଼ିଲା । ଯାହା ହେଉ ପଛେ, ସବୁ ବିପଦ ଏକାସାଙ୍ଗରେ ରାଜନ୍ନା ଉପରେ ବଢ଼ିପାଣି ପରି ମାଡ଼ିଆସିଲା । ଷଷ୍ଠ କିସ୍ତି ସମୟ ସମ୍ପୂର୍ଣ୍ଣ ହୋଇଗଲା । ଏହି ସୁଯୋଗ ଅପେକ୍ଷାରେ ବସିଥିବା ସେଠଜୀ ପନ୍ଦର ଦିନର ନୋଟିସ୍ ଦେଇ ଘରକୁ ଦଖଲ କରିନେଲା ଏବଂ ରାଜନ୍ନା ଉପରେ ଦୟା ଦେଖାଇ ବାରଶହ ଟଙ୍କା ତାକୁ ଦେଇଦେଲା ।

ରାଜନ୍ନା କାନ୍ଦିପକାଇଲା । ବାଲମ୍ମା ମୁଣ୍ଡ ପିଟି କାନ୍ଦିବାକୁ ଲାଗିଲା; ଗାଳିଗୁଲଜ କଲା । ରାଜନ୍ନା ହାତରେ ଲେଖାକୁ ସେଠଜୀ ଦଶଜଣଙ୍କୁ ଦେଖାଇ ପଢ଼ାଇଲେ । ସେହି ଲେଖାକୁ ପଢ଼ି ସମସ୍ତେ କହିଲେ ଯେ ସେଠଜୀ ବଡ଼ ଦୟାଳୁ । ଏଥିପାଇଁ ବାର ଶହ ଟଙ୍କା ନିଜଆଡ଼ୁ ଦେଉଛନ୍ତି ।

କିନ୍ତୁ ରାଜନ୍ନାର ହୃଦୟର ଦୁଃଖକୁ କିଏ ବୁଝୁଛି ? ପ୍ରତ୍ୟେକ ପଥର ଏବଂ ପ୍ରତ୍ୟେକ କଣ୍ଟାକୁ ସେ ବାଛି ବାଛି ସଜାଇଥିଲା । ଅଠର ଶହ ଟଙ୍କା କମ୍ ହେବା ଯୋଗୁ ନିଜ ହାତତିଆରି ଏହି ଘର ତାହାର ହାତରୁ ଚାଲିଗଲା । କ'ଣ ଏହା ନ୍ୟାୟ ? ସେହି ବାରଶହ ଟଙ୍କାରେ ସେ ଏହି ଚାଳଘର—ଆମ କୋଠାର ଆଗର ଚାଳଘର କିଣିନେଲା । ରାଜନ୍ନା ପୁଣି ମିସ୍ତ୍ରୀ କାମ କଲା ନାହିଁ ! ଦୁଇଜଣ ମଜୁର କାମ କରି ତିରିଶ୍ ତିରିଶ୍ ଟଙ୍କା କମାଉଛନ୍ତି । ରାଜନ୍ନା ଏହି କୋଠାକୁ—ଏହି ଜାଗାକୁ—ଛାଡ଼ିକରି ଯିବ ନାହିଁ । ତାକୁ ଜଣାଅଛି ଯେ ଏହି କୋଠା ତାର ନୁହେଁ । ରାଜନ୍ନା ଜାଣିଛି ଯେ ଏହି କୋଠାରେ ରହୁଥିବା ଲୋକମାନଙ୍କ କାନ୍ଥରେ କଣ୍ଟାପିଟିବାରେ ମନା କରିବାର ଅଧିକାର ତାର ନାହିଁ । ତଥାପି ମଧ୍ୟ ଯେତେବେଳେ କାନ୍ଥରେ କଣ୍ଟା ପିଟାଯାଉଥିଲା ସେତେବେଳେ ସେ ସହିପାରିଲା ନାହିଁ । ତାର ପ୍ରାଣ ବିକଳ ହୋଇଉଠିଲା । ରାଜନ୍ନାର ଆତ୍ମା ଏହି ଘର ଏବଂ ଏହାର ଆଖପାଖ ଅଞ୍ଚଳରେ ସମର୍ପିତ ହୋଇଛି ।

ଦଶହରା ପର୍ବରେ ଏହି କୋଠାକୁ ଚୂନ ଲଗେଇବାର ଥିଲା । ରାଜନ୍ନା ଏବଂ ବାଲମ୍ମା ବାହାରୁ କାହାକୁ ଡାକିବାକୁ ଦେଲେ ନାହିଁ ଏବଂ ଅନ୍ୟଙ୍କଠାରୁ କମ୍ ପଇସା ନେଇ ଏହି ଘରର ସଫେଇ ନିଜେ କଲେ । ତାଙ୍କର କହିବାର ଅର୍ଥ ଯେ ବାହାର-ବାଲା ଠିକ୍ କାମ କରନ୍ତି ନାହିଁ । ସେଥିପାଇଁ ସେମାନେ ଏହି କାମ ନିଜେ କରିନେଲେ ।

ପ୍ରତ୍ୟେକ ଦୁଇ ତାରିଖକୁ ରାଜନ୍ନା ନିୟମିତ ଭାବେ ପଚାରେ ଯେ ମୁଁ ଋଣ ପରିଶୋଧ କଲି କି ନାହିଁ । ନିଜର ଦରମା ସେମାନେ ମାଗନ୍ତି ନାହିଁ । ସେଠଜୀଙ୍କୁ ମିଳିବା ଭଡ଼ାର ସେମାନେ ବହୁତ ଧ୍ୟାନ ରଖିଥାଆନ୍ତି । କେବେ କେବେ ଏହି ଘରପ୍ରତି ତାଙ୍କର ମମତା ଦେଖି ମୋ ହୃଦୟ ଦୁଃଖରେ ଭରିଯାଏ । କିନ୍ତୁ ବଡ଼ ଦୁଃଖୀ ଏବଂ

ଦମ୍ପତିଙ୍କ ମୁଖାମୃତରେ ଯେତେବେଳେ ରାଜମ୍ମା ପକ୍ଷରେ, ପଇସା ପରିଶୋଧ କରିଦେଇଛନ୍ତି ବାବୁ ? ଯେତେବେଳେ ତା ଉପରେ ମୁଁ କିଭଳି ଅସନ୍ତୁଷ୍ଟ ହୋଇଯିବି ?

ଯେଉଁ ଘର ତାଙ୍କର ରକ୍ତ ଶୋଷଣ କରିଛି ତା ଉପରେ ତାଙ୍କ ମମତା ଦେଖି ମୋ ମନ ବହୁତ କଷ୍ଟ ହୁଏ । ବାହାରକୁ ଗୃହଁ, ବାଲମ୍ମା ଅଗଣାକୁ କିଭଳି ଭଲଭାବରେ ସଫା କରିଛି !

ଏପରି ସଫା କରିଛି ଯେ ସେଠି ମୁହଁ ଦେଖିଲେ ନିଜର ପ୍ରତିବିମ୍ବ ମଧ୍ୟ ଦେଖିପାରିବ । ଜୀବନରେ ତାଙ୍କର ଆଉ କିଛି ଆଶା ନାହିଁ । ଏହି ଦୁନିଆରେ ସେହି ଶ୍ରେଷ୍ଠ ବୁଢ଼ାଆଙ୍କୁ ଛାଡ଼ି ଆଉ କିଛି ସମ୍ପତ୍ତି ନାହିଁ । ଯେଉଁ କୋଠାର ସପନ ସେମାନେ ଦେଖୁଥିଲେ । ତାହା ତାଙ୍କ ହାତରୁ ଚାଲିଯାଇଛି । କିନ୍ତୁ ସେ ବିଚାରି ଏହି କୋଠାର ଛାଇରେ ହିଁ ଜୀବନର ବାକିଦିନ ବିତେଇଦେବ ତ···ପ୍ରତ୍ୟେକ ଜୀବନ ଏକ ଲମ୍ବା କାହାଣୀ ।

ଯଦି ମୁଁ ରାଜମ୍ମାକୁ କହେ ଯେ କିଣ୍ଟା ବାଢ଼େଇଲୁ ତ ତୁମର କ'ଣ ଖରାପ ହେଲା ? ତୁମେ ତୁମର ଗ୍ରାମୋଫୋନ୍ ନେଇ ଯାଅ—ତେବେ ସେ କେତେ ଦୁଃଖ କରିବ ! ଏହି କୋଠାର ଛାଇ ଏବଂ ଗ୍ରାମୋଫୋନ୍‌ର ଶବ୍ଦ—ବାସ୍, ଏହି ଦୁଇଟି କେବଳ ସେମାନଙ୍କର ସାହାରା ।"

ଭିଣୋଇ ଆଉ କିଛି କହିପାରିଲେ ନାହିଁ । ମୋ ଆଖିରେ ଲୁହ ଭରିଗଲା । ରାଜମ୍ମା ଓ ବାଲମ୍ମାର ଭାଗ୍ୟ କେତେ ଶ୍ରେଷ୍ଠ । ତାଙ୍କ ଜୀବନରେ 'ବରସାତ୍' ନାହିଁ । ସେହି 'ବରସାତ୍' ତାଙ୍କ ଗ୍ରାମୋଫୋନ୍‌ର ଶବ୍ଦ ।

କ'ଣ ଆପଣ ଏହାକୁ କାହାଣୀ ଭାବୁଛନ୍ତି ? ନା, ଏହା ସତ ଘଟଣା । ହାଇଦ୍ରାବାଦ ଷ୍ଟେସନ୍‌ରୁ ଆକାଶବାଣୀ ଆଡ଼କୁ ଯାଇଥିବା ରାସ୍ତାରେ ତୃତୀୟ ଗଳିକୁ ଭାଙ୍ଗି କରି ଗଲେ ଆଜି ମଧ୍ୟ ଆପଣ "ଆୟେ ବରଷାତ୍ ମେଁ"ର ଗୀତ ଏବଂ ବାଲମ୍ମାର ଗାଳିଗୁଡ଼ିକ ଶୁଣି ପାରିବେ । ଯଦି ଆପଣଙ୍କୁ ମୋ କଥା ଉପରେ ବିଶ୍ୱାସ ନାହିଁ ତେବେ ଥରେ ଯାଇ କୋଠିବାଲା ଘର ଦେଖି ଆସନ୍ତୁ ।

# ପୁଣି ଥରେ ବରଯାତ୍ରୀରେ

"ଉଠ ବାବୁ, ଉଠ···ଆମେ ପହଞ୍ଚୁ ପହଞ୍ଚୁ, ପାହାନ୍ତା, ବ ହୋଇଯିବ ।" କାହାର ଗଳା ଶୁଣାଗଲା । ମୋର ଗ୍ରୁଇନିଦ ପୂରାପୂରି ଭାଙ୍ଗିଗଲା । ଯେଉଁ ଚଉତରା ଉପରେ ଆମେ ଆମର ବିଛଣା ବିଛାଇ ଶୋଇଥିଲୁ ତାର ପାଖବାଲା ମଞ୍ଚ ଉପରେ ଶୋଇଥିବା ଲୋକଙ୍କ ଭିତରୁ ଜଣେ ଦୁଇଜଣ କରି ନେଉଟାଉଛନ୍ତି । ଆସ୍ନଚୌକିରେ ବସିଥିବା ବ୍ୟକ୍ତିଟି ଉଠୁଛି । ସେ ଆଉ କେହି ନୁହେଁ; ସେହି ଶଙ୍କରମ୍ ! ସେ ଉଠି ଅଳସ ଭାଙ୍ଗୁଥିଲା । ପାଖରେ ଥିବା ଦୀପ ଆଲୁଅରେ ତାର ଚେହେରା ଅସ୍ପଷ୍ଟଭାବେ ଦିଶୁଥିଲା, ଅଳସ ଛଡ଼ାଇବାକୁ ସେ ଫୁଟ୍କି ମାରୁଥିଲା । ମୋ ମନରେ କିଛି ଏପରି କଷ୍ଟ ହେଉଥିଲା ଯେ ମନେ ହେଉଥିଲା ମତେ ଯେପରି କିଏ ହାତମୁଠାରେ ଜାବୁଡ଼ି ଧରିଛି ।

ସମସ୍ତେ ଉଠିଲେ । ଘଣ୍ଟାକ ମଧ୍ୟରେ ଆମେ ସମସ୍ତେ ପ୍ରସ୍ତୁତ ହୋଇ ବାହାରିଲୁ ଦୁଇଟି ଗାଡ଼ିରେ । ସୁମିତ୍ରାର ଅଜାଘରେ ସେହି ଛୋଟ ଗାଁଟିରେ ବାହାଘର ହବାର ଅଛି । ସୁମିତ୍ରାର ଚିଠି ଓ ଶଙ୍କରମ୍‌ର ଗୁହାରିଆ ଚିଠି—ଏ ଦୁଇଟି ଏହି ବାହାଘରରେ ଯୋଗଦେବା ପାଇଁ ମତେ ବାଧ୍ୟକରି ଦେଇଛି । ଚାଦରଟି ଦେହ ଉପରକୁ ଟାଣିଆଣି ମୁଁ ବାହାରଆଡ଼କୁ ଚାହିଁଲି । ଆଗ ଗାଡ଼ିରେ ତିନିଜଣ ଥିଲେ । ଶଙ୍କରମ୍ ସେହି ଗାଡ଼ିରେ ଥିଲା ।

ଫିକା ଧୂସର ରଙ୍ଗର ଏହି ଚାନ୍ଦନୀ ବି କେତେ ଅଦ୍ଭୁତ ! ମୋ ମୁଣ୍ଡ ଉପରେ ସଜା ହୋଇଥିବା ମଲ୍ଲୀଫୁଲ ଓ କରର ଟୋକେଇରେ ରଖାହୋଇଥିବା ସଜଫୁଟା ଫୁଲ—ଏହି ଦୁଇଟି ରହି ରହି ମୋ ମନରେ ଗୋଟିଏ ବିଚିତ୍ର ପୀଡ଼ା ସୃଷ୍ଟି କରୁଛି । କେଉଁ ପୀଡ଼ାକୁ ବ୍ୟକ୍ତ କରୁଥିବା କାହାର ସ୍ୱର ଦୂରରୁ ଶୁଣାଯାଉଛି । ଫସଲ ନ ଥାଇ ଜମି ପଡ଼ିଆ ପରି ବିସ୍ତୀର୍ଣ୍ଣ ହୋଇ ପଡ଼ିଛି । ସଡ଼କଧାରରେ ପସସ୍ଥାନ ବୃକ୍ଷଗୁଡ଼ିକ ଅସ୍ପଷ୍ଟ ଆକୃତିରେ ରେଖାପରି ଶାଖା ସହିତ ଦେଖାଯାଉଛି । ଅନ୍ତରର ପୀଡ଼ା ଯୋଗୁ ମୁଁ ଆଖି ବନ୍ଦ କରିଦେଲି ।

ଚାରିବର୍ଷ ପୂର୍ବେ—ଏହି ଚାନ୍ଦନୀ କିପରି ସୁନ୍ଦର ଥିଲା ! ନିଜର ସ୍ନିଗ୍ଧ କମନୀୟ ଶୋଭାରେ ସାରା ସଂସାରକୁ ପ୍ଲାବିତ କଲା ପରି ଚାନ୍ଦନୀ ଥିଲା ସିଏ ! ସେଦିନ ରାତିରେ ସେ ରାସ୍ତା, ସେ ଜାଗା, ସେ ନାଳ ମତେ ଝଟକୁଥିବା ରେଶମ୍ ଜରିର ଝାଲର ପରି ଦିଶୁଥିଲା । ଚାନ୍ଦନୀର ସାରା ସ୍ରୋତ ଆଗକୁ ପଡ଼ୁଥିଲା ଓ ଜ୍ୟୋତ୍ସ୍ନା ରୂପା ପରି ଚମକୁଥିଲା । ବୃକ୍ଷଗୁଡ଼ିକ ଶାନ୍ତ ଓ ମୌନ ଦିଶୁଥିଲେ ।

ସେଦିନ ଆଗ ଗାଡ଼ିରୁ ଶଙ୍କରମ୍‌ର ଗୀତ ଶୁଣାଯାଉଥିଲା । ମୋର ଆଖି ବନ୍ଦ ହୋଇ ଆସିଲା । ଚାଲୁଥିବା ବଳଦଙ୍କର ଖୁର୍ ଖୁର୍ ଶବ୍ଦ ଶୁଣିଲି ମାଟି ଟେଲାକୁ ମାଡ଼ି

ଚୁର୍‌ ଚୁର୍‌ କରି ଆଗକୁ ବଢ଼ୁଥିବା ବଳଦଗାଡ଼ି ଚକର ଶବ୍ଦ ଏବଂ ଏସବୁକୁ ବଳି ବଳଦର ବେକରେ ବନ୍ଧା ହୋଇଥିବା ମୋଟା ଘଣ୍ଟୁଡ଼ିର ଝଣ୍‌ ଝଣ୍‌ ଶବ୍ଦ—ଏହି ସମସ୍ତ ଧ୍ୱନି ସେହି ସୁକୋମଳ, ଶୀତଳ, ନୟନ-ମନୋହର ଚନ୍ଦ୍ରକିରଣ ଓ ବାୟୁମଣ୍ଡଳରେ ବିଲୀନ ହୋଇଯାଉଥିଲା । ଏହି ଧ୍ୱନିମାନଙ୍କ ମଧ୍ୟଦେଇ ଶଙ୍କରମ୍‌ର ସ୍ୱର ଶୁଣା-ଯାଉଥିଲା ।

ତାର ମାସକ ପୂର୍ବରୁ କେଜାଣି କାହିଁକି ସେ ମତେ ସବୁକଥା କହିଦେଇଥିଲା । କଣ ସତରେ ସେ ମୋର ପରାମର୍ଶ ଚାହୁଁଥିଲା ? କଲେଜ ଛାଡ଼ିବା ପରେ ସେ ତାର ମନକଥା କହିବା ପାଇଁ ହୋଇପାରେ ମୋ ଛଡ଼ା ଆଉ କୌଣସି ମିତ୍ର ପାଇ ନ ଥିବ ! ଅଥବା ସେ ମନେ ମନେ ସୁଶୀଲାକୁ ବିବାହ କରିବାକୁ ଠିକ୍ କରିନେଇଥିବ ଓ ଏହି କଥାକୁ ଅନ୍ୟମାନଙ୍କର ଅନୁମୋଦନ ପାଇଁ ଔପଚାରିକ ରୂପରେ ଚାହୁଁଥିଲା ? ହୋଇପାରିଥାଏ; କାରଣ ବଳଦଙ୍କ ବେକରେ ଘଣ୍ଟି ଏହି କଥାକୁ ସମର୍ଥନ କଲା ପରି ବାଜୁଥିବାର ଜଣାପଡ଼ୁଥିଲା ।

ସେଦିନ—ଶଙ୍କରମ୍‌ର ଗଳା ଟେଲିଫୋନ୍‌ରେ ମତେ ଶୁଣାଗଲା,—"ମୁଁ ଏଠିକି ଆଜି ଦ୍ୱିପ୍ରହରରେ ଆସିଛି, କାଲି ଇଣ୍ଟରଭିଉ ଅଛି ।" ମୁଁ ତାକୁ ହଷ୍ଟେଲ୍‌ରେ ଭେଟ ହେବାକୁ କହିଲି । "ଆଜି ତ ମୁଁ ଆସିପାରିବି ନାହିଁ । ଯେତେ ହେଲେ ପରୀକ୍ଷା ତ ଅଛି । କାଲି ସନ୍ଧ୍ୟାବେଳେ ଆସିବି, କୋଉଠି ବାହାରକୁ ବୁଲିଯିବା । ଅନୁମତି ନେଇ-ନେଇଥିବୁ ।"

"ହଉ ଭଲ କଥା " କହି ମୁଁ ଫୋନ ରଖିଦେଲି । ପିଲାଦିନେ ସେମିତି ବିଶେଷ ପରିଚୟ ନ ଥିଲା; କିନ୍ତୁ ବନାରସରୁ ଫେରିବା ପରେ ଆମର ପରିଚୟ ବଢ଼ି-ଯାଇଥିଲା । ଗତ ଖରାଛୁଟିରେ ମୁଁ ଆମ ନିଜ ଗାଁକୁ ଯାଇଥିଲି । ବାଟରେ ଶଙ୍କରମ୍ ଘରେ ମତେ ଅପ୍ରତ୍ୟାଶିତ ଭାବେ ଦଶ ପନ୍ଦର ଦିନ ରହିବାକୁ ପଡ଼ିଥିଲା । ସେହି କେତେ ଦିନରେ ଆମ ମଧ୍ୟରେ ଥିବା ବନ୍ଧୁତା ସ୍ନେହର ରୂପ ଧାରଣ କରିଥିଲା ।

"ପରୀକ୍ଷା ହୋଇଗଲା ?" ହସିଦେଇ ମୁଁ ପଚାରିଲି ତା'ପର ଦିନ ସନ୍ଧ୍ୟାକୁ ।

"ହୋଇଗଲା ପରୀକ୍ଷା । ବାହାରକୁ ଯିବା ? ଏହି ଚାରିକାନ୍ଥ ଭିତରେ ମତେ ରୁଦ୍ଧ ହୋଇଗଲା ପରି ମନେ ହଉଛି ।" ସେ କହିଲା ।

ପନ୍ଦର ମିନିଟ୍ ମଧ୍ୟରେ ଆମେ ଯାଇ ସମୁଦ୍ରକୂଳେ ପହଞ୍ଚିଗଲୁ । ବାଲିରେ ସେ ଆସ୍ତେ ଆସ୍ତେ ପାଦ ପକାଉଥାଏ । ଅଳ୍ପ ସମୟ ପରେ ସେ ପକେଟରୁ ରୁମାଲ କାଢ଼ି ସେଥିରେ ଚଷମା ପରିଷ୍କାର କରି ଲଗାଇନେଲା । ତାପରେ ରୁମାଲଟି ବେକରେ କଲର ତଳେ ସଜାଡ଼ି କରି ଲଗାଇଦେଇ ମୋ ଆଡ଼େ ଚାହିଁ କହିଲା, "ବସିବା, ନା ବୁଲି ବୁଲି କଥାବାର୍ତ୍ତା କରିବା ?"

"ଯେମିତି ତମର ଇଚ୍ଛା ।" ମୁଁ କହିଲି । ସେ ସେଇଠି ବସିପଡ଼ିଲା । ପିଲାମାନେ ଉଡ଼ୁଥିବା ବେଲୁନ୍‌ଗୁଡ଼ିକ ଧରିବା ପାଇଁ ଦୌଡ଼ୁଥାନ୍ତି ।

"ମୁଁ ତୁମକୁ କିଛି ବିଶେଷ କଥା ପଚାରିବାକୁ ଚାହୁଁଥିଲି ।" ତା କଥାରେ କିଛି ଗମ୍ଭୀରଭାବ ଥିଲା । କେଜାଣି କାହିଁକି ମତେ ଏହା ସବୁ ଅଦ୍ଭୁତ ଲାଗୁଥିଲା । ଯେତେବେଳେ ମୁଁ ତାର ସ୍ୱର ଫୋନ୍‌ରେ କାଲି ଶୁଣିଲି, ସେତିକିବେଳୁ ମତେ କିପରି ଅଦ୍ଭୁତ ଲାଗିବାକୁ ଲାଗିଲା ।

"କଣ କୁହ ?" ମୁଁ କହିଲି । କିଛି ସମୟ ଯାଏ ସେ ମୌନ ରହିଲା, ତା ପରେ କହିଲା—"ବୋଧହୁଏ ତୁମେ ଜାଣିଥିବ, ମୋର ମା-ବାପା ମତେ ଅତି ଶୀଘ୍ର ଗୋଟିଏ ଗୃହସ୍ଥ କରାଇବାକୁ ଚାହୁଁଛନ୍ତି ।"

ମୁଁ ମୁଣ୍ଡ ହଲାଇ ପୁଣି ତଳକୁ ମୁହଁ ପୋତି ମୋ ଆଙ୍ଗୁଳିରେ ବାଲିରେ ଗାରେଇ ବାକୁ ଲାଗିଲି । ସେ ପୁଣି ଚୁପ୍ ହୋଇଗଲା । ସେ ମତେ କଣ ପଚାରିବାକୁ ଚାହୁଁଥିଲା ? ଏହି ପ୍ରଶ୍ନ ମୋ ମନରେ ଆନ୍ଦୋଳନ ସୃଷ୍ଟି କରୁଥିଲା । ଉତ୍ତର ଶୁଣିବାର ସାହସ ମୁଁ ବାନ୍ଧି ପାରୁନଥିଲି ।

"ସୁଶୀଳା ବିଷୟରେ ତୁମର କଣ ଧାରଣା ?" ସେ ପଚାରିଲା ।

ଗୋଟିଏ କ୍ଷଣ ପାଇଁ ମୁଁ କୂଳରେ ଆସି ଭାଙ୍ଗି ପଡ଼ୁଥିବା ଢେଉଗୁଡ଼ିକରେ ନିଜକୁ ପାଇଲି । ତା ପରେ ଫେନିଳ ଉଚ୍ଛ୍ୱାସ ସହ ଫେରେଇ ହୋଇଯାଉଥିବା ପାଣି ପରି ମୋର ବିଗୃଢ଼ଧାରା ମଧ୍ୟ ଫେରେଇ ହୋଇଗଲା ।

"ଆଜିଠାରୁ ଠିକ୍ ସପ୍ତାହେ ଆଗରୁ ତୁମର ମାମୁ ହିଁ ମୋ ଆଗରେ ଏହି ପ୍ରସ୍ତାବ କରିଥିଲେ । ଲୋକେ କହିବାର ଶୁଣିଛି ଯେ ସୁଶୀଳା ଶାନ୍ତ-ଶିଷ୍ଟ ଅଟେ । ମୁଁ ଏହି କଥା ଭାବୁଛି ଯେ ମୋ ପରି କଠୋର ବ୍ୟକ୍ତି ସାଙ୍ଗରେ ସେ କିପରି ଚଳି-ପାରିବ ।" କହିଲା ବେଳେ ସେ ଈଷତ୍ ହସିଦେଲା । ନାଚାର ହୋଇ ମୁଁ ହସି ପକାଇଲି । ମୁଁ କହିଲି—"କିଛି କଥା ନାହିଁ, ଯୋଡ଼ି ଠିକ୍ ପଡ଼ିବ ।"

ଅନ୍ଧାର ହୋଇଯିବା ପର୍ଯ୍ୟନ୍ତ ଆମେ ସେଇଠି ବସିରହିଲୁ । ସେ କେତେ ଗୁଡ଼ାଏ କଥା କହିଲା, ତାର ମନ କିପରି କେତେ ଆଡ଼େ ଘୂରୁଛି, ସବୁ କହିଲା । ସେସବୁର ଉତ୍ତର ମୁଁ "ଆଜ୍ଞା" "ହୁଁ" କହି ସଂକ୍ଷେପରେ ଦେଇଥିଲି । ଏହା ସେ ଦିନର କଥା ।

ସେତେବେଳେ ସୁଶୀଳା ଓ ଶଙ୍କରମଙ୍କର ବିବାହ ପାଇଁ ଆମେ ସବୁ ବରଯାତ୍ରୀ ହୋଇ ଯାଇଥିଲୁ । ମୁଁ ମଧ୍ୟ ଗଲି । ଶଙ୍କରମ୍ ଗୃହସ୍ଥ ହୋଇଗଲା ।

—ଚାରି ବର୍ଷ ସ୍ୱପ୍ନ ପରି ବିତିଗଲା । ଏହା ମଧ୍ୟରେ କେତେକ ଘଟଣା ଘଟିଗଲା । ପରେ ଦିନେ ସୁମିତ୍ରାର ସ୍ୱର ଟେଲିଫୋନରେ ଶୁଣାଗଲା—"ସନ୍ଧ୍ୟା ବେଳକୁ ଆମ ଘରକୁ ଆସିପାରିବୁ ? ସିନେମା ଦେଖିବାକୁ ଯିବା ।" ଏହା ତାର ପ୍ରସ୍ତାବ ଥିଲା । ମୁଁ "ଠିକ୍ ଅଛି" କହିଲି ।

ସିନେମା ହଲ୍‌ରେ ବସିବାର ଦଶ ମିନଟ୍ ପରେ ସେ ମୋ ଆଡ଼କୁ ମୁହଁ କରି କହିଲା, "ତତେ ଗୋଟିଏ ବିଶେଷ କଥା ପଚାରିବାର ଥିଲା । ସେଇଥିପାଇଁ ମୁଁ ଏହି

କଥା ପ୍ରସ୍ତାବ କରିଥିଲି ।"

"ଆଚ୍ଛା, ସିନେମାରେ ?"

"ହଁ, ଏହି ଅନ୍ଧାରରେ ମୁଁ ସହଜରେ କଥାବାର୍ତ୍ତା ହୋଇପାରିବି," ସେ କହିଲା ।

ସମାଚାର ଦର୍ଶନର କାର୍ଯ୍ୟକ୍ରମ ଆରମ୍ଭ ହୋଇଗଲା । ସେ ମୋ ହାତକୁ ତା ଆଙ୍ଗୁଳିଦ୍ୱାରା ଚିପି ଧରି କହିଲା, "ସୁଶୀଲାର ଭାଇ ଓ ଭାଉଜ ଆମ ଘରକୁ ଆସିଥିଲେ । ସୁଶୀଲାର ମୃତ୍ୟୁ ପରେ ପୁଅ ତାଙ୍କର ପାଖରେ ରହୁଛି ।" ତାର ଉଠାଇଥିବା ଏହି ଆକସ୍ମିକ ପ୍ରସଙ୍ଗ ମୋର ଆଶ୍ଚର୍ଯ୍ୟ ମନେହେଲା; କିନ୍ତୁ ସେ ଯେଉଁ କଥା କହିବାକୁ ଯାଉଥିଲା, ସେ ମଧ୍ୟ ଅନ୍ଧାରରେ ଜୁଳୁଜୁଳିଆ ପୋକ ପରି ଝଲମଲ କରୁଥିଲା । କେତେକ ସମୟ ପର୍ଯ୍ୟନ୍ତ କିଛି କଥାବାର୍ତ୍ତା ହେଲା ନାହିଁ । ପରଦା ଉପରେ ଦେଖାଯାଉଥିବା ଦୃଶ୍ୟଗୁଡ଼ିକ ମୋ ପାଇଁ ଦୁର୍ବୋଧ୍ୟ ମନେ ହଉଥିଲା । ଶଙ୍କରମ୍ କିଏ ଏବଂ ମୁଁ କିଏ ? ଏହି ପ୍ରସଙ୍ଗରେ ମୁଁ କେମିତି ପହଞ୍ଚି-ଗଲି ?

"ତାର ଭାଉଜ ମତେ ପଚାରୁଥିଲେ······ତା ବିଷୟରେ ମୁଁ କହିଲି, ସୁଶୀଲାର ମୃତ୍ୟୁ ହବାର ବର୍ତ୍ତମାନ ବର୍ଷେ ବି ପୂରିନାହିଁ, ଏତେ ତରତର କାହିଁକି ?" କହୁ କହୁ ସୁମିତ୍ରା ଅଟକିଗଲା, ମୁଣ୍ଡ ପୋତି ହାତରେ ଆଖି ବନ୍ଦ କରିନେଲା ।

"କିନ୍ତୁ······ଭାବିବାକୁ ଗଲେ ତ ଏହି ଏକାକିଆ ଜୀବନ ତାକୁ ବର୍ତ୍ତମାନ ବେଶି ବାଧୁଥିବ । ପ୍ରକୃତରେ······ସେ ବିପଦରେ ପଡ଼ିଛି । ତା ବିଷୟରେ ତୋର ମତ କଣ ?" ସେ କହିଲା ।

ମୁଁ ସାଙ୍ଗେ ସାଙ୍ଗେ କିଛି ଉତ୍ତର ଦେଲି ନାହିଁ, ତା ପରେ କହିଲି— "ତାକୁ ତ ତୁ ମଧ୍ୟ ଜାଣିଛୁ ନା ? ମୁଁ କଣ କହିପାରିବି ।"

"ନାଇଁ, ନାଇଁ, ମୁଁ ତ ତାର ଚେହେରା ଚିହ୍ନିଛି । ତୋର ସିଏ ବନ୍ଧୁ ବାନ୍ଧବ ହବ ଓ ବନ୍ଧୁତା ମଧ୍ୟ ଅଛି । ମୋ ମନ ତୁ ହିଁ ବୁଝିପାରିବୁ ।" ତାର ଗଳା ଥରୁଥିଲା ।

"ସେ ଭଲ ଲୋକ ସୁମିତ୍ରା, ତା ପାଖରେ ପ୍ରେମ କରିବାର କ୍ଷମତା ଅଛି" ମୁଁ କହିଲି । ମୋର ତାହା ହିଁ କହିବାର ଥିଲା ଏବଂ ସେଥିପାଇଁ କହିଦେଲି ।

—ଅନ୍ତତଃ ବର୍ତ୍ତମାନ—ଶଙ୍କରମ୍ ଓ ସୁମିତ୍ରାଙ୍କର ବାହାଘର ପାଇଁ ଆମେ ପୁଣି ଆଉ ଥରେ ବରଯାତ୍ରୀ ହୋଇ ସହଯୋଗ ଦଉଛୁ । ଜ୍ୟୋତ୍ସ୍ନାଧାରା ଝରିଆଡ଼େ ବିଞ୍ଚୁଥିବା ସ୍ନିଗ୍ଧ ରଜନୀ ନୁହେଁ ଏହା । ସମସ୍ତ ଶୋଭା ଦେଖାଇ ପ୍ରଭାତର ସୃଷ୍ଟି ଅନ୍ଧକାରରେ ଦୁଃଖଭରା ଦୀର୍ଘନିଶ୍ୱାସ ଛାଡ଼ୁଥିବା ନିଷ୍ପ୍ରଭ ଚନ୍ଦ୍ରମା ଏହା ।

······ମୁଁ ଆଖି ବନ୍ଦ କରିନେଲି । ମୋ ପଛରୁ ଅଳ୍ପ ଅଳ୍ପ ଶୁଣାଯାଉଛି ପାହାଡ଼ ଏବଂ ଗଛଗୁଡ଼ିକ ମଧ୍ୟଦେଇ ପ୍ରଖର ଗତିରେ ବହୁଥିବା ଝରଣାର ଶବ୍ଦ ।

ସେହି ଝରଣା ମୋ ପଛପଟୁ ଆସି ମୋର କର ଦେଇ ମଡେ ସ୍ପର୍ଶ କରି ଓ ମୋ ଉପରକୁ ଜଳଛିଟିକା ମାରି ଚୁପ୍‌ଚାପ୍ ଭାବେ ବହିଯାଉଛି । ମୋ କରରେ, ମୋର ପାଖ ଦେଇ ଗୋଟିଏ ସ୍ରୋତିଆ ନାଳ ନଜରେ ପଡ଼ୁ ଧାରରେ ମନ୍ଦ ମନ୍ଦ ଗତିରେ ବହି, ଆଗକୁ ବହିଯାଇ—ଦୃଷ୍ଟିର ସୀମା ବାହାରକୁ ଯାଇ ସେହି ଝରଣାରେ ମିଶିଯାଉଛି ।

ଆଉ ମୁଁ—ମୁଁ ଏଇଠି ଧୂଷର ସ୍ପନ୍ଦନରେ ଏକାକୀ ରହିଯାଇଛି ।

# ଫଟା ଚଦର

ଗାଆଁଟି ଅନ୍ଧକାରର ଯେଉଁ କଳଙ୍କି ଚାଦର ଘୋଡ଼ାଇ ହୋଇ ପଡ଼ିଥିଲା, ତା'ର ଛିଦ୍ର ଭିତର ଦେଇ ମିଟିମିଟି ହୋଇ ଜଳୁଥିବା ଦୀପଗୁଡ଼ିକ ଦେଖାଯାଉଛି । ରାତି ନଅଟା ମଧ୍ୟ ବାଜି ନ ଥିବ । ଗାଆଁଟା ଯାକ ଶୁନ୍‌ଶାନ୍ ହୋଇଯାଇଛି । ଦୁଇପାଞ୍ଚଟି ଲୋକ ଚନ୍ଦ୍ରଭରା ଉପରେ ବସି ପିକା ଟାଣୁ ଟାଣୁ ଗପସପ କରୁଛନ୍ତି । ପିକାର ନିଆଁ ଉଡ଼ିବାରେ ଅସମର୍ଥ ପତଙ୍ଗ ପରି ମିଟିମିଟି ହେଉଛି ।

କୁଡ଼ିଆର ଅଗଣାରେ ଚଉତରା ଉପରେ ବସି ବୈରାଗୀ ରାମସ୍ୱାମୀ ଏକତାରା ବଜାଇ ଭକ୍ତ ରାମଦାସଙ୍କର ଗୀତ ଗାଉଅଛି । ବୈରାଗୀର ସ୍ୱର କର୍କଶ; କିନ୍ତୁ ଏହା ରାମଦାସଙ୍କର ଗୀତ ଥିଲା, ସେଥିପାଇଁ ପଡ଼ୋଶୀମାନଙ୍କର କିଛି ଆପତ୍ତି କରିବାର ନ ଥିଲା । ଗାଁବାଲା ରାତିରେ କୁକୁରର 'ଭାଉ' 'ଭାଉ' ସହ ଏ ଗୀତ ଶୁଣିବାରେ ଅଭ୍ୟସ୍ତ ହୋଇଯାଇଥିଲେ । ଭଣଜା ସତ୍ୟମ୍ ଖାଇସାରି ହାକୁଟି ମାରୁ ମାରୁ ବାହାରକୁ ଆସିଲା ।

"କଣ ମାମୁ, ପିଣ୍ଡା ଉପରେ ଚଟେଇ ବିଛେଇ ଦେଇ ଲାଲ୍‌ଟେଣ ରଖିଦେବି ?" କହି ସେ ବୈରାଗୀ ଗୀତରେ ବାଧା ପକାଇଲା । ବୈରାଗୀ ଏକତାରା ତଳେ ରଖି ଦେଇ ଚାଡ଼ିକରି କହିଲା—

"ରଖି ତ ଦେବୁ, ସବୁଦିନ କଣ ପଚାରୁଛୁ ?"

"କଥା କଣ କି ମାମୁ, କଲେକ୍ଟରଙ୍କ ଚପ୍ରାସି କହୁଥିଲା, ଦୁଇଦିନ ହେବ ପୁଲିସର ପହରା ବହୁତ ବଢ଼ି ଯାଇଛି । ସେଇଥିପାଇଁ ପଚାରୁଥିଲି ମାମୁ !"

"ସେ ବି ହତଭାଗା ତଳେ ଭଲ ମିଳିଛି । ସିଏ ବି ନିଜକୁ କଲେକ୍ଟର ଭାବୁଛି । ଆରେ ସତ୍ୟମ୍, ପୁଲିସକଥା ମୋ ଆଗରେ କଣ କହୁଛୁ ! କଣ ମତେ ଜାଣୁନାହିଁ ? ଛଅଥର ଜେଲ୍‌ର ହାଓ୍ୱା ଖାଇ ଆସିଛି ମୁଁ '। ଏମାନେ ସେହିପରି କଥା ରାଷ୍ଟ୍ରକରି ଲୋକଙ୍କୁ ଡରାଉଛନ୍ତି, ଆଉ କିଛି ନୁହେଁ ।"

ମାମୁଙ୍କର ସବୁ କଥା ସତ୍ୟମ୍ ଜାଣିଛି । ସୁଯୋଗ ଆଉ ବା ନଥାଉ ବୈରାଗୀ ନିଜ ଜୀବନର କଥା ଗୁଡ଼ିକ ବଡ଼ ଗର୍ବର ସହିତ ଶୁଣାଏ । ବୈରାଗୀ ଲେଖି ଜାଣେ ନାହିଁ, ନ ହେଲେ ସେ ତାର ଆତ୍ମକାହାଣୀ ନିଶ୍ଚୟ ଲେଖିପକାନ୍ତା ।

ଅହଂ-ବିଶ୍ୱାସ ଆଉ ଗର୍ବ ଏ ଦୁଇଟି ରାମୁର ଜନ୍ମସିଦ୍ଧ ଗୁଣ । ପିଲାଦିନେ ଖୁବ୍ କସରତ୍ କରିଥିବାରୁ ତାର ଶରୀର ଯୌବନର ପ୍ରାରମ୍ଭରେ ହିଁ ଅଧିକ ହୃଷ୍ଟପୁଷ୍ଟ ହୋଇ ଯାଇଥିଲା ଏବଂ ବଳିଲା ପରି ମାଂସପେଶୀଗୁଡ଼ିକ ସହ ସେ ଘୋଡ଼ା ପରି ଦିଶେ । ସର୍ବଦା ଶାରୀରିକ ବିକାଶ ଉପରେ ଧ୍ୟାନ ଦେଇଥିବାରୁ ସେ କେବେ ହେଲେ ପରିଶ୍ରମ

କରି ଜୀବନ ବିତାଇବାର ନାଁ ବି ଧରୁନାହିଁ । ଯେଉଁ ଝିଅକୁ ସେ ବିବାହ କରିବାକୁ ଚାହୁଁଥିଲା, ବାପ ସହିତ କଜିଆ-ଗୋଳ କରି ଶେଷରେ ତାକୁଇ ବାହା ହେଲା ଏବଂ ଶ୍ୱଶୁରଘରକୁ ତାର ସ୍ଥାୟୀ ନିବାସ କରିନେଲା । ଶାଶୁ-ଶ୍ୱଶୁରଙ୍କର ପ୍ରେରଣାରେ ବାଧ୍ୟ ହୋଇ ତାକୁ ତାସ ଖେଳ ବା କାହାରି ପକେଟମାରୁ କରି ଦୁଇଚାରି ପଇସା ଅର୍ଜନ କରି ଘରକୁ ଦବାକୁ ପଡୁଥିଲା । ଥରେ ସେ ଧରାପଡ଼ିଗଲା ଓ ଛଅ ମାସ ପର୍ଯ୍ୟନ୍ତ ଜେଲରେ ରହିଲା । ସେ ଜେଲରୁ ମୁକୁଳିଲା ବେଳକୁ ତାର ସ୍ତ୍ରୀ ଗୋଟିଏ ଝିଅ ଜନ୍ମ-କରି ଏ ସଂସାରରୁ ଚାଲିଯାଇଛି । ଝିଅର ପାଳନ-ପୋଷଣ ପାଇଁ ଆବଶ୍ୟକ ପଇସା ଚୋରିକରି ଅର୍ଜନ କରିବାକୁ ଲାଗିଲା । ଏହିପରି ଗାଁରୁ ଗାଁ ଯାଇ ଜେଲ ଖଟି ସେ ପନ୍ଦର ବର୍ଷ ଯାଏ ଘରୁ ବାହାରେ ରହିଲା । ପନ୍ଦର ବର୍ଷ ପରେ ସେ ଯେତେବେଳେ ଘରେ ପହଞ୍ଚିଲା ସେତେବେଳକୁ ତାର ଶାଶୁ-ଶ୍ୱଶୁର ମଧ୍ୟ ଏ ଦୁନିଆରୁ ବିଦାହୋଇ ସାରି-ଥିଲେ । ବର୍ତ୍ତମାନ ଝିଅର ପରିପୋଷଣର ସମସ୍ତ ଦାୟିତ୍ୱ ତା ଉପରେ ପଡ଼ିଲା । ଝିଅ ଜ୍ଞାନପ୍ରାପ୍ତ ହୋଇଯାଇଥିଲା, ତାକୁ ଘରେ ଏକୁଟିଆ ଛାଡ଼ି ବାହାରକୁ ଯିବା ସମ୍ଭବ ହୋଇ ପାରୁ ନ ଥିଲା । ସେଥିପାଇଁ ସେ ଗାଁରେ ଗୋଟିଏ କୁଡ଼ିଆ କରି ସେଇଠି ରହିଲା । ବୟସ ମଧ୍ୟ ବଢ଼ିଯାଇଥିଲା ଓ ଦେହର ବଳ ମଧ୍ୟ କମିଯାଇଥିଲା । ବିଗତ ଜୀବନ ପ୍ରତି ବିରକ୍ତି ଆସିବାରୁ ଏକଦମ୍ ନୂଆ ଜୀବନ ଆରମ୍ଭ କରିବାକୁ ବିଚାରି ସେ ଗେରୁଆ ବସ୍ତ୍ର ପିନ୍ଧି ସନ୍ନ୍ୟାସୀ ହୋଇଗଲା । ଏକତାରା ବର୍ତ୍ତମାନ ତାର ସାହାରା ହେଲା । ରାମୁ ରାମସ୍ୱାମୀ ତ ହୋଇଗଲା; କିନ୍ତୁ ଘର ଚଳିବ କିପରି ? ଘରେ ଯେଉଁ ଭଣଜା ଅଛି, ସେ ଏକବାରେ ଅଳସୁଆ; ପଇସାଟିଏ କମେଇବାଯୋଗ୍ୟ ନୁହେଁ । ସେଇଥିପାଇଁ ସେ ଘରେ ଅଗଣାରେ ତାସଖେଳାଳିମାନଙ୍କୁ ଏକତ୍ରିତ କରି ତାଙ୍କ ପାଇଁ ଚଟେଇ ଓ ଦୀପର ବନ୍ଦୋବସ୍ତ କରେ ଏବଂ ସେମାନଙ୍କଠାରୁ ଭଡ଼ା ନିଏ । ଚଟେଇ ବିଛେଇବା, ଆଲୁଅ ଲଗାଇବା ଓ ବାହାରେ ଛିଡ଼ା ହୋଇ ପୁଲିସବାଲା ଦେଖିଲାମାତ୍ରେ ଭିତରେ ଆସି ଖବର ଦବା—ଭଣଜାର ଏହା କାମ । ଖବର ପାଇବାମାତ୍ରେ ବୈରାଗୀ ଦୀପ ଲିଭାଇ ଦିଏ ଏବଂ ଅନ୍ୟମାନେ ନିଜ ନିଜ ବାଟରେ ଚାଲିଯାଆନ୍ତି ।

ଭଣଜା ଏକଦମ୍ ମାମୁ ଛାଞ୍ଚରେ ଗଢ଼ା । କୁନ୍ଦଦେଲା ପରି ବଳିଷ୍ଠ ଦେହ ଓ କୁଞ୍ଚ-କୁଞ୍ଚିଆ ବାଳରେ ସେ ବହୁତ ସୁନ୍ଦର ଦେଖାଯାଏ । ମାମୁଠାରୁ ସେ ଅଧିକ ଚତୁର ଓ କିଛି ପଢ଼ି-ଲେଖି ଜାଣିଛି ମଧ୍ୟ; କିନ୍ତୁ ଅଣ୍ଟାଭିଡ଼ି ସେ କାମ କରେ ନାହିଁ । ସେଥିପାଇଁ ବୈରାଗୀ ତା ନିଜ ଭଣଜା ଉପରେ ଅସନ୍ତୁଷ୍ଟ ।

ବୈରାଗୀର ଝିଅ ଗୌରକ୍ଷ୍ମା ଭିତରୁ ଚିଲମ ଓ ଡିଆସିଲି ନେଇ ଆସିଲା । ବୈରାଗୀ ଚିଲମଭରି ନିଆଁ ଲଗାଇ ଲଗାଇ କହିଲା, "ଝିଅ ! ଆଜି ତୋ ମାମୁ ପାଖରୁ ଚିଠି ଆସିଛି । ଲେଖିଛି ତାର ପୁଅ ମୁନସିଫ୍ କୋର୍ଟରେ ଚପ୍ରାସି ଚାକିରି ପାଇଛି ।"

ଗୌରକ୍ଷ୍ମା ସତ୍ୟମ୍ ଆଡ଼େ ଚାହିଁ ହସିଦେଲା । ଗୌରକ୍ଷ୍ମାର ମୂରୁକିହସରେ ସତ୍ୟମ୍‌ର ଶରୀର ପୁଲକିତ ହୋଇଉଠିଲା । ଗୌରକ୍ଷ୍ମାର ସୌନ୍ଦର୍ଯ୍ୟ ଅନ୍ଧକାର ମଧ୍ୟରେ ଦୀପାଳି

ପର ଯେକୌଣସି ମନରେ ଲାଳସା ସୃଷ୍ଟି କରିପାରେ । ଗୌରମ୍ମାର ଦ୍ୱିତୀୟ ଉଦ୍ଦେଶ୍ୟ ସତ୍ୟମ୍‌କୁ ଭଲଭାବରେ ଜଣା । ଏହା ଆଗରୁ ଗୌରମ୍ମା ସେହି ଚିଠିଟି ଲୁଗାଇ ଗ୍ରେଗରି ସତ୍ୟମ୍‌ଠାରୁ ପଢ଼ାଇ ନେଇଥିଲା । ମାମୁ ଚାହାଁନ୍ତି ଯେ ଗୌରମ୍ମାର ବିବାହ ତାଙ୍କର ପୁଅ ସାଙ୍ଗରେ ହେଉ । ବୈରାଗୀର ମଧ୍ୟ ସେହି ଇଚ୍ଛା ।

"କିନ୍ତୁ ବ୍ୟସ୍ତ ହେବା ଭଳି ଗୋଟାଏ କଥା ଅଛି । ଯଦି ତା ସହିତ ତୋର ବାହାଘର ହୋଇଯାଏ ତେବେ ମୁଁ ଏକଲା ରହିଯିବି; ନହେଲେ ମତେ ମଧ୍ୟ ତୋ ସାଙ୍ଗରେ ସେଠିକି ଯିବାକୁ ପଡ଼ିବ ।" ବୈରାଗୀର ମନରେ ଏହି ଚିନ୍ତା । କଥାଟା ସତ । ବୈରାଗୀ ତା ଝିଅକୁ ଛାଡ଼ି କ୍ଷଣେ ମଧ୍ୟ ରହିପାରେ ନାହିଁ । ତା ଉପରେ ତାର ଭାରି ଶ୍ରଦ୍ଧା ।

"ଠିକ୍ ଅଛି, ସେଇଆ କରିବା । ଏତେ ଭଲ ଘର ଆଉ ମିଳିବ ନାହିଁ । ଏଠୁ ସମ୍ପର୍କ ତୁଟାଇ ସେଇଠି ଯାଇ ରହିବା ।" ବୈରାଗୀ ଏହା ନିଶ୍ଚିତ କରିନେଇଥିବା ପରି ଦୃଢ଼ସ୍ୱରରେ କହିଲା ।

"ଛାଡ଼ ମ ବାପା ! କଣ ଏତେ ତରତର ପଡ଼ୁଛ ?" ଗୌରମ୍ମା କହିଲା ।

"ଶୀଘ୍ର କାହିଁକି ନୁହେଁ ଝିଅ ?"

"ତା ଛଡ଼ା ମୁଁ ତା ସହିତ ବିବାହ କରିବି ନାହିଁ, ବାପା । ଏକଦମ୍ କଂସେଇର ହୃଦୟ ତାର । ନା ହୃଦୟ ଅଛି, ନା ଦୟା ଅଛି ।"

"ତୁ ଠିକ୍ କଥା କହୁଛୁ, ଝିଅ ! ସେଥିପାଇଁ ସେ ଶହେ ଟଙ୍କା ମାସକୁ ଅର୍ଜନ କରୁଛି । ଦରମା ଛଡ଼ା ଉପୁରି ମଧ୍ୟ ଅଛି । ହୃଦୟବାନ୍ ବ୍ୟକ୍ତି ଗୋଟିଏ ପଇସା ବି ଅର୍ଜନ କରିପାରେ ନାହିଁ ପାଗଳି ! ହୃଦୟ ଥିବା ଦର୍କାର ମୋ ପରି ବୈରାଗୀର, ଅର୍ଜନ କରିବାବାଲାର ନୁହେଁ । ଯାହା ହେଉ ନା କାହିଁକି, ଏ ସୁଯୋଗ ଛାଡ଼ିବାର ନୁହେଁ । ମୁଁ ମଧ୍ୟ ପ୍ରତିଶ୍ରୁତି ଦେଇସାରିଛି ।"

ଝିଅ ବଡ଼ ହୋଇଗଲାଣି, ତେବେ ବି ବୈରାଗୀ ଆଖିରେ ସେ ବର୍ତ୍ତମାନ ଗ୍ଲେଟ ପିଲା । ସେ ଭାବୁଛି ତା କଥାରେ ଧ୍ୟାନ ଦବାର କିଛି ଆବଶ୍ୟକତା ନାହିଁ । କୌଣସି ଭଲ ପରିବାରକୁ ଗଲେ ତାର ଜୀବନ ଆରାମରେ କଟିବ ଓ ତା ପାଇଁ ମଧ୍ୟ ପଇସା କମେଇବାର ଚିନ୍ତା ରହିବ ନାହିଁ । ଭଗବାନଙ୍କ ନାମରେ ସେ ନିଶ୍ଚିନ୍ତରେ ସମୟ କଟାଇପାରିବ । ଗୌରମ୍ମା ତା ବାପାଙ୍କର ଭାବନା ବୁଝିପାରିଲା । ସେ କିଛି କହିଲା ନାହିଁ ।

ସତ୍ୟମ୍ ବୈରାଗୀକୁ ପିଣ୍ଡା ଉପରକୁ ଡାକିଲା । ବାହାର ପିଣ୍ଡାରେ ଦଶ ଜଣ ଲୋକ ବସିଛନ୍ତି । ଜଣେ ଲୋକ ତାସଗୁଡ଼ିକ ସଜାଡ଼ୁଛି । ବୈରାଗୀ ଗୋଟିଏ କଣରେ ଛିଡ଼ା ହୋଇଗଲା ।

"କଣ ବୈରାଗୀ, ଦୀପ କାହିଁକି ମିଞ୍ଜି ମିଞ୍ଜି ହଉଛି ? ତେଲ ନାହିଁ ?"

"ତେଲ କାହିଁକି ନାହିଁ ? ଏହିକ୍ଷଣି ତ ଗୁରୁଅଣାର ତେଲ କିଣି ସେଥିରେ

ଦେଇଛି । ପବନ ଯୋଗୁ ସେମିତ ହଉଛି, ବର୍ଷା ମଧ୍ୟ ହୋଇପାରେ । ଶୀଘ୍ର ଶୀଘ୍ର ଖେଳ ସାରିଦିଅନ୍ତୁ ।" ବୈରାଗୀ କହିଲା ।

"ବର୍ଷା ହେଲେ କଣ ହବ ? ଆମ ଖେଳରେ କିଛି ଗଣ୍ଡଗୋଳ ହବ ନାହିଁ । ପୁଲିସବାଲାଙ୍କ ହଇରାଣରୁ ବଞ୍ଚିଯିବୁ ।"

"ହଉ ଭଲ କଥା । ଭଗବାନ୍ ରାମଚନ୍ଦ୍ରଙ୍କର ନାମ ନେଇ ଖେଳ ଆରମ୍ଭ କରିଦବ ତ ନିଶ୍ଚୟ ଜିତବ । କିନ୍ତୁ ଯେମିତ ଗୋଟିଏ ବାଜି ସରିଯିବ, ଜିତବାବାଲାଙ୍କୁ ମତେ ଟଙ୍କାକରେ ଅଣାଏ କରି ହିସାବରେ ସାଙ୍ଗେ ସାଙ୍ଗେ ଭଡ଼ା ଦବାକୁ ପଡ଼ିବ । କାଲି ମୁଁ ଏଇଆ ଭାବି ଶୋଇପଡ଼ିଲି ଯେ ସମସ୍ତେ ନିଜେ ନିଜେ ପଇସା ଦେଇଦେବେ; କିନ୍ତୁ ଗୋଟାଏ ଟଙ୍କା କ୍ଷତି ହୋଇଗଲା ।" ବୈରାଗୀ କହିଲା ।

"ବିଚରାର୍ କ୍ଷତି ହୋଇଗଲା ? ବୈରାଗୀ, ଅରକ ପାଇଁ ହଉ ପଛକେ ଆମେ ତୁମ ମୁହଁରୁ ସତକଥା ଶୁଣିବାକୁ ଚାହୁଁଛୁ । ଯେତେବେଳେ ଖେଳ ଜୋରସୋରରେ ଲାଗିଥାଏ ସେତେବେଳେ ତୁମେ 'ପୁଲିସ, ପୁଲିସ' କହି ଆଲୁଅ ଲିଭାଇଦିଅ । ଏଇ ଗୋଳମାଳ ଓ ବ୍ୟସ୍ତତା ମଧ୍ୟରେ ଆମ ପଇସା କି ହରଣଚାଳ କରିନିଅ । କେତେ ଥର ଏପରି କରିଛ ତୁମେ ?"

"ରାମ ରାମ ! ଏପରି ଭ୍ରେଷ୍ଟଲୋକା ମୁଁ କେବେ ହେଲେ କରେ ନାହିଁ । କିଏ ଜାଣେ, ଅନ୍ଧାରରେ କିଏ କାହା ପଇସା ମାରିନିଏ ? ମୁଁ ବୈରାଗୀ ଲୋକ, ମୁଁ ପଇସା ନେଇ କଣ କରିବି ?"

"ଠିକ୍ ଅଛି ବାବା, ଠିକ୍ କଥା କହୁଛ । ସେଥିପାଇଁ ଆମେ ହାତ ଯୋଡ଼ିକରି କହୁଛୁ କି ତୁମେ ଏଠି ରୁହ ନାହିଁ; ବରଂ ତ ତୁମ ଭଣଜାକୁ ପଠାଇଦିଅ । ତୁମେ ଯାଇ ସିତାର୍ ବଜାଅ ।"

"ଠିକ୍ ଅଛି । ମଣିଷ ଭଲ ହେଲେ ତ କାହାରି ଦର୍କାର ନାହିଁ । ଭଡ଼ା ପଇସା ଅଲଗା ରଖିଦିଅ, ବାସ୍ ।"

"ତୁମର ଭଡ଼ା ପଇସା ଯାହା ନ୍ୟାୟଭାବରେ ହଉଛି ନେଇନିଅ, ଆମର୍ ଆପତ୍ତି ନାହିଁ; କିନ୍ତୁ ମଝିରେ ପୁଲିସ୍‌ର ଡର ଦେଖାଇ, ଆଲୁଅ ଲିଭାଇ ପଇସା ମାରିବ ତ କିଛି ଭଲ ହବ ନାହିଁ । ମାଡ଼ ଖାଇଯିବ, ମୁଁ ଆଗରୁ କହିଦଉଛି ।" କୌଣସି ଖେଳାଳି ଚେତାଇଦେଲା ।

ଖେଳ ଆରମ୍ଭ ହୋଇଗଲା । ଆରମ୍ଭରୁ ହିଁ ଖେଳଟା ଜମିଆସିଲା । ଖେଳ ଦେଖିବାକୁ ବୈରାଗୀ ସେଇଠି ବସିରହିଲା ।

ବାହାରେ ରାସ୍ତା ଉପରେ ସତ୍ୟମ୍ ଓ ଗୌରମ୍ମା କଥାବାର୍ତ୍ତା କରୁଥିଲେ ।

"ଆରେ ପାଗଳୀ, ତୁ କାହିଁକି ଏତେ ମନ ଖରାପ କରୁଛୁ ? ଦୁଇ ତିନି ଦିନରେ ତୋ ବାପାର ରାଗ ଥଣ୍ଡା ପଡ଼ିଯିବ । ଫେରେ ଏଇଠିକି ଆସିଯିବୁ । ମାରୱାଡ଼ି ମୋ କଥା ଶୁଣେ । ଯେବେ ଚାହିଁବ ସେବେ ଚାକିରି ଦିଆଇଦବ । ଅସୁସରେ ରହିପାରିବା ।"

ସତ୍ୟମ୍ କହୁଥାଏ ।

ବୈରାଗୀ ଦେଖିଲା, ବାହାରେ ତା ଝିଅ ସହିତ ଭଣଜା କଥାବାର୍ତ୍ତା କରୁଛି । ସାଙ୍ଗେ ସାଙ୍ଗେ ଯାଇ ସେ ତାର ଭଣଜାକୁ ପିଣ୍ଡା ଉପରକୁ ପଠାଇଦେଲା । ଝିଅକୁ କହିଲା, "ଭିତରକୁ ଯାଇ ଶୋଇପଡ଼ ।" ନିଜେ ବାସ ଚଉତରା ଉପରେ ଚିଲମ ଟାଣିଲା ।

ବୈରାଗୀ ତା ଝିଅ ବାହାଘର ବିଷୟରେ ହିଁ ଚିନ୍ତା କରୁଥିଲା । ଏହି ବାହାଘର ପାଇଁ ସେ ପାଞ୍ଚଶହ ଟଙ୍କା ଜମାଇ ରଖିଛି । ସୁନାଗହଣା ପାଇଁ ଅଲଗା ଦୁଇଶହ ରଖିଛି । ସେ ଚାହୁଁଥିଲା ତା ଝିଅ ବାହାଘର ଖୁବ୍ ଆଡ଼ମ୍ବରରେ ହେଉ । ଅନେକ ସମୟରେ ଲୋକମାନେ କହିବାର ଶୁଣିଛି ଯେ ଏହି କାଙ୍ଗାଲୀ ବୈରାଗୀ ତା ଝିଅର ବାହାଘର କଣ କରିବ । ବାହାଘରର ଆଡ଼ମ୍ବର ଦେଖି ଲୋକମାନେ କାବା ହୋଇଯିବେ ଓ କହିବେ "ବୈରାଗୀ ବି କେଡ଼େ ଅଦ୍ଭୁତ ଲୋକ ।" ସେ କାହାରିକୁ କୌଣସି କଥାରେ ଆଙ୍ଗୁଳି ଉଠାଇ ଦାଣ୍ଡିବାର ସୁଯୋଗ ଦେବ ନାହିଁ ।

ବୈରାଗୀ ଚିଲମ ପାଖରେ ରଖି ଗଡ଼ିପଡ଼ିଲା । ଘୁଇନିଦରେ ସ୍ୱପ୍ନ ମଧ୍ୟ ଦେଖିଲା । ସ୍ୱପ୍ନରେ ସେ ଦେଖିଲା ତାର ଜ୍ୱାଇଁ ତାକୁ ବହୁତ ଆଦର କରୁଛି ଓ ନିଜ ପାଖକୁ ଡାକି ନେଉଛି ।

ଜଣାନାହିଁ କେତେ ରାତି ହୋଇଯାଇଥିଲା । ପିଣ୍ଡା ଉପରୁ ସମସ୍ତେ ପାଟିଗୋଳ କରି ଉଠିଗଲେ । ବୈରାଗୀ ଚମକି କରି ଉଠି ବସିପଡ଼ିଲା । ପିଣ୍ଡା ଉପରେ ଦୀପ ନାହିଁ । ଲୋକମାନେ ସବୁ ନିଜ ନିଜ ବାଟରେ ଯାଉଛନ୍ତି ।

"କଣ ହେଲା ରେ ?" ବୈରାଗୀ ଆଖି ମଳିମଳି ପଚାରିଲା ।

"ସହରେ ଚୁଲିସ୍ୱାଲାଙ୍କ ସିଟି ଶୁଣାଗଲା । ହୋଇପାରେ ସେମାନେ ସେକରି ସଡ଼କ ଉପରେ ଅଛନ୍ତି ।" କହିଦେଇ ଗୋଟିଏ ଖୋଲାଲି ପଳାଇଗଲା ।

ବୈରାଗୀ ଚିଲମ ନେଇ ଭିତରକୁ ଗଲା । ଘରଆଡ଼େ ଅନ୍ଧାର । ଡିଆସିଲି ନେଇ ଲାଲ୍ଟେଣ ଜଳାଇଲା । ଚଟେଇ ଉପରେ ଗୋଟାଏ ପଇସା ବି ନଥିଲା ।

"କଣ ରେ ସତ୍ୟମ୍ ? ପଇସା କାହିଁ ?" ପାଟିକଲା । ବଢ଼ ତେଜ ଭିତରକୁ ଅନାଇଲା—ସତ୍ୟମ୍ ନ ଥିଲା । ସେ ଅପଦାର୍ଥ ଦୀପ ଲିଭାଇ ପଇସା ଉଠାଇ ନେଇଥିବ । ତାପରେ "ଝିଅ ଗୌରୀ" କହି ଡାକିଲା । ଝିଅର ବି ଦେଖା ନାହିଁ ।

"କଣ ଗୌରିମ୍ମା ମଟେ ଗୁଡ଼ି ଚାଲିଗଲା ?" ଏହି ଭାବନା ବୈରାଗୀକୁ ପାଗଳ କରି ଦେଲା । ସେ ଏକଦମ୍ ମାଟି ଉପରେ ବସିପଡ଼ିଲା । ଅନ୍ଧାରର ଆଲୁଅ ମଝିରେ ଆଖି ବନ୍ଦ କରି ଲୁଚୁକାଲି ଖେଳାଳିବାଲା ବୈରାଗୀର ଆଖିକୁ ବର୍ତ୍ତମାନ ଆଉ କିଛି ଦିଶୁନାହିଁ । ଲାଲ୍ଟେଣ ପଛେ ଯେଉଁଠି ଥାଉ ତାକୁ ଆଉ ଏହି ଅନ୍ଧକାରମୟ ଗୁମ୍ଫାରୁ ବାହାରିବାର ରାସ୍ତା ମଧ୍ୟ ଦିଶୁନାହିଁ । ଅବିକା ତ ଜୀବନ ତାକୁ ପ୍ରକୃତରେ ପିତା ଲାଗିବାକୁ ଲାଗିଲା ।

# ବରଗଛର ଛାଇ ଓ ମଲ୍ଲୀଫୁଲର ଲତା

ସୌଭାଗ୍ୟବତୀର କପାଳର ସିନ୍ଦୂରଟୋପା ପରି ସୂର୍ଯ୍ୟଦେବତା ପଶ୍ଚିମ ଦିଗନ୍ତରେ ଅସ୍ତ ହୋଇଗଲେ । ଦେବୋତ୍ତର ଭୂମିର ପଟ୍ଟାଦାର ରାମସ୍ୱାମୀ ଟେଣ୍ଡାରେ ପାଣି କାଢ଼ୁଛି । ଗତ ଦୁଇ ବର୍ଷ ପର୍ଯ୍ୟନ୍ତ ଆବୁଡ଼ା-ଖାବୁଡ଼ା ଜଙ୍ଗଲିଆ ହୋଇ ପଡ଼ିଥିବା ଏହି ଜମି ଅବିକା ତା ହାତକୁ ଆସିଛି । ଦୁଇବର୍ଷ ମଧ୍ୟରେ ସେ ତାକୁ ଫସଲ କରି ସେଥିରେ ପ୍ରାଣ ଭରିଦେଇଛି । ସବୁଜ ଶାଗ, ପନପରିବା କିଆରିରେ ବଡ଼ ସୁନ୍ଦର ଦିଶୁଛି । ପନପରିବାରେ ସବୁଜ ଲକ୍ଷ୍ମୀ ଖେଳିଯାଉଥିବା ଏହି ପ୍ରଥମ ଫସଲ ଅମଳ କରିବାର ଯୋଗାଡ଼ ଚାଲିଛି । ଫସଲ ଆଡ଼େ ଚାହିଁଲାମାତ୍ରେ, ସଙ୍ଗେ ସଙ୍ଗେ ଦୁହାଁ-ଯାଇଥିବା ଦୁଧର ଭରି ପାତ୍ର ପରି ତାର ଆଖି ଆନନ୍ଦରେ ପୂରିଉଠୁଛି । ପାଣି ମଡ଼ାଇବା ପରେ ପରେ ପରିବା ତୋଳିବାକୁ ହେବ ଓ ସକାଳ ହେଉ ହେଉ ହାଟକୁ ନବାକୁ ହେବ ଏବଂ ଧଡ଼ି ହିସାବରେ ପଇସା ଆଣିବାକୁ ହେବ । ଏହି ବିଚାରରେ ଅସ୍ତ-ବ୍ୟସ୍ତ ହେଉଥିବା ରାମସ୍ୱାମୀକୁ କୂଅ ପାଖରେ କଦଳୀକାନ୍ଦି ଦିଶିଗଲା । ଉପର ଫେଣା ପାଚି ଜରି ଖାଇବାଯୋଗ୍ୟ ହୋଇଯାଇଛି ।

"ବାପା, ମତେ ଗୋଟିଏ କଦଳୀ ଦବ ନାହିଁ ?" ପାଞ୍ଚବର୍ଷର ଝିଅ ହେମା ପଚାରିଲା ।

"ନିଶ୍ଚୟ ଦେବି ଝିଅ, ଏହା ସବୁ ତ ତୋରି । କାଲିକୁ ଆହୁରି ପାଚିଯିବ, ସେତେବେଳେ ଖାଇବୁ ।" ବାପ ବୁଝାଇଲା ।

"ଯାଃ ମ ବାପା, ତୁମେ ସବୁବେଳେ କାଲି କାଲି କହୁଥାଅ ।" କହୁ କହୁ ହେମା ମୋତି ଫୁଲର ଲତାଟିକୁ ମାଟିରୁ ଖୋଳି ତାକୁ ନେଇ ବରଗଛ ଆଡ଼କୁ ଦୌଡ଼ିଗଲା । ନିଜ ଝିଅକୁ ଦେଖି ରାମସ୍ୱାମୀର ତିନିବର୍ଷ ପୂର୍ବେ ମରିଯାଇଥିବା ତାର ସ୍ତ୍ରୀ ମନେ ପଡ଼ିଗଲା । ଜନ୍ମ ହେବାର ଏତେଦିନ ବାଦେ ତାର କପାଳ ଖୋଲିଛି; କିନ୍ତୁ କଣ ଲଭ ? ଏହା ସବୁ ଦେଖା-ଶୁଣା କରିବାର ଭାଗ୍ୟ ତ ତା କପାଳରେ ଲେଖା ନ ଥିଲା ।

କୂଅ ଆଡ଼ୁ କୀଂଠପଟାର ଶବ୍ଦ ହେଉଛି, ବାଡ଼ରେ ମାଡ଼ିଯାଇଥିବା ଲତା ଭିତରେ ଗୁଣ୍ଡୁଚିମୁଷା ତର ତର ଚରୁଛି । ଟେଣ୍ଡାଦ୍ୱାରା ଭିତରେ ପହଞ୍ଚୁଥିବା ପାଣି ପରି ତାର ବିଚାରଧାରା ଉଛୁଳି ଉଛୁଳି ଆଗକୁ ମାଡ଼ିଯାଉଛି ।

ଧର୍ମାଧିକାରୀଙ୍କ କୃପାରୁ ତାକୁ ସେହି ଜମିର ପଟ୍ଟା ମିଳିଯାଇଛି । ସେହି ଭଦ୍ରଲୋକ ତାର ଝିଅ ନାଁ ହେମା ଦେଇଛନ୍ତି । ତାଙ୍କର ତା ପ୍ରତି ଓ ତାର ଝିଅ ପ୍ରତି ଅତ୍ୟଧିକ ସ୍ନେହ ଅଛି । ହେମା ରାମସ୍ୱାମୀର ଶରୀରରୁ ଜନ୍ମ ଥିବା ସୁନା ଓ ଏହି ପନପରିବା ତାର ହାତର ଝାଳରୁ ବାହାରିଥିବା ସୁନା । ଏହା ସବୁ ସେହି ହୃଦୟବାନ ବ୍ୟକ୍ତିଙ୍କର

ଦୟାରୁ ଫଳ । ତାଙ୍କର ନାମ ନେଇ ତାଙ୍କୁ ହାତ ଯୋଡ଼ି ପ୍ରଣାମ କରିବା କଥା, ତାଙ୍କ ନାଁରେ ଗୀତ ବନାଇବା କଥା । ଗାଁରେ ବାବୁ ଓ ମନ୍ଦିରରେ ଭଗବାନଙ୍କର କୃପା ଥିଲେ ଯଥେଷ୍ଟ । ହେମାର ପଢ଼ାପଢ଼ିର ବନ୍ଦୋବସ୍ତ ସେହି କରିବେ । ପାଠୁଆ ପୁଅ ପାଇଁରେ ତାହାର ବାହାଘର ମଧ୍ୟ କରିବେ । ଏହି ଭାବନାରେ ପ୍ରବାହିତ ରାମସ୍ୱାମୀର କାନରେ ସାହାନାଇର ସ୍ୱର ବାଜିଉଠିଲା । ଆଖି ଓଦା ହୋଇଆସିଲା ଏବଂ ତରଳ ଗୁଆଣୀ ପରି ଚମକିବାକୁ ଲାଗିଲା । ନଡ଼ିଆ ଗଛର ବାହୁଙ୍ଗାରେ ପବନ ଯୋଗୁଁ ପତ୍ର ହଲିବାର ଶବ୍ଦ ହେଲା । ରାମସ୍ୱାମୀ ଚମକି ପଡ଼ି ଦେଖିଲା—ଆଗରେ ସେହି ଧର୍ମାଧିକାରୀ ମହାଶୟ ଛିଡ଼ାହୋଇଛନ୍ତି । ହେମାର ପିଠି ଆଉଁସି ସେ ହସୁଛନ୍ତି । ଏଡ଼େ ମୋଟା-ସୋଟା ଲୋକ ଶ୍ରେଷ୍ଠ ଗଛଗୁଡ଼ିକ ପରି ଚଞ୍ଚଳ ହୋଇ ଉଠିଛନ୍ତି ।

"ମାଲିକବାବୁ, ପ୍ରଣାମ !" କହି ରାମସ୍ୱାମୀ ଢେଣ୍ଡାକୁ ଛାଡ଼ିଦେଇ ବରଗଛ ଆଡ଼କୁ ଧାଇଁଗଲା ।

"ଦେଖ ରାମସ୍ୱାମୀ, ଟିକି ହେମା କିପରି ହୃଷ୍ଟପୁଷ୍ଟ ହେଉଛି । ବରଗଛ ଛାଇରେ ତ ଘାସ ଟିକେ ବି ଉଠିବ ନାହିଁ, ତେବେ ଏ ଲତା କିପରି ଜିଇଁବ ?" ଧର୍ମାଧିକାରୀ କହିଲେ ।

"ଆଜ୍ଞା ହଁ, ସେ ତ ଶ୍ରେଷ୍ଠ ପିଲା, ତାକୁ କଣ ଜଣା, ବାବୁ !" ରାମସ୍ୱାମୀ ହାତ ମଳିବାକୁ ଲାଗିଲା । ଧର୍ମାଧିକାରୀ ହେମାର ହାତ ଧରି କୂଅ ଆଡ଼କୁ ଗଲେ । ରାମସ୍ୱାମୀ କିଛି ବୁଝିପାରୁ ନ ଥିଲା ।

"ରାମସ୍ୱାମୀ, ବଗିଚା କେଡ଼େ ସୁନ୍ଦର ଦିଶୁଛି । ବାଇଗଣ, ଭେଣ୍ଡି, କାକୁଡ଼ି, କଖାରୁ, ବହୁତ ଭଲ ଫସଲ ହୋଇଛି ଜଣାପଡ଼ୁଛି ।"

"ହଁ ଆଜ୍ଞା, ସବୁ ଆପଣଙ୍କର ଦୟାରୁ, ବାବୁ !"

"ଦେଖ ରାମସ୍ୱାମୀ, ଏଥିରେ ମୋର କଣ ଅଛି ? ସବୁ ସେହି ବେଣୁଗୋପାଳଙ୍କର କୃପା, ମୁଁ ତ ନିମିତ୍ତ-ମାତ୍ର ।"

"ଏପରି କହନ୍ତୁ ନାହିଁ ବାବୁ ! ମୁଁ ଏ ଗାଁରେ ପରଦେଶୀ ହୋଇ ଆସିଥିଲି । ଗାଁରେ ଏତେ ଲୋକ ଥାଉ ଥାଉ ଆପଣ ମତେ ହିଁ ପଟ୍ଟା ଦିଆଇଲେ । ଯଦି ଆପଣଙ୍କର ଦୟା ନ ହୋଇଥାନ୍ତା ତ ମୋ ଠି ଅବସ୍ଥା କଣ ହୋଇଥାନ୍ତା ?" ନମ୍ରହୋଇ ରାମସ୍ୱାମୀ ଅଣ୍ଟା ନୁଆଁଇ କହିଲା ।

"ଏହିପରି ମୋର ପ୍ରଶଂସା କର ନା, ରାମସ୍ୱାମୀ ! ଆଚ୍ଛା, ମୁଁ ଗୋଟିଏ କଥା କହିବାକୁ ଚାହୁଁଥିଲି । ଗାଁବାଲା ଆମ ବିଷୟରେ କଣ କହୁଛନ୍ତି, ତୁ ଶୁଣିଛୁ ? ସିଆଡ଼େ ଯିବାକୁ ତୋର ବେଳ କାହିଁ ?"

"ହିଁ ଆଜ୍ଞା, ଗାଁଆଡ଼େ ଯିବାର ଅନେକ ଦିନ ହୋଇଗଲାଣି ।"

"ଲୋକେ କହୁଛନ୍ତି, ଆମେ ଦୁହେଁ ଏକା ଥାଳିରେ ଖାଉଛୁ; ଏକା ପଲଙ୍କରେ ଶୋଉଛୁ । ଆମ ଦୁହିଁଙ୍କୁ ଲୋକେ ଏପରି ଘନିଷ୍ଠ ବନ୍ଧୁ ଭାବୁଛନ୍ତି, ବୁଝିଲୁ ?"

"ହଜୁର ! ଆପଣ କୋଉଠି; ମୁଁ କୋଉଠି ?"

"ସେହ କଥା ମୁଁ ଶୁଣିବାକୁ ଗ୍ରହୁଁନାହିଁ । ଆମମାନଙ୍କର ପରସ୍ପର ଭିତରେ ଏପରି ଶ୍ରେଷ୍ଠ-ବଡ଼ର ଧାରଣା ଆଣିବା ଉଚିତ ନୁହେଁ । ଅନ୍ୟମାନଙ୍କର କହିବାର କଣ ଦର୍କାର, ଆମେ ଦୁହେଁ ପ୍ରକୃତରେ ବନ୍ଧୁ । କଣ ଏ କଥା ମୁଁ ମାନୁ ନାହିଁ ?—କହିଲୁ ।"

"କପରି କଥା ବାବୁ, କପରି କଥା ?"

"ଗ୍ରମସ୍ୱାମୀ, ମୁଁ କାହାରି ଘରେ ପାଦ ପକାଏ ନାହିଁ; ଗଲେ ମନ୍ଦିରକୁ ଯାଏ ବା ତୋ ପାଖକୁ ଆସେ, ବାସ୍ । ଆରେ···କଦଳୀ ବି ପାଚଲଣି, ସାବାସ୍ !"

"ହିଁ···ଆଜ୍ଞା !"

"ବର୍ତ୍ତମାନ ମନେ ପଡ଼ୁଛି, କାଲି ରାତିରେ ମୋର ଓ ମୋର ପତ୍ନୀର ବହୁତ ବଡ଼ କଜିଆ ହୋଇଯାଇଥିଲା ।"

"ଏପରି କଣ କଥା ହେଲା, ବାବୁ ?"

"ତାର ଅଭିଯୋଗ ଯେ ମୁଁ ତୋର ଓ ହେମାର ମୋଟେ ଯତ୍ନ ନଉ ନାହିଁ ।"

"ବାବୁ, ମା' ତ ସାକ୍ଷାତ୍ ଦେବୀ ପରି !"

"ଅସଲ କଥା ମୁଁ ଏପର୍ଯ୍ୟନ୍ତ କହିନାହିଁ । ଘରକଥା ମୁଁ ଆଉ କାହାରିକୁ କହେ ନାହିଁ । ବର୍ତ୍ତମାନ ତ ସେ ମା' ହବାକୁ ଯାଉଛି, ତୃତୀୟ ମାସ ଗ୍ଲୁଛି ।"

"ବଡ଼ ଭଲ ଖବର ଶୁଣାଇଲ ବାବୁ ! ଆପଣଙ୍କର ପିଆରି ପରି ପୁଅଟିଏ ହବ, ମୋ ମନ କହୁଛି ।"

"ମୋ ମନର କଥା ତୁ କହିଦେଲୁ । ଆମ ଦୁହିଁଙ୍କର ମନ ଏକା, ବିଗ୍ରର ଏକା ।"

"ଆଜ୍ଞା ହଁ, ବାବୁ !"

"ସକାଳୁ ବେଳାରୁ ଗାଁକୁ ଯିବାକୁ ହବ । ମୋ ସାଥିରେ ସିଏ ବି ଯିବ । ତତେ ଏ କଥା ଜଣା ବି ନାହିଁ ଗ୍ରମସ୍ୱାମୀ ! ତୁ ତ ଭାଗ୍ୟବାନ, ତୋ ଉପରେ କିଛି ଦାୟିତ୍ୱ ନାହିଁ । ମୋର ଶ୍ୱଶୁର ଶାଳୀର ବାହାଘର; ଆମେ ଖାଲିହାତରେ ଗଲେ ଲୋକେ ହସିବେ । ସୁନା, ରୁପା ଇତ୍ୟାଦି ତ ଆମର ଅଳ୍ପଆର କଥା ନୁହେଁ । ଉପହାର ତ ସମସ୍ତେ ଆଣନ୍ତି । ଘରଣୀ ମନରେ ଗୋଟିଏ ବୁଦ୍ଧି ଆସିଛି । ସେ କହୁଥିଲା, ବାହାଘର ପାଇଁ କିଛି ଫଳ ପରିବା ନେଇଯିବା । ମୁଁ କହିଲି 'ବହୁତ ଭଲ କଥା' । କଥାରେ ତ କହିଦେଲି; କିନ୍ତୁ ଫଳ ପରିବା ମିଳିବ କୋଉଠୁ ? କାହାକୁ ପଗ୍ଚରିବି ? ତତେ ପଗ୍ଚରିବି, ନ ହେଲେ, ଆଉ କାହା ପାଖକୁ ଯିବାକୁ ପଡ଼ିବ । ମୁଁ କହିଲି ଏ କାମ ମୋଦ୍ୱାରା ହୋଇପାରିବ ନାହିଁ । ଦେଖ, ଗ୍ରମସ୍ୱାମୀ···ସେ ଅତ୍ୟଧିକ ବ୍ୟସ୍ତ କରିପକାଇଲା···ବର୍ତ୍ତମାନ ସେ ମଧ ଗର୍ଭବତୀ ।"

ଅଧିକାରୀଙ୍କ ଉପରେ ପଡ଼ିଥିବା 'ବିପଦ' କଥା ଶୁଣି ଗ୍ରମସ୍ୱାମୀର ମନ ତରଳିଗଲା ।

"କାହିଁକି ବାବୁ ! ଆପଣ ବି କପରି କଥା କହୁଛନ୍ତି । ମା'ଙ୍କର କଥା ମାନିବା

ଉଚିତ । ଏ ବଗିଚ୍ଚ ଆଉ କାହାର, ବାବୁ ! ଆପଣଙ୍କୁ ବାଧା ହବ କଣ ?" ରାମସ୍ୱାମୀ କହିଲା ।

"ମୁଁ ତ ଜାଣିଥିଲି ତୁ ଏହିପରି କହିବୁ, ସେଇ ଭରସାରେ ଆସିଛି । ମୁଁ ଜାଣିଛି, ରାମସ୍ୱାମୀ ! ମୋର ପଇସା ଦବା ବି ଠିକ୍ ହବ ନାହିଁ ଏବଂ ତୋର ନବା ମଧ୍ୟ ଉଚିତ ହବ ନାହିଁ । ତେବେ ଏହି ସମସ୍ୟାର ସମାଧାନ କିପରି ହବ ?"

"ଏପରି କଥା ଆପଣଙ୍କ ମୁହଁରୁ ବାହାରିବା କଥା ନୁହେଁ, ବାବୁ !"

ରାମସ୍ୱାମୀ ବହୁତ ମନା କରିବା ସତ୍ତ୍ୱେ ପଶିବା ତୋଳିବାରେ ଅଧିକାରୀ ସାହାଯ୍ୟ କଲେ । ଗପ କରୁ କରୁ ପଶିବା ତୋଳୁଥିବା ଅଧିକାରୀଙ୍କୁ ଦେଖି ରାମସ୍ୱାମୀ ମନେ ମନେ ଭାରି ଖୁସି ହଉଥିଲା । କୁଡ଼ିଆ ଭିତରୁ ଅଖାଟିଏ ନେଇଆସିଲା । ବର୍ଷାବେଳେ ଛତାର କାମ ଦେଉଥିଲା ଏହି ଅଖା । ସେ ଅଖାରେ ପଶିବା ଭର୍ତ୍ତି କରି ବାନ୍ଧିଦେଲା ।

"ମୋର କଥାରେ ଅଖା ବାନ୍ଧିଦେଲୁ । ବର୍ତ୍ତମାନ ମୋର ଚିନ୍ତା ଦୂର ହୋଇଗଲା, ରାମସ୍ୱାମୀ ! ମା' ମଧ୍ୟ ବହୁତ ଖୁସି ହୋଇଯିବେ । ବର୍ତ୍ତମାନ ତ ତାର ପିଲା ବି ହବ ନା ! ମାନେ···ସେହି କଦଳୀ···"

"ରହନ୍ତୁ ବାବୁ, କଦଳୀ ମଧ୍ୟ ନେଇଯିବା ।"

ଧର୍ମାଧିକାରୀ ଟିକେ ସଙ୍କୋଚ ପ୍ରକାଶ କଲେ । ତାଙ୍କର ପାଟିରୁ କଥା ବାହାରୁ ନବାହାରୁଣୁ ରାମସ୍ୱାମୀ କଦଳୀକାନ୍ଦି କାଟିଆଣି ତାଙ୍କୁ ଖୁସି କରିଦେଲା । ଧର୍ମାଧିକାରୀ କହିଲେ, "ପ୍ରକୃତ ଶ୍ରଦ୍ଧାର ଏହା ପ୍ରମାଣ ଅଟେ ।" ରାମସ୍ୱାମୀ ଅଖାକୁ ମୁଣ୍ଡାଇ କାଖରେ କଦଳୀକାନ୍ଦି ଜାକିନେଲା ଓ ତାପରେ ଧର୍ମାଧିକାରୀଙ୍କ ପଛେ ପଛେ ଚାଲିଲା । ଧର୍ମରାଜଙ୍କ ସ୍ୱର୍ଗାରୋହଣ ବେଳେ ପଛେ ପଛେ ଚାଲୁଥିବା କୁକୁର କଥା ଧର୍ମାଧିକାରୀଙ୍କର ମନେପଡ଼ିଗଲା; କିନ୍ତୁ ସେ ବାହାରେ କିଛି କହିଲେ ନାହିଁ ।

ଅଧଘଣ୍ଟା ପୂର୍ବରୁ ଶସ୍ୟଶ୍ୟାମଳ ଥିଲା ଯେଉଁ ବଗିଚ୍ଚ ତାହା ବର୍ତ୍ତମାନ ବୁଢ଼ୀର ମୁହଁ ପରି ଶୂନ୍ୟ ଦିଶୁଛି । ସନ୍ଧ୍ୟାପରେ ରାମସ୍ୱାମୀର କୁଡ଼ିଆରେ ଧୀରେ ଧୀରେ ଅନ୍ଧକାର ଛାଇଗଲା ।

ଧର୍ମାଧିକାରୀଙ୍କର କୋଠାରେ ଆଲୁଅ ଜଳୁଛି । ରାମସ୍ୱାମୀ ବୋଝ ଓହ୍ଲାଇ ଝାଳ ପୋଛିଲା । ଧର୍ମାଧିକାରୀଙ୍କର ବହୁତ ଦୟା ଆସିଲା । ଜଲଦି ଜଲଦି ଗୋଟିଏ ଲୋଟା ପାଣି ଆଣି ରାମସ୍ୱାମୀକୁ ଦେଲେ । ରାମସ୍ୱାମୀ ପାଣି ପିଇ କ୍ଲାନ୍ତ ଦୂର କଲା । ଆଲୁଅର ପ୍ରକାଶରେ ଦୁଇଜଣଙ୍କ ମୁହଁ ପ୍ରସନ୍ନ ଦେଖାଗଲା ।

"ଜଣାଯାଉଛି, ଏତେ ଅନ୍ଧାରରେ ବି ଏପର୍ଯ୍ୟନ୍ତ ସିଏ ସେହି ପଛପଟ ଘରେ ଅଛି । ଟିକେ ଯାଇ ଦେଖିଲୁ, ରାମସ୍ୱାମୀ !"

ରାମସ୍ୱାମୀ ପଛପଟ ଘରକୁ ଯିବା ଆଗରୁ କଦଳୀକାନ୍ଦି ଆଡ଼େ ଚାହିଁଲା । ପାଚିଲା କଦଳୀ ପରି ସୁନ୍ଦର ତାର ଝିଅର କଥା ମନେପଡ଼ିଗଲା । ସେଆଡ଼ୁ ମୁହଁ ଫେରାଇ ପଛଆଡ଼କୁ ଚାଲିଗଲା । ଧର୍ମାଧିକାରୀ ଉପରୁ ଚାରି ପାଞ୍ଚୋଟି କଦଳୀ ନେଇ ତାକୁ

ଚାଖିଲେ । ପତ୍ନୀ ମଙ୍ଗମ୍ମା ମଧ୍ୟ ଆସିଲେ ।

"ମୁଁ ଅନୁମାନ ବି କରିପାରୁନଥିଲି ଯେ ଏ ଫଳ ଏତେ ମିଠା ହବ ବୋଲି । ବୋଧହୁଏ ସେଇ ନୂଆ ଖତ ନ ଦେଇ ସେ ଏହାକୁ ଉପୁଜାଇଛି । କେତେ ସ୍ୱାଦ ଅଛି ଏଥିରେ ।" ସ୍ୱାମୀଙ୍କ କଥା ଶୁଣି ମଙ୍ଗମ୍ମା ମଧ୍ୟ ଜାଗାଲୀ ନେଇ ଚାଖିଲେ ।

"ରାମସ୍ୱାମୀ କାହିଁ ?"

"ପଛଆଡ଼ ଅଳଆ ଗୋବର ଫୋପାଡ଼ୁଛି । ମୁଁ କହିଲି ଟିକେ ସଫା କରି ଦବାକୁ । ଅବିକା ଆସୁଥିବ ।"

"ତାକୁ ଦେଖୁ ଦେଖୁ ତମେ କାମ ବଢାଇଦେଉଛ । ସେ ମଧ୍ୟ ଆମ ପାଇଁ ଜୀବନ ଦବାକୁ ପ୍ରସ୍ତୁତ । ପେଟ ପାଇଁ ମଧ୍ୟ ଧ୍ୟାନ ନ ଦେଇ ସେ ବେଠି ଖଟୁଛି । ଗ୍ଲାଡ଼, ସ୍ୱାଙ୍କେ ପକ୍ଷପରିବା ଆଡ଼କୁ ଚାହିଁ ଦେଖ ! ତମ ଭଉଣୀର କାହାଘରେ ମାନ ବଢ଼ିବ ।"

"ଏକଦମ୍ ! ଆପଣଙ୍କ ଶାଳୀ ଜାଣିବ କି ଭିଣେଇଙ୍କର ତା ଉପରେ କେତେ ପ୍ରେମ ଅଛି ! ବାସ୍, ଆଉ କଣ !"

ସ୍ୱାମୀ ସ୍ତ୍ରୀ ଦୁହେଁ ବହୁତ ଆନନ୍ଦିତ ହେଲେ । ରାମସ୍ୱାମୀ ଆସିଛି କି ନାହିଁ ଅଧିକାରୀଙ୍କର କୃତ୍ରିମ କ୍ରୋଧ ତା ଉପରେ ଉଛୁଳି ପଡ଼ିଲା—

"ଦେଖ, ରାମସ୍ୱାମୀ ! ଆମ ଉପରେ ତୋର ଶ୍ରଦ୍ଧା ଥାଇପାରେ; କିନ୍ତୁ ତା ବୋଲି ତୁ ନିଜକୁ ହେଲା ମଧ୍ୟ କରିବା କଥା ନୁହେଁ ।" ମାଲିକଙ୍କର ରାଗ ଦେଖି ବିଚରା ରାମସ୍ୱାମୀ ଘାବରେଇଗଲା । ତାର ବ୍ୟଗ୍ରତା ଦେଖି ଧର୍ମାଧିକାରୀ ତାର ପିଠି ଆପୁଡ଼େଇ ବଡ଼ ସ୍ନେହରେ କହିଲେ "ଏତେ ଡେରିଯାଏ ତୁ ଏଠାରେ ରହିଲେ ସିଆଡ଼େ ହେମା ଓ ବଗିଚାର କଣ ହବ ? ଶୀଘ୍ର ଘରେ ପହଞ୍ଚିବା କଥା । ହେମାର ତ ଆମ ପରି ଲୋକଙ୍କ ଘରେ ରହିବା ଉଚିତ । ଭଲ କଥା —ଏବେ ତୁ ଯାଆ । କାମ ନାଁ ଶୁଣିଲେ ତୁ ଜୀବନ ଦେଇଦେଉଛୁ । ଦିନରାତି ଭୁଲି ପରିଶ୍ରମ କରୁଛୁ ।" ମାଲିକଙ୍କ ମଧୁର ଗାଳି ରାମସ୍ୱାମୀ ହୃଦୟକୁ ମୋହିନେଲା । ଝିଅ କଥା ଶୁଣି ସେ ଆନନ୍ଦରେ ଅଧୀର ହୋଇଗଲା ।

"ନାଆଁକୁ ମୋ ଝିଅ । ଆପଣଙ୍କର ଛତ୍ରଛାୟା ତଳେ ହିଁ ତାର ପାଳନ-ପୋଷଣ ହବା କଥା ବାବୁ ! ଆପଣଙ୍କର ଦୟାରୁ ସେ ପଢ଼ିଲେଖି କରି ଆଗକୁ ଉନ୍ନତ କରିପାରିବ, ମାଲିକ !"

"ରାମସ୍ୱାମୀ ! ହେମା ବଡ଼ ଭାଗ୍ୟବତୀ ଅଟେ । ମୋ କଥା ମାନିବୁ ତ ସେ ବଗିଚାରେ ଜନ୍ମ ହୋଇ ମଧ୍ୟ ପ୍ରାସାଦରେ ଫୁଟିଉଠିବ । ଆଚ୍ଛା, ଚାଲ, ଆମେ ଗପ କରୁଥିଲେ ତ ରାତି ପାହିଯିବ; କିଛି ଜଣା ବି ପଡ଼ିବ ନାହିଁ । ଆଚ୍ଛା, ଦେଖ୍—ଯାଉ ଯାଉ ବାଟରେ ଟାଙ୍ଗାବାଲାକୁ କହିଯିବୁ ସେ କାଲି ସକାଳେ ସୂର୍ଯ୍ୟୋଦୟ ପୂର୍ବରୁ ଟାଙ୍ଗା ନେଇ ଆସିଯାଏ ଯେପରି ।" କହି ଅଧିକାରୀ ରାମସ୍ୱାମୀକୁ ବିଦାୟ ଦେଲେ ।

"ଅବିକା ତ ମତେ ତିରସ୍କାର କରୁଥିଲ ଯେ ମୁଁ ତାକୁ କାମ କରାଇ ଦେଉଛି

ବୋଲି । ଏହିକ୍ଷଣି ନଜେ ତ ସେଇଆ କଲ ।" ମଙ୍ଗମ୍ମା ହସାଇବା ସ୍ୱରରେ କହିଲା ।

"ଦେଖ, ଯଦି ତୁମେ ତାଙ୍କୁ କାମ ବଢାଉଛ ତ ମୋର ଦୟା ଆସିବା କଥା; ମୁଁ ଯଦି କାମ କରୁଏ ତ ତୁମର ଦୟା ହବା କଥା । ବୁଝିଲ, ଅନ୍ୟର କଥା ବୁଝିପାରିବା ହିଁ ବଡ଼ପଣିଆ । ଦୁନିଆକୁ ଦେଖି ଦେଖି ମୋର ବାଳ ଧଳା ହୋଇ ଯାଇଛି ।"

"ଆପଣ କେଡ଼େ ସୁନ୍ଦର ଭାବରେ ବୁଝାଉଛନ୍ତି—କଦଳୀ ଛଡ଼େଇ-ଗୁଡ଼େଇ ପାଟିରେ ପୁରାଇଦେଲ ପରି ।" ମଙ୍ଗମ୍ମା ମନେ ମନେ ଖୁସି ହୋଇ ମଧୁର ସ୍ୱରରେ କହିଲା-- "ଏତେବ ରାମସ୍ୱାମୀ ବଡ଼ ସରଳ ଲୋକଟିଏ ।" ବଡ଼ ଆତ୍ମୀୟତା ସହକାରେ ଚଟ୍ କରି କହିପକାଇଲେ—ଯେପରି ଏହି କଥା ହଠାତ୍ ମନେ ପଡ଼ିଗଲା ।

"ବର୍ତ୍ତମାନ ବୁଝିଗଲ ତୁମେ ! ମୋଟ ସବୁ ଗୋଟିଏ ଜାଗାରେ ଏକାଠି ହୁଅନ୍ତି । ମାନେ, ଭଲ ଲୋକମାନେ ସବୁ ଏକା ଜାଗାରେ ପହଞ୍ଚିଯାଆନ୍ତି । ଏହି ରହସ୍ୟ ତୁମକୁ ବୁଝାଇବା ଦରକାର । ହଉ, ଛାଡ଼ ଏହି କଥାଗୁଡ଼ାକ । ବେଶି ଭାବିଲେ ତମେ ବ୍ୟସ୍ତ ହୋଇପଡ଼ିବ । ତୁମେ ଗର୍ଭବତୀ ।" ଅଧିକାରୀ କହିଲେ ।

ସନ୍ଧ୍ୟାବେଳର ମଉଳା ଫୁଲ ପରି ମଙ୍ଗମ୍ମା ଲାଜରେ ଝାଉଁଳି ପଡ଼ିଲା ।

ଶାଳୀ ବାହାଘରୁ ଫେରି ଅଧିକାରୀ ପ୍ରତିଦିନ ରାମସ୍ୱାମୀ ଘରକୁ ଆସୁଥିଲେ । ରାମସ୍ୱାମୀର ପରିବାର ସ୍ୱାଦ କିପରି ବରଯାତ୍ରୀମାନଙ୍କୁ ବହୁତ ଭଲ ଲାଗିଥିଲା ଓ କିପରି ଖୁସିରେ ଖାଇଥିଲେ ସେହି କଥା ବାରମ୍ବାର ଧର୍ମାଧିକାରୀ ବିଭିନ୍ନ ଭାବେ ଏବଂ ଦଶଥର ହବ ବଖାଣୁଥିବାରୁ ରାମସ୍ୱାମୀର ଆନନ୍ଦର ସୀମା ନ ଥିଲା । ମୋଟା ଦାନାବାଲା ଗୁଆଁସ୍ରା ଭାଜି ରାମସ୍ୱାମୀ ମାଲିକଙ୍କୁ ଖୁଆଇଲେ ସେ ବଡ଼ ଆନନ୍ଦରେ ଖାଆନ୍ତି । ପନିବା ଟୋକେଇ ପ୍ରତିଦିନ ଧର୍ମାଧିକାରୀଙ୍କ ଘରେ ପହଞ୍ଚିଯାଉଥିଲା ଓ ବାହାର ଅଗଣାର ଅଳିଆ, ଗୋବରକୁ ରାମସ୍ୱାମୀ ସବୁଦିନ ସଫା କରି ଅଲଗା ଅଲଗା ଏକାଠି କରି-ଦଉଥିଲା । ଦିନ ଗଡ଼ିଲଗଲା, ମାସ ବିତିଲା, ଧୀରେ ଧୀରେ ଧର୍ମାଧିକାରୀ ରାମସ୍ୱାମୀ ସାଙ୍ଗରେ ବରଅଠା ପଟି, ଡକାଟା ମାଟି ପରି ଓ କାନ୍ଥରେ ଲଗିରହିଥିବା ଝିଟିପିଟି ପରି ତା ସାଙ୍ଗରେ ଯୋଖିହୋଇଗଲେ । ଦୁହିଁଙ୍କ ମଧ୍ୟରେ ସ୍ନେହ ଏପରି ଘନିଷ୍ଠ ହୋଇଗଲା ଯେ ଦୁହିଁଙ୍କୁ ଅଲଗା କରିବା କଳ୍ପନାର ଥିଲା ।

ବଗିଚାରେ ଆଉ କିଛି ଫଳିଲା ପରି ଅବସ୍ଥା ନାହିଁ । ବଗିଚା ପରି ହେମାର ମନ ମଧ୍ୟ ଶୁଖିଯାଇଛି ।

ରାମସ୍ୱାମୀର ବୁଦ୍ଧି ପରି କାଳଚକ୍ର ମଧ୍ୟ ଘୂରିବାକୁ ଲାଗିଲା । ଖରାଦିନ ହୋଇଗଲା । ତା ହୃଦୟରେ ଓ ବଗିଚାର କୂଅରେ ପାଣି ବୁନ୍ଦାଏ ବି ନାହିଁ ! ପଡ଼ୁ ଫସଲରେ ତ ତାର ହାତ ବାଜିଲା ନାହିଁ । ଏ ବର୍ଷର ଖଜଣାପଇସା ମୃତ ପତ୍ନୀର ଗହଣାରୁ ବାକି ରହିଯାଇଥିବା ଏକମାତ୍ର ଗହଣା ବିକି କରି ଖଜଣା ବାବଦ ପଇସା ଜମାପର

ଭାବରେ ସମସ୍ତ ପୂର୍ବରୁ ଅଧିକାରୀଙ୍କ ହାତକୁ ଦେଇଥିବାରୁ ସେ ପାଞ୍ଚ ଲୋକଙ୍କ ଆଗରେ ତାର ଉଦାହରଣ ଦେଇ ପ୍ରଶଂସା ମଧ୍ୟ କରଥିଲେ ।

ଯେଉଁ ପର୍ଯ୍ୟନ୍ତ ତା ନିଜ କଥା ଥିଲା, ସେ ଲଙ୍ଗୋମରଚ ଦେଇ ପେଜ ତୋରାଣି ପିଇ ସନ୍ତୁଷ୍ଟ ହୋଇ ରହୁଥିଲା । ଝିଅ ପାଇଁ ଖଣ୍ଡେ ଜାମା ବି କିଣି ପାରନାହିଁ । ଏଇଆ ଭାବି ସେ ଦୁଇ ତିନି ଥର ଲୁହ ଗଡ଼ାଇ ପୋଛିପକାଇଛି । ତାର କୌଣସି ଇଚ୍ଛା ପୂରଣ ହୋଇପାରନାହିଁ । ଏଥର କି ଫସଲର ପୂରାପୂରି ପଇସା ଅସୁଲ କରିବାକୁ ସେ ଦୃଢ଼-ସଂକଳ୍ପ ହୋଇଗଲା । ଭାବିଲା କି ବର୍ତ୍ତମାନ ଆଉ ବଟିଗଛ ଗ୍ଲଡ଼ି କୁଆଡ଼େ ଯିବା କଥା ନୁହେଁ ଏବଂ ମାଟିରୁ ସୁନା ଉତ୍ପନ୍ନ କରିବା ଦର୍କାର । ଜମି ଚଷି କରି ସଫା କଲା । କୁଡ଼ିଆ ଛପର କଲା । ତେଣ୍ଡାକୁ ମରାମତ କରିନେଲା ଓ ବର୍ଷା ପ୍ରତୀକ୍ଷାରେ ବସିରହିଲା ।

ହଠାତ୍ କାଢ଼ପଲ ପରି ବାଦଲ ଗ୍ଲଇ ହୋଇଗଲା । ଗ୍ରାମସ୍ବାମୀର ଆଖି ସଜଳ ହୋଇଗଲା । ରାତିସାରା ତାକୁ ନିଦ ହେଲା ନାହିଁ । କର ନେଉଟାଇ ନେଉଟାଇ ରାତ ପାହିଲା । ଜମି ପାଇଁ ଖତ ନାହିଁ କି ହାତରେ ପଇସା ନାହିଁ । ଖତ ବିନା ଖେତ କିପରି ଚଳିବ । ଅଧରାତ ବେଳକୁ ଧର୍ମାଧିକାରୀଙ୍କ କଥା ମନେ ପଡ଼ିଲା । ନିଜ ହାତରେ ଗଦା ଗଦା କରି ଜମାକରିଥିବା ଅଳିଆ ଓ ଗୋବର କଥା ମନେ ପଡ଼ିଲା—ପ୍ରାୟ ପଚାଶ ଷାଠିଏ ଠେଲା ହବ । ଗ୍ରାମସ୍ବାମୀ ଜାଣିଥିଲା ଯେ ସେ ମାଗୁ ମାଗୁ ବାବୁ ରାଜି ହୋଇଯିବେ । ଫସଲ ହାତକୁ ଆସିଯିବାକ୍ଷଣି କରଜ ପରିଶୋଧ କରିଦେବ । ଦଶ ଠେଲା ଅଳିଆ ଯଥେଷ୍ଟ, ବର୍ତ୍ତମାନ ଗ୍ରାମସ୍ବାମୀ ନିଶ୍ଚିନ୍ତ ହୋଇ ଶୋଇ ପଡ଼ିଲା ।

ମଙ୍ଗଳା ପୂଜା କରୁଛନ୍ତି । ଅନେକ ପିଇ ଦେଇ ଧର୍ମାଧିକାରୀ ବାରଣ୍ଡା ଉପରକୁ ଆସିଲେ; ଗ୍ରାମସ୍ବାମୀ ଛିଡ଼ା ହୋଇଥିବା ଦେଖି ଚମକି ପଡ଼ିଲେ—"ଆରେ, କେତେ ବେଳୁ ଛିଡ଼ା ହୋଇଛୁ ? ଭିତରକୁ ଗ୍ଲଲିଆସିଥାନ୍ତୁ ? ଏଇଠି ହାତ ଯୋଡ଼ି ଛିଡ଼ା ହୋଇ କାହିଁକି ରହିଛୁ ? ଆଚ୍ଛା, କହ, କଣ କଥା ଅଛି ।"

"ଆଜ୍ଞା ହଁ, ଶ୍ରେଷ୍ଟ କଥାଟିଏ ଥିଲା, ଯେଉଁଥିପାଇଁ ଆପଣଙ୍କ ପାଖକୁ ଆସିବାକୁ ପଡ଼ିଲା ।"

"ମୋ ପାଖକୁ ? ଆଚ୍ଛା, ହେମା କିପରି ଅଛି ? ମାସେ ହେଲା ସେଠିକି ଯାଇ ପାରନାହିଁ । ଘରଣୀ ଗର୍ଭବତୀ ହୋଇଛନ୍ତି ବୋଲି ମୋର ବାହାରକୁ ବାହାରିବା କଷ୍ଟକର ହୋଇପଡ଼ିଛି ।"

"ଆଜ୍ଞା, ସବୁ ଜମି ହଳ କରିସାରିଛି; ଉପରେ ମେଘ ଉଠାଇଛି ।"

"ହଁ ହଁ ଖଜଣା ମଧ୍ୟ ତୁ ପୁରାପୁରି ଦେଇଦେଇଛୁ ।"

"ହଁ ଆଜ୍ଞା, ବର୍ତ୍ତମାନ ଆପଣଙ୍କ ସାହାଯ୍ୟ ଦର୍କାର ।"

"ଗ୍ରାମସ୍ବାମୀ ! ମୁଁ କେତେ ଥର କହିଛି ଏପରି କଥା କହିବୁ ନାହିଁ; ଆମେ ଦୁଇଜଣ

ସାଙ୍ଗ, ତୁମ୍ଭେ ନିଜ ନିଜ ହିସାବରେ ବଡ଼ ।"

ଗ୍ରାମସ୍ୱାମୀ ମନରେ ଘୂରବୁଲୁଥିବା କଥା ଧାଡ଼ିକୁ ବାହାରିପଡ଼ିଲା—"କଥା ଏଇଟା ବାବୁ ! ଦଶ ପୋଲି ଖତର ବନ୍ଦୋବସ୍ତ କରିଦେଲେ ଯାକ । ଫସଲ ହୋଇଗଲେ ମୁଁ ସାଙ୍ଗେ ସାଙ୍ଗେ ଆପଣଙ୍କର ପଇସା ଦେଇଦେବି । ବର୍ତ୍ତମାନ ବାହାରୁ କିଣିବାକୁ ମୋ ହାତରେ ପଇସାଟିଏ ନାହିଁ । ଯଦି ବର୍ତ୍ତମାନ ଖତ ନପକାଉଛୁ ତ ଆମକୁ ମାଟି ଖାଇବାକୁ ପଡ଼ିବ । ବର୍ତ୍ତମାନ ଯଦି ଆପଣ ଆମର ସାହାଯ୍ୟ କରନ୍ତେ ତ ହେମା ଓ ମୁଁ ଆପଣଙ୍କ ପାଇଁ ଧେଳ ମୁଦିଏ ପିଇପାରନ୍ତୁ ।" ଗ୍ରାମସ୍ୱାମୀ ଦୀର୍ଘ ନିଃଶ୍ୱାସ ଛାଡ଼ିଲା ।

ଅଳ୍ପ ସମୟ ଆଗରୁ ସେଠି ଆସି ଛିଡ଼ାହୋଇଥିବା ମଙ୍ଗମ୍ମା ମଧ୍ୟ ସବୁ କଥା ଶୁଣିଲେ ।

ଧର୍ମାଧିକାରୀ କ୍ଷଣକ ପାଇଁ ଛଟପଟ ହେଲେ; ଯେପରି କେହି ଅତ୍ୟଧିକ ଆଘାତପ୍ରାପ୍ତ ହୋଇଛନ୍ତି । ଗଳା ଖଙ୍କାରିଲେ କି କଥା ବାହାରୁ ନ ଥାଏ । ବଡ଼ ଦୁଃଖ ଓ ଯନ୍ତ୍ରଣାକୁ ପ୍ରକଟ କରୁ କରୁ ଗ୍ରାମସ୍ୱାମୀର ପିଠି ଆଉଁସି ଦେଇ ଧର୍ମାଧିକାରୀ କହିଲେ —"ଗ୍ରାମସ୍ୱାମୀ ! ଦେଖ, ଯେତେବେଳେ କୌଣସି ଜିନିଷ ମାଗିବାର ଦର୍କାର ପଡ଼େ ସେତେବେଳେ ତୁ ଓ ମୁଁ ଦୁହେଁ କପଣ ନ୍ୟାୟରେ ପଡ଼ିଯାଉ । ଆମେ ଯେତେ ବଡ଼ମଣିଷ କି ଭଲ ମଣିଷ ହେଲେ ମଧ୍ୟ ଦିଆନିଆ କଥାରେ ସମସ୍ତେ କ୍ଲାନ୍ତ ହୋଇଯାଉ । ଏ କଥା ନୁହେଁ ଯେ ମୋ ପାଖରେ ସେ ଜିନିଷ ନାହିଁ ବା ମୁଁ ତତେ ଦେବାକୁ ଚାହୁଁନାହିଁ । ଗୁରୁଜନମାନେ କଣ କହିଛନ୍ତି, ଜାଣିଚୁ ? ତାଙ୍କର କହିବାର ଥିଲା ଯେ ନିଜ ଲୋକଙ୍କୁ କୌଣସି ଜିନିଷ ଦେବା ମାନେ ହେଉଛି ତାହାଠୁ ଶତ୍ରୁତା କିଣିବା । ମୁଁ ଚାହେଁ ନାହିଁ ଯେ ଆମର ବନ୍ଧୁତା ତୁଟିଯାଉ । କରଜ ଦେବା-ନେବା ଆମ ବନ୍ଧୁତ୍ୱରେ ବାଧା ଜନ୍ମାଇବ । ସେଥିପାଇଁ ଏଇଟା ଭଲ କଥା ନୁହେଁ । ଗୋଟିଏ କଥା ମୁଁ କହୁଛି । ତୁ ମଧ୍ୟ ଚିନ୍ତା କର । ମୋର ଅଛି ନା—ମନ୍ଦଭଟ୍ଟ ସ୍ୱାମୀ ବେଣୁଗୋପାଳ - ମୋହର ହାତରେ କିଛି ବାଟ ବତାଇ ପାରିବ—କଣ ଭାବୁଛୁ ତୁ ?"

"ହଉ ଆଜ୍ଞା ଆଦେଶ ଦିଅନ୍ତୁ, ମୁଁ ଯାଉଛି ।" କହି ଗ୍ରାମସ୍ୱାମୀ ଘୁଞ୍ଚିଗଲା । ତାକୁ ରାସ୍ତାରେ ସବୁ ଅନ୍ଧକାରମୟ ଦେଖାଗଲା । "ଧର୍ମାଧିକାରୀ ବୋଧହୁଏ ଠିକ କଥା ହିଁ କହିଛନ୍ତି । କିନ୍ତୁ ସେ ଯଦି ଖତ ଉଧାର ଦେଇଥାନ୍ତେ ତ ମୁଁ ତାଙ୍କର କରଜ ନିଶ୍ଚୟ ସୁଝିଦେଇଥାନ୍ତି । ମୋର ଭାଗ୍ୟ ଖୋଟ ।" ଗ୍ରାମସ୍ୱାମୀର ପାଦ ଅତି କଷ୍ଟରେ ଆଗକୁ ପଡ଼ୁଥିଲା ।

ଧର୍ମାଧିକାରୀ ସେଇଠି ଅବାକ୍ ହୋଇ ଛିଡ଼ାହୋଇ ରହିଲେ । ମଙ୍ଗମ୍ମାର ହୃଦୟର ଅନ୍ତସ୍ଥଳର କାହିଁ କୋଉ କଣରେ ଏହି କଥା ଉଙ୍କିମାରୁଥିଲା ଯେ ଗରିବକୁ ଖତ ଦେଇଥିଲେ ଭଲ ହୋଇଥାନ୍ତା ।

"କଣ କହେ, ଶବରୀ ମୁହଁ ଖୋଲି ମାଗିବାକୁ ଆସିଥିଲା । ଆମ ପାଖରେ ତ

ଗଦାକୁଗଦା ହେଉଛି ମଧ୍ୟ ।" ବାସ୍, ଏତକ କଥା ମଙ୍ଗଳା ମୁହଁରୁ ବାହାରିଲା ।

"ଆରେ ପାଗଳୀ ! ତୁମେ ତ ମା' ହେବାକୁ ଯାଉଛ । ଏହିପରି ସବୁ ଭାବନାରେ ନିଜର ମନ ଉଦାସ କର ନାହିଁ । ବାସ୍ତବରେ ଏହା ବୁଝିବା ବି ଭୁଲ୍ ଯେ ଆମ ପାଖରେ କିଛି ଅଛି, ଏହା ସାଧାରଣ ଭୁଲ୍ ଖାଲି ନୁହେଁ । ଏହା ଅହଂକାର ଅଟେ । ଭଗବାନ କୃଷ୍ଣ କଣ କହିଥିଲେ ? ଦେଲାବାଲା କିଏ ? ନେଲାବାଲା କିଏ ? ମରିବାବାଲା କିଏ ? ମାରିବାବାଲା କିଏ ? ସବୁକିଛି ମୁଁ ହିଁ ଅଟେ । ଆମେ ତ ସତ୍‌ହୃଦୟର ବନ୍ଧୁ । ଏହି ବନ୍ଧୁତାକୁ ଆମେ ଏହିପରି ବଜାଏ ରଖିଥିବା ନା ଶ୍ରେଷ୍ଠ ଶ୍ରେଷ୍ଠ ଦ୍ରବ୍ୟ ନେଇ-ଦେଇ କରି ବନ୍ଧୁତାକୁ ଶେଷ କରିଦେବୁ ? ଅଗ୍ନିହୋତ୍ର ପରି ଆମ ପବିତ୍ର ଜୀବନ ଏହିପରି ବିତିଯିବ । କରଜ ନବା ବା ଦବାରେ, ଫେରେ ତାକୁ ପରିଶୋଧ କରିବା ପାଇଁ କୁକୁର, ବିଲୁଆ ହୋଇ ଜନ୍ମ ନବାକୁ ପଡ଼େ । ଏହି ଜନ୍ମ ଏହିପରି ପରମାତ୍ମାରେ ଲୀନ ହୋଇଯିବା ଉଚିତ । ପୁନର୍ଜନ୍ମର କଥା ମୋ କାନ ପର୍ଯ୍ୟନ୍ତ ନ ପହଞ୍ଚିବା ଦରକାର ।" ତାଙ୍କର ବାକ୍‌ସ୍ରୋତ ନଦୀସ୍ରୋତ ପରି ଚାଲିଛି ।

"ଆରେ, ଆପଣ ତ ଢୋଲକୁ ତାଳ କରୁଛନ୍ତି ।" ମଙ୍ଗଳା କହିଲା ।

"ବାସ୍, ଚାଲ ଭିତରକୁ ! ବାହାରେ ଛିଡ଼ାହୋଇ ରହିବା ଠିକ୍ ନୁହେଁ; ପିଲା ମଧ୍ୟ ହେବାର ଅଛି ।" ଧର୍ମାଧିକାରୀ ବଡ଼ ପ୍ରେମରେ କହିଲେ ।

ଅମାବାସ୍ୟା ରାତି ଥିଲା । ଅର୍ଦ୍ଧରାତ୍ରିର ସମୟ ଥିଲା । ପୃଥିବୀ ଓ ଆକାଶକୁ ଏକାକାର କରି ମୂଷଳଧାରାରେ ବର୍ଷା ହେଉଛି । ବିଜୁଳିର ଚମକ ଓ ଘଡ଼ଘଡ଼ି ଶବ୍ଦରେ ହୃଦୟ କମ୍ପି ଯାଉଥିଲା । ରାମସ୍ୱାମୀ କୁଡ଼ିଆରେ ଉଦାସ ହୋଇ ବସିଥିଲା । ଶୋକ ଓ ଚିନ୍ତାରେ ସେ ଦୁର୍ବଳ ହୋଇପଡ଼ିଥିଲା । ଖାଇବାର ଅଭାବ ଓ କାଲିର ଚିନ୍ତା ଏହି ଦୁଇଟି ମଧ୍ୟରେ ସେ ଚେପଟି ହୋଇଯାଉଥିଲା । ଦୂରରୁ 'ରାମସ୍ୱାମୀ ! ରାମସ୍ୱାମୀ' କହି କିଏ ଡାକୁଥିଲା । ଏହି ଶବ୍ଦ ଶୁଣି ରାମସ୍ୱାମୀ ଚମକି ପଡ଼ିଲା—ହଁ ମୁଁ ରାମସ୍ୱାମୀ ! ଧର୍ମାଧିକାରୀଙ୍କର ଗଳା ସେ ଚିହ୍ନିପାରିଥିଲା । ଦୋଷାଚ ହୋଇଯାଇ କବାଟ ଖୋଲିଦେଲା । ଛତା ବନ୍ଦ କରି ଧର୍ମାଧିକାରୀ ଭିତରକୁ ଆସିଲେ ।

"କଣ ବାବୁ, ଏହି ମଝିରାତିରେ ଆପଣ ଏଠିକି କିପରି ଆସିଲେ ?"

"ଆକାଶ ଛିଣ୍ଡି କରି ମୋ ଉପରେ ପଡ଼ିଛି, ରାମସ୍ୱାମୀ ! ମୁଁ ଜାଣିଥିଲି କି ଏହି ବିପଦବେଳେ ତୁ ମତେ ନିଶ୍ଚୟ ସାହାଯ୍ୟ କରିବୁ । ସେଥିପାଇଁ ଦୌଡ଼ିକରି ମୁଁ ତୋର ପାଖକୁ ଚାଲିଆସିଲି ।"

"କଣ ହେଲା, ବାବୁ ?"

ଧର୍ମାଧିକାରୀଙ୍କର ଗଳା ଅରିଯାଉଥିଲା । ସେ କାନ୍ଦି କାନ୍ଦି କହିଲେ, "ମା'ଙ୍କର ଅବସ୍ଥା ଅତ୍ୟନ୍ତ ଖରାପ । ପ୍ରସବ ବେଦନା ସହିପାରୁନାହିଁ । ତତେ ଅବିକା ଯାଇ ମାଳାସ୍ୱରମ୍‌ରୁ ବୈଦ୍ୟଙ୍କୁ ନେଇ ଆସିବାକୁ ହେବ, ନ ହେଲେ ସେ ବଞ୍ଚିବ ନାହିଁ,

ରାମସ୍ୱାମୀ ! ତୁ ଏପର୍ଯ୍ୟନ୍ତ ଏଇଠି ଛିଡ଼ାହୋଇଛୁ, ମୋର ଘରର ଦୀପ ଜଳାଇ ରଖ ।" କହୁ କହୁ ଧର୍ମାଧିକାରୀ ରାମସ୍ୱାମୀର ଦୁଇ ହାତକୁ ଧରିପକାଇଲେ ।

ରାମସ୍ୱାମୀ ମିନିଟିଏ ଯାଏ ଭାବିଲା । ମାନାପୁରମ୍ ଏଠୁ ତିନି ମାଇଲ ବାଟ ପଡ଼ିବ । ଯଦି ବୈଦ୍ୟଙ୍କୁ ନ ଆଣିଛୁ – ଯଦି ମା' ସାଆନ୍ତାଣୀ ନ ବଞ୍ଚନ୍ତି – ତେବେ — ଆଉ ସେ ଭାବିପାରିଲା ନାହିଁ । ଧର୍ମାଧିକାରୀ ମଧ୍ୟ ରହିପାରୁ ନ ଥିଲେ ।

"ରାମସ୍ୱାମୀ ! ଭାବିକରି ଡେରି କଲେ ସେ ବଞ୍ଚିବ ନାହିଁ ଓ ତା'ପରେ ମୁଁ ମଧ୍ୟ ବଞ୍ଚିବି ନାହିଁ ।"

"ବାବୁ !"

"କଣ ଦରକାର !"

"ସେ 'ଟର୍ଚ୍ଚ ଲାଇଟ୍' ମତେ ଦିଅନ୍ତୁ । ମୁଁ ବର୍ତ୍ତମାନ ଯାଉଛି ।"

କ୍ଷଣେକ ପାଇଁ ଧର୍ମାଧିକାରୀଙ୍କ ମୁହଁରୁ କଥା ବାହାରିଲା ନାହିଁ । ଛତା ଓ ଟର୍ଚ୍ଚକୁ ସେ ଆହୁରି ଜୋରରେ ଜାବୁଡ଼ି ଧରିଲେ ଓ କହିଲେ, "ତୁ ତ ଜାଣୁ, ଚାଟାବାଘ ପରି ଅନ୍ଧାରକୁ ଚିରିକରି ଯାଇପାରିବୁ । ଏ ଛତା ଓ ଟର୍ଚ୍ଚ ତ ମୋର ଗୋଡ଼ ଓ ଆଖି; ଏହା ବିନା ମୁଁ ପାଦେ ବି ଆଗକୁ ଚାଲିପାରିବି ନାହିଁ ।"

ରାମସ୍ୱାମୀ ମୁଣ୍ଡ ଉପରେ ଘୋଡ଼େଇହେବା ପାଇଁ ଅଖା ଖୋଜିଲା; କିନ୍ତୁ ସେ ଗୋଟିଏ ମାତ୍ର ଅଖା ଥିଲା ଯାହା ଧର୍ମାଧିକାରୀଙ୍କ ଘରେ ରହିଯାଇଥିଲା । ହେମା ଗୋଟିଏ ଚାଦର ଘୋଡ଼େଇ ହୋଇ ଶୋଇଥିଲା । ସେହି ଚାଦରକୁ ଟାଣି ନେଇ ମୁଣ୍ଡରେ ପକାଇ ସେ ତୀର ପରି ଅନ୍ଧକାର ମଧ୍ୟରେ ଛୁଟିଗଲା । ଧର୍ମାଧିକାରୀ ସେଠି କ୍ଷଣକ ପାଇଁ ଅଟକିଗଲେ ଓ ତାପରେ କବାଟ ବନ୍ଦ କରି ଘରଆଡ଼କୁ ଚାଲିଲେ । ଟିକି ହେମା ଥଣ୍ଡାରେ ଆହୁରି ଜାକିଜୁକି ହୋଇ ଶୋଇପଡ଼ିଲା ।

ମାନାପୁରମ୍‌ର ବୈଦ୍ୟ ରାମସ୍ୱାମୀର କଥା ଶୁଣି ଉତ୍ସୁକ ହୋଇଉଠିଲେ, ଭାବିଲେ କି ଏତେ ଭଲ ସୁଯୋଗ ହରାଇବାର ନୁହେଁ । ଯଦି ଏହି କାମରେ ସେ ସଫଳତା ଲାଭ କରନ୍ତି ତେବେ ପାଖ-ଆଖ ଦଶ ଖଣ୍ଡ ଗାଁରେ ତାଙ୍କର ନାଁ ହୋଇଯିବ । ବର୍ଷା ମଧ୍ୟ ବନ୍ଦ ହୋଇଯାଇଥିଲା । ସାଇକଲ ଚଢ଼ି ବାହାରିଲାବେଳେ ବୈଦ୍ୟ ମହାଶୟ କହିଲେ— "ରାମସ୍ୱାମୀ, ଏହି ଅଳ୍ପ କେତେକ୍ଷଣ ମଧ୍ୟରେ ମୁଁ ବାବୁଙ୍କ ଘରେ ପହଞ୍ଚିଯାଉଛି । ତମେ ଆସ୍ତେ ଆସ୍ତେ ପଛରେ ଆସିଯିବ ।" ସେ ପବନ ପରି ଉଡ଼ିଗଲେ ।

ରାମସ୍ୱାମୀ ଘରଆଡ଼କୁ ଚାଲିଲା । ତାର ମନ କପରି ଖାଲି ଖାଲି ଲାଗିଲା, କୌଣସି ଭାବନା ଉଠୁ ନ ଥିଲା, ଶରୀର ମଧ୍ୟ ଦୁର୍ବଳ ଓ ଥକ୍‌କା ଲାଗିଲା । ତାର ନିଜ ଉପରେ ଏପରି ଗୋଟିଏ ବୈରାଗ୍ୟ ଭାବ ଆସିବାକୁ ଲାଗିଲା, ଯାହା କି ସେ ନିଜେ ବୁଝିପାରୁ ନ ଥିଲା ।

ବର୍ଷା ତ ବନ୍ଦ ହୋଇଗଲା; କିନ୍ତୁ ବିଜୁଳି ମାରୁଥିଲା । ବିଲବାଡ଼ି ସବୁ ପାଣିରେ ଭରିଯାଇଥିଲା; ସମୁଦ୍ରପରି ମନେ ହେଉଥିଲା । ରାମସ୍ୱାମୀ ଅଧରାସ୍ତା ବାଟ ଛାଡ଼ି ବିଲ

ମଝିରେ ଗୃଲିବାକୁ ଲଗିଲ । ସେ ତା ନିଜ ବଗିଚ୍ଚ ପାଖରେ ପହଞ୍ଚିଥିଲ, ଏତିକି-ବେଳେ ଘଡ଼ଘଡ଼ି ମାରିଲ । ତାର କୁଡ଼ିଆ ଉପରେ ପଡ଼ିଥିବ ଲୁଚ ଗ୍ରାମସ୍ୱାମୀ ଦୌଡ଼ି-ଗଲ୍ଲ ।

"ହେମା, ହେମା" କହି ସେ ପାଟିକରି ଡାକୁଥାଏ । ଧର୍ମାଧିକାରୀଙ୍କର ନିଜ ବିଲ ଆଗରେ ଦେବୋତ୍ତର ଜମି ଥିଲା । ଧର୍ମାଧିକାରୀଙ୍କର ଖେତ କାଟଦେଇ ସେ ଯାଉଥିଲା । ରାସ୍ତାରେ କଣ୍ଟା ପଥର ନ ମାନି ସେ ଆଗକୁ ଦୌଡ଼ୁଥାଏ ଓ ବାଟ ମଧ୍ୟ ଭୁଲିଯାଇଥିଲା । ତାର ଖିଆଲ ମଧ୍ୟ ନ ଥିଲା ଯେ ସେହି ବିଲରେ ଗୋଟିଏ ବାମ୍ଫୀ ଅଛି । "ହେମା, ହେମା" ଡାକି ଡାକି ସେ ସେହି ବାମ୍ଫୀ ଭିତରେ ପଡ଼ିଗଲା । ତାର ଶେଷ ଡାକ ଓ ନିଶ୍ୱାସ ସେହି ବାମ୍ଫୀରେ ବିଲୀନ ହୋଇଗଲା ।

ତାପର ଦିନ ସକାଳୁ ଅଧିକାରୀଙ୍କ ଘରେ ପୁତ୍ର ଜନ୍ମ ହେଲା । ସେହି ସନ୍ଧ୍ୟାରେ ଗ୍ରାମସ୍ୱାମୀର ମୃତ୍ୟୁ ପାଇଁ ଗାଁରେ ପଞ୍ଚାୟତ ବସି ଆଲୋଚନା କଲେ । ଗାଁବାଲାଙ୍କ ସାଙ୍ଗରେ ଧର୍ମାଧିକାରୀ ମଧ୍ୟ ଗ୍ରାମସ୍ୱାମୀର ଶବ ସହିତ ଶ୍ମଶାନକୁ ଗଲେ । ନିଜେ ଉପସ୍ଥିତ ରହି କିୟା-କର୍ମ ସମ୍ପନ୍ନ କରାଇଲେ । ଦିନଯାକ ହେମା କାନ୍ଦୁଥିଲା । କାନ୍ଦି କାନ୍ଦି ସେ ଧର୍ମାଧିକାରୀଙ୍କ କାନ୍ଧରେ ହିଁ ଶୋଇପଡ଼ିଲା । ଗାଁଲୋକ ପରସ୍ପର ମଧ୍ୟରେ ବାରମ୍ବାର କୁହାକୁହି ହେଲେ ଯେ ଧର୍ମାଧିକାରୀଙ୍କର ଗଭୀର ଦୁଃଖ ହୋଇଛି ।

"ବାବୁ, ତାର ଦାନାପାଣି ସରିଗଲା, ସେ ଚାଲିଗଲା । ତାର ଓ ଆପଣଙ୍କର ଘନିଷ୍ଠ ସମ୍ପର୍କ ଥିଲା । ବର୍ତ୍ତମାନ ଏହି ଗ୍ରେଟ ଝିଅ ଆପଣଙ୍କ ପାଖରେ ପହଞ୍ଚିଗଲା, ବର୍ତ୍ତମାନ ତାର ଆଉ କିଛି ଆଶ୍ରା ନାହିଁ ।" ଏହି କଥା ଶ୍ମଶାନରେ କେହି କହିଥିଲା ।

"ଗ୍ରାମସ୍ୱାମୀ ନିଜ ପ୍ରାଣ ପର୍ଯ୍ୟନ୍ତ ଦେବାକୁ ପ୍ରସ୍ତୁତ ହେଉଥିବାଲା ବନ୍ଧୁ ଥିଲା; କିନ୍ତୁ ସେହି ସମସ୍ତ ବନ୍ଧନ ତାର ସାଙ୍ଗରେ ଶେଷ ହୋଇଯାଇଛି । ମମତାର ବନ୍ଧନ ବଢ଼ି-ଗଲେ ସେଥିରୁ ମୁକୁଳିବା କଷ୍ଟକର ହୁଏ । ଜୀବନ ବଡ଼ ଅସ୍ଥାୟୀ; ସେଥିରେ ଏହି ବନ୍ଧନ ଓ ସମ୍ବନ୍ଧ ମୁଁ ସ୍ୱୀକାର କରିପାରିବି ନାହିଁ ।" ଧର୍ମାଧିକାରୀ ବ୍ୟାଖ୍ୟାନ କଲେ ।

ପରେ କୌଣସି ଉଦାର ଲୋକଙ୍କ ସହଯୋଗରେ ହେମା ଅନାଥାଶ୍ରମରେ ପହଞ୍ଚି-ଗଲା । ଗାଁବାଲା ଗ୍ରାମସ୍ୱାମୀ ଓ ଧର୍ମାଧିକାରୀଙ୍କର ଘନିଷ୍ଠ ସମ୍ବନ୍ଧ ବିଷୟରେ ଏବେ ମଧ୍ୟ ଚର୍ଚ୍ଚା କରନ୍ତି । ଗ୍ରାମସ୍ୱାମୀର ଦୟନୀୟ ମୃତ୍ୟୁକଥା କେହି ଶୁଣନ୍ତି ବି ନାହିଁ ।

# ଲେଖକ ପରିଚୟ

## 1. ସ୍ୱର୍ଗୀୟ ତ୍ରିପୁରନେନି ଗୋପୀଚନ୍ଦ

ଆନ୍ଧ୍ର ପ୍ରାନ୍ତରେ ହେତୁବାଦର ପ୍ରଚାର କରିବା ପାଇଁ ପ୍ରସିଦ୍ଧ ରାମସ୍ୱାମୀ ଚୌଧୁରୀଙ୍କର ସୁପୁତ୍ର, ଗୋପୀଚନ୍ଦ ଜମିଦାରଙ୍କର ପୁତ୍ର ଥିଲେ । ଏହାଙ୍କ ଲିଖିତ ପ୍ରସିଦ୍ଧ ଉପନ୍ୟାସ 'ଅସମର୍ଥୁଂନି ଜୀବ ଯାତ୍ରା' ଜଣେ ହେତୁବାଦୀ ବ୍ୟକ୍ତିଙ୍କର ଜୀବନ-ଚରିତ୍ର ଅଟେ । 'ପଣ୍ଡିତ ପରମେଶ୍ୱର ଶାସ୍ତ୍ରୀ ବିଲୁନାମା' ନାମକ ଉପନ୍ୟାସ ଉପରେ ତାଙ୍କୁ ମରଣୋ-ପରାନ୍ତ ସାହିତ୍ୟ ଏକାଡେମୀ ପୁରସ୍କାର ମିଳିଥିଲା । କିଛି ସମୟ ପାଇଁ ସେ ଫିଲ୍ମ-ଉଦ୍ୟୋଗରେ କାମ କରିଥିଲେ । ଲେଖକ ଗୋପୀଚନ୍ଦଙ୍କର ଜୀବନରେ ସାହିତ୍ୟିକ ସାଧନା ଏବଂ ସତ୍ୟର ଅନୁସନ୍ଧାନ ଦୁଇଟିର ସମାଗମ ଦେଖାଯାଏ ।

ଏହି ସଂକଳନରେ ସମ୍ମିଳିତ ଏହାଙ୍କର 'ମମତା' ଶୀର୍ଷକ କାହାଣୀ କୃଷୀ ମନରେ ନିଜ ଜମି ପାଇଁ ରହିଥିବା ମମତାକୁ ଅତ୍ୟନ୍ତ ସୂକ୍ଷ୍ମଭାବେ ଚିତ୍ରିତ କରୁଅଛି ।

## 2. ପାଲଗୁମ୍ମି ପଦ୍ମରାଜୁ

"ଜୀବନର ଅଧ୍ୟୟନ କରିବା ନିମନ୍ତେ ଆମକୁ କୌଣସି ନା କୌଣସି 'ଇଜମ୍' ( ism ) ଆକର୍ଷିତ କରିଥାଏ ନିଶ୍ଚୟ । ଆମ ଯୁଗର ଲେଖକ କିଛି ନା କିଛି 'ଇଜମ୍'ର ବନ୍ଧନରେ ପଡ଼ିଯାଇଛନ୍ତି । ଅତୀତର ଶୋଭା ବା ପୁରାତନ ଆଡ଼ମ୍ବରଗତ ପିଢି ପାଇଁ ଯେତିକି ଉତ୍ତେଜକ ଥିଲା, ସେତିକି ଆମମାନଙ୍କ ପାଇଁ ହୋଇପାରିବ ନାହିଁ । ରାଷ୍ଟ୍ରୀୟତାର ବିରୋଧୀ ଆମେ ନୋହୁଁ; କିନ୍ତୁ ତାକୁ ବିଶେଷ ଆରାଧନା କରିବା ସ୍ଥିତିରେ ମଧ୍ୟ ଆମେ ନାହୁଁ । ପରମ୍ପରାଦ୍ୱାରା ନିରୂପିତ ଏକାରକମର ବ୍ୟକ୍ତିମାନଙ୍କଠୁଁ ଆମର ମନ ଓହରିଗଲାଣି । ମାନବତା ଓ ମନୁଷ୍ୟର ବ୍ୟକ୍ତିତ୍ୱକୁ ଆମେ ମହତ୍ତ୍ୱ ଦେଉଥାଉ । ଜାତି, ଧର୍ମ ଆଦି କଥାଗୁଡ଼ିକୁ ଆମେ କିଛି ବିଶେଷ ମହତ୍ତ୍ୱ ଦେଉନାହିଁ । ସେଥିପାଇଁ ସମ୍ଭବ ହୋଇପାରେ ଯେ ପାଠକ ଆମ ବିଷୟରେ ଅବଗତ ହୋଇ ସେଥିରେ ତାଦାତ୍ମ୍ୟ ସ୍ଥାପନ କରିବାରେ କଷ୍ଟ ଅନୁଭବ କରିପାରନ୍ତି ।" ଏହା ପଦ୍ମରାଜୁଙ୍କର କହିବାର କଥା ।

ଏହାଙ୍କର 'ଗାଲିବାନ' ( ତୋଫାନ ) ଶୀର୍ଷକ କାହାଣୀକୁ 'ନ୍ୟୁୟର୍କ ହେରାଲଡ୍ ଟ୍ରିବ୍ୟୁନ୍' ପତ୍ରିକାଦ୍ୱାରା ଆୟୋଜିତ 'ବିଶ୍ୱ କାହାଣୀ ପ୍ରତିଯୋଗିତା'ରେ ଦ୍ୱିତୀୟ ପୁରସ୍କାର ମିଳିଥିଲା । ସେ ତେଲୁଗୁ କାହାଣୀକୁ ଅନ୍ତର୍ଜାତୀୟ ଯଶ ପ୍ରଦାନ କରିଥିଲେ । ନାଟ୍ୟକାର ଓ ଫିଲ୍ମ ଲେଖକ ହିସାବରେ ଏହାଙ୍କର ବିଶେଷ ଖ୍ୟାତି ଅଛି । ଏହାଙ୍କର

କାହାଣୀଗୁଡ଼ିକ ଆନ୍ଧ୍ର ଜୀବନର ପ୍ରକୃତ ସ୍ୱରୂପ ଅଟେ । ମାନବ-ମନର ବିଶ୍ଳେଷଣ ଓ କାହାଣୀ କହିବାର କୌଶଳ ପାଠକଙ୍କୁ ଆଶ୍ଚର୍ଯ୍ୟ କରିଦେଇଥାଏ ।

ପ୍ରସ୍ତୁତ କାହାଣୀ 'ନୌକା-ଯାତ୍ରା'ରେ ନିଜ ସ୍ୱାମୀଠାରୁ ପୀଡ଼ିତ କୌଣସି ବର୍ଗ-ବିଶେଷର ସ୍ତ୍ରୀଲୋକର ପତି ପ୍ରତି ଅନୁରାଗର ବୈଚିତ୍ର୍ୟ ଚମତ୍କାର ଭାବରେ ଚିତ୍ରିତ ହୋଇଅଛି । ଏହି କାହାଣୀଟି ପଢ଼ିଲାବେଳେ ଏପରି ଲାଗେ କି ଆମେ ମଧ୍ୟ ନୌକାର ଛାତ ଉପରେ ବସି ପାଣିରେ ପହଁରିଯାଉଛୁ ।

## 3. ଚଲମ୍

ଶ୍ରୀ ଗୁଡ଼ିପାଟି ଭେଙ୍କଟ ଚଲମ୍ ତେଲୁଗୁ ସାହିତ୍ୟର ଜଣେ ଉଚ୍ଚ ଲେଖକ ଅଟନ୍ତି । ନିରର୍ଥକ ଆଚାର-ବିଚାରରେ ସଢ଼ି କରି ପଡ଼ିରହିଥିବା ଏହି ସମାଜ ଉପରେ ଚଲମ୍‌ଙ୍କର କାହାଣୀଗୁଡ଼ିକ ଚାବୁକ୍ ପ୍ରହାର ସମାନ । ଗୋଟାଏ ସମୟ ଥିଲା ଯେତେବେଳେ ଲୋକେ ଭାବୁଥିଲେ କି ଚଲମ୍‌ଙ୍କର କାହାଣୀ ପଢ଼ିଲେ ସ୍ତ୍ରୀଲୋକମାନଙ୍କର ବିଚାରଧାରା ଦୂଷିତ ହୋଇଯାଏ ଏବଂ ସେହି କାରଣରୁ ଚଲମ୍‌ଙ୍କର ରଚନାଗୁଡ଼ିକ ଜଳାଇ ଦିଆଯାଉ-ଥିଲା । ପରମ୍ପରା, ନୀତି, ନିୟମ—ସମସ୍ତ ବିରୁଦ୍ଧରେ ଚଲମ୍ ପ୍ରତିବାଦ ଉଠାଇଥିଲେ । ନାରୀ ତାଙ୍କ ପାଇଁ ଆରାଧ୍ୟ ଥିଲେ । ଅତିବାସ୍ତୁପରେ ଚଲମ୍‌ଙ୍କର ବିଶ୍ୱାସ ଯେ ନାରୀର 'ସେକ୍‌ସ'ରେ ସ୍ୱଚ୍ଛନ୍ଦତା ଥିବା ଉଚିତ । ଆଜି ସମାଜରେ ସ୍ତ୍ରୀର ଦଶାକୁ ସହାନୁଭୂତି ସହ ସମୀକ୍ଷା କରି ଚଲମ୍ ଗୋଟିଏ ମହାନ୍ ବିଚାର-କ୍ରାନ୍ତିର ପ୍ରବର୍ତ୍ତକ ହେଲେ । କାହାଣୀଗୁଡ଼ିକ ଛଡ଼ା 'ମ୍ୟୁଜିଂଗ', 'ସ୍ତ୍ରୀ', 'ବିଡ୍‌ଡ଼ିଲ ଶିକ୍ଷଣ' (ପିଲାପାଳନ) ଆଦି ବିଷୟରେ ମଧ୍ୟ ସେ ଲେଖିଛନ୍ତି । 'ମୈଦାନ ବ୍ରାହ୍ମଣୀ ଜନ୍ମ', 'ଅର୍ମୀନା', 'ଅରୁଣ', 'ହ୍ୱିଂପୀ କନ୍ୟା' ଆଦି ଏହାଙ୍କର ପ୍ରସିଦ୍ଧ ଉପନ୍ୟାସ ଅଟେ ଏବଂ 'ପୁରୁଷ୍', 'ଶଶାଙ୍କ' ଆଦି ପ୍ରସିଦ୍ଧ ନାଟକ ଅଟେ ।

ସମାଲୋଚକମାନଙ୍କ କହିବାରେ ଚଲମ୍ ତତ୍ତ୍ୱଜ୍ଞାନୀ ନୁହନ୍ତି; କିନ୍ତୁ ଦର୍ଶନ ଦିଗରେ ଉନ୍ମୁକ୍ତ କଳ୍ପନାଜୀବୀ ଅଟନ୍ତି । ସଂପ୍ରତି ଇଏ ଛିରୁବଣ୍ଣାମଲୈର ରମଣାଶ୍ରମରେ ରହୁଛନ୍ତି । ଚଲମ୍‌ଙ୍କର ଗବେଷଣାର ଏହା ଚରମ ଦଶା ଅଟେ । ଶିକ୍ଷା ବିଭାଗରେ ଇନ୍‌ସପେକ୍ଟର ଓ ପ୍ରଶିକ୍ଷଣ ବିଦ୍ୟାଳୟଗୁଡ଼ିକରେ ଶିକ୍ଷକତା କରି ଅବସରପ୍ରାପ୍ତ ହୋଇଛନ୍ତି ।

ପ୍ରସ୍ତୁତ କାହାଣୀ 'ଦୋଷଗୁଣ'ରେ 'ସେକ୍‌ସ୍' ହେତୁ ସର୍ବନାଶର ଶିକାର ହୋଇଥିବା ସ୍ତ୍ରୀର ଦମନୀୟ, କଠୋର, ସଜୀବ ଚିତ୍ରଣ କରାଯାଇଅଛି ।

## 4. ସ୍ୱର୍ଗୀୟ ବୁଚିବାବୁ

ପାଶ୍ଚାତ୍ୟ ସାହିତ୍ୟ ସମ୍ପର୍କରେ ପ୍ରେରଣା ପାଇ ଆଧୁନିକ ତେଲୁଗୁର କାଳ୍ପନିକ ସାହିତ୍ୟକୁ ନୂଆ ଦିଗ ପ୍ରଦାନ କରି ତାକୁ ସମୃଦ୍ଧିଶାଳୀ କରାଇବାରେ ମନସ୍ୱୀ

ଲେଖକମାନଙ୍କ ମଧ୍ୟରେ ବୁଚିବାବୁ ପ୍ରଧାନ ଅଟନ୍ତି । ମାନବ ମନର ଗଭୀରତା ମଧ୍ୟରେ ପ୍ରବେଶ କରି ତାହା ସୂକ୍ଷ୍ମଦୃଷ୍ଟିରେ ଦେଖିବାର ପ୍ରତିଭା ଏହାଙ୍କଠାରେ ଥିଲା । ଯେପରି କୌଣସି ଚିତ୍ରକାର ଉପଯୁକ୍ତ ରଙ୍ଗ ଓ ଭଲ ତୁଳୀଦ୍ୱାରା ଈପ୍ସିତ ବସ୍ତୁର ବିଶେଷ ଚିତ୍ର ଆଙ୍କି ଥାଏ, ସେହିପରି ବୁଚିବାବୁ ଦୃଢ଼ ଓ ସମର୍ଥ ଶବ୍ଦ ପ୍ରୟୋଗ କରି ଘଟଣାଗୁଡ଼ିକର ବୈଚିତ୍ର୍ୟ ବର୍ଣ୍ଣନା କରିବାରେ କୁଶଳୀ ଅଟନ୍ତି । ଏହି କଥା ସିଦ୍ଧ କରିବା ପାଇଁ ତାଙ୍କର କାହାଣୀଗୁଡ଼ିକ ଓ ତେଲୁଗୁ ଉପନ୍ୟାସ ସାହିତ୍ୟର ଅଭିନ୍ନ ରତ୍ନ କହିବାଯୋଗ୍ୟ 'ଚିବରକୁ ମିଗିଲେଦି' (ଶେଷରେ ଯାହା ବଞ୍ଚିଯାଏ) ନାମକ ଉପନ୍ୟାସକୁ ଦୃଷ୍ଟାନ୍ତରୂପେ ପ୍ରସ୍ତୁତ କରାଯାଇପାରେ । 'ବୁଚିବାବୁ'ଙ୍କର ପ୍ରକୃତ ନାମ ଅଟେ –ଶିବରାଜୁ ଭେଙ୍କଟ ସୁବ୍ବାରାଓ । ସେ କିଛି ଦିନ ଇଂରାଜୀ ଲେକ୍‌ଚରର ରୂପେ ଏବଂ ଅନ୍ତିମ ସମୟ ପର୍ଯ୍ୟନ୍ତ ଆକାଶବାଣୀରେ କାର୍ଯ୍ୟ କରିଥିଲେ । ସେ କେତେଗୁଡ଼ିଏ ନାଟକ ମଧ୍ୟ ଲେଖିଥିଲେ । 'ସେକ୍‌ସ୍‌ପିଅର୍ ସାହିତ୍ୟ ପରାମର୍ଶ' ନାମକ ତାଙ୍କର ଆଲୋଚନାତ୍ମକ ରଚନା ଆନ୍ଧ୍ର ପ୍ରଦେଶ ସାହିତ୍ୟ ଏକାଡ଼େମୀ ତରଫରୁ ପୁରସ୍କୃତ ହୋଇଥିଲା ।

ସ୍ତ୍ରୀ ଓ ପୁରୁଷ—ଚମ୍ବକ ଓ ଲୁହା ଏହି ଦୁଇଟି ମଧ୍ୟରେ ଯେଉଁ ଆକର୍ଷଣ ହୋଇଥାଏ, ତାର ଅନୁଶୀଳନ ପ୍ରସ୍ତୁତ କାହାଣୀ 'ପଶ୍ଚାତ୍ତାପ ନାହିଁ'ରେ କରାଯାଇଛି । ଏହି କାହାଣୀରେ ବିଚିତ୍ର ମନୋବୈଜ୍ଞାନିକ ବିଶ୍ଳେଷଣ ବୁଚିବାବୁଙ୍କର ରଚନା-ପଦ୍ଧତିର ସୁନ୍ଦର ନମୁନା ଅଟେ ।

## 5. କୋଡ଼ବଟିଗଂଟି କୁଟୁମ୍ବ ରାଓ

ଶ୍ରୀ କୋଡ଼ବଟିଗଂଟି କୁଟୁମ୍ବ ରାଓ ଏହା ସିଦ୍ଧ କରିଦେଇଛନ୍ତି ଯେ କାହାଣୀ ଲେଖିବା କିଛି 'ବ୍ରହ୍ମବିଦ୍ୟା' ନୁହେଁ; ବରଂ ତାହା ବଡ଼ ସହଜ କାମ ଅଟେ । ତାଙ୍କର ସମସ୍ତ କାହାଣୀଗୁଡ଼ିକରେ ମଧ୍ୟବର୍ଗ ଲୋକଙ୍କର ଜୀବନ ପ୍ରତିବିମ୍ବିତ ହୋଇଥାଏ । ତେଲୁଗୁ ପ୍ରାନ୍ତରେ ମଧ୍ୟବର୍ଗ ପରିବାରଗୁଡ଼ିକଙ୍କ ଆଗରେ ଉପସ୍ଥିତ ହେଉଥିବା ସମସ୍ୟାଗୁଡ଼ିକୁ ସେ ତାଙ୍କ କାହାଣୀଗୁଡ଼ିକର ଇତିବୃତ୍ତ କରିଥାଆନ୍ତି । ଯୁବକ ଓ ଯୁବତୀମାନଙ୍କର ପ୍ରେମକଥାଠାରୁ ନେଇ ବର୍ଗ-ସଙ୍ଘର୍ଷ ଯାଏ ସମସ୍ତ ପ୍ରକାରର ସମସ୍ୟାଗୁଡ଼ିକ ବିଷୟରେ ସେ ନିଜର ହାତ ଚଳାଇଛନ୍ତି । ତାଙ୍କର ରଚନାଗୁଡ଼ିକର ସର୍ବାଧିକ ବିଶେଷତ୍ୱ ହେଉଛି ତାଙ୍କର ଅସାଧାରଣ ବର୍ଣ୍ଣନଶୀଳତା । ଯେତେ କଠିନ କାହାଣୀ ହୋଇଥାଉ ପଛକେ ତାଙ୍କ ପାଇଁ ତା ଅତି ସହଜ ହୋଇଥାଏ । ରାଜନୈତିକ କ୍ଷେତ୍ରରେ ସେ ମାର୍କସିଷ୍ଟ ଚରମ୍ ପନ୍ଥୀ ବିଚାରଧାରାକୁ ସମର୍ଥନ କରନ୍ତି । ଅନେକ ଭାରତୀୟ ଭାଷାଗୁଡ଼ିକରେ ପ୍ରକାଶିତ ହେଉଥିବା 'ଚନ୍ଦା ମାମା' ପତ୍ରିକାର ସମ୍ପାଦକମଣ୍ଡଳୀରେ କାମ କରିଆଇ ସେ ବାଳସାହିତ୍ୟ ରଚନାରେ ମଧ୍ୟ ଯଥେଷ୍ଟ ଯୋଗଦାନ କରିଛନ୍ତି । ତେଲୁଗୁରେ 'ସୁଲଭ ବିଜ୍ଞାନମ୍' ନାମରେ ବିଜ୍ଞାନର ଅନେକ ଗ୍ରନ୍ଥଗୁଡ଼ିକୁ ସେ ସାଧାରଣ ପାଠକଙ୍କ ପାଇଁ

ସୁବୋଧ ଭାଷାରେ ଲେଖିଛନ୍ତି । ଆଧୁନିକ ତେଲୁଗୁ ସାହିତ୍ୟର ପ୍ରଖ୍ୟାତ ସମାଲୋଚକମାନଙ୍କ ମଧ୍ୟରେ ସେ ପ୍ରମୁଖ ଅଟନ୍ତି । ତାଙ୍କର ପ୍ରସିଦ୍ଧ ଲଘୁ ଉପନ୍ୟାସ 'ଚାରି' ଉପରେ ଆନ୍ଧ୍ର ପ୍ରଦେଶ ସାହିତ୍ୟ ଏକାଡେମୀର ପୁରସ୍କାର ମିଳିଥିଲା । ସମାଜରେ ଉଚ୍ଚ ଜାତିର ସ୍ତ୍ରୀ, ନିମ୍ନ ଜାତିର ପୁରୁଷ ସହ ବିବାହ କଲେ ତା ଦ୍ୱାରା ନିମ୍ନ ଜାତିର ପୁରୁଷର ହିଁ ହାନି ହୁଏ, ଏହି ତଥ୍ୟକୁ ସ୍ପଷ୍ଟ କରୁଥିବା କାହାଣୀ ହେଉଛି—'ପାବନି ପରିଣୟ ।'

## 6. ରାଚକୋଣ୍ଡ ବିଶ୍ୱନାଥ ଶାସ୍ତ୍ରୀ

ଶାସ୍ତ୍ରୀଜୀଙ୍କର ବ୍ୟବସାୟ ଓକିଲାତି ଅଟେ; କାହାଣୀଗୁଡ଼ିକରେ ମଧ୍ୟ ସେ ଓକିଲାତି କରନ୍ତି । ଆଜିର ସମାଜରେ ହେଉଥିବା ଉଚ୍ଚ-ବର୍ଗର ଅତ୍ୟାଚାର ଓ ଅନ୍ୟାୟର ଶିକାର ହୋଇ ଶୋଷିତ ହେଉଥିବା ଦୀନ-ହୀନ ଜନତାଙ୍କ ପାଇଁ ସେ ତାଙ୍କର ରଚନାଗୁଡ଼ିକରେ ଓକିଲାତି କରନ୍ତି ଏବଂ ଆର୍ଥିକ ତଥା ସାମାଜିକ ଦୃଷ୍ଟିରୁ ସମୁଚିତ ନ୍ୟାୟର ସମର୍ଥନ କରନ୍ତି । ସମାଜର ନିମ୍ନତମ ସ୍ତରଗୁଡ଼ିକରେ ଭୟରେ ସମୟ ବିତାଉଥିବା ଏହି ଦଳିତ ଜୀବଗୁଡ଼ିକଙ୍କ ସମସ୍ୟାଗୁଡ଼ିକୁ ଏବଂ ତାଙ୍କର ଦୁଃଖ-ଯନ୍ତ୍ରଣାକୁ ତାଙ୍କର ଭାଷାଦ୍ୱାରା ହୃଦୟସ୍ପର୍ଶୀ କରି ଭଲ ଭାଷାରେ ପ୍ରକଟ କରି ଉକ୍ତ ଜୀବନ ପ୍ରତି ପାଠକଙ୍କର ସହାନୁଭୂତି ଉତ୍ପନ୍ନ କରିଲା ପରି ପ୍ରତିଭା ରା. ବି. ଶାସ୍ତ୍ରୀଙ୍କ ପାଖରେ ମିଳେ । ତାଙ୍କର ଲେଖା ଅତ୍ୟନ୍ତ ନିପୁଣ ଓ ସୂକ୍ଷ୍ମ ଅଟେ । ନକଲ କରାଯାଇପାରେ; କିନ୍ତୁ ଅନୁକରଣ କରିବା ସାଧ୍ୟାତୀତ । ଶାସ୍ତ୍ରୀଜୀ କୁହନ୍ତି, "ମୁଁ ଭାବୁଛି ପ୍ରତ୍ୟେକ ଲେଖକର ଏହି କଥା ଉପରେ ବିଚାର କରିବା ଉଚିତ ଯେ ତାର ରଚନାଦ୍ୱାରା କୌଣସି ଭଲ କଥାରେ ହାନି ପହଞ୍ଚୁଛି କିମ୍ବା କୌଣସି ଖରାପ କାମକୁ ପ୍ରେରଣା ମିଳୁଛି । ମୋ ମତରେ ଯେକୌଣସି ଭଲ କାମରେ କ୍ଷତି ହେବା ଉଚିତ ନୁହେଁ; ନା କୌଣସି ଖରାପ କାମକୁ ପ୍ରେରଣା ମିଳିବା ଉଚିତ ନୁହେଁ ।"

ତେଲୁଗୁ ଉପନ୍ୟାସ-ଜଗତରେ ସଫଳତା-ପ୍ରାପ୍ତ ପ୍ରୟୋଗାତ୍ମକ ରଚନାଗୁଡ଼ିକ ମଧ୍ୟରେ ତାଙ୍କର 'ଅଲ୍ପଜୀବୀ' ନାମକ ଉପନ୍ୟାସ ଉଲ୍ଲେଖଯୋଗ୍ୟ ଅଟେ । ଜେମ୍ସ୍ ଜୟସ୍‌ଙ୍କର 'ଚୈତନ୍ୟଧାରା' ପରମ୍ପରାରେ ତେଲୁଗୁରେ ବାହାରିଥିବା ପ୍ରଥମ ଉପନ୍ୟାସ 'ଅଲ୍ପଜୀବୀ' ଅଟେ । ଜେମ୍ସ୍ ଜୟସ୍‌ଙ୍କର ରଚନାଶିଳ୍ପକୁ ପ୍ରଥମ କରି ତେଲୁଗୁ କାହାଣୀଗୁଡ଼ିକରେ ପ୍ରୟୋଗ କରିବାରେ ଶ୍ରେଷ୍ଠ ସ୍ଥାନ ମଧ୍ୟ ତାଙ୍କୁ ହିଁ ପ୍ରାପ୍ତ ହୋଇଥିଲା । ଶରାପ ବନ୍ଦୀ (ମଦ ବନ୍ଦ) ଯୋଗୁ ଆନ୍ଧ୍ରରେ ଯେଉଁ ବିପରୀତ ପରିଣାମ ହୋଇଥିଲା ତାକୁ ଅଦ୍ଭୁତ କୌଶଳତା ସହ ବର୍ଣ୍ଣନା କରିଥିବା ରଚନା ତାଙ୍କର 'ଆରୁ ସାରା କଥଲୁ' ଅଟେ; ଯାହାକି ତେଲୁଗୁ କାହାଣୀ-ସାହିତ୍ୟରେ ଏକ ଅଦ୍ଭୁତ କ୍ରାନ୍ତିର ସୂତ୍ରପାତ କରିଥିଲା ଏବଂ ଲୋକଙ୍କୁ ଆଉ ଥରେ ଏହି ସମସ୍ୟା ଉପରେ ଚିନ୍ତା

କରିବାକୁ ବାଧ୍ୟ କରିଦେଇଥିଲା । ଅଧିକାରର ମାଦକତା ସହ ଧନାନ୍ଧତା ମଧ୍ୟ ମିଳିଗଲେ ଅଧିକାଂଶ ବ୍ୟକ୍ତିମାନେ କେତେ ଅମାନୁଷିକ କାର୍ଯ୍ୟ କରିପାରନ୍ତି, ତାହା ତାଙ୍କର 'ନିଜମ୍' (ସତ୍ୟତା) ନାମକ ନାଟକରେ ସ୍ପଷ୍ଟ କରିଦିଆଯାଇଛି । ତାଙ୍କର କଥା-ସଂକଳନକୁ ଆନ୍ଧ୍ର ପ୍ରଦେଶ ସାହିତ୍ୟ ଏକାଡେମୀର ପୁରସ୍କାର ମିଳିଥିଲା ।

ପ୍ରସ୍ତୁତ କାହାଣୀ 'ଆମ୍ବ କ ପେଡ଼' ମାନବ ପ୍ରକୃତିର ବିଭିନ୍ନ ଭାବନାଗୁଡ଼ିକୁ ଆକର୍ଷକଭାବେ ଚର୍ଚ୍ଚିତ କରୁଅଛି ।

## 7. ସ୍ୱର୍ଗୀୟ ଦେବର କୋଣ୍ଡ ବାଲ ଗଙ୍ଗାଧର ତିଲକ

ଶ୍ରୀ ତିଲକ ମୁଖ୍ୟତଃ କବି ଥିଲେ । ଆନ୍ଧ୍ରରେ ପ୍ରଚଳିତ 'ଭାବ କବିତା' ଏବଂ ଅଭ୍ୟୁଦୟ (ପ୍ରଗତି) କବିତା ମଧ୍ୟରେ ତିଲକ ସେତୁରୂପେ କାମ କରିଥିଲେ । ତା ପରେ ପ୍ରଚ୍ଛରରେ ଆସିଥିବା 'ବଚନ (ଗଦ୍ୟ) କବିତା'କୁ ମଧ୍ୟ ନିଜ ରଚନା-ଗୁଡ଼ିକରେ ସମ୍ପୃକ୍ତ କରିଥିଲେ । 'ଅମୃତମ୍ କୁରିସିନ ରାତ୍ରି' (ପୀୟୁଷବର୍ଷିଣୀ ରଜନୀ) ନାମକ ତାଙ୍କର କାବ୍ୟ ସଂକଳନକୁ ସାହିତ୍ୟ ଏକାଡେମୀ ମରଣୋପରାନ୍ତ ପୁରସ୍କାର-ଦ୍ୱାରା ସମ୍ମାନିତ କରିଅଛି । କାହାଣୀ ଶିଳ୍ପରେ ଉଚ୍ଚକୋଟୀର ପାଶ୍ଚାତ୍ୟ ଲେଖକଙ୍କର ସ୍ତରକୁ ପ୍ରାପ୍ତ କରିଥିବା ଭଳି ଦକ୍ଷତା ତାଙ୍କ କାହାଣୀଗୁଡ଼ିକରେ ମଧ୍ୟ ମିଳେ । ଅସାଧାରଣ ଦୃଷ୍ଟିକୋଣରୁ ଜୀବନକୁ ବିଶ୍ଳେଷଣ କରି ଅସମ୍ଭବ ପରିସ୍ଥିତି-ଗୁଡ଼ିକୁ—ତାହା ପରମ୍ପରାନୁମୋଦିତ ହୋଇଥାଉ ବା ନ ହୋଇଥାଉ—ସହୃଦୟତା ସହିତ ବୁଝାଇ ସେ ପାଠକଙ୍କର ହୃଦୟରେ ସ୍ପନ୍ଦନ ସୃଷ୍ଟି କରିଥାନ୍ତି ।

'ଆଶା କାରଣ' ଶୀର୍ଷକ ଏହି କାହାଣୀକୁ କବିଙ୍କ ଲେଖନୀରୁ ପ୍ରସ୍ତୁତ କାହାଣୀ କହିବା ନା ହୃଦୟକୁ ନଚାଇ ଦେଉଥିବା କାବ୍ୟଖଣ୍ଡ କହିବା, ନା ଆଉ କିଛି କହିବା ?

## 8. ଶ୍ରୀରଙ୍ଗି ସୋମୟାଜୁଲୁ

ତେଲୁଗୁ ଲେଖକଙ୍କ ମଧ୍ୟରେ 'ଶ୍ରୀ. ସୋ' ନାମରେ ପ୍ରଖ୍ୟାତ, ଶ୍ରୀ ଶ୍ରୀରଙ୍ଗି ସୋମୟାଜୁଲୁ ଚେଖୋଭ କଥାଶିଳ୍ପୀ ଅଟନ୍ତି । ସେ ଅଧିକ ସଂଖ୍ୟାରେ କାହାଣୀ ଲେଖିନାହାନ୍ତି । ତେବେ ବି ସେ ଯେଉଁ କାହାଣୀ ଲେଖିଛନ୍ତି, ସେଗୁଡ଼ିକ ଗୁଣ-ଗୌରବରେ ଉଚ୍ଚକୋଟୀର ବୋଲି କୁହାଯାଇପାରେ । ବସ୍ତୁହୋଇଥିବା ଇତିବୃତ୍ତ ପରି ସେ ପ୍ରତ୍ୟେକ କାହାଣୀରେ ଅଲଗା ଅଲଗା ଭାବ ଓ ଶିଳ୍ପ ପ୍ରୟୋଗ କରି-ଥାଆନ୍ତି ।

ତାଙ୍କର ସବୁ କାହାଣୀଗୁଡ଼ିକ ଅଲଗା ଅଲଗା ଢଙ୍ଗରେ ଲେଖା । ଗୋଟାଏ ସାଙ୍ଗରେ ଅନ୍ୟ କାହାଣୀର ସାମଞ୍ଜସ୍ୟ ନାହିଁ । ତାଙ୍କ ମତରେ ସାମାଜିକ ପ୍ରୟୋଜନ ବିନା କାହାଣୀ ଲେଖିବା ନିରର୍ଥକ । ସାମାଜିକ ନ୍ୟାୟ ପାଇଁ ପ୍ରୟାସ କରିବା ତାଙ୍କର

ପରିଚ୍ଚ ଥିଲା । କୌଣସି ଆଦର୍ଶ ବା ସିଦ୍ଧାନ୍ତର ସ୍ପଷ୍ଟ ପ୍ରବୃତ୍ତିଦ୍ୱାରା କାହାଣୀର ଶିଳ୍ପ-ସୌନ୍ଦର୍ଯ୍ୟକୁ ନଷ୍ଟ କରିଦେବା ସେ ଏକଦମ୍ ସ୍ୱୀକାର କରି ପାରନ୍ତି ନାହିଁ । ସେ ଗୃହୀତ କାହାଣୀଗୁଡ଼ିକ ନୈସର୍ଗିକ, ସ୍ୱାଭାବିକ ଏବଂ ଗୁଣଯୁକ୍ତ ହୋଇଥାଏ । ରା. ସୋ.ଙ୍କର ଗୃହୀତ ପର କାହାଣୀଗୁଡ଼ିକ, ଯେକୌଣସି ଭାବେ ପରୀକ୍ଷା କରି ଦେଖାଯାଏ ତ, ବିଶ୍ୱର ଯେକୌଣସି ଭାଷାର କାହାଣୀଗୁଡ଼ିକର ସମ୍ମୁଖୀନ ହୋଇ-ପାରିବ । ସାର୍ବଜନୀନତା ହିଁ ଏହାର କାରଣ ।

9. ପେଦ୍ଦଭୋଟ୍ଲ ସୁବ୍ରମଣ୍ୟ

ଯୁବା ପିଢ଼ିର କାହାଣୀକାରମାନଙ୍କ ମଧ୍ୟରେ ଶ୍ରୀ ସୁବ୍ରମଣ୍ୟଙ୍କର ରଚନା-ପଦ୍ଧତିରେ ଯଥେଷ୍ଟ ବିଶେଷତ୍ୱ ଅଛି ବୋଲି ଧରାଯାଏ । ସାଧାରଣ ଜୀବନକୁ ସୂକ୍ଷ୍ମ ଭାବେ ନିରୀକ୍ଷଣ କରି ସେ ତାଙ୍କର କଥାବସ୍ତୁ ସେଥିରୁ ବାଛନ୍ତି ଏବଂ ମଣିଷଙ୍କର ଆଚାର-ବ୍ୟବହାର ଓ ଭାବନାକୁ ବଡ଼ ଅଦ୍ଭୁତରୂପେ ଚିତ୍ରିତ କରନ୍ତି । କାହାଣୀ ବିନା ଆଡ଼ମ୍ବରରେ, ଏକବାରେ ସନ୍ନ୍ୟାସୀ ପରି ଲାଗେ; କିନ୍ତୁ ଶେଷରେ ସେ ପାଠକଙ୍କ ମନରେ ନିଜର ଛାପ ଅଙ୍କିତ କରିଦିଏ । ସୁବ୍ରମଣ୍ୟ ପ୍ରକୃତ ଅର୍ଥରେ କଥାଶିଳ୍ପୀ ଅଟନ୍ତି ।

ଏହି ସଙ୍କଳନରେ ସନ୍ନିବିଷ୍ଟ କାହାଣୀ 'ମୃତ୍ତିଗନ୍ଧିତ' ପୁରୋହିତ କାର୍ଯ୍ୟକୁ ଜୀବିକାର ସାଧନ କରିଯାଇଥିବା ବ୍ରାହ୍ମଣର ଜୀବନ ସାଙ୍ଗରେ ସମ୍ବନ୍ଧିତ ଅଟେ । ଶବ କାନ୍ଧେଇ ନେଲାବାଲା, ଅନ୍ତ୍ୟେଷ୍ଟି କ୍ରିୟା କରାଇଲାବାଲା ଓ କ୍ଷୁଦ୍ର ଦାନ ଗ୍ରହଣ କରୁଥିବା କେତେକ ଲୋକ ଅଛନ୍ତି, ଯାହାଙ୍କର ପରସ୍ପର ମଧ୍ୟରେ ସଦ୍ଭାବ ନ ଥାଏ । ଏହିପରି ହେୟ ନିକୃଷ୍ଟ ଜୀବନ ମଧ୍ୟ କୌଣସି ମହାନ୍ ଉଦ୍ଦେଶ୍ୟ ପୂରଣ କରିବା ପାଇଁ ଉତ୍ସର୍ଗୀକୃତ ହୋଇଯିବା ଏହି କାହାଣୀର ବିଶେଷତ୍ୱ । ଜୀବନ ଯେତେ ନିକୃଷ୍ଟ ହଉ ନା କାହିଁକି, କୌଣସି ଆଶା ଧ୍ରୁବତାରା ହୋଇ ସମେଶନ୍‌କୁ ଆଗକୁ ବାଟ କଢ଼ାଉଛି । ଏହିପରି ଲୋକଙ୍କ ଜୀବନ ଭାରତରେ ସର୍ବତ୍ର ପ୍ରାୟ ଏକାପରି ହୋଇଥାଏ ।

ସ୍ଥାନୀୟ ସାପ୍ତାହିକ ପତ୍ରିକାଗୁଡ଼ିକଦ୍ୱାରା ଆୟୋଜିତ କାହାଣୀ ପ୍ରତିଯୋଗିତା-ଗୁଡ଼ିକରେ ଲେଖକ ଅନେକ ଥର ପୁରସ୍କାର ପାଇଛନ୍ତି । 'ଧ୍ରୁବତାରା', 'ଚେକୁ ମାନ୍' (ପିତା ବଟିକା), 'ଅଗ୍ନାର ଢଲମ୍', 'ମୁକ୍ତ ପଞ୍ଜରମ୍' ତାଙ୍କର ପ୍ରସିଦ୍ଧ ଉପନ୍ୟାସ ଅଟେ । 'ନୟନତାର', 'ପାଲ୍ଲୁ' (ପାକ୍ଷୀ), 'ମୁସୁଲୁ' (ପାଦସ) ତାଙ୍କର କାହାଣୀ ସଂଗ୍ରହ ଅଟେ । କାହାଣୀ ସଂକଳନଗୁଡ଼ିକୁ ସମାଲୋଚକମାନେ ଅତ୍ୟନ୍ତ ପ୍ରଶଂସା କରିଛନ୍ତି । ସେ ବିଜୟଓ୍ୱାଡ଼ାର ଲୟଲା କଲେଜରେ ତେଲୁଗୁ ବିଭାଗରେ ଅଧ୍ୟାପକ କାର୍ଯ୍ୟ କରୁଅଛନ୍ତି ।

## 10. ଅବସରାଳ ରାମକୃଷ୍ଣା ରାଓ

ଜୀବନର କେନ୍ଦ୍ର-ବିନ୍ଦୁ ନାରୀ ଅଟେ; ସାହିତ୍ୟର ମଧ୍ୟ ସେଇ ନାରୀ ହିଁ କେନ୍ଦ୍ର । ଏହି ସତ୍ୟକୁ ଚିହ୍ନି କରି ଲେଖିଥିବା ତେଲୁଗୁ କାହାଣୀକାରଙ୍କ ମଧ୍ୟରେ ଶ୍ରୀରାମକୃଷ୍ଣା ରାଓଙ୍କୁ ବିଶିଷ୍ଟ ସ୍ଥାନ ପ୍ରାପ୍ତ ହୋଇଅଛି । ଜୀବନ ପ୍ରତି ଗୃହିଣୀ ନାରୀମାନଙ୍କର ଯେଉଁ ସମ୍ମାନଭରା ଦୃଷ୍ଟି ଥାଏ, ତାହାକୁ ସେ ...ଙ୍କର କାହାଣୀଗୁଡ଼ିକରେ ମହତ୍ତ୍ୱ ଦେଇଥାନ୍ତି । ଏହି କାରଣରୁ ଲେଖକଙ୍କର କାହାଣୀଗୁଡ଼ିକରେ ନାରୀ ମୁଖ୍ୟରୂପେ ଆସିଥାଏ । ଚମତ୍କାରପୂର୍ଣ୍ଣ ସମ୍ବାଦଶୈଳୀ ତାଙ୍କର ରଚନାଗୁଡ଼ିକର ବିଶେଷତ୍ୱ । 'ଅର୍ଥମୁନ୍ନ କଥଲୁ' (ସାର୍ଥକ କାହାଣୀଗୁଚ୍ଛ) ନାମକ ତାଙ୍କର ରଚନା ଆନ୍ଧ୍ର ପ୍ରଦେଶ ସାହିତ୍ୟ ଏକାଡେମୀ ତରଫରୁ ପୁରସ୍କୃତ ହୋଇଥିଲା । 'ସଂପେଗଲୁସନ୍ନ ଜାଜୁଲୁ' (ଚମ୍ପା ଓ ସ୍ୱର୍ଣ୍ଣଜୁଇ) ନାମକ ତାଙ୍କର ଉପନ୍ୟାସ ପାଠକମାନଙ୍କଠାରୁ ବିଶେଷ ସମ୍ମାନ ପ୍ରାପ୍ତ କରିଅଛି ।' ଅରଵୈରକାଲ ଆତ୍ମହତ୍ୟଲୁ' (ପାଞ୍ଚ ପ୍ରକାରର ଆତ୍ମହତ୍ୟା) ତାଙ୍କର ଲେଖା କାହାଣୀ ସଂଗ୍ରହ ଅତ୍ୟନ୍ତ ଲୋକପ୍ରିୟ ହୋଇଛି । ସେ ଇଂରାଜୀର ଅଧ୍ୟାପକ ଏବଂ ନିବାସ ବରହମ୍ପୁର ଅଟେ ।

ମନୁଷ୍ୟର ସାଧାରଣତଃ ଅପ୍ରତ୍ୟକ୍ଷଭାବେ ଥିବା ସୌଜନ୍ୟକୁ ଉଦ୍‌ଘାଟନ କରିବା ଭଳି ଏହି ଉଦ୍ରେକକ କାହାଣୀରେ ରାମକୃଷ୍ଣା ରାଓଙ୍କର ଲେଖିବାର ବିଶେଷତ୍ୱ ସ୍ପଷ୍ଟଭାବେ ପ୍ରସ୍ଫୁଟିତ ହୋଇଛି ।

## 11. କୋମ୍ମୁରି ବେଣୁଗୋପାଲ ରାଓ

କ୍ଷଣିକ ପାଇଁ ଫୁରସତ ନ ପାଇଲା ପରି ଡାକ୍ତରୀ କାର୍ଯ୍ୟ କରି ମଧ୍ୟ ନିରନ୍ତର କାହାଣୀ-ଉପନ୍ୟାସ ଲେଖିବାରେ ଲାଗିରହିବା କିଛି ସହଜ କାମ ନୁହେଁ । ଆଜି ତେଲୁଗୁ ପାଠକମାନେ ସ୍ତ୍ରୀଲୋକଙ୍କ ରଚନାଗୁଡ଼ିକୁ ବିଶେଷ ଆଦର ଓ ଉତ୍ସାହ ଦେଉଛନ୍ତି । ସ୍ତ୍ରୀଲୋକଙ୍କ ରଚନା ସଙ୍ଗେ ପ୍ରତିଯୋଗିତା କରି ପାରିଲା ଭଳି କାହାଣୀ ଲେଖିବାରେ ଅଗ୍ରଗାମୀ ହେଉଛନ୍ତି ଡାକ୍ତର ବେଣୁ ଗୋପାଲ ରାଓ । ତାଙ୍କର ଉପନ୍ୟାସଗୁଡ଼ିକର ନାୟିକାମାନଙ୍କର ଆଦର୍ଶ ଏହାର କାରଣ ହୋଇଥାଇ-ପାରେ । ତାଙ୍କର ପ୍ରଥମ ଉପନ୍ୟାସ 'ପେକୁଟିଲ୍ଲୁ' (ଖପ୍‌ପର ଘର) ଉପରେ ତେଲୁଗୁ ଭାଷା ସମିତିର ପୁରସ୍କାର ପାଇଛନ୍ତି । ତାପରେ ବିଶେଷ ଲୋକପ୍ରିୟ ହୋଇଥିଲା 'ହାଉସ୍ ସର୍ଜନ' ନାମକ ଉପନ୍ୟାସ । ଏହା ଡାକ୍ତରୀ ସହିତ ସମ୍ବନ୍ଧିତ ବିଶିଷ୍ଟ ରଚନା ଅଟେ । ତେଲୁଗୁଭାଷୀ ପାଠକ ସମାଜରେ ଉପନ୍ୟାସ-ଲେଖକରୂପେ ସେ ଯେତିକି ବିଖ୍ୟାତ ହୋଇଛନ୍ତି, ତାଠାରୁ ଅଧିକ ଖ୍ୟାତି ସେ କାହାଣୀକାର ରୂପରେ ମଧ୍ୟ ପାଇଛନ୍ତି ଏବଂ ସେ ସହସ୍ରାଧିକ କାହାଣୀ ଲେଖିଛନ୍ତି । ତାଙ୍କର ରଚନାଗୁଡ଼ିକରେ କଠୋରତା କମ୍ ଏବଂ କୋମଳତା ଅଧିକ ଥାଏ । ସେ ସିଦ୍ଧାନ୍ତ ବା ପ୍ରତିଶ୍ରୁତିର ନାମ

ପର୍ଯ୍ୟନ୍ତ ନଥିନ୍ତି ନାହିଁ । ଇତିବୃତ୍ତ ଗ୍ରାମ୍ୟ ମଧ୍ୟବର୍ଗ ବା ତାର ଉପର ସ୍ତର ପର୍ଯ୍ୟନ୍ତ ସୀମିତ ରହେ ।

କାଳ ପରି ଗଢ଼ୁଥିବା ମଣିଷ ପୁଣି ମଣିଷ ରୂପରେ ପୁନର୍ଜନ୍ମ ପାଏ ଏବଂ ସେଥିରେ ମମତାର ମାଧୁର୍ଯ୍ୟ ପୁଣି ନୂତନ ଉତ୍ସାହରେ ପଲ୍ଲବିତ ହୋଇଥାଏ—ଏହି ଇତିବୃତ୍ତ ଉପରେ ଆଧାରିତ ଏହି କାହାଣୀ ସର୍ଜନର ଛୁରୀ ପରି ନିଜର ଲକ୍ଷ୍ୟ ଆଡ଼କୁ ସିଧା ଓ ତୀକ୍ଷ୍ଣ ଧାରରେ ଚରିକରି କପରି ଆଗେଇଯାଇଛି, ତାହା ପାଠକ ନିଜେ ବୁଝି-ପାରିବେ ।

## 12. ପୁରାଣାମ୍ ସୂର୍ଯ୍ୟ ପ୍ରକାଶ ରାଓ

ମଧ୍ୟବର୍ଗର ସାଧାରଣ ପାରିବାରିକ ଜୀବନକୁ ବର୍ଣ୍ଣନା କରୁଥିବା ଉପନ୍ୟାସ 'ଜୀବନ ଗଙ୍ଗା'ଦ୍ୱାରା ଏହି ଲେଖକ ପାଠକଙ୍କର ବିଶେଷ ଆଦରଣୀୟ ହୋଇଛନ୍ତି । ଆନ୍ଧ୍ରର ପାରିବାରିକ ଜୀବନରେ ସ୍ତ୍ରୀମାନଙ୍କର ଚିତ୍ତବୃତ୍ତି ଏବଂ ସେଥିରୁ ଉତ୍ପନ୍ନ ହେଉଥିବା ସୂକ୍ଷ୍ମ ସମସ୍ୟାଗୁଡ଼ିକୁ ସାବଧାନତା ସହକାରେ ଚିତ୍ରଣ କରିବାର କୌଶଳ ଲେଖକଙ୍କର ନିଜସ୍ୱ ଅଟେ । ସେ କେତେକ କାହାଣୀ ଲେଖିଛନ୍ତି ଓ କିଛି ଉପନ୍ୟାସ ମଧ୍ୟ ଲେଖିଛନ୍ତି । 'ମାରେ ମନୁଷ୍ୟଲୁ' (ପରିବର୍ତ୍ତନଶୀଳ ମନୁଷ୍ୟ) ଏବଂ 'ଆଡ଼ ବ୍ରତୁକୁ' (ନାରୀ ଜୀବନ) ତାଙ୍କର ଏବକାର ଉପନ୍ୟାସ ଅଟେ । 'କାକୁଲୁ' (କାଉ) ଓ 'ଗଡ଼ିକ ପୋଚଲୁ' (ଘାସ ଖିଏ) ତାଙ୍କର କାହାଣୀ ସଂଗ୍ରହ ଅଟେ ।

ପ୍ରସ୍ତୁତ କାହାଣୀ "କୌଏ"ରେ ପ୍ରାଚୀନ ସଂପ୍ରଦାୟର ଭୁଲ ଅର୍ଥ ବାହାର କରି ତାର ଭୁଲ ବ୍ୟାଖ୍ୟା କରି ଗୋଟିଏ ଗରିବ ପରିବାରକୁ ଆବଶ୍ୟକ ସହାୟତାରୁ ବଞ୍ଚିତ କରିଥିବାର ବିବରଣ ଅଟେ । ଶ୍ରାଦ୍ଧକ୍ରିୟାରେ କାଉଙ୍କୁ ପିଣ୍ଡ ଦେବାର ଯେଉଁ ପ୍ରଥା ଅଛି, ତାକୁ ଆଧାର କରି ଲେଖାଯାଇଥିବା ଏହି କାହାଣୀ ଶତକଡ଼ା ଶହେ ଭାଗ ତେଲୁଗୁ ଲେଖକଙ୍କ ଦ୍ୱାରା ଆଦୃତ ହେବା ପରି ଯୋଗ୍ୟ ତେଲୁଗୁ କାହାଣୀ ଅଟେ ।

ଲେଖକ ବିଜୟୱାଡ଼ାର ଆନ୍ଧ୍ର ପ୍ରଦେଶ ହାଣ୍ଡଲୁମ୍ କୋଅପରେଟିଭ୍ ସୋସାଇଟିରେ କାର୍ଯ୍ୟ କରୁଅଛନ୍ତି ।

## 13. ମୁ. ଛପୁଡ଼ି ଭେଙ୍କଟ ରମଣ

ତେଲୁଗୁ କାହାଣୀ ଆକାଶରେ ମୁ. ଛପୁଡ଼ି ଭେଙ୍କଟ ରମଣ ବିଜୁଳିର ଝଟକ ପରି ଅଟନ୍ତି ।

ଗାର୍ହସ୍ଥ୍ୟ ଜୀବନରେ ପ୍ରେମର ଇତିବୃତ୍ତକୁ ସ୍ୱୀକାର କରି ଆନ୍ଧ୍ରର ଆଧୁନିକ ଯୁବକ-ଯୁବତୀଙ୍କର ମନକୁ ଆକର୍ଷଣ କଲାଭଳି କାହାଣୀ ଲେଖିବାରେ କେବଳ ଭେଙ୍କଟ ରମଣ ହିଁ ପ୍ରଧାନ ସ୍ଥାନ ପ୍ରାପ୍ତ କରିଅଛନ୍ତି । ତାଙ୍କର ଲେଖାରେ କୁଣ୍ଠା ନାହିଁ । କାହାଣୀକୁ ରୁଚିକର କଲାଭଳି ଲେଖାର ପଦ୍ଧତି ପାଠକଙ୍କୁ ମନ୍ତ୍ର-ମୁଗ୍ଧ କରିଦିଏ । ବହୁତ ଦିନ

ଯାଏ ସେ ପତ୍ରକାର ଥିଲେ । ବ୍ୟବସାୟ ପାଇଁ ଅପେକ୍ଷା ନଥିବା ସମୟ ପୂରଣ କରିବାରେ ସେ ଯାହା ଲେଖିଥିଲେ ସେଥିରେ ପାଠକମାନଙ୍କର ଏକ ଭୁଲ ଧାରଣା ଉତ୍ପନ୍ନ ହୋଇଥିଲା ଯେ ସେ ହାସ୍ୟ-ଲେଖକ ଅଟନ୍ତି । ଥର୍ବର୍-ଓ୍ୱୁଡ୍‌ହାଉସ୍‌ଙ୍କ ହାସ୍ୟ ପରି ତାଙ୍କର କାହାଣୀଗୁଡ଼ିକରେ ମଧ୍ୟ ଉପରୁ ହାସ୍ୟର ଭାବ ଥାଇ ମଧ୍ୟ ସେଥିରେ ଅନ୍ତଃସଲିଳା ଫଲ୍ଗୁ ପରି କରୁଣ ଧାରା ପ୍ରବାହିତ ହୋଇଥାଏ । 'ଜନତା ଏକ୍ସପ୍ରେସ୍' 'ମହାରାଜା-ପ୍ରବରାଜ', 'ସାକ୍ଷୀ' ପରି କାହାଣୀଗୁଡ଼ିକ ଏହାର ପ୍ରମାଣ ଅଟେ । ଗତ ଦଶବର୍ଷ ମଧ୍ୟରେ ତେଲୁଗୁରେ ବାହାରିଥିବା ମହତ୍ତ୍ୱପୂର୍ଣ୍ଣ ବ୍ୟଙ୍ଗ ରଚନା ତାଙ୍କର 'ରାଜକାର୍ଯ୍ୟ ମେଡାଲ୍ ପଞ୍ଚ ବଶାଡ଼' ଅଟେ । ନିର୍ବାଚନ ପୂର୍ବରୁ ତେଲୁଗୁ ପ୍ରାନ୍ତରେ ଖେଳଯାଇଥିବା ରାଜନୈତିକ ବାତାବରଣକୁ ନଜର ଦେଖିଲା ପରି ବ୍ୟଙ୍ଗ ମନୋହର କରି ପ୍ରସ୍ତୁତ କରିଥିବା ରମଣଙ୍କର ରଚନା କୌଶଳପୂର୍ଣ୍ଣ ଅଟେ ।

'ବେଟ' (ଶିକାର), 'ଇଦ୍ଦରୁ ରମ୍ମାୟିଲୁ-ମୁଗ୍ଗୁରୁବାୟିଲୁ', 'ଦୌଲତ୍‌କଥ୍ୟାଂ' (ତିନ ଖଣ୍ଡ) ମୁକ୍ତପୁଷ୍ପଙ୍କର କାହାଣୀଗୁଡ଼ିକ, 'ଜନତା-ଏକ୍ସପ୍ରେସ୍'—ତେଲୁଗୁ ପାଠକଙ୍କର ଲୋକପ୍ରିୟ କଥା-ସଂକଳନ ଅଟେ । ଫିଲ୍ମ କାହାଣୀ ଲେଖିବାରେ ମଧ୍ୟ ସେ ଖ୍ୟାତନାମା ।

ଗୁରୁତର ସତ୍ୟକୁ ଲୁଷ୍ଟଙ୍କର ଦର୍ଶଣୀ ପରି ରୁଚିର, ମଧୁର ଏବଂ ସ୍ମରଣୀୟ ଭାବେ ଉପସ୍ଥାପିତ କରିଥିବା ଏହି କାହାଣୀ ତାଙ୍କର ଅସାଧାରଣ ରଚନା ଗୁଡ଼ିକ ମଧ୍ୟରୁ ଗୋଟିଏ ।

## 14 ମଧୁରାନ୍ତକମ୍ ରାଜାରାମ

ଶ୍ରୀ ମଧୁରାନ୍ତକମ୍ ରାଜାରାମଙ୍କର କାହାଣୀଗୁଡ଼ିକ ଶିଷ୍ଟ, ସୁଗଠିତ ଓ ମନୋହର । ଚିତ୍ତୁର ଜିଲ୍ଲାର ଗ୍ରାମ୍ୟ ଶୋଭା ତାଙ୍କର କାହାଣୀଗୁଡ଼ିକରେ ମହକି ଉଠେଥାଏ । ସେଠିକାର ସବୁଜ-ସୁନ୍ଦର କ୍ଷେତ, ବାଡ଼ି-ବଗିଚା, ସଡକ, ପୋଖରୀ, ବାମ୍ପୀ, କୂଅ; ନର-ନାରୀ ଏବଂ ସେମାନଙ୍କର ଜୀବନ ତାଙ୍କ କାହାଣୀମାନଙ୍କରେ ଅତ୍ୟନ୍ତ ରମଣୀୟ ଭାବେ ବର୍ଣ୍ଣିତ ହୋଇଛି । ରାଜାରାମ ବିଶ୍ୱାସ କରନ୍ତି ଯେ ସାହିତ୍ୟଦ୍ୱାରା ଲୋକଙ୍କର କଲ୍ୟାଣ ହେବା ଉଚିତ । ସଙ୍କୀର୍ଣ୍ଣ ସ୍ୱଳମାନ୍ଧ ଅଥବା ରାଜନୈତିକ ସିଦ୍ଧାନ୍ତ ଆଡ଼େ ସେ ଧ୍ୟାନ ଦିଅନ୍ତି ନାହିଁ । ବସ୍ତୁଗତ ବର୍ଣ୍ଣନାରେ ଲେଖକଙ୍କର ରୁଚି ଅଛି । ତାଙ୍କ ଦୃଷ୍ଟିରୁ ପ୍ରତ୍ୟେକ ବସ୍ତୁ ଅଦ୍ଭୁତ ଓ ନୂତନ ମନେ ହୁଏ । ତାଙ୍କର କାହାଣୀଗୁଡ଼ିକ ଆନ୍ଧ୍ର ପ୍ରଦେଶ ସାହିତ୍ୟ ଏକାଡେମୀଦ୍ୱାରା ପୁରସ୍କୃତ ହୋଇଅଛି ।

ଅଧ୍ୟାପନ ତାଙ୍କର ବ୍ୟବସାୟ ଅଟେ । ସେ ବଡ଼ କୋମଳ ପ୍ରକୃତିର ଲୋକ । ତାଙ୍କର କାହାଣୀ କେତେକ ସଙ୍କଳନରେ ପ୍ରକାଶିତ ହୋଇସାରିଛି । 'କମ୍ମତେମ୍ମେର', 'ବଙ୍ଗାରୁଲ୍ଲୁ ଇତର କଥଲୁ' ତାଙ୍କର ସଙ୍କଳନ ଅଟେ । 'ତ୍ରିଶଙ୍କୁସ୍ୱର୍ଗ' ତାଙ୍କର ପ୍ରସିଦ୍ଧ ଉପନ୍ୟାସ ଅଟେ ।

ପ୍ରସ୍ତୁତ କାହାଣୀ 'ସୁହାବନୀ ହଓ୍ୱା' (ମଳୟ ପବନ) ରେ ବରର ଦୟନୀୟ ଦଶା ଉପରେ ନବବଧୂର ଦୟା ଆସିବାରୁ ସେ ତାକୁ ଶାଲ ଘୋଡ଼ାଇ ଦେଇ ଚାଲିଯାଉଛି । ଏହି ଘଟଣା ପାଠକଙ୍କ ମନରେ ଦୟାର ସୃଷ୍ଟି କରେ ଓ କେତେକ ପୁରୁଣା ମଧୁର ଅନୁଭୂତିଗୁଡ଼ିକୁ ସ୍ମରଣ କରାଇଦିଏ । ଶ୍ରୀ ରଜାରାମଙ୍କର କାହାଣୀଗୁଡ଼ିକ ସମ୍ପୂର୍ଣ୍ଣଭାବେ ତେଲୁଗୁ କାହାଣୀ ଅଟେ ।

## 15. ଅବ୍ରୂରି ଛାୟା ଦେବୀ

ଶ୍ରୀମତୀ ଅବ୍ରୂରି ଛାୟା ଦେବୀ କେବେ କେବେ କାହାଣୀ ଲେଖନ୍ତି । ସେ ନୂଆ ଦିଲ୍ଲୀରେ ଲାଇବ୍ରେରିୟାନର କାର୍ଯ୍ୟ କରୁଛନ୍ତି । ବିଖ୍ୟାତ କବି ଓ ସାହିତ୍ୟିକ ଶ୍ରୀ ଅବ୍ରୂରି ବରଦ ରାଜେଶ୍ୱର ରାଓଙ୍କର ସେ ଧର୍ମପତ୍ନୀ ଅଟନ୍ତି । ସେ କେତେକ ପତ୍ରିକା ଛଡ଼ା ଗୋଟିଏ ଯୋଡ଼ିଏ କବିତା-ସଙ୍କଳନ ମଧ୍ୟ ସମ୍ପାଦନ କରିଛନ୍ତି ।

ପ୍ରସ୍ତୁତ କାହାଣୀ 'ସୁଖାନ୍ତ' ନିଦ ପାଇଁ ଛଟପଟ ହେଉଥିବା ଗୋଟିଏ ଗୃହିଣୀର ଆତ୍ମକଥା ଅଟେ । ପିଲାଦିନୁ ଆଜି ପର୍ଯ୍ୟନ୍ତ ତାଙ୍କର କାହାଣୀ ଜୀବନର ପୁନର୍ନିରୀକ୍ଷଣ ଓ ଆଲୋଚନା ଅତ୍ୟନ୍ତ ଆକର୍ଷଣୀୟ ଅଟେ । ଏହି କାହାଣୀ ଗୋଟିଏ ମାର୍ମିକ ଅଟେ । କାହାଣୀଟି ପଢ଼ିଲେ ଯେକେହି ବି କହିବ ଯେ ତାହା ଜଣେ ସ୍ତ୍ରୀଲୋକଦ୍ୱାରା ଲିଖିତ ।

## 16. ସ୍ମାଇଲ

ଶ୍ରୀ ସ୍ମାଇଲଙ୍କର ପୁରା ନାମ ଇସ୍‌ମାଇଲ୍ ଅଟେ । ଶ୍ରୀ ଇସ୍‌ମାଇଲ୍ ବହୁତ କମ୍ ଗଳ୍ପ ଲେଖିଛନ୍ତି । ସେ ରାମଚନ୍ଦ୍ରପୁରମ୍‌ରେ କମର୍ସିୟାଲ ଟାକ୍ସ ଅଫିସର ପଦରେ କାର୍ଯ୍ୟ କରୁଛନ୍ତି । ତାଙ୍କର ଗଳ୍ପଗୁଡ଼ିକ ନୀଃସଙ୍କୋଚରେ ଲେଖାହୋଇଥିବା ଜଣାପଡ଼ୁଛି । ସେ 'ଇନ୍‌ହିବିଶନ୍‌ସ'କୁ କିଛି ଖାତିର କରନ୍ତି ନାହିଁ । ତାଙ୍କର ବ୍ୟକ୍ତିତ୍ୱରେ ବି ଏହି ନିର୍ଭୀକତା ଅଛି । ତାଙ୍କର କାହାଣୀଗୁଡ଼ିକରେ 'ସେକ୍ସ' ଯଥେଷ୍ଟ ମାତ୍ରାରେ ମିଳିଥାଏ; ତେବେ ମଧ୍ୟ ତାଙ୍କର କାହାଣୀ 'ସେକ୍ସ' ସମ୍ବନ୍ଧୀୟ ନୁହେଁ । ସମାଜର ନିମ୍ନତମ ସ୍ତରରେ ଜୀବନ ଯାପନ କରୁଥିବା, ଦୀନ-ହୀନ ଜନତା ସମ୍ବନ୍ଧରେ ସେ ତାଙ୍କର ରଚନା-ଗୁଡ଼ିକରେ ଲେଖିଥାନ୍ତି ।

ପ୍ରସ୍ତୁତ କାହାଣୀ 'ଖାଲି ବୋତଲ' ଲେଖକଙ୍କୁ ଯଶ ପ୍ରଦାନ କରିଛି । ତାଡ଼ିଖାନା ପାଖରେ ଖାଲି ବୋତଲ ବିକି କରୁଥିବା ଦୁଇଟି ସ୍ତ୍ରୀଲୋକଙ୍କ ମଧ୍ୟରେ କଳିଆ ହିଁ ଏହି କାହାଣୀର ସୃଷ୍ଟି । ଏହି କାହାଣୀ ପାଠକଙ୍କ ହୃଦୟରେ ନିଆଁ ଲଗାଇଦିଏ । ଏହି କାହାଣୀ ତେଲୁଗୁ ପାଠକ ସମାଜରେ ତୀବ୍ର ଆଲୋଚନା ଉତ୍ପନ୍ନ କରିଦେଇଛି । ତାଙ୍କର 'ସମୁଦ୍ର' ନାମକ କାହାଣୀ ଉପରେ ମଧ୍ୟ ଝଡ଼ ସୃଷ୍ଟି ହୋଇଛି ।

## 17. ବୀରାଜୀ

ଶ୍ରୀ ବୀରାଜୀଙ୍କ ସମଗ୍ର 'ତୋଲି ମଲୁପୁ' (ପ୍ରଥମ ମୋଡ଼) ବୋଲି ବୀରାଜୀ ଲୁହନ୍ତି । ପତ୍ରିକାର ଭାବେ କାର୍ଯ୍ୟରତ ବଡ଼ ହାସ୍ୟାତ୍ମକ ସହିତ କାହାଣୀ, ଉପନ୍ୟାସ ଲେଖି ଯଶଃ ଅର୍ଜନ କରିଥିବା ଯୁବକମାନଙ୍କ ମଧ୍ୟରୁ ବୀରାଜୀ ଜଣେ । ମଧ୍ୟବର୍ଗ ଯୁବକ-ଯୁବତୀଙ୍କର ଜୀବନ ତାଙ୍କ କାହାଣୀର ଉତ୍କୃଷ୍ଟ ଅଟେ । ମଧ୍ୟବର୍ଗର ନିଜଙ୍କ ସ୍ୱର୍ଗର ଉପନ୍ୟାସ ଲେଖିବାରେ ବୀରାଜୀ ପଟୁ ଅଟନ୍ତି । 'ତୋଲି ମଲୁପୁ', 'ପ୍ରେମପଗ୍‌ଗଲୁ' (ପ୍ରେମର ଲଗାମ), 'ସୁଖାଂ କୋଣମ୍' (ଆନନ୍ଦ ପାର୍ଶ୍ୱ) 'ଇଦରଂ ଓକାଟେ' (ଦୁହେଁ ଏକା), 'ଗୁଲଗଚେଣ୍ଡୁ' (ସଇଜ୍ଜତ ଗଛ) ତାଙ୍କର ପ୍ରକାଶିତ ଲୋକପ୍ରିୟ ଉପନ୍ୟାସ ଅଟେ । ମାନ୍ଦ୍ରାଜରୁ ବାହାରୁଥିବା ଗୋଟିଏ ସାପ୍ତାହିକ ପତ୍ରିକାରେ କାର୍ଯ୍ୟ କରି ସେ ସେହି ସଂସ୍ଥା ତରଫରୁ ବର୍ତ୍ତମାନ ବିଜୟୱାଡ଼ାରୁ ବାହାରୁଥିବା ଦୈନିକ ସମ୍ବାଦପତ୍ରରେ କାର୍ଯ୍ୟ କରୁଛନ୍ତି ।

ପ୍ରସ୍ତୁତ କାହାଣୀ 'ଏକ ଲାଖ୍' । (ଏକ ଲକ୍ଷ)ରେ ଲଟେରୀ ପରିପ୍ରେକ୍ଷୀରେ ମଧ୍ୟବିତ୍ତ ନାଗରିକଙ୍କ ମନୋଦଶାକୁ ସୁନ୍ଦରରୂପେ ବର୍ଣ୍ଣନା କରାଯାଇଛି ।

## 18. ବାଲାବାଡ଼ କାନ୍ତା ରାଓ

ଶ୍ରୀ କାନ୍ତା ରାଓ ଆଦର୍ଶବାଦୀ ଅଟନ୍ତି । ସେ ବିଶ୍ୱାସ କରନ୍ତି ଯେ ମଣିଷର ବିକାଶ ତାର ଭଲ ବ୍ୟବହାର ଉପରେ ନିର୍ଭର କରେ । ବିଶାଖାପଟ୍ଟନମ୍‌ର ଉତ୍ତର ଇଲାକାର ଜନ-ଜୀବନ ପ୍ରାଞ୍ଜଳଭାବେ କାହାଣୀରେ ପ୍ରତିବିମ୍ବିତ କରିବା ଲେଖକମାନଙ୍କ ମଧ୍ୟରେ କାନ୍ତା ରାଓ ଅଗ୍ରଣୀ ଅଟନ୍ତି । ସେ ପଚିଶି ବର୍ଷ ହେଲା କାହାଣୀ ଓ ଉପନ୍ୟାସ ଲେଖି ଆସୁଛନ୍ତି । ଯଥାର୍ଥ ଜୀବନରେ ତାଙ୍କର ବିଶେଷ ଅଭିରୁଚି ଅଛି । ତାଙ୍କର ପ୍ରତ୍ୟେକ କାହାଣୀ ଅଲଗା ଅଲଗା ଢଙ୍ଗର ରଚନା ଧରି ମନେହୁଏ । ଏହି ରଚନା-ବୈଭବ ତାଙ୍କୁ ତେଲୁଗୁ କାହାଣୀ ସାହିତ୍ୟରେ ବିଶିଷ୍ଟ ସ୍ଥାନ ପ୍ରଦାନ କରିଛି । ମାନବତାର ମୂଲ୍ୟଗୁଡ଼ିକୁ ଉଦ୍‌ଘୋଷିତ କରିବା ତାଙ୍କର କାହାଣୀଗୁଡ଼ିକର ପରମ ଲକ୍ଷ୍ୟ ଅଟେ । 'ଶରାପବନ୍ଦୀ' (ମଦ୍ୟବନ୍ଦ)ର ଅସଫଳତାକୁ ବର୍ଣ୍ଣନା କରୁଥିବା ତାଙ୍କର କାହାଣୀ 'ଦୋଙ୍ଗଲୁ' (ଚୋର) ଏହି ବିଷୟରେ ତେଲୁଗୁରେ ପ୍ରଥମ କାହାଣୀ ଅଟେ । ମଧ୍ୟବର୍ଗ ପରିବାର ପ୍ରେମର ଭାବକୁ ସମ୍ମିଳିତ କରି କାହାଣୀ ଲେଖିବାରେ ତାଙ୍କର କାହାଣୀ-ରଚନା ଆରମ୍ଭ ହୋଇଛି । ବର୍ତ୍ତମାନ ସେ ବିଭିନ୍ନ ଶାଖାରେ ବିସ୍ତାର କରି ଅମୃତ ସମାନ ନୈତିକ ଫଳ ପ୍ରଦାନ କରିଛନ୍ତି । 'ଦଗା ପଡ଼ିନ ତମ୍ମୁଡ୍ଡୁ' (ପ୍ରତାରିତ ବନ୍ଧୁ) ତାଙ୍କର ପ୍ରସିଦ୍ଧ ଉପନ୍ୟାସ ଅଟେ; ଯେଉଁଥିରେ ଗ୍ରାମ୍ୟ ଅବସ୍ଥାର ପତନ ଏବଂ ସହରୀ ଜୀବନ ପ୍ରତି ମୋହର ଚିତ୍ରଣ କରି ଲେଖକ ଏହା ବିସ୍ତୃତ ଭାବରେ ବୁଝାଇଛନ୍ତି କି ଗାଁଲୋକେ କପରି ସହରରେ ଖୁସିରେ ଜୀବନ କଟାଇ ପାରନ୍ତି ନାହିଁ । 'ସୂର୍ଯ୍ୟ ଭୂମି' ମଧ୍ୟ ତାଙ୍କର ପ୍ରସିଦ୍ଧ ଉପନ୍ୟାସ ଅଟେ । ତାଙ୍କର ଅଧିକାଂଶ ରଚନାରେ ଆଦର୍ଶବାଦ ଓ

ଦାର୍ଶନିକ ଚନ୍ତନ ଅଧିକ ମାତ୍ରାରେ ଦେଖାଯାଏ ।

ସଂପ୍ରତି ସେ ଦିଲ୍ଲୀରେ ନେଭଲ ଆର୍ମାମେଣ୍ଟ ସପ୍ଲାଇ ବିଭାଗରେ ଷ୍ଟାଫ୍ ଅଫିସର ଅଛନ୍ତି । ପ୍ରସ୍ତୁତ କାହାଣୀ କେବଳ ନେଭିଲର କାହାଣୀ ନୁହେଁ, ଏହା ଦୟା ଏବଂ ଆକ୍ରୋଶ ମଧ୍ୟରେ ବ୍ୟବଧାନକୁ ମାପିବା ଭଳି କାହାଣୀ ଅଟେ ।

## 19. ବୀନା ଦେବୀ

'ରିଧାମ୍ମା ପେଣ୍ଟିଲ ଆଗି ପୋଇନ୍ଦି' (ରିଧାମ୍ମାର ବିବାହ ବନ୍ଦ ହୋଇଗଲା) ଶୀର୍ଷକ କାହାଣୀ ସହ କାହାଣୀ-ଜଗତରେ ପ୍ରବେଶ କରି ବୀନା ଦେବୀ ଆଜି ପାଠକମାନଙ୍କ ପାଇଁ ଆନନ୍ଦର ତରଙ୍ଗରେ ଦୋଳି ଖେଳାଉଥିବା ପରି କାହାଣୀ ଲେଖୁଛନ୍ତି । ପ୍ରସିଦ୍ଧ ଲେଖକ ରାଚକୋଂଡ ବିଶ୍ୱନାଥ ଶାସ୍ତ୍ରୀ ତାଙ୍କର ଗୁରୁ । ସମାଲୋଚକମାନେ କହନ୍ତି କି ତାଙ୍କର କାହାଣୀଗୁଡ଼ିକ ଶାସ୍ତ୍ରୀଜୀଙ୍କର ରଚନାର ଭାବ ସହିତ ଅନେକ ନିକଟବର୍ତ୍ତୀ ମନେ ହୁଏ ଏବଂ ଆଉ ଅନେକ କାହାଣୀରେ ଶାସ୍ତ୍ରୀଜୀଙ୍କର ରଚନାଗୁଡ଼ିକ ପ୍ରତିବିମ୍ବିତ ହେଲା ପରି ଜଣାପଡ଼େ । ତାଙ୍କର ରଚନାଗୁଡ଼ିକରୁ ଜଣାପଡ଼େ ଯେ ତେଲୁଗୁରେ ଉପନ୍ୟାସ ଅପେକ୍ଷା କାହାଣୀର ସ୍ତର ଉଚ୍ଚ ଅଟେ । ଇତିବୃତ୍ତି ବାଛିବାର ଓ କାହାଣୀ କହିବାର ଢଙ୍ଗ ତାଙ୍କର ଏକଦମ୍ ପୃଥକ ଏବଂ ପାଠକଙ୍କର ମନକୁ ଆକର୍ଷଣ କଲା ଭଳି । ତାଙ୍କର କାହାଣୀ ସଂକଳନ 'ରିଧାମ୍ମା ପେଣ୍ଡିଲୁ ଆଗି ପୋଇନ୍ଦି' ଏବଂ 'ଫର୍ଷ୍ଟ କେସ୍' ନାମରେ ବାହାରିଛି । ତାଙ୍କର ପ୍ରଥମ ଉପନ୍ୟାସ 'ହେଇଙ୍ଗ-ମୀକବକ' ତେଲୁଗୁର ଗୋଟିଏ ପ୍ରମୁଖ ସାପ୍ତାହିକ ପତ୍ରିକାରେ ଧାରାବାହିକରୂପେ ପ୍ରକାଶିତ ହୋଇ ଗୁଣଜ୍ଞ ପାଠକଙ୍କର ଆଦରପ୍ରାପ୍ତ କରିଛି । ପ୍ରସ୍ତୁତ କାହାଣୀ 'ଆଂକ୍ଲସ ଫର୍ ଦ ପି. ଏମ୍' ଡାକ୍ତରଙ୍କର ଅମାନୁଷିକ କାର୍ଯ୍ୟଗୁଡ଼ିକୁ ଚିତ୍ରିତ କରୁଥିବା ଅଦ୍ଭୁତ ଇତିବୃତ୍ତି ଉପରେ ଆଧାରିତ କାହାଣୀ ଅଟେ ।

## 20· ଆଞ୍ଚଟ ଶାରଦା ଦେବୀ

ଶାରଦା ଦେବୀ ତିରୁପତିର ଶ୍ରୀ ବେଙ୍କଟେଶ୍ୱର ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କାର୍ଯ୍ୟ କରୁଅଛନ୍ତି । ଭଲ କାହାଣୀ ଲେଖକମାନଙ୍କ ମଧ୍ୟରୁ ସେ ଜଣେ । ସେ ଅଧିକ ଲେଖନ୍ତି ନାହିଁ । ମମତା ଏବଂ ବାତ୍ସଲ୍ୟ ଉପରେ ଆଧାରିତ କଥାବସ୍ତୁକୁ ସେ ତାଙ୍କର କାହାଣୀ ପାଇଁ ମନୋନୀତ କରନ୍ତି । ତାଙ୍କର କାହାଣୀଗୁଡ଼ିକରେ ପ୍ରକୃତିର ବର୍ଣ୍ଣନାତ୍ମକ କବିତାର ଆଭାସ ମିଳେ । ପ୍ରାଚୀନ ସାହିତ୍ୟ ଭଲଭାବରେ ଅଧ୍ୟୟନ କରିଥିବାରୁ ତାଙ୍କର ରଚନାଗୁଡ଼ିକ ପରମ୍ପରା ପରିପୁଷ୍ଟ ହୋଇଥାଏ । ଅଳ୍ପ ଅଳ୍ପ ଗୀତ, ଆନମନା ଭାବନା ଏବଂ ଏକତାରେ ବ୍ୟସ୍ତ ହୋଇ ପଡ଼ୁଥିବା ପରି ମନର ଅବସ୍ଥା ତାଙ୍କର କାହାଣୀଗୁଡ଼ିକରେ ଦେଖାଯାଏ । ମାନବ ମନର ଅନ୍ତସ୍ଥଳରେ ଉଠୁଥିବା ବିଷାଦର

ଗ୍ରନ୍ଥୀ ପାଠକଙ୍କୁ ଆକୃଷ୍ଟ କରଥାଏ । ତାଙ୍କର ପ୍ରସିଦ୍ଧ କାହାଣୀ ସଂଗ୍ରହ 'ପୋଗଡ଼ାଲୁ' (ବଉଳ ମାଳିକା) ତେଲୁଗୁ ପାଠକମାନଙ୍କୁ ତାଙ୍କର ଉପହାର ।

ଶ୍ରୀମତୀ ଶାରଦା ଦେବୀ ସୁପ୍ରସିଦ୍ଧ ଲେଖକ ଓ ସାହିତ୍ୟିକ ଶ୍ରୀ ଆଚନ୍ତ ଜାନକୀ ରାମଙ୍କର ଧର୍ମପତ୍ନୀ ।

ସବୁଜ ପତ୍ର ଗହଳର ଶୋଭା ମଧ୍ୟରେ ବୋହୁଯାଉଥିବା ଝରଣା ପରି ସୁନ୍ଦର, ସବୁଜ ଏହି କାହାଣୀ ସେହି ପାଣି ପରି ନିର୍ମଳ ଅଟେ । ଏହା ସେହି ମାଳର କାହାଣୀ, ସେଇ ମଣ୍ଡଚକାର ବ୍ୟାଖ୍ୟା ଅଟେ । କାହାଣୀରେ କଥିତ ସୌନ୍ଦର୍ଯ୍ୟ ଅପେକ୍ଷା ଅକଥିତ ସୌନ୍ଦର୍ଯ୍ୟକୁ ଅଧିକ ମାତ୍ରାରେ ବ୍ୟଞ୍ଜିତ କରୁଥିବା ଅଲ୍ଲୁହା କାହାଣୀ ଏହି ମଣ୍ଡଚକା ।

## 21. କାଲ୍ଲୀ ପଟ୍ନମ୍ ରାମାରାଓ

ଶ୍ରୀ ରାମାରାଓଙ୍କର କାହାଣୀଗୁଡ଼ିକରେ କଳ୍ପନାର ଆଶ୍ରୟ ଅପେକ୍ଷା ବାସ୍ତବିକ ଜୀବନର ଚିତ୍ରଣ ଅଧିକ ମାତ୍ରାରେ ଥାଏ । ତେଲୁଗୁର ବହୁତ ଲେଖକ ଆରମ୍ଭରେ ବଙ୍ଗଳା ସାହିତ୍ୟଦ୍ୱାରା ପ୍ରଭାବିତ ହୋଇ ସେହି ଶୈଳୀରେ ରଚନା କରୁଥିଲେ । ସେହି ପ୍ରଭାବରୁ ମୁକ୍ତ ହୋଇ ସ୍ୱଚ୍ଛନ୍ଦ ଓ ନିର୍ମଳ ତେଲୁଗୁ କାହାଣୀ ଲେଖକମାନଙ୍କ ମଧ୍ୟରେ ରାମାରାଓ ଅଗ୍ରଗଣ୍ୟ ଅଟନ୍ତି । ଶ୍ରୀକାକୁଲମ୍‌ର ଆଖପାଖର ନିମ୍ନ ଜାତି ଲୋକଙ୍କର ସାମାଜିକ ଜୀବନକୁ, ତାଙ୍କର ଆଚାର-ବିଚାରକୁ, ତାଙ୍କର ସମସ୍ୟାଗୁଡ଼ିକୁ ଏବଂ ସେହି ସମସ୍ୟାଗୁଡ଼ିକର ମୌଳିକ କାରଣଗୁଡ଼ିକୁ ବାହାର କରି ଆଲୋଚନାତ୍ମକ ଶୈଳୀରେ କାହାଣୀଗୁଡ଼ିକ ଲେଖିବା ତାଙ୍କର ବିଶେଷତା ଅଟେ । ତାଙ୍କର କାହାଣୀ ପ୍ରାୟ ଲଘୁ ଉପନ୍ୟାସ ଆକାରରେ ହୋଇଥାଏ । 'ଯଜ୍ଞ', 'ହିଂସା', 'ନୋ ରୁମ୍', 'ଅଭିଶପ୍ତୀ', 'ପେଁପକଧୁ ମମକାରମ୍', 'ଅଭିମାନାଲୁ', 'ରାଜମଣ୍ଡୀ', 'ସେନାପତି ବୋରନ୍ନା', 'ଅବିଦ୍ୟା-ଅଜ୍ଞାନ' ଆଦି କେତେକ କାହାଣୀ ସେ ଲେଖିଛନ୍ତି । ତାଙ୍କର କାହାଣୀଗୁଡ଼ିକରେ ବର୍ଣ୍ଣନା ବହୁତ ବିସ୍ତାରିତ ଭାବେ ହୋଇଥାଏ । ପାତ୍ରମାନଙ୍କ ଭାଷା ସ୍ଥାନୀୟ ଭାଷାରେ ପ୍ରଭାବିତ । ବ୍ୟାବହାରିକ ସୁଷମାରେ ଅନୁପ୍ରାଣିତ ଓ କହୋଲ୍ଲ ମଧ୍ୟ ସମୃଦ୍ଧିତ ହୋଇଥାଏ ।

ପ୍ରସ୍ତୁତ କାହାଣୀ 'ନୋ ରୁମ୍'ରେ ଲେଖକ ଏହି ସତ୍ୟକୁ ମର୍ମସ୍ପର୍ଶୀ ଭାଷାରେ ସ୍ପଷ୍ଟ କରି ଦେଇଛନ୍ତି କି ସମାଜରେ କେତେକ ଲୋକଙ୍କର ବାସନାକୁ ଅତୃପ୍ତ ରଖିଲାବାଲା ସାମାଜିକ ବ୍ୟବସ୍ଥା କେତେ ଲୋକଙ୍କୁ ମାନସିକ ଦୁଃଖରେ ବିକଳ କରାଇ ତାଙ୍କର ପରସ୍ପର ମଧ୍ୟରେ ମନୋମାଳିନ୍ୟ ଘଟାଇଥାଏ । ସେ ବିଶାଖାପଟ୍ଟନମ୍‌ରେ ବାସ କରନ୍ତି ଏବଂ ଅଧ୍ୟାପନା ତାଙ୍କର କାର୍ଯ୍ୟ ଅଟେ ।

## 22. ଶ୍ରୀପତି

କୌଣସି ଉଦ୍ଦେଶ୍ୟ ବା ମତ ଆଗରେ ରଖି କାହାଣୀ ଲେଖିଲାବାଲା ବହୁତ କମ୍

ଲୋକ ଅଛନ୍ତି । ଆଜିର ଯୁବା ପିଢ଼ିର ଲେଖକମାନଙ୍କ ମଧ୍ୟରେ ଧୈର୍ଯ୍ୟ-ନିଷ୍ଠ କାହାଣୀ ଲେଖିଲାବାଲା ଲେଖକଙ୍କ ମଧ୍ୟରେ ଶ୍ରୀପତି ଜଣେ । ତାଙ୍କର କାହାଣୀଗୁଡ଼ିକର ଇତିବୃତ୍ତ ପ୍ରାୟ ଦୟା ଉତ୍ପନ୍ନ କରିବା ଭଳି ଏବଂ କରୁଣ ରସବ୍ୟଞ୍ଜକ ହୋଇଥାଏ । ଏହି ସଙ୍କଳନରେ ପ୍ରସ୍ତୁତ ତାଙ୍କର କାହାଣୀ 'ହାତବାଲା ଚୌକି' ଆଜିକାର ଗ୍ରାମ୍ୟ ଶାସନ ବ୍ୟବସ୍ଥା ଓ ଅଧିକାରର ମାଦକତା ଉପରେ ଉତ୍କୃଷ୍ଟ ବ୍ୟଙ୍ଗ ଅଟେ । ପାଠକ ଏହି 'ହାତବାଲା ଚୌକି' ସହିତ ସାରା ଗାଁରେ ଘୁରି କେତେକ ସତ୍ୟ ଖବର ନେଇଥାଏ । 'ମଞ୍ଚୁ ପଲ୍ଲକୀ—ମରି ତୋମ୍ମିଦି' (ତୁଷାରର ପାଲିଙ୍କି ଓ ନଅଟି କାହାଣୀ) ତାଙ୍କର ପ୍ରସିଦ୍ଧ କଥା-ସଂଗ୍ରହ ଅଟେ । ଏଥିରେ ସେ ଅନେକ ଯଶଃ ପ୍ରାପ୍ତ କରିଛନ୍ତି । ବ୍ୟବସାୟ ଅଧ୍ୟାପନା ଓ ନିବାସ ତାଙ୍କର ହାଇଦ୍ରାବାଦ ।

## 23. ଆଦିବିଷ୍ଣୁ

ଉତ୍ସାହୀ ଯୁବା ଲେଖକମାନଙ୍କ ମଧ୍ୟରେ ଅତି ଅଳ୍ପ ସମୟରେ ଅଧିକ ଯଶସ୍ୱୀ ହୋଇଥିବା କାହାଣୀକାର ହେଉଛନ୍ତି 'ଆଦିବିଷ୍ଣୁ' । 'ସ୍ନେହ' ତାଙ୍କର କାହାଣୀଗୁଡ଼ିକର ବିଶେଷ ବସ୍ତୁ ଅଟେ । ତେଲୁଗୁ ପାଠକଙ୍କ ମଧ୍ୟରେ ବିଶେଷ କରି ସ୍ତ୍ରୀସମାଜରେ ତାଙ୍କର କାହାଣୀଗୁଡ଼ିକର ଅଧିକ ପ୍ରଚାର ଅଛି । ଆଦିବିଷ୍ଣୁଙ୍କର ରଚନା ବଡ଼ ଆନନ୍ଦଦାୟକ ଓ ଚିତ୍ତାକର୍ଷକ ହୋଇଥାଏ । ତାଙ୍କର କାହାଣୀ ପ୍ରାୟ ମଧ୍ୟବର୍ଗ ପରିବାରର ନର ନାରୀ-ମାନଙ୍କର ଦୁଃଖ, ବ୍ୟଥା, ଆଶା-ନିରାଶା, ମମତା, ମୋହ ଓ ସୁଖ-ସନ୍ତୋଷ ସହ ସମ୍ବନ୍ଧିତ ହୋଇଥାଏ । ଲେଖକଙ୍କଠାରେ ବ୍ୟଙ୍ଗ, ହାସ୍ୟ, ଭାବୁକତା ଓ ପୌରୁଷର ସମ୍ମିଶ୍ରଣରେ ଲେଖିବାର କୌଶଳ ଅଛି । ସମ୍ବାଦ ଆକାରରେ କାହାଣୀ ଲେଖିବା ତାଙ୍କର ବିଶେଷତ୍ୱ ଅଟେ । ତେଲୁଗୁର ଗୋଟିଏ ପ୍ରମୁଖ ସାପ୍ତାହିକ ପତ୍ରିକାଦ୍ୱାରା ଆୟୋଜିତ କାହାଣୀ ପ୍ରତିଯୋଗିତାରେ ସେ ପୁରସ୍କାରପ୍ରାପ୍ତ କରିଥିଲେ ।

ସେ ଭଲ ନାଟ୍ୟକାର ମଧ୍ୟ ଅଟନ୍ତି । 'ଅତିଥି', 'ଇଦି ଆତ୍ମହତ୍ୟା', 'ମଞ୍ଚୁ ତେର' ତାଙ୍କର ପ୍ରସିଦ୍ଧ ନାଟକ । 'ଅରକୁରଣି', 'ତୁତ୍ତୁ ଯୁଦ୍ଧୁ ମିଡଲୁ', 'ଓ୍ୱାଣ୍ଟେଡ଼ ଫାଦର୍ଶ', 'ଏକ୍ରେତ ଦୁରମ୍', 'ବୋମ୍ମାବୋରୁସୁ' ଆଦି କେତେକ ଶ୍ରେଷ୍ଠ ନାଟକ ମଧ୍ୟ ସେ ଲେଖିଛନ୍ତି ଯାହାକି ଅତ୍ୟନ୍ତ ଲୋକପ୍ରିୟ ହୋଇଛି । ପ୍ରସ୍ତୁତ ସଂକଳନରେ ତାଙ୍କର କାହାଣୀ 'ଗୃହର ଅନ୍ୱେଷଣରେ' ତେଲୁଗୁର ଗୋଟିଏ ପ୍ରମୁଖ ସାପ୍ତାହିକ ପତ୍ରିକାଦ୍ୱାରା ଆୟୋଜିତ ପ୍ରତିଯୋଗିତାରେ ପୁରସ୍କାର ପାଇଛି । ଇତିବୃତ୍ତ କରୁଣରସପୂର୍ଣ୍ଣ ଅଟେ ଏବଂ ଭାବନା ବଡ଼ ଉଚ୍ଚକୋଟୀର ଅଟେ ।

## 24. ମାଲତୀ ଚନ୍ଦୂର

ମଧ୍ୟବର୍ଗ ପରିବାରର ପ୍ରତ୍ୟେକ ଗୃହିଣୀ ପାଇଁ, ଅଳ୍ପ ପାଠ ପଢ଼ିଥିଲେ ମଧ୍ୟ, ମାଲତୀ ଚନ୍ଦୂରଙ୍କର ନାମ ସୁପରିଚିତ ଅଟେ । ତେଲୁଗୁ ପତ୍ରକାରିତାରେ ଖ୍ୟାତି ପ୍ରାପ୍ତ

କରିଥିବା ମହିଳା ଆଙ୍ଗୁଠିରେ ଗଣାଯାଇପାରେ। ତାଙ୍କ ମଧ୍ୟରୁ ମାଲତୀ ଚନ୍ଦୁରଙ୍କୁ ଯେଉଁ ଯଶଃ ପ୍ରାପ୍ତ ହୋଇଛି, ତାହା ଅନ୍ୟ କାହାରିକୁ ମିଳିନାହିଁ । ତେଲୁଗୁର ଗୋଟିଏ ପ୍ରମୁଖ ସାପ୍ତାହିକ ପତ୍ରିକାରେ ସେ ସର୍ବଦା ମହିଳାମାନଙ୍କ ପାଇଁ ଗୋଟିଏ ବିଶେଷ ସ୍ତମ୍ଭରୁ ଅଧିକ ଲେଖିଆନ୍ତି । ଏହି ଲେଖା ସେହି ପତ୍ରିକାର ପାଠକଙ୍କ ସଂଖ୍ୟା ବଢ଼ାଇ କେଉଁ ପରି ପତ୍ରିକାର ପ୍ରଚାର ଓ ପ୍ରସାରରେ ଯେ ସାହାଯ୍ୟ କରିଛି, ତାହା ପ୍ରତ୍ୟେକ ତେଲୁଗୁ ପାଠକଙ୍କୁ ଜଣା । ଖାଇବା-ପିଇବା ଜିନିଷ ତିଆରି କରିବା ପ୍ରଣାଳୀ, ସିଲେଇ, କଟାକଟି, ରଙ୍ଗ କରିବା ଆଦି କେତେକ ସ୍ତ୍ରୀମାନଙ୍କ ଉପଯୋଗୀ କଥାର ଚର୍ଚ୍ଚା। ବ୍ୟାତ ପୁସ୍ତକ ପରିଚୟ, ଯାହା ବିବରଣୀ ଆଦି କେତେକ ବିଷୟରେ ବଡ଼ ସହଜ, ସୁବୋଧ ଓ ଚିତ୍ତାକର୍ଷକ ଶୈଳୀରେ ଲେଖିଥିବା ମାଲତୀ ଚନ୍ଦୁର ତେଲୁଗୁରେ ଭଲ କାହାଣୀ ମଧ୍ୟ ଲେଖନ୍ତି । ତାଙ୍କର କେତେକ ରଚନା 'ବନ୍ଟଲୁ—ପିଣ୍ଡିବଣ୍ଟଲୁ', 'ଅଲ୍ଲିକଲୁ—କୁଟ୍ଟଲୁ', 'ନବଲ୍ଲ ପରିଚୟାଲୁ' ପୁସ୍ତକରୂପେ ବାହାରିଛି ଏବଂ ତହିଁର କେତେକ ସଂସ୍କରଣ ମଧ୍ୟ ହୋଇ ସାରିଛି । ସେ 'ମାନ୍ଦ୍ରାଜ୍ ଫିଲମ୍ ସେନ୍ସର୍ ବୋର୍ଡ଼'ରେ ସଦସ୍ୟା ଅଛନ୍ତି ।

ପ୍ରସ୍ତୁତ କାହାଣୀ 'କୋଠିବାଲା ମକାନ' ତାଙ୍କର ଏକ ବିଶିଷ୍ଟ ରଚନା ଅଟେ । ବାଧ୍ୟ ହୋଇ ଘରବାଲା ଘର ବିକ୍ରି କରିବା ପରେ ମଧ୍ୟ ତା ପ୍ରତି ରହିଥିବା ମୋହକୁ ଅତ୍ୟନ୍ତ ହୃଦୟସ୍ପର୍ଶୀ ଭାବେ ଚିତ୍ରିତ କରିଛନ୍ତି । ପାଠକଙ୍କ ହୃଦୟରେ ଏହି କାହାଣୀ କରୁଣାର ଭାବ ଉତ୍ପନ୍ନ କରିଦିଏ । ଏହି କାହାଣୀ ତାଙ୍କର ରଚନା-କୌଶଳକୁ ସୂଚିତ କରି ଦେଇଛି ।

## 25. ତୁରଗା ଜାନକୀ ରାଣୀ

ଭଲ କାହାଣୀ ଲେଖିଲାବାଲା ବହୁତ କମ୍ ମହିଳାମାନଙ୍କ ମଧ୍ୟରେ ଶ୍ରୀମତୀ ତୁରଗା ଜାନକୀ ରାଣୀ ପ୍ରମୁଖ ଅଟନ୍ତି । କାହାଣୀ ନ ଲେଖି ସିଧା ଉପନ୍ୟାସ ଲେଖି କେତେକ ଲେଖିକା ଖ୍ୟାତପ୍ରାପ୍ତ ହୋଇଛନ୍ତି; କିନ୍ତୁ ଶ୍ରୀମତୀ ଜାନକୀ ରାଣୀ କେବଳ କାହାଣୀ ଲେଖି ସୁନାମ ଅର୍ଜିଛନ୍ତି ।

ପରମ୍ପରାଠାରୁ କିଛି ପୃଥକ, ପଢ଼ି-ଲେଖିଥିବା ଆଧୁନିକ ମହିଳାର ହୃଦୟର ସ୍ପନ୍ଦନ ତାଙ୍କର କାହାଣୀଗୁଡ଼ିକରେ ସ୍ପଷ୍ଟରୂପେ ଶୁଣାଯାଏ । 'ଏର୍‌ର ଗୁଲାବିଲୁ' ତାଙ୍କର କାହାଣୀ ଗୁଡ଼ିକର ସୁନ୍ଦର ସଙ୍କଳନ ଅଟେ । କଥା-ସନ୍ନିଧାନରେ ସଂଯମ ଦେଖାଯାଏ । ଅନାବଶ୍ୟକ ଭାବୁକତା ପ୍ରଦର୍ଶନ ବିନା ନିରାଡ଼ମ୍ବର ଓ ନିର୍ମଳ ଭାବେ କାହାଣୀକୁ ଗୁନ୍ଥିବାର କୌଶଳ ଲେଖିକାଙ୍କର ନିଜ ସମ୍ପତ୍ତି ଅଟେ । ତାଙ୍କର ପ୍ରତ୍ୟେକ କାହାଣୀ ହୃଦୟ ଉପରେ ହାଲ୍‌କା ଭାବେ ପ୍ରଭାବ କରି ମନକୁ ଆକର୍ଷିତ କରିଥାଏ ।

ଏକାକୀତା ସ୍ତ୍ରୀମାନଙ୍କ ପାଇଁ ଦୁଃସହ ଓ ପୀଡ଼ାଜନକ ହୋଇଥାଏ । ଏହି ତଥ୍ୟକୁ ଅତି କୋମଳଭାବେ ବ୍ୟଞ୍ଜିତ କରୁଛି ଏହି ପ୍ରସ୍ତୁତ କାହାଣୀ 'ହମ୍ ଫିର୍ ଚଲେ ବାଗିଚେ ମେ' । ଶ୍ରୀମତୀ ଜାନକୀ ରାଣୀ ନାରୀ କଲ୍ୟାଣ ବିଭାଗରେ ଉଚ୍ଚପଦସ୍ଥ

କର୍ମିଗୃହିଣୀ ଅଟନ୍ତି ।

## 26. ଡକ୍ଟର ପଟ୍ଟାଭିରେଡ୍ଡି ଶାସ୍ତ୍ରୀ

ବୃତ୍ତିରେ ପତ୍ରକାର ହୋଇ ମଧ୍ୟ ତାଙ୍କର ଅସାଧାରଣ ପ୍ରତିଭାବଳରେ ଲେଖକ-ଗଣେ ଖ୍ୟାତିପ୍ରାପ୍ତ ବ୍ୟକ୍ତିମାନଙ୍କ ମଧ୍ୟରେ ଶ୍ରୀ ସୂର୍ଯ୍ୟାରାଓ ପ୍ରମୁଖ ଅଟନ୍ତି । 'ନ୍ୟୁୟର୍କ ହେରାଲ୍ଡ୍'ଦ୍ୱାରା ଆୟୋଜିତ ଦ୍ୱିତୀୟ ବିଶ୍ୱ କାହାଣୀ ପ୍ରତିଯୋଗିତାରେ ତାଙ୍କର କାହାଣୀ 'ଦୋଙ୍ଗଲୁନ୍ନାରୁ ଜାଗ୍ରତ' ଅଖିଳ ଭାରତୀୟ ସ୍ତରରେ ପୁରସ୍କୃତ ହୋଇଛି । 'କଥାବାହିନୀ', 'ସୁବର୍ଣ୍ଣ ରେଖଲୁ' ତାଙ୍କର ପ୍ରକାଶିତ କଥା-ସଙ୍କଳନ ଏବଂ 'ଶୁଭଲେଖ' ନାମକ ନାଟକ ମଧ୍ୟ ପ୍ରକାଶିତ ହୋଇଅଛି । ତାଙ୍କର କାହାଣୀ ଗୁଡ଼ିକ ଆକାରରେ ଛୋଟ ଓ ଚେତଲୁଗୁପଣରେ ସୁଶୋଭିତ ଅଟେ । ତାଙ୍କର କାହାଣୀ ଗୁଡ଼ିକର ଉପସଂହାର ପାଠକଙ୍କୁ ଚମତ୍କୃତ କରିଦିଏ ।

## 27. ନାର୍ଲ ଚିରଂଜୀବୀ

ଶ୍ରୀ ଚିରଂଜୀବୀଙ୍କର ପ୍ରତିଭା ବହୁମୁଖୀ ଅଟେ । ସେ ସ୍ନେହଶୀଳ, ସେ କବି, କାହାଣୀକାର, ନାଟ୍ୟକାର, ବାଲ ସାହିତ୍ୟର ସ୍ରଷ୍ଟା, ପ୍ରକାଶକ, ପତ୍ରକାର, ଫିଲ୍ମ ଲେଖକ ଏବଂ ସବୁ କିଛି । କିନ୍ତୁ ସେ କୌଣସି କଲେଜରେ ପ୍ରବେଶ କରି ନାହାନ୍ତି । ଇଂରାଜୀ ସେ ମୋଟେ ଜାଣନ୍ତି ନାହିଁ । ସମସ୍ତେ ତାଙ୍କର ମିତ୍ର ଅଟନ୍ତି । ଚିରଂଜୀବୀଙ୍କର ରଚନା କୋଡ଼ିଏରୁ ଅଧିକ ସଙ୍କଳନରେ ପ୍ରକାଶିତ ହୋଇଛି । ତାଙ୍କର ପ୍ରସ୍ତୁତ କାହାଣୀ ବରଗଛର ଛାଇ ଓ ମଲ୍ଲିର ଲତା ଏକ ପ୍ରଶସ୍ତ କାହାଣୀ ଅଟେ । ବରଗଛର ଛାଇରେ ମଲ୍ଲିର ଲତା ବଞ୍ଚିବ ? ବଞ୍ଚିବ ନାହିଁ, ବଞ୍ଚିବ ନାହିଁ । ଏହି କାହାଣୀ ମଧ୍ୟ ସେହିପରି ଅଟେ ।

Printed at Shree Avtar Printing Press, Nirankari Colony, Delhi-110 009.